# ଅର୍ଦ୍ଧ ଶତାବ୍ଦୀର ଅନୁଭୂତି

(ଦ୍ୱିତୀୟ ଭାଗ)



ଚିନ୍ତାମଣି ମିଶ୍ର

ପ୍ରକାଶକ :
ନବଜୀବନ ପୁସ୍ତକାଳୟ
ଚାନ୍ଦନୀଚୌକ, କଟକ-୨

ପ୍ରଥମ ପ୍ରକାଶ :
୧୯୮୫

ମୁଦ୍ରଣ :
ନବଜୀବନ ପ୍ରେସ୍,
ଚାନ୍ଦନୀଚୌକ, କଟକ-୨

ମୂଲ୍ୟ : ୪୪.୦୦

ARDHA SATABDIRA
ANUBHUTI
Part-II
(Autobiography of
Chintamani Misra)

Published by :
Nabajivan Pustakalaya
Chandnichauk, Cuttack-2

First Publication :
1985

Printed at :
Nabajivan Press
Chandnichauk, Cuttack-2

Price : Rs 44.00

# ନିଜ କଥା

ଅର୍ଦ୍ଧଶତାବ୍ଦୀର ଅନୁଭୂତି, ମୋ ନନାଙ୍କର ଆତ୍ମ ଜୀବନୀର ପ୍ରଥମ ଭାଗ ପ୍ରକାଶିତ ହେବା ପରେ ଅନେକ ଦିନ ବ୍ୟବଧାନରେ ଦ୍ୱିତୀୟ ଭାଗ ପ୍ରକାଶ ପାଉଛି । ବିଳମ୍ବ ହେବାର ପ୍ରଧାନ କାରଣ ସମ୍ବଳର ଅଭାବ । ମୋତେ ଅଳ୍ପକାଳୀନ ବ୍ୟବସାୟ ଆସୁ ନ ଥିବାରୁ ବା ଅନ୍ୟ କୌଣସି କାରଣରୁ ପ୍ରଥମ ଭାଗ ଆଶାନୁରୂପ ବିକ୍ରୀ ହୋଇ ପାରିଲା ନାହିଁ । ପ୍ରେସର ଯାହା ରୋଜଗାର ସେଥିରୁ ପଇସା ବଳେଇ ବହି ପ୍ରକାଶନରେ ଲଗାଇବା ଅସମ୍ଭବ ।

ନନାଙ୍କର ସମସ୍ତ ଅପ୍ରକାଶିତ ଲେଖା ଛାପିଦେବା ପାଇଁ ମୁଁ ସ୍ଥିର କରିଛି । ଅଧିକ ସମୟ ବ୍ୟବଧାନରେ ହେଲେ ମଧ୍ୟ ଛାପିବାକୁ ହିଁ ହେବ, ଏଇ ବିଶ୍ୱାସରେ ଦ୍ୱିତୀୟ ଭାଗର ଛପା ଆରମ୍ଭ କଲି । ସେଇ ସମୟରେ ମୋର ଅଗ୍ରଜ, ଆମ କୁଟୁମ୍ବର ବଡ ଦେଇ ପୁଅ ଭାଇନା ଅଧ୍ୟାପକ ଉପେନ୍ଦ୍ର ମିଶ୍ର ମୋତେ ସାହସ ଦେଇ ଦ୍ୱିତୀୟ ଭାଗ ପ୍ରକାଶ କରିବା ପାଇଁ ମୋ ସହ କାନ୍ଧ ମିଳାଇଲେ । ତା' ପରେ ପରେ ମୋ'ର ଅନ୍ୟତମ ଭଣଜା ଇଞ୍ଜିନିୟର ଶ୍ରୀମାନ୍ କିଶୋର ଚନ୍ଦ୍ର ମିଶ୍ର ମଧ୍ୟ ଆମ ସହ ଯୋଗ ଦେଲା । ସେଇ ସାହସରେ ମୁଁ ବହି ଛପା ଆଗେଇ ନେଲି । ମାତ୍ର ନନା ଲେଖିଥିବା ଆତ୍ମଜୀବନୀ ଶେଷ ହୋଇଗଲା ପରେ, ଯଦିଓ ଡାଇରୀରୁ ବିଷୟବସ୍ତୁ ନେଇ ଛାପିବି ବୋଲି ଠିକ୍ କରିଥିଲି, କ'ଣ ଛାପିବି କ'ଣ ନ ଛାପିବି, ନନାଙ୍କ ଲେଖାକୁ ଛାପିବି ନା ସେଇ ବିଷୟବସ୍ତୁକୁ ଅନ୍ୟ ପ୍ରକାରେ ଲେଖି ଛାପିବି ମୁଁ ଠିକ୍ କରି ପାରୁ ନ ଥିଲି । ଏଇ ଅବସ୍ଥାରେ ମୋ'ର ଆଉ ଗୋଟିଏ ଭଣଜା ଅଧ୍ୟାପକ ଶ୍ରୀମାନ୍ ସୁରେଶଚନ୍ଦ୍ର ମିଶ୍ର ଗୋଟିଏ ବାଟ ଦେଖାଇଲା ଓ ନନାଙ୍କ ଲେଖାକୁ ସିଧା ସଳଖ ଛାପିବାକୁ ପରାମର୍ଶ ଦେଲା । ସେ ତା'ର ଅସୁସ୍ଥତା ସତ୍ତ୍ୱେ ବହୁ ପରିଶ୍ରମ କରି ଡାଇରୀରୁ, ଏଇ ଦ୍ୱିତୀୟ ଭାଗରେ ଛପାଯାଇ-ଥିବା ଅଂଶତକ ବାଛିଛି । ମୁଁ ସେଥିରେ ଯେ ଫେଡ଼ାମିଶା କରିନ ତା' ନୁହେଁ କିନ୍ତୁ ଶ୍ରୀମାନ୍ ସୁରେଶର ପରିଶ୍ରମ ତୁଳନାରେ ମୋ'ର ସେ ଦିଗରେ ପରିଶ୍ରମ କିଛି ନୁହେଁ । ପ୍ରଥମ ଭାଗରୁ କିଛି ବହି ବିକ୍ରୀ କରାଇ ଦେଇ ମଧ୍ୟ ସେ ମୋତେ ଖୁବ୍ ସାହସ ଦେଇଛି । ମୋର ଅନେକ ଶୁଭାକାଙ୍କ୍ଷୀ, ବହି କେବେ ବାହାରିବ, କାହିଁକି ଶୀଘ୍ର ବାହାରୁନି ପଚାରି ପଚାରି ମୋତେ ବହି ଛପା ଆଗେଇ ନେବାରେ ସାହାଯ୍ୟ କରିଛନ୍ତି ।

ଅବସରପ୍ରାପ୍ତ ଅଧ୍ୟାପକ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାସ ଏଇ ଦ୍ୱିତୀୟ ଭାଗର ଛପା ଅଂଶତକ ପଢ଼ି ଦି ଧାଡି ଲେଖି ଦେଇଛନ୍ତି । ତାହା କେବଳ ଏ ଅନୁଷ୍ଠାନ ପ୍ରତି ଓ ମୋ ନନାଙ୍କ ପ୍ରତି ତାଙ୍କର ଶ୍ରଦ୍ଧାଯୋଗୁ ସମ୍ଭବ ହୋଇଛି ।

ଆମେ ଶମ୍ଭୁକର ଭରଦ୍ୱାଜ ଗୋତ୍ରୀ କେଉଟ ମାଧ୍ୟା ବ୍ରାହ୍ମଣ । ଆମର ବଂଶର ମାତ୍ର କେତେ ପୁରୁଷରୁ ଛାଡ଼ିବ ହୋଇଯାଇଥିବା ଶ୍ରୀଯୁକ୍ତ ଚକ୍ରଧର ମିଶ୍ରଙ୍କ ପୁତ୍ର ଶ୍ରୀଯୁକ୍ତ ହୃଷିକେଶ

ମିଶ୍ର ଏବଂ ଆମ ଭୁଝୁଂଟୁରର କକେଇ ଶ୍ରୀଯୁକ୍ତ ମୁରାରି ବ୍ରହ୍ମା ମିଶ୍ର, ଦୁହେଁ ମିଶି ଆମର ଦଶ ପୁରୁଷର ଗୋଟିଏ ବଂଶ ଲତା ପ୍ରସ୍ତୁତ କରିଛନ୍ତି । ସେଇଥିରୁ ସଂଗ୍ରହ କରି ଏଇ ବହିରେ ଗୋଟିଏ ସଂକ୍ଷିପ୍ତ ବଂଶଲତା ଆମେ ଦେଇ ପାରିଛୁ ।

ଆମେ ସମସ୍ତଙ୍କଠାରେ କୃତଜ୍ଞ ।

ଏଇ ଦ୍ୱିତୀୟ ଭାଗରେ ୧୯୫୭ ଶେଷ ପର୍ଯ୍ୟନ୍ତ ଡାଇରୀରୁ ଛପା ହୋଇଛି । ତା' ପରେ ପରେ ପରିଶିଷ୍ଟ ଆକାରରେ 'ନବଜୀବନ' ପ୍ରଥମ ସଂଖ୍ୟାରେ ନନା ଲେଖିଥିବା 'ଆତ୍ମ ନିବେଦନ' ଦିଆ ହୋଇଛି ।

ତୃତୀୟ ଭାଗରେ ଅବଶିଷ୍ଟ ଅଂଶ ସ୍ଥାନ ପାଇବ । ଇଚ୍ଛା ତ ଖୁବ୍ ଶୀଘ୍ର ତା କାମ ଆରମ୍ଭ କରିବା । ଈଶ୍ୱର ଇଚ୍ଛା ।

କୃଷ୍ଣମୋହନ ମିଶ୍ର
୧୦ । ୧୨ । ୮୫

କାହାଣୀର ପୂର୍ଣ୍ଣ ରୂପ ଦେଖିବାକୁ ମିଳେ । କିନ୍ତୁ ଆତ୍ମକାହାଣୀ ସଦା ଅପୂର୍ଣ୍ଣ । ଶେଷ ନିଃଶ୍ୱାସ ଯିବା ପର୍ଯ୍ୟନ୍ତ କେହି ସ୍ୱକାହାଣୀ ଲେଖି ନ ପାରେ ।

କାହାଣୀରେ ସ୍ୱପ୍ନ ବା କଳ୍ପନା ଅଧିକ । ଆତ୍ମ-କାହାଣୀ ଅଙ୍ଗେ ଲିଭା କଥା— ବାସ୍ତବ, ସତ୍ୟ । ଲୁଚାଇବାର ଅପଚେଷ୍ଟା ନ ଥିଲେ ଏହା ବିଶ୍ୱସ୍ତତମ ଜୀବନ ଗଳ୍ପ ହୁଏ ।

ଫକୀର ମୋହନଙ୍କ ଆତ୍ମକାହାଣୀ ବିଂଶ ଶତାବ୍ଦୀର ଆଦ୍ୟ ପାଦର ରଚନା । ଏହା ଓଡ଼ିଶାର ପ୍ରଥମ ଆତ୍ମ ଜୀବନ ଚରିତ । ତା'ପରେ ବହୁ ଆତ୍ମଜୀବନୀ, ସ୍ମୃତିକାହାଣୀ ରଚିତ ହୋଇଅଛି । ଏହା ଏବେ ସାହିତ୍ୟରେ ଏକ ମୁଖ୍ୟ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଅଛି ।

ସହିତର ଭାବରୁ ଯେ ସାହିତ୍ୟ ସୃଷ୍ଟି ହୁଏ, ତାହା ସାହିତ୍ୟିକ ଚନ୍ଦ୍ରାମଣି ମିଶ୍ରଙ୍କ ଅର୍ଦ୍ଧ ଶତାବ୍ଦୀର ଅନୁଭୂତି ପ୍ରମାଣ କରିଅଛି ।

ଦିନେ ସମ୍ବଲପୁରରୁ ବନ୍ଧୁ ଭରତଚନ୍ଦ୍ର ନାୟକ ଆସି ଅନୁରୋଧ କଲେ—'ମୋର ପୂର୍ବ ସ୍ମୃତି କଥା' ଶିରୋନାମାରେ ଆପଣ ଆତ୍ମ ଜୀବନୀ ଲେଖନ୍ତୁ ।

ତାର ଉତ୍ତରରେ ଚନ୍ଦ୍ରାମଣି କହିଲେ —'ଆଗେ ଆପଣଙ୍କ ଜୀବନ ଗପ ସମସ୍ତେ ଶୁଣନ୍ତୁ । ମୋ କଥା ପରକୁ ଥାଉ ।'

'ମୋ ଜୀବନରେ ଏମିତି କଣ ଅଛି, ଲେଖିବି ?'

'ଏଗାରଟି ଟ୍ରିଅର ଯେଉଁ ବାପ ଅନ୍ଧବିଶ୍ୱାସ ମୂଳକର ସଂସ୍କାର ଓ ରକ୍ଷଣଶୀଳ ସମାଜର କଣ୍ଟକଣା ବିରୁଦ୍ଧରେ ସଂଗ୍ରାମ କରି ସବୁଗୁଡ଼ିକୁ ପାଠ ପଢ଼ାଇ ମଣିଷ କରି ପାରିଛୁ, ତା'ର ଜୀବନ-ଉପନ୍ୟାସ ନିଶ୍ଚୟ ସମସ୍ତଙ୍କୁ ସୁଆଦ ଲାଗିବ । ଏଇ ମାସଠୁ ଧାରାବାହିକ ନବଜୀବନରେ ତାହା ବାହାର କରିବା । '

ଭରତଚନ୍ଦ୍ରଙ୍କ 'ମୋ ପୂର୍ବ ସ୍ମୃତି କଥା' ଦୀର୍ଘ ପାଞ୍ଚ ବର୍ଷ କାଳ 'ନବଜୀବନ'ରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ୧୯୬୬ ମସିହାରେ ଏହା ପୁସ୍ତକ ରୂପ ନେଲା ।

ତା'ପରେ ଚନ୍ଦ୍ରାମଣିଙ୍କ ପାଳି । 'ଅର୍ଦ୍ଧ ଶତାବ୍ଦୀର ଅନୁଭୂତି' ସାପ୍ତାହିକ, ତା'ପରେ ମାସିକ 'ନବଜୀବନ'ରେ ପ୍ରକାଶ ପାଇଥିଲା । ନାନା କାରଣରୁ ୧୦ବର୍ଷ ପ୍ରକାଶିତ ହେବା ପରେ ନବଜୀବନ ୧୯୭୭ରେ ବନ୍ଦ ହେଲା ଓ ତା ସଙ୍ଗେ ସଙ୍ଗେ ଅର୍ଦ୍ଧ ଶତାବ୍ଦୀର ଅନୁଭୂତି ଲେଖା ବି ବନ୍ଦ ହୋଇଗଲା । ୧୯୪୭ ପର୍ଯ୍ୟନ୍ତ ଜୀବନର ଯାବତୀୟ ଘଟଣା ସେ ସ୍ୱକାହାଣୀରେ ଲେଖିଛନ୍ତି ପ୍ରାଞ୍ଜଳ ଭାବରେ । ୧୯୫୬ ଠାରୁ ୧୯୭୭ ପର୍ଯ୍ୟନ୍ତ ତାଙ୍କ ଅନୁଭୂତିର ସାକ୍ଷର ବହନ କରିଛି ନବଜୀବନର ସଂପାଦକୀୟ । ୧୯୮୦ ମସିହାରେ ଲେଖକ ଇହଧାମ ତ୍ୟାଗ କଲେ ।

ଏବେ ଏହି ଗ୍ରନ୍ଥର ଦ୍ୱିତୀୟ ଭାଗ ପ୍ରକାଶିତ ହୋଇଅଛି । ଏଥିରେ ତାଙ୍କ ଅଂଶତଃ ପ୍ରକାଶ କରିଦେବା ଯଥାର୍ଥ ହୋଇଅଛି । ତା ହେଲେ ଚନ୍ଦ୍ରାମଣିଙ୍କ ଜୀବନର ଏକ ସ୍ଥୂଳ ଧାରଣା ପାଠକ ମନରେ ଉଙ୍କି ମାରିବ ।

ଚନ୍ଦ୍ରାମଣି ନିଜ ଗୋଡ଼ରେ ନିଜେ ଠିଆ ହୋଇ ମନୀଷୀ ହୋଇଛନ୍ତି । ତାଙ୍କ ଜୀବନ ସଂଗ୍ରାମ କଠୋର ଓ କର୍ମବହୁଳ ; ତେଣୁ ତାଙ୍କ ଜୀବନୀ ବୈଚିତ୍ର୍ୟମଣ୍ଡିତ, ଆମୂଳଚୂଳ ସୁଖପାଠ୍ୟ ଓ ଏକାନ୍ତ ଭାବେ ଶିକ୍ଷଣୀୟ ହୋଇଅଛି ।

ଦୁଃଖ କୋଳରେ ସେ ଆଜୀବନ ଲାଳିତ । ଦୁଃଖ ଦୁର୍ଦ୍ଦଶା ସହିତ ସଂଗ୍ରାମ କରି ତାଙ୍କ ଜୀବନ ବଢ଼ିଛି । ସେ କେବେ ଭାଙ୍ଗି ପଡ଼ିନାହାନ୍ତି—ସ୍ୱାଧୀନଚେତା, ସତ୍ୟନିଷ୍ଠ, ନିର୍ଭୀକ ଓ ଚିର ପ୍ରସନ୍ନମୁଖ । ଆୟକୁ ଚାହିଁ ସେ କେବେ ବ୍ୟୟ କରିନାହାନ୍ତି, ତେଣୁ ସଦା ଅଭାବଗ୍ରସ୍ତ ।

'ଅର୍ଦ୍ଧଶତାବ୍ଦୀର ଅନୁଭୂତି'ରେ ଗତ ପଚାଶ ବର୍ଷର ଓଡ଼ିଶାର ପଲ୍ଲୀ ଓ ନଗର ଜୀବନର ସ୍ୱରୂପ ରୂପାୟିତ ହୋଇଅଛି ଓ ତା ସହିତ ନିଜ ପରିବାର, ପଡ଼ୋଶୀ, ଗ୍ରାମବାସୀ, ପ୍ରଦେଶ ଓ ଦେଶବାସୀ, ସଜ୍ଜନ ଓ ଦୁର୍ଜନଙ୍କ ଚିନ୍ତା ଚରିତ୍ର ଚର୍ଚ୍ଚିତ ହୋଇଅଛି ।

ଚନ୍ଦ୍ରାମଣି ସ୍ୱଭାବତଃ ସ୍ପଷ୍ଟବାଦୀ । ଖାଲରେ ପଡ଼ୁ, ଢିପରେ ପଡ଼ୁ, ସେ ମନ କଥାଟି କହି ଦିଅନ୍ତି ଓ ନିଜ ଲାଗି ଅସୁବିଧା ସୃଷ୍ଟି କରନ୍ତି । କିନ୍ତୁ କୌଣସି ଅସୁବିଧାକୁ ସେ ଭୟ ନ କରି ତାର ସମ୍ମୁଖୀନ ହୁଅନ୍ତି ।

ନିଜର ଦୁରଭ୍ୟାସ ଓ ଦୁର୍ଗୁଣ ଗୁଡ଼ିକୁ ମଧ୍ୟ ସେ ଖୋଲା ଖୋଲି ପ୍ରକାଶ କରିଛନ୍ତି । କିଏ କ'ଣ ଭାବିବ, ଚିନ୍ତିବ, ଏ ଭାବନା ତାଙ୍କୁ ଆକ୍ରାନ୍ତ କରି ନାହିଁ ।

ବାଗ୍ମୀବର ଚନ୍ଦ୍ରାମଣିଙ୍କ ବ୍ୟକ୍ତିତ୍ୱ ଏକ ହାସ୍ୟରସାତ୍ମକ ବ୍ୟକ୍ତିତ୍ୱ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପରେ ତାଙ୍କ ହାସ୍ୟ-ରସାତ୍ମକ ସାହିତ୍ୟ ରଚନାର ସ୍ୱତନ୍ତ୍ର ସ୍ୱାକ୍ଷର ସର୍ବଜନ-ସ୍ୱୀକୃତ । ହାସ୍ୟ ଓ ବ୍ୟଙ୍ଗ ତାଙ୍କ ଆତ୍ମ ଜୀବନୀର ରଚନାଶୈଳୀକୁ ମାଧୁର୍ଯ୍ୟମଣ୍ଡିତ କରିଅଛି ।

ଆତ୍ମଚରିତ ସାହିତ୍ୟରେ ଅର୍ଦ୍ଧ ଶତାବ୍ଦୀର ଅନୁଭୂତି ଘଟଣା ବୈଚିତ୍ର୍ୟ ଓ ରଚନା ରୀତି ଦୃଷ୍ଟିରୁ ଏକ ମୁଖ୍ୟ ସ୍ଥାନ ଅଧିକାର କରିବାକୁ ସମର୍ଥ ହେବ, ମୋର ଦୃଢ଼ ବିଶ୍ୱାସ ।

୧୫ । ୧୦ । ୮୫ — କୁଞ୍ଜବିହାରୀ ଦାଶ

କଟକ

## ପୁରୁଷାନୁକ୍ରମେ ଚିନ୍ତାମଣି ମିଶ୍ରଙ୍କର

# ବଂଶାବଳୀ

ଚିନ୍ତାମଣିଙ୍କ ଦଶ ପୁରୁଷ ପୂର୍ବ ବଂଶଧର ପୁରୀ ଜିଲ୍ଲା ଖୋର୍ଦ୍ଧା ସବ୍‌ଡିଭିଜନ୍ ହଳଦିଆ ଗ୍ରାମରେ ବାସ କରୁଥିଲେ । ଏମାନେ ଶମ୍ଭୁକର ଭରଦ୍ୱାଜ ଗୋତ୍ରୀ ,ଏବଂ 'କଥଟମାଧ୍ୟାସ୍ଥ' କାଳକ୍ରମେ ଅପଭ୍ରଂଶ ହୋଇ କେଉଟମାଧିଆ ମିଶ୍ରବଂଶ ରୂପେ ପରିଚିତ ହେଲେ । ହଳଦିଆସ୍ଥ ବିଶ୍ୱେଶ୍ୱରଙ୍କଠାରୁ ବଂଶାବଳୀର କିଞ୍ଚିତ୍ ସୂଚନା ଦିଆଗଲା ।






ରାଘବାନନ୍ଦଙ୍କ ୧ମ ପୁତ୍ର—ଚନ୍ଦ୍ରାମଣିଙ୍କର ଚାରି ପୁତ୍ର ଓ ଛ' କନ୍ୟା ।

ପୁତ୍ରଗଣ

| | |
|---|---|
| କୃଷ୍ଣମୋହନ | ସ୍ତ୍ରୀ—ରେଣୁ |
| ଜନମୋହନ | ସ୍ତ୍ରୀ—ଚନ୍ଦ୍ରରେଖା |
| ଚନ୍ଦ୍ରମୋହନ | ସ୍ତ୍ରୀ—ଇନ୍ଦିରା |
| ଲଳିତ ମୋହନ | ସ୍ତ୍ରୀ—ମନୋରମା |

କନ୍ୟାଗଣ

| | |
|---|---|
| ଶଶିମଣି | ସ୍ୱାମୀ—ପ୍ରମୋଦ (ସ୍ୱର୍ଗୀୟ) |
| ବାସନ୍ତୀ | ସ୍ୱାମୀ—ବୈଦ୍ୟନାଥ |
| ହେମଲତା | ସ୍ୱାମୀ—ସର୍ବେଶ୍ୱର |
| ଶାନ୍ତିଲତା | ସ୍ୱାମୀ—ବନମାଳୀ |
| ଜୟନ୍ତୀ | ସ୍ୱାମୀ—ନିର୍ମଳ କୁମାର |
| ଉମା (ଅବିବାହିତା ଅଛନ୍ତି) | |

ରାଘବାନନ୍ଦଙ୍କର ୨ୟ ପୁତ୍ର—
ରାଜେନ୍ଦ୍ରମଣି ମହାପାତ୍ର ବଙ୍କିଡା ପିଉସୀର ପୋଷ୍ୟ ପୁତ୍ର ହୋଇ ବାଜପୁରଠାରେ ଅବସ୍ଥାନ କରୁଛନ୍ତି ।

ରାଘବାନନ୍ଦଙ୍କର ୩ୟ ପୁତ୍ର ନୀଳମଣିଙ୍କର ୩ ପୁତ୍ର ଓ ୩ କନ୍ୟା ।

ପୁତ୍ରଗଣ :—

| | |
|---|---|
| ମନ ମୋହନ | ସ୍ତ୍ରୀ—ରଶ୍ମିରେଖା |
| ମଦନ ମୋହନ | ସ୍ତ୍ରୀ—ରେଖା |
| ମାଧବ ଚନ୍ଦ୍ର | ସ୍ତ୍ରୀ—ଜ୍ୟୋତିରେଖା |

# ଦ୍ୱିତୀୟ ଭାଗ

ବାଡ଼ଦୁଆର ବାହାରୁ ବନ୍ଧକରି ଗଳିବାଟେ ଦାଣ୍ଡକୁ ବାହାରିଲି ; ଦାଣ୍ଡପଟ ଦୁଆରେ ତାଲା ଲଗାଇ କବିରାଜଙ୍କ ଦୋକାନକୁ ଆସିବାବେଳେ ସ୍ୱେରପରି ଆସିଲାପରି ମନେ ପଡ଼ୁଛି । କବିରାଜେ ଆସି ଦୋକାନ ଫିଟାଇ ସାରିଥାନ୍ତି । କଟକ ଯିବା ଗାଡ଼ିବେଳ ପାଖେଇ ଆସିବାରେ ତାଙ୍କଠାରୁ ବିଦାୟ ନେଲି ; ଆସିଲାବେଳେ କହିଲି, 'ଆପଣଙ୍କ କୃପା ହେଲେ ମୋ କାମ ହୋଇଯିବ ।' ସେ ହସିଲେ, ଖେଲବେଳେ ତ ଅଚ୍ଛ ଅନ୍ତରଙ୍ଗ ହୋଇଯାଇଥାଏ, କହିଲେ, 'ହଁ, ମୋ ନାମ କୃପାସିନ୍ଧୁ ବୋଲି ସ୍ୱା କହିଲେ ପରା !' ମୁଁ କମେଇଁ ବାବୁଙ୍କଠାରୁ ଶୁଣିଥାଏ, କବିରାଜେ ରାଜବୈଦ୍ୟ, ପ୍ରତ୍ୟହ ରାଜବାଟିକୁ ଯା'ନ୍ତି ।

ମୁଁ ତାଲଚେର ଗାଡ଼ିରୁ ଓହ୍ଲାଇବା ପୂର୍ବରୁ କାଲି କାହାକୁ ଖୋଜିବି ଠିକଣା କରି ସାରିଥିବାରୁ, ଗାଡ଼ିରୁ ସିଧା ଗଲି ସ୍ୱର୍ଗୀୟ ସୋମନାଥ ମିଶ୍ରଙ୍କ ଘରକୁ । ସେ ମୋ' ସ୍ତ୍ରୀର ମାମୁଁପୁଅ ଭାଇ ; କଟକରେ ହେଡ଼ କମ୍ପୋଜିଟର୍ କାମ କରନ୍ତି । ତାଙ୍କ ସାଙ୍ଗେ ଘଡ଼ିଏ ଖଣ୍ଡେ କଥାବାର୍ତ୍ତା ପରେ ସେ ମୋ ପ୍ରସ୍ତାବରେ ରାଜି ହୋଇଗଲେ । ଜଣେ ମେସିନ-ମ୍ୟାନ କାଲି ସେ ଖୋଜି ପଥରଦିନ ମୋ ସାଙ୍ଗେ ଢେଙ୍କାନାଳ ଯିବେ ଏବଂ ସେଠାରେ ଅବସ୍ଥା ଦେଖି ବ୍ୟବସ୍ଥା କରାଯିବ । ଦୃଢ଼ତା ଓ ଆଶାବାଦିତାରେ ସେ ମୋ'ଠାରୁ କୌଣସି ଅଂଶରେ କମ୍ ନୁହନ୍ତି ଦେଖି ମୋ ମୁଣ୍ଡରୁ ବୋଝ ଗଲାପରି ମୋତେ ଲାଗିଲା ।

ବଡ଼ ପାହାଚରେ ପହଁଚିଲା ବେଳକୁ ନୀଳକଣ୍ଠ ବାବୁଙ୍କ ଗର୍ଜନ ଶୁଭିଲା । ସେ ଆମର ପୁଅଝିଅଙ୍କୁ ଡାକି ପଚାରୁଥାନ୍ତି ମୁଁ ଆସିଲିଣି କି ନାହିଁ । ମୁଁ ତାଙ୍କରି ପରି ପାଟି କରି ଡାକିଦେଲି, ଇନ୍ଦ୍ରମଣି ! ଦୁଆର ଫିଟାଅ । ଏ 'ଇନ୍ଦ୍ରମଣି'ଟି ୧୦ । ୧୨ ଦିନ ହେଲା ମିଳିଥାଏ ; ଅତି ନିରଳସ ପିଲା ମୁଁ ବିକଟିଏ । ବହୁବର୍ଷ ମୋ ପାଖେ ରହିଲା, ମୋର ବହୁ ଉତ୍ପାତ ସହିଛି । ସେ ବେଳରେ ତ ତିଳ ପ୍ରମାଣ ଦୋଷକୁ ତାଳ ପ୍ରମାଣ ଦଣ୍ଡ ଦେଉଥାଏ ଏବଂ ବଦାନ୍ୟ ଭାବେ ହାତ ବ୍ୟବହାର କରୁଥାଏ ।

ତାଲଚେର ଗାଡ଼ି କେତେଟା ବେଳେ କଟକରେ ପହଞ୍ଚେ ଓ କଟକଠାରୁ କାଳି ବଜାରକୁ ଘୋଡ଼ା ଗାଡ଼ିରେ କେତେବେଳ ଲାଗେ ତା'ର ଉପରେ ଗୁଡ଼ାଏ ଚର୍ଚ୍ଚା କରି

ମୋତେ ଘୁଡ଼ାଏ ଗାଳିଦେବା ପରେ ସେ ଟିକିଏ ଥଣ୍ଡା ହେବାରେ ସବୁ କଥା ଗୋଟିଗୋଟି କରି ତାଙ୍କୁ କହିଲି । ଶେଷରେ ପରଦିନ ସୋମନାଥଙ୍କ ସଙ୍ଗେ ଆଉ ଜଣଙ୍କୁ ଢେଙ୍କାନାଳ ପଠାଇବାକୁ ଷ୍ଟେସନରୁ ଆସିବା ବାଟରେ କରିଥିବା ଯୋଜନା ପର୍ଯ୍ୟନ୍ତ । ଖୁବ୍ ଧୈର୍ଯ୍ୟଧରି ସବୁ ଶୁଣିସାରି ଶେଷରେ କହିଲେ, 'ଜାଣିଲୁ ? ଖୁବ୍ ପ୍ରାଣ ପ୍ରାୟଶ୍ଚିତ୍ତ ହୋଇ ଲାଗିଛି ଯେ, ମୋତେ କେମିତି କେମିତି ଲାଗୁଛି । ସତେ କ'ଣ ଏ ପ୍ରେସ୍‌ଟା ଢେଙ୍କାନାଳ ଚଳନ୍ତୁ ଆସିପାରିବ ? ଶେଷରେ ସେ ଗଣେଶ୍ବର ମିଶ୍ରଟା ଘୁଡ଼ାଏ ଘାଣ୍ଟିବ, ଜଣାଯାଉଛି ।' ଦୁହେଁ ଖାଇ ବସିଲୁଁ । ଖାଇଲା ବେଳେ ସେ କହିଲେ, 'ହଉ ଯାହା କରୁଛ କର, କିନ୍ତୁ ରାତିରେ କେବେହେଁ ଢେଙ୍କାନାଳରେ ରହିବୁନାହିଁ । ପ୍ରତ୍ୟହ ପଳାଇ ଆସୁଥିବୁ, ଦରକାର ହେଲେ ପଛେ ତା' ଆରଦିନ ଯିବୁ ।' ଏହା ମଧ୍ୟ ସେ ଗତ ୧୦ । ୧୫ ଦିନ ଭିତରେ ଆଠ ଦଶଥର କହିଥିବେ ।

ତହିଁ ଆରଦିନ ସକାଳ ୯ଟାରେ ସୋମନାଥ ଲୋକନାଥ ଝା ବୋଲି ଜଣେ ବୁଢ଼ାଙ୍କୁ ଧରି ଆସିଲେ—ପଚାଶ-ପଞ୍ଚାବନ ପର୍ଯ୍ୟନ୍ତ ବୟସ, ଯେମିତି ଚାଲୁଥାନ୍ତି ପିମ୍ପୁଡ଼ି ବି ପାଦତଳେ ମରିବନାହିଁ, ତୁଣ୍ଡର କଥା ବି ଟାଣରେ ବାହାରୁନଥାଏ, କିନ୍ତୁ ମନ ଖୁବ ଟାଣ । ଅଧଘଣ୍ଟାକ ଭିତରେ ସେ କହିଲେ, 'ଆମେ ସାତଦିନ ଭିତରେ ମେସିନ୍ ଫିଟାଫିଟି କରି ପ୍ୟାକ୍ କରିଦେବୁଁ । ତାହା ଷ୍ଟେସନକୁ ଆଣିବା ଦାୟିତ୍ବ ଆପଣଙ୍କର । ଏ କଥାରେ ମୋର ସାହସ ଦଶଗୁଣ ହୋଇଗଲା । ଗାଡ଼ି ବେଳ ଥିଲେ ସେଠିକିବେଳେ ଢେଙ୍କାନାଳ ବାହାରିପଡ଼ିଥାନ୍ତି ।

ଜୟପୁର ମହାରାଜାଙ୍କ ଚେକ୍ ଇମ୍ପିରିଏଲ୍ ବ୍ୟାଙ୍କରେ ଜମାହୋଇଯାଇଥାଏ । ସେ ଟଙ୍କାତକ ଗଣେଶ୍ବର ମିଶ୍ରଙ୍କ ପାଇଁ ଫୁଲଚନ୍ଦନ ଦିଆହୋଇ ରହିବାକୁ ପଣ୍ଡିତଙ୍କ ବିଟାଳ କରିଥାନ୍ତି । ବହୁ ସାଧ୍ୟସାଧନାରେ ବ୍ୟାଙ୍କରୁ ୩ଶହ ଟଙ୍କା ସେଦିନ ଆଣିଲି । ପ୍ରେସ୍ ଆସିଲା ପରେ ଆଉ ଦୁଇଶହ ଦେବେ ବୋଲି ଜବାବ୍ କଲେ । ସେଇଦିନ ସୋମନାଥଙ୍କର ମୋର ବୁଲାବୁଲି ପରେ ଘରଟିଏ ଠିକଣା କଲୁଁ, ବାଙ୍କାବଜାରରେ ମାସକୁ ୨୫ ଟଙ୍କା ଭଡ଼ା । ନୀଳକଣ୍ଠ ବାବୁ କହୁଥାନ୍ତି, 'ପୁଅ ଜନ୍ମ ନ ହେବା ପୂର୍ବରୁ ତା ବିଭାଘର ପାଇଁ ଆୟୋଜନ ।' ତାଙ୍କ ପରିହାସ ଓ ଖୁଙ୍କଣିଆ କଥା ମୋ ଦେହକୁ ଭେଦ କରୁନଥାଏ । ନ ଶୁଣିଲା ପରି ରହିଯାଏ । ବେଳେ ବେଳେ ରାଗ ଲାଗିଲେ ଘୁଡ଼ାଏ ପାଟିକରେ କାନ୍ଦେ । ସେ ଯେତେ ସହନ୍ତି ସେତେ ଆଉ କିଏ ସହିବ ? ପନ୍ଦର ମିନିଟ୍ ପରେ ଆମ ଦୁହିଁଙ୍କୁ ଦେଖିଲେ ବାହାର ଲୋକ ମନେ କରିବ, ଯ୍ବାଙ୍କ ଭିତରେ ମତଭେଦ କସ୍ମିନ୍ କାଳେ ହୋଇନଥିବ ।

ତହିଁ ଆରଦିନ ଦଶଟା ବେଳକୁ ସୋମନାଥ ଓ ଲୋକନାଥ ଝା ବାଡ଼ିପଟେ ପ୍ରେସ୍ ଭିତରେ ପଶିଲେ ଏବଂ ତାଙ୍କ କାର୍ଯ୍ୟ ଆରମ୍ଭ କରିଦେଲେ । ସେଇ ପ୍ରେସ୍ ଭିତରେ

ତାଙ୍କପାଇଁ ସ୍ୱେଷେଇ ଘର ସଜାଳ ହୋଇଗଲା । ସ୍ୱଗରେ ଅରେମାନ ସଉଦା ପଣ୍ଡ କରିବାକୁ ଦାଣ୍ଡକୁ ବାହାରିବେ ଏବଂ ଯେତେଦିନ ରହିଲେ ମଧ୍ୟ କବିରାଜଙ୍କ ବଂଶଧର ଆଉ କାହାକୁ ଚଳାଇଦେବେ ନାହିଁ । କବିରାଜେ କଥା ପଡ଼ିଲେ କହନ୍ତି, 'ରାଜାସାହେବ ଜଣେ କଣ୍ଟ୍ରାକ୍ଟରଙ୍କୁ ପ୍ରେସ୍‌ଟା ଦାନ ଦେଉଛନ୍ତି । ଆମ ଅଂଶଧନ ମିଳୁଛି କି ନାହିଁ କେଜାଣି ?'

ସେଦିନ ଦି ପହରେ ବି କବିରାଜଙ୍କ ଘରେ ଖାଇ ସୁଡ଼ାଏ ହାଡ଼ ଗଡ଼େଇଲି । ଷ୍ଟେସନ୍‌କୁ ଯିବା ପୂର୍ବରୁ ପ୍ରେସ୍ ଭିତରେ ଟିକିଏ ବୁଲି ଆସିଲି । ବଡ଼ ମେସିନ୍‌ର ଅଧେ ଫିଟାହୋଇ ତଳକୁ ବାହାରିଥାଏ, ଅକ୍ଷର କେସ ସବୁ ବନ୍ଧାବନ୍ଧି ଚାଲିଥାଏ । ଟଙ୍କା କେତୋଟି ସୋମନାଥ ହାତରେ ଦେଇ ଚାଲିଆସିଲି ।

ପରବର୍ତ୍ତୀ ସପ୍ତାହରେ ତିନିଥର ଢେଙ୍କାନାଳ ଗଲି । ପ୍ରେସରେ ଟିକିଏ ବୁଲିଆସେ, କବିରାଜଙ୍କ ଘରେ ଖାଏ, ଖେଳେଁ ଏବଂ ଖେଳ ପରେ ପ୍ରେସ ଭିତରେ ଆଉ ଥରେ ବୁଲି ଷ୍ଟେସନକୁ ଆସେ । ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟରଙ୍କ ସଙ୍ଗେ ଭାବ ହୋଇଗଲା । ପ୍ରାୟ ମୋ ବୟସର ବଙ୍ଗାଳୀ ଯୁବକଟିଏ । ସେ ଜବାବ ଦେଇଥାନ୍ତି, ମୋର ଜିନିଷ ଷ୍ଟେସନ ପ୍ଲାଟଫର୍ମରେ ପଡ଼ିବା ମାତ୍ରେ ସେ ଆମର ବିଲ୍ କରିଦେବେ ; ଷ୍ଟେସନ ପ୍ଲାଟଫର୍ମରୁ ଜିନିଷ ଜବତ୍ କରିବାର ଅଧିକାର ରାଜାଙ୍କର ନାହିଁ । ଜବତ୍ କରିବା ପଲିଟିକେଲ୍ ଏଜେଣ୍ଟ ଓ ରେଲବାଇର ଜେନେରାଲ ମେନେଜରଙ୍କ କାମ ; ତାହା ହେବା ପୂର୍ବରୁ ମାଲ କଟକ ମାଲଗୋଦାମକୁ ଚାଲିଯିବାର ସେ ବନ୍ଦୋବସ୍ତ କରିଦେବେ ।

ଶେଷଥର ନିମାଇଁ ବାବୁଙ୍କଠାରୁ ଶୁଣିଲି, ୩।୪ ଦିନ ଭିତରେ ରାଜା ସାହେବ ଓ ପଣ୍ଡାସୃତ ସମ୍ବଲପୁର ଯିବେ ଯେ ସେଠାରେ ତିନିଦିନ ରହିବେ । ତା'ରି ଭିତରେ ଜିନିଷ ସ୍ଥାନାନ୍ତରିତ କରିବା ନିରାପଦ । ଗଣେଶ୍ୱର ପଣ୍ଡିତଙ୍କଠାରୁ ସେ ଚିଠି ପାଇଛନ୍ତି ଓ ମୋ'ର ପରିଚୟ ପାଇଛନ୍ତି ବୋଲି କହିଲେ ।

ସେଇଦିନ ଓପରଓଳି ସୁଦ୍ଧା ସବୁ ଜିନିଷ ଠିକ୍‌ଠାକ ହୋଇ ବନ୍ଧାବନ୍ଧି ହୋଇଥାଏ । ଲୋକନାଥ ଜୀ ମୋ ସଙ୍ଗେ କଟକ ଫେରି ଆସିଲେ । ସୋମନାଥଙ୍କୁ ବରାଦକରି ଆସିଲି ରାଜାସାହେବ ଯେଉଁଦିନ ଯିବେ ତହିଁଆରଦିନ ବେଳାବେଳି ଶଗଡ଼ ଲଗାଇ ଦେବାକୁ ହେବ । ଯେତିକଟା ଶଗଡ଼ ଦରକାର ତାହାର ଦୁଇଗୁଣ ନିଯୁକ୍ତ କରିବାକୁ କହିଲି ।

ଷ୍ଟେସନକୁ ଭଡ଼ା ଆଠଅଣା ; ବାରଅଣା ଲେଖାଏଁ ଦେବାକୁ କହିଲି । ଟଙ୍କା ଦେଇ ଆସିଲି, ଜବାବ୍ କରିଥାଏଁ ଯେ ମୁଁ ଷ୍ଟେସନରେ ଓହ୍ଲାଇଲା ବେଳକୁ ଶଗଡ଼ ଯେପରି ପ୍ଲାଟଫର୍ମକୁ ଆସୁଥିବ ।

ନିର୍ଦ୍ଦିଷ୍ଟ ଦିନ ସକାଳେ ଗାଡ଼ିରୁ ଓହ୍ଲାଇ ଷ୍ଟେସନ୍ ପ୍ଲାଟଫର୍ମରେ ସୋମନାଥଙ୍କର ବା ଆମ ଜିନିଷର ଚିହ୍ନବର୍ଣ୍ଣ ନ ଦେଖି ବଡ଼ ସନ୍ଦର୍ଭଣରେ ମୁଁ ଯାଇ ପହଞ୍ଚିଲା ବେଳକୁ ଶଗଡ଼ ଏକାଥରକେ ଦଶ ବାରଖଣ୍ଡ ପ୍ରେସ୍ ଆଗରେ ଫିଟିଛୁ । ଗୋଟେ ଗୋଟେ ପେଟି 'ବାହାର ଲଦାହେବାକୁ ଆରମ୍ଭ କରୁଛୁ । ସେଦିନ ମୁଁ ଜଲଖିଆ କରି କଟକରୁ ବାହାରିଲା ବେଳେ ସଂକଳ୍ପ କରିଥିଲି ପ୍ରେସ୍ ଆଣି କଟକରେ ପହଞ୍ଚିବା ପରେ ଭାତ ଖାଇବି । କବିରାଜଙ୍କ ଦୋକାନରେ ବସି ସେ ଲଗେଇବାରୁ ମିଠା ଦି' ଗୁଳିଟା ଖାଇଲି । ପ୍ରେସର ମାଲ ଲଦେଇ ଟିକିଏ ତନଖି କରି କମେଇଁ ବାବୁଙ୍କ ପାଖକୁ ଗଲି । ତାଙ୍କୁ ମୋର କୃତଜ୍ଞତା ଜଣାଇ ସିଧା ଗ୍ଲଲିଗଲି ଷ୍ଟେସନକୁ ।

ଆସିଷ୍ଟାଣ୍ଟ ଷ୍ଟେସନ୍ ମାଷ୍ଟର ମୋର ବିଶ୍ୱାସୀ ହୋଇଯାଇଥାନ୍ତି । ସେ ମୋ ସଙ୍ଗେ ଆମ ଜିନିଷ ଜମା ହୋଇଥିବା ଜାଗାକୁ ଗଲେ । ତାଙ୍କ ନଜର ପଡ଼ିଗଲା ଭୂଇଁରେ ଗଡ଼ୁଥିବା ଫ୍ଲାଟ୍ ମେସିନ୍‌ର ହ୍ୱାଣ୍ଡି ଉପରେ ଓ ତା' ପାଖରେ ଥୁଆ ହୋଇଥିବା ଲୁହା ଛଡ଼ମାନଙ୍କ ଉପରେ ଓ ମେଶିନ୍‌ର ଲୁହା ଧାରଣା ଉପରେ ; ପୁରୁଣା କେସ୍ ଗୁଡ଼ାକ ୪ । ୫ଟା ଲେଖାଏଁ ଖଡ଼ାହୋଇ ଥୁଆ ହୋଇଥାଏ । 'ହଉ ଆସନ୍ତୁ' ବୋଲି ମୋତେ ସେ ଷ୍ଟେସନକୁ ଡାକନେଲେ, ୫୦ ମହଣ ରଦ୍ଦିଲୁହା ବୋଲି ଲେଖି ମୋ ହାତକୁ ଗୋଟାଏ ବିଲ୍ଟି ବଢ଼େଇଦେଲେ । ତାଙ୍କୁ ଟଙ୍କା ଦେଲି ଓ ପକେଟରୁ ଦିନୋଟି ଟଙ୍କା ତାଙ୍କ ହାତରେ ଗୁଞ୍ଜିଦେଲି ; ନାହିଁ ନାହିଁ କରି ନେଇ ନିଜ ପକେଟ୍‌ରେ ପୁରାଇଲେ ।

ଗୋଟାଏ ଗଡ଼ ଜଣିଲାପରି ଲାଗିଲା । ମୁସାଫିରଖାନାର ବେଞ୍ଚରେ ବସି ପାନରେ ଚୂନ ଲଗାଉଛୁ ପାହାଞ୍ଚ ପାଖରେ ଗୋଟାଏ ମଟର ଲାଗିଲା ଓ ରାଜା ଓ ପଣ୍ଡାସ୍ୱତ ଦୁମ୍‌ଦୁମ୍ କରି ମୋର ପାଖରେ ଆସିଷ୍ଟାଣ୍ଟ ଷ୍ଟେସନ୍ ମାଷ୍ଟରଙ୍କ ଅଫିସକୁ ପଶିଗଲେ । ପାଞ୍ଚ ଦଶ ମିନଟ୍ ପରେ ପୁଣି ଦୁମ୍‌ଦୁମ ହୋଇ ଗ୍ଲଲିଗଲେ । ମୋ ଛାତି ଧଡ଼ଧଡ଼ ହେଉଥାଏ । ଷ୍ଟେସନ ଅଫିସକୁ ଗଲାବେଳେ ପଣ୍ଡାସ୍ୱତ ମୋତେ ଗ୍ୱହିଁ ଯାଇଥିଲେ, ଫେରିଲା ବେଳେ ଦୁହେଁଯାକ ମୋତେ ତମତମ କରି ଗ୍ୱହିଁ ଗଲେ । ସେମାନେ ଆସିବାର ୧୦ । ୧୫ ମିନଟ୍ ଆଗରୁ କଟକ ଆଡ଼କୁ ପାସେଞ୍ଜର ଛାଡ଼ିଥାଏ । ନ ଯାଇଥାନ୍ତା ବୋଇଲେ ମୁଁ ସେଇ ଗାଡ଼ିକୁ ଉଠିଯାଇଥାନ୍ତି ।

ମୋ ମାଲ୍ ଆଡ଼କୁ ଗ୍ୱହିଁଲି, ସବୁ ଡବା ଭିତରକୁ ଯାଇନଥାଏ । ମୁଁ ଜିନିଷ ପାଖକୁ ଗଲାବେଳକୁ ଗୋଟାଏ ଶଗଡ଼ ସହରଆଡ଼ୁ ପ୍ଲାଟଫର୍ମକୁ ଚଢ଼ୁଥାଏ । ପରେ ଜାଣିଲି ସେଥିରେ ଦୁଇଟି ପେଟିରେ ନଟ ବୋଲଟ ସବୁ ଥାଏ । ବାଟରେ ସେଇତକ ଅଟକ ଦେଇଥିଲେ, ପ୍ରେସ ଯଥାର୍ଥ ରଦ୍ଦିଲୁହା (Scrap Iron) ହୋଇ ଯାଇଥାନ୍ତା । ଜିନିଷ ଡବାକୁ ଚଢ଼ାଇ ତାଲା ପକାଇ ଗ୍ୱବି ଜାବତାରେ ଅଣ୍ଟାରେ ଖୋସିବାକୁ ସୋମ-ନାଥଙ୍କୁ କହି ମୁଁ ଆସିଷ୍ଟାଣ୍ଟ ଷ୍ଟେସନମାଷ୍ଟରଙ୍କ ପାଖକୁ ଗଲି ।

ସେ କାଳେ ଟେଲିଫୋନ ଏତେ ଚ୍ଳଲୁ ହୋଇନଥାଏ । ଏ. ଏସ· ଏମ. କଟକକୁ ଟେଲିଗ୍ରାମ ଟକଟକ କରି ସାରି ହସିହସି ମୋତେ କହିଲେ, 'ମୁଁ ଆମ ଜମାଦାରକୁ ପଠାଇଥିଲି ଆପଣଙ୍କୁ ଡାକି ଆଣିବାକୁ । ସେ ନ ପାଇ ଆସିବାରୁ ମୋର ସନ୍ଦେହ ହେଲା ପଣ୍ଡାସୁଡ ବୋଧହୁଏ ଆପଣଙ୍କୁ ମୁସାଫିରଖାନାକୁ ଡାକି ନେଇଗଲା ।' ମୁଁ କୈଫିୟତ୍ ଦେବା ପରେ ସେ କହିଲେ, ମୋତେ ପଣ୍ଡାସୁଡ ଯାହେବ "ଆଚ୍ଛା ଦେଖିବା" ବୋଲି ଧମକେଇ ଯାଇଛନ୍ତି । ମୁଁ କଟକ ଟେଲିଗ୍ରାମ କରୁଥିଲି, ସେମାନେ ଗୋଟାଏ ଖାଲି ଇଞ୍ଜିନ ଘଣ୍ଟେ ଖଣ୍ଡେ ଭିତରେ ପଠାଇଦେବେ । ଆପଣ ମୋର ସାଙ୍ଗେ ଚ୍ଳଲି-ଯିବେ । ଆଜି ରାତରେ ବୋଧହୁଏ ଆପଣଙ୍କୁ ଓ ମୋତେ ଧରିନେବାକୁ ଚେଷ୍ଟା ହେବ । "ବେଟା ଏକନମ୍ବର ବଦ୍‌ମାସ ।"

ସେତେବେଳକୁ ସୋମନାଥ ଆସି ମୋ ପାଖରେ ଠିଆହୋଇଯାଇଥାନ୍ତି, ଦୁଇଟା ତାଙ୍କର କୁଣ୍ଡିକାଠି ହାତରେ ଧରି । ମୁଁ ଏ. ଏସ· ଏମ·ଙ୍କୁ କହିଲି, 'ସେ ମଧ୍ୟ ମୋ ସଙ୍ଗେ ଯିବେ । ସେ ହୁଁ କରି ଜଳଖିଆ ଦୋକାନକୁ ଚ୍ଳଲିଗଲେ ଏବଂ ସେଠାରୁ ଆସି ନିଜର କାଗଜପତ୍ର ସଜାଡ଼ୁ ସଜାଡ଼ୁ କହିଲେ, 'ମୋର ଏଠାରୁ ବଦଳି କରାଇ ଦେଲି । ଗଲେ ଚେଷ୍ଟାକରିବି, ସାତଦିନ ଛୁଟି ନେବାକୁ, ଛୁଟିରୁ ଆସିଲେ ନୂଆ ଜାଗାରେ ଜଏନ କରିବି ।'

ତାଙ୍କ ଟେବୁଲ ସଫାହେଲା ବେଳକୁ ଜଳଖିଆ ଦୋକାନୀ ତିନୋଟା ବଡ଼ ପ୍ଲେଟରେ ଗୁଡ଼ାଏ ଜଳଖିଆ ଆଣି ଥୋଇଲା । ସୋମନାଥ, ମୁଁ ଓ ସେ ଖାଇଲୁଁ । ଖିଆ ସରନାହିଁ, ତାଙ୍କର କଟକରୁ ଘଣ୍ଟି ଆସିଲା । ମୁଁ ଜଳଖିଆ ଦୋକାନୀ ପାଖକୁ ଯାଇ ତାର ପାଉଣା ଦୁଇଟଙ୍କା ବାରଅଣା ଦେଇଦେଲି । ସେତକବେଳେ ଜାଣିଲି, ମୁଁ ଏ. ଏସ. ଏମ·ଙ୍କୁ ଯେଉଁ ତିନୋଟି ଟଙ୍କା ଦେଇଛୁ ସେ ତିନୋଟି ଯାକ "ବେଣିଆ ଟଙ୍କା"—ମହାରାଣୀ ଭିକ୍‌ଟୋରିଆ ବିଭାହେବା ପୂର୍ବର ଟଙ୍କା । ତାଙ୍କ ମୁଣ୍ଡ ଖୋଲା, କପାଳ ଉପରେ ଦୁଇଟି ବେଣୀ ଝୁଲିଥାଏ । ସେଥିରେ ଅସଲ ରୁପା ବୋଲେ ଲେଖାଏଁ ଥିବାରୁ ତାହା ଅଚଳ କରି ଫେରାଇ ନିଆହେଉଥାଏ । ନୂଆ ଚ୍ଳଲୁ ହେଉଥିବା ଟଙ୍କାରେ ବାରଣା ଓଜନର ରୁପା ।

ଟେଲିଫୋନ ପାଖରୁ ଆସି ଆ: ଷ୍ଟେସନ ମାଷ୍ଟର କହିଲେ, 'ଆଉ ଅଧ ଘଣ୍ଟେ ଭିତରେ ଇଞ୍ଜିନ ଆସି ପହଞ୍ଚିବ ।' ଆଉ ୨।୪ ପଦ କଥାବାର୍ତ୍ତା ହୋଇଛୁଁ ଇଞ୍ଜିନ୍ ଆସି ପହଞ୍ଚିଲା ଓ ୧୦ମିନିଟ ଭିତରେ ଏ. ଏସ. ଏମ· ନୂଆ ଲୋକକୁ ଚ୍ଚର୍ଜ ଦେଇ ଆମ ସଙ୍ଗେ ଇଞ୍ଜିନକୁ ଉଠିଲେ ; ପଛେଇ ପଛେଇ ଇଞ୍ଜିନ କଟକଆଡ଼େ ଫେରିଲା । ଆ: ଷ୍ଟେସନ ମାଷ୍ଟରଙ୍କ ଆନନ୍ଦ କହିଲେ ନ ସରେ । ବାରମ୍ବାର କହୁଥାନ୍ତି, 'ସାଲା ଆସି ଖୋଜିଲା ବେଳକୁ ଚଢ଼ିଆ ଉଡ଼ିଗଲାଣି ।' ମୋ ସ୍ଥାନରେ ଆସିଥିବା ଲୋକକୁ ଗୁଡ଼ାଏ ନ ଘାଣ୍ଟିଲେ ରକ୍ଷା । ତାକୁ କହିଆସିଛୁ ଆଜି ରାତିଟା ଷ୍ଟେସନ ଅଫିସକୁ ନ ଆସିବାକୁ । ଏ ଶଳାଙ୍କର

ତାଲ କେବେ ପୂରିବ ଭଗବାନ ଜାଣନ୍ତି । ଆମ ଉପରେ ଅବଶ୍ୟ କିଛି କରନାହାନ୍ତି । କିନ୍ତୁ ପ୍ରତିଦିନ କେତେ କେତେ କଥା ଶୁଣୁଥିଲି ।' ଗାଡ଼ି ପ୍ଲାଟଫର୍ମ ସୀମା ପାରହେଲା ବେଳେ ସେ ରାଜନଅର ଆଡ଼କୁ ହାତଟେକି ନମସ୍କାର କରି କହିଲେ, 'ଢେଙ୍କାନାଳ ରାଜାଙ୍କୁ ନମସ୍କାର, ତାଙ୍କ ରାଜଧାନୀକୁ ନମସ୍କାର । ଚାକିରି ପଛେ ଛାଡ଼ିବି, ଆଉ ଏ ଭୂମିରେ ପାଦ ଦେବିନାହିଁ ।', ମୁଁ ତାଙ୍କ ଉଲ୍ଲାସରେ ଭାଗୀ ହୋଇପାରୁନଥାଏ ; ମୋର ମନ ଥାଏ ଆମ ରେଲଭଡ଼ା ଉପରେ । ତାକୁ ଯଦି କୌଣସି କାରଣ ଦେଖାଇ ରାଜା କଟାଇଦିଅନ୍ତି ।

କଟକ ବସାରେ ଯାଇ ମୁଁ ପହଞ୍ଚିଲି ବେଳକୁ ୧୨ଟା ପାରହୋଇଯାଇଥାଏ । ନୀଲକଣ୍ଠ ବାବୁଙ୍କ ପାଟି ଶୁଣି ପାହାଚ ଉଠିଲି । ସେ ଓ ପଣ୍ଡିତ ଗୋବିନ୍ଦ ମିଶ୍ରେ (ଦଶପଲ୍ଲା) କଥାବାର୍ତ୍ତା ହେଉଥାନ୍ତି ମୋର ବିଷୟରେ । ଗୋବିନ୍ଦଜୀଙ୍କ ପାଟିରୁ ଶୁଭିଲା, 'ଆଜିକାଲିର ପିଲାଗୁଡ଼ାକ ବଡ଼ ଦାୟିତ୍ୱହୀନ ହୋଇଗଲେଣି । ତୁ ଜାଣୁଛୁ, ତୁ ନ ଆସିଲା ପର୍ଯ୍ୟନ୍ତ ବୁଢ଼ା ଯୋଡ଼େ ଖାଇବେ ନାହିଁ । ତାଲଚେର ଗାଡ଼ି କେତେବେଳୁଁ ଗଲାଣି । କୋଉଠି ବସି ତ ଆଡ଼୍ଡା ଜମେଇଥିବ, ନ ହେଲେ ପରା ଗଡ଼ୋଉଥିବ ।' ଗୋବିନ୍ଦଜୀ ଦୁଇତିନି ଦିନ ହେଲା ଆମ ବସାରେ ଅତିଥି ହୋଇଥାନ୍ତି । ଆମ କାଜୀବଜାର ବସାଟା ସେତେବେଳକୁ ପୁରୀ ଓ ଗଞ୍ଜାମ ଆଡ଼ କଂଗ୍ରେସ ବାଲାଙ୍କ ଧର୍ମଶାଳା ହୋଇଯାଉଥାଏ । ଏମାନେ କଟକରେ ବାସ ଗ୍ରାସ ପାଉନଥିଲେ । ରାଧାନାଥ ବାବୁ ଆମଆଡ଼ର ବୋଲି ୧୦ବର୍ଷ ହେଲା ପରିଚିତ, କିନ୍ତୁ ଆମଆଡ଼ ବାଲାଙ୍କଠାରୁ ସେ ସବୁବେଳେ ଆଡ଼େଇ ହୋଇ ଚଳନ୍ତି । ଗୋଦାବରୀଶ ବାବୁ ଦରଘା ବଜାରରେ ଖଣ୍ଡେ ବସା ନେଇଥାନ୍ତି ଯେ ସେ ଆମଠାରୁ ଯେତିକି ଦୂରରେ କଟକିଆଙ୍କଠାରୁ ସେତିକି ଦୂରରେ । କଂଗ୍ରେସ ଭିତରେ ଦୁଇଟା ଓସାରିଆ ଓ ଗନ୍ଧରିଆ ଙ୍କାଙ୍କ ଦାସେ ଆପଣେ କଟକକୁ 'ସମାଜ' ଆଣିବା ଦିନୁଁ । ତା ପୂର୍ବରୁ ମଧ୍ୟ ଗୋପବନ୍ଧୁ ଚୌଧୁରୀ, ବିଶେଷକରି ଭାଗୀବାବୁ ଓ ମହତାବ ବାବୁଙ୍କର ପଣ୍ଡିତ ଗୋପବନ୍ଧୁ ପ୍ରତି ଆନ୍ତରିକ ବିଦ୍ୱେଷର ସୂଚନା ମିଳୁଥିଲା, କିନ୍ତୁ 'ସମାଜ' କଟକିଆ ହେବାଦିନୁଁ ଏହା ଦାଣ୍ଡକୁ ଫିଟିଗଲା । ପୁରୀ ଓ ଗଞ୍ଜାମ ବାଲାଙ୍କର ଆମ ବସା ହେଲା ଧର୍ମଶାଳା । ପ୍ରତ୍ୟହ ଅତିଥି ଥାନ୍ତି, ଶେଷବେଳକୁ ଏମାନେ ନାଗା ଫୌଜ ପରି ପ୍ରେସ୍‌ରେ ବା ବସାରେ ଆଡ଼୍ଡା ଜମାଇଲେ । ସେ କାଳେ ମଧ୍ୟ, ମଝିରେ ମଝିରେ ଦିନକୁ ୨ । ୩ ଟଙ୍କାର ଚାଉଳ ଜୁଟିବାକୁ ଲାଗିଲା ଯେ ୧୯୩୪ ରେ ପ୍ରେସ୍ ସ୍ଥାପନା ହେଲାଦିନୁଁ ୧୯୪୧ ଆରମ୍ଭ ପର୍ଯ୍ୟନ୍ତ । ସେ ତ ବହୁତ ପରର କଥା ।

ଦୁଇ ପଣ୍ଡିତଙ୍କୁ ବଳେଇ ପାଟିକରିବାରେ ଇନ୍ଦ୍ରମଣି ଦୁଆର ଫିଟାଇଲି । ଦୁହେଁ ଯାକ ମୋତେ ଅପେକ୍ଷା କରି ବସିଛନ୍ତି, ଖାଇ ନାହାନ୍ତି ଶୁଣି, ଶୀଘ୍ର ବାଢ଼ ବୋଲି କହି ନୀଳକଣ୍ଠ ବାବୁଙ୍କ ପାଖକୁ ଯାଇ ନମସ୍କାର କରୁକରୁ ସେ ରକ୍ତଚକ୍ଷୁ ହୋଇ ଆରମ୍ଭ କଲେ, 'କିରେ, ତାଲଚେର ଗାଡ଼ି ତ ଘଣ୍ଟା ହେଲା ଗଲାଣି । କୋଉଠି ବସି ଆଡ଼୍ଡା ମାରୁଥିଲୁ ?

ତୋର ଆଜଯାଏଁ ଦାୟିତ୍ୱଜ୍ଞାନ ଆସିନାହିଁ ! ମୁଁ ଏକଥାର ସିଧା ଉତ୍ତର ନ ଦେଇ ଲାଇଟ୍ ଇଞ୍ଜିନ୍‌ରେ ଏଇ ଅଧଘଣ୍ଟେ ହେଲା ଆସିଛୁ ବୋଲି କହିବାମାତ୍ରେ ତାଙ୍କ ମୁହଁ ଏକାବେଳକେ ବଦଳିଗଲା । ମାତ୍ର ସୁଲଭ କରୁଣାରେ ସେ ତରଳିଯାଇ କହିଲେ, 'କ'ଣ କ'ଣ ହେଲା ମୂଳରୁ କହିବୁଟି !' ଗୋବନ୍ଧଙ୍କ ଦାଢ଼ିର ପ୍ରତ୍ୟେକଟି ରୁମ ପ୍ରଶ୍ନବାଚକ ଚିହ୍ନପରି ହୋଇଯାଇଥାନ୍ତି । ଖାଇବା ଭିତରେ ସବୁ କଥା ଆମୂଳ ଚୂଳ କହିଲି, ଷ୍ଟେସନ୍ ମାଷ୍ଟରଙ୍କ ଅଫିସରେ ଜଳଖିଆ ପର୍ଯ୍ୟନ୍ତ । ରେଲବାଇ ବିଲ୍‌ଟି ଓ ଗୃହ ଯୋଗାଡ଼ କରି ଦେଖାଇଲି । ଗୋବନ୍ଧଜୀ ହସିହସି କହିଲେ, 'ସେତେବେଳେ ଏତେ ଖାଇ ଏତେବେଳକୁ ତ ପୁଣି ଭୋଜନ ଖାଉଛୁ ?' ମୁଁ କହିଲି, 'ମୁଁ ପରା ବୃକୋଦର, ଯେତେବେଳେ ଯାହା ପଶିଲା ଯାଙ୍ଗେଯାଙ୍ଗେ ଜୀର୍ଣ୍ଣ । ପେଟରେ ଭୋକ ସବୁବେଳେ । 'ବୃକୋଦର' ଶବ୍ଦଟାର ମୋ ପାଇଁ ପ୍ରୟୋଗ ନୀଳକଣ୍ଠ ବାବୁଙ୍କଠାରୁ, ବହୁତ ଦିନରୁ, ତେଣୁ ଆମ ବନ୍ଧୁମହଲରେ ଏ ପଦ ସମସ୍ତଙ୍କୁ ଜଣା ।

ଗୋବନ୍ଧଜୀ ହସିଦେଲାବେଳକୁ ନୀଳକଣ୍ଠ ବାବୁ ପୁଣି ଗମ୍ଭୀର ହୋଇଗଲେ । କହିଲେ, 'ଗୋବନ୍ଧ, ଘଟଣାଟା କେଡ଼େ ଗୁରୁତର ହୋଇଗଲା ଜାଣିପାରୁନାହିଁ ? ଆଜି ଯଦି ସ୍ୱେ ଆସିଥିବା ଇଞ୍ଜିନ୍ ଆମ ଡବାଟା ଘିନଆସିଥାନ୍ତା, ତେବେ ଯାଇଥାନ୍ତା । ଆଉ ସେ ଡବା ଆମର ନୁହେଁ । ଢେଙ୍କାନାଳ ରଜା ଟଙ୍କା ଦଶଟାର ଟେଲିଗ୍ରାମ୍ ପଠାଇଦେଲେ ସେ ରେଲଡବା ସେଇଠାରେ ରହିବ । କାଲି ସକାଳେ ଆମ ଜିନିଷ ଡବାରୁ ଖଲାସ ହୋଇ ଷ୍ଟେଟ୍‌ର ମାଲ-ଖାନାରେ ଯାଇ ପଡ଼ିବ କେତେବର୍ଷ କେଜାଣି ? ଏବେ କ'ଣ କରିବ ? ଆସେମ୍ବ୍ଲି ବୈଠକ ପାଇଁ ଦିଲ୍ଲୀ ଯିବ ନା ସମ୍ବଲପୁରରେ ଯାଇଁ ପାଲିଟିକେଲ ଏଜେଣ୍ଟ ଦୁଆରେ ଧାରଣା ଦେବ ? ଘଣ୍ଟାକୁ ଚାହିଁଦେଇ ସେ ଚିତ୍କାର କଲେ, ଆରେ ହେ ! ସାଢ଼େଗୋଟେ ହେଲାଣି, ହଉ ଚାଲ ଶୋଇବା, କାଲି କଥା କାଲିକୁ ଥାଉ ।

ତାଙ୍କର ଆଉ ଶୋଇବା ପ୍ରସ୍ତାବ ସିନା ହୋଇଥିଲା, ସେ ଶୋଇବାକୁ ରାଜି ହେଉହେଉ ପ୍ରାୟ ୫ଟା ହୋଇଗଲା, କୋଇଲି ବୋବେଇଲେ । ଗୋବନ୍ଧଜୀଙ୍କର ଶ୍ୱାସ ଗର୍ଜନ ମଝିରେ ମଝିରେ ଶୁଭିବାରୁ ଜଣାପଡୁଥାଏ ତାଙ୍କୁ ନିଦ । ମୁଁ ଶୋଉଥାଏ, ଉଠି ନୀଳକଣ୍ଠ ବାବୁଙ୍କ କଥାର ଉତ୍ତର ଦେଉଥାଏ । ପ୍ରଶ୍ନକୁ ଉତ୍ତର ନ ଦେଲେ ଗାଳି ବି ଖାଉଥାଏ ।

ନୀଳକଣ୍ଠ ବାବୁ ଶୁଅନ୍ତି ଭୋର ୫ଟାରୁ ପ୍ରାୟ ସକାଳ ୧୧ଟା ଯାଏଁ । ଗୋବନ୍ଧଜୀ ଉଠନ୍ତି ସକାଳୁ, ମୁଁ ବି ଭୋରରୁ ଉଠି ପଡ଼ିଲି, ଗାଧୋଇ ପାଧୋଇ ଷ୍ଟେସନ ଆଡ଼େ ଟିକିଏ ବୁଲି ଆସିବାକୁ ।

୯ଟା ପୂର୍ବରୁ ମୁଁ ଯାଇ କଟକ ମାଲ ଗୋଦାମରେ ହାଜର । କାମଦାମ ସେଠାରେ ଆରମ୍ଭ ହୋଇନଥାଏ । କଣ୍ଟଣିଟି ଭଲ ଭଦ୍ରଲୋକ । କାଲି ରାତିରେ ନୀଳକଣ୍ଠ ବାବୁଙ୍କ ଯୋଗୁଁ ମୋ ମନରେ ଜାତ ହୋଇଥିବା ସଂଶୟ ସେ ସମ୍ପୂର୍ଣ୍ଣ ଦୂର କରିଦେଲେ ।

ତାଙ୍କଠାରୁ ବିଦାୟ ନେଉଛି, ଷ୍ଟେସନ ମାଷ୍ଟର ନିଜେ ଆସି ପହଞ୍ଚିଗଲେ । ଆଙ୍ଗ୍ଲୋ-ଇଣ୍ଡିଆନ, ବୁଢ଼ାଲୋକ ଚେହେରା । ସେ ମୋତେ ଖ୍ରୀଷ୍ଟିଆନ ପାଦ୍ରୀପରି ଦିଶନ୍ତି । ସ୍ୱାଙ୍କ ସଙ୍ଗେ ମୋର ପରିଚୟ ହୋଇଥିଲା ଚାରିବର୍ଷ ପୂର୍ବେ, ସେ ନୂଆହୋଇ କଟକ ଷ୍ଟେସନକୁ ଆସିବା ସମୟରେ । ଏତେକାଳ ସେ ଏଠାରେ ଅଛନ୍ତି ବୋଲି ମୁଁ କାହିଁକି ବାରିନ୍ତି ? ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା, ସେ ମୋତେ ମନେରଖିଥିବାର ଦେଖି । ମୋ ନାମ ଧରି ସେ ପଚାରିଲେ, 'ଏତେ ସକାଳୁ କୁଆଡେ ? ଆଜିକାଲି କ'ଣ ହେଉଛି ? ତୁମର ତ ଗାନ୍ଧିଆ ପୋଷାକ ଦେଖୁଛି ! ସେତେବେଳେ ତ ସେଇଆ ଥିଲା ଲକ୍ଷ୍ୟ କରିଥିଲି ? ତୁମ ହେଡ଼ମାଷ୍ଟ୍ରେ ଅଛନ୍ତି ? ଏଠାରେ ତୁମର କାମ ସରିଲାଣି ? ମୋର ବସା ଏଇ ପାଖରେ ! ଆସ ଚା ଟିକିଏ ଖାଇବ ।

ଏ ସୌହାର୍ଦ୍ଦ୍ୟ ଦେଖି ମାଲଗୋଦାମ କିରାଣୀଙ୍କର ମୋ ପ୍ରତି ସମ୍ମାନ ବଢ଼ିଗଲା ବୋଲି ବାରିଲି । ସେ ମୋ କାମକଥା ଅଙ୍ଗେଇ ଅଙ୍ଗେଇ ରେଲବାଇ ଇଂରେଜିରେ କହୁ କହୁ ସେ ହସି ହସି କହିଲେ, 'ମୁଁ ଜାଣେ, ମୁଁ ଜାଣେ । କାଲି ଆମର ରାସ୍ତା ରାତି ଅଧରେ ଇଂଜିନ୍‌ରେ ପଳାଇ ଆସିଛି, ତୁମର ଏଇ ମାଲ୍‌ଯୋଗୁଁ । ବର୍ତ୍ତମାନ ଜିନିଷ ରେଲବାଇ ମାର୍ଫତ । ରାଜା ସାହେବ କିଛି କରିପାରିବେ ନାହିଁ ।' କିରାଣୀକୁ କହିଲେ, 'ଓ୍ୱେ ବିଲ୍ କରେଇ ଦିଅ । ଆଜି ସନ୍ଧ୍ୟାରେ ଆସୁଥିବ ;' ମୋତେ ଚାହିଁ କହିଲେ, 'ତୁମେ ପଅରଦିନ ସକାଳେ ଆସିଲେ ଜିନିଷ ନେଇଯିବ । ହଉ ଆସ ।'

ତାଙ୍କ ନିମନ୍ତ୍ରଣ ତ ରକ୍ଷା କରିଥାନ୍ତି, ଆଜି ମୋତେ ଏହା ଅନୁଗ୍ରହ ପରି ଲାଗିଲା । ୧୯୩୦ ହେବ ପରା । ମୋର ପିଲାଦିନର ହେଡ଼ମାଷ୍ଟ୍ରେ ବନମାଳୀ ମିଶ୍ରେ (ବଲାଙ୍ଗିର) ପାଇକପଡ଼ା ଏଷ୍ଟେଟ୍‌ର ନାବାଳକ ଉତ୍ତରାଧିକାରୀଙ୍କର ଅଭିଭାବକ ଶିକ୍ଷକ ହୋଇଥାନ୍ତି । ସେ ମୋର ହିତାକାଂକ୍ଷୀ, ତାଙ୍କ ଘର ଆମ ଗାଁଠାରୁ ଅଳ୍ପ ବାଟରେ । ମୋର ଟିକିଏ ସୁବିଧା ମିଳିଲେ ମୁଁ ତାଙ୍କପାଖକୁ ଯାଏଆସେ । ଅବଶ୍ୟ ତାଙ୍କୁ ଦେଖିବାକୁ ଯାଏ କି, ଜମିଦାର ପିଲାଙ୍କର ଓ୍ୱେଲର ଘୋଡ଼ା ଯୋଡ଼ି ଦେଖିବାକୁ ଯାଏ, ଏଇଲେ ନିର୍ଭର ଭାବେ କହିପାରୁ ନାହିଁ । ଘୋଡ଼ା ଯୋଡ଼ାକ ମୋତେ ଚତେ ଲେଖାଏ । ସେ କାଳେ ତାଙ୍କ ପିଚ୍ଛା ଦିନକୁ ଦଶଟଙ୍କା ଖର୍ଚ୍ଚ ହେଉଥାଏ । ତାଙ୍କପାଇଁ ଥାନ୍ତି ଜଣେ କୋଚମ୍ୟାନ, ଜଣେ ସହିସ ଓ ଜଣେ ଖାଇବାକୁ ଦେବାବାଲା । ଏମାନେ ଏଷ୍ଟେଟର ଚାକରିଆ । କଟକିଆ ହାଡ଼ି ଗୋଟାଏ ନିଯୁକ୍ତ ହୋଇଥାଏ ଅସ୍ତାବଲ୍ ସଫା କରିବାକୁ । ତାଙ୍କ କାମ ଦଶଟାବେଳେ ଜମିଦାର ପୁଅଙ୍କୁ ସ୍କୁଲକୁ ନେବା ଏବଂ ପାଞ୍ଚଟାବେଳେ ବୁଲେଇ ନେବା । ମୁଁ ଏଇ ସମୟରେ ଯାଇ ପହଞ୍ଚେ ବଗିରେ ବସି କଟକ ପରିକ୍ରମା କରିବାକୁ ପ୍ରାୟ ମାସକେ ୧୫ ଦିନ । ଜମିଦାର ପୁଅ ପ୍ରତ୍ୟହ ମୋତେ ୧୦ । ୧୫ ମିନିଟ ଅପେକ୍ଷା

କରନ୍ତି । ବାହାରେ ତାଙ୍କୁ ମୁଁ ପାଠପଢ଼ାଏ, ଶିକ୍ଷକଙ୍କ ଦରମା ମିଶି ତାଙ୍କର ମାସକୁ ଖର୍ଚ୍ଚ ହେଉଥାଏ ପ୍ରାୟ ପାଞ୍ଚଶହ ଟଙ୍କା । ପାଞ୍ଚଶହ ସ୍ଥଳେ ହଜାରେ ଖର୍ଚ୍ଚ ହେଲେ ବି, ଘୋଡ଼ା ଯୋଡ଼ି ନ ଲଗି ଗୁରଣ୍ଟା ଲଗିଲେ ବି, ବନମାଳୀ ମିଶ୍ରେ (ଖୁବ କଡ଼ା ଶିକ୍ଷକ) ନ ଥାଇ ସ୍ୱୟଂ ଶୁକ୍ରାଚାର୍ଯ୍ୟ ସ୍ୱାଙ୍କ ଗୁରୁ ହୋଇଥିଲେ ବି ସ୍ୱାଙ୍କର ପାଠ ହୋଇନଥାନ୍ତା, ହେଲା ବି ନାହିଁ । ବନମାଳୀ ମିଶ୍ରେ ସ୍ୱାଙ୍କ ସଙ୍ଗେ ଖୁବ୍ ଲଗିଥାନ୍ତି, ମାତ୍ର ବ୍ୟତୀତ ଆଉ ସବୁ ପ୍ରକାର ଦଣ୍ଡ ଦିଅନ୍ତି, ବା ଦଣ୍ଡର ଭୟ ଦେଖାନ୍ତି । ଫଳ ହୁଏ ନାହିଁ ; ଛୁଟି ମଝିରେ ମଝିରେ କହିଦିଏ, ଆପଣ ମୋ ସଙ୍ଗେ କାହିଁକି ଏତେ ଲାଗୁଛନ୍ତି । ଆପଣଙ୍କ ଦରମା ନେଇ ସନ୍ତୁଷ୍ଟ ରହନ୍ତୁ ।'

ଛୁଟିଙ୍କର ବୟସ ସେତେବେଳେ କୋଡ଼ିଏରୁ ବେଶୀ ; ହାଇସ୍କୁଲ ଦ୍ୱିତୀୟ ଶ୍ରେଣୀରେ ( class X ) ପଢ଼ୁଥାନ୍ତି । ମୋ ସଙ୍ଗେ ଉଚ୍ଚତା ସମାନ, ଓଜନ ତାଙ୍କ ବଡ଼ ଘୋଡ଼ାର ଓଜନ ସଙ୍ଗେ ସମାନ ହେବ ; କିନ୍ତୁ ଖୁବ ନମ୍ର ଓ ମେଳାପୀ । ଶିକ୍ଷକ ଛୁଟିଙ୍କର ଭଲ ବନ୍ଧୁଥାଏ ।

ବନମାଳୀ ମିଶ୍ରଙ୍କର ବଶିଷ୍ଟତା ତାଙ୍କର ଓପର ଓ ତଳ ବାଲାଙ୍କ ସଙ୍ଗେ ବନେ ନାହିଁ । ବଲାଙ୍ଗିରରେ ରାଜା ଓ ଦେବାନଙ୍କ ସଙ୍ଗେ ପଡ଼ୁନଥିଲା କି ମହକାରୀ ଶିକ୍ଷକଙ୍କ ସଙ୍ଗେ ପଡ଼ୁନଥିଲା ; ଅଥଚ ସ୍ୱାଧୀନଚେତା ଓ ପୂର୍ବାପର ବିଚାର କରି ପାରନ୍ତି ନାହିଁ । ସେତେବେଳେ ଏ ଷ୍ଟେଟ୍‌ରେ ମେନେଜର କୃଷ୍ଣ ନନ୍ଦେ ବୋଲି ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ; ସେ କାଳର ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କ ପରି ଚରଣଚୁଟିଆ—ଓପର ହାକିମ ( ସାହେବ)-ଙ୍କର ପାଣ୍ଠୋଇ ବୁଢ଼ନ୍ତି ଓ ତଳବାଲାଙ୍କୁ ପାଣ୍ଠୋଇ ଉଠାନ୍ତି । କ'ଣ ହେଲା କେଜାଣି ଆମ ହେଡ଼ମାଷ୍ଟରଙ୍କ ଉପରେ ସେ ରକ୍ତ ଗୁଡ଼ଲ ଗ୍ରେବେଇଲେ ଏବଂ ଜେଲ୍‌ଖାନାରେ ଠୁକିଦେବ ବୋଲି ଏକାଧିକ ବାର ମୁହଁ ଉପରେ କହିଥାନ୍ତି । ହେଡ୍ ମାଷ୍ଟରଙ୍କଠାରୁ ଶୁଣିଥାଏ ସେ ଅନବରତ ଓର୍ ଉଣ୍ଡୁଛନ୍ତି ଦୁର୍ନାମରେ ପକାଇବେ ବୋଲି, କୋଚମ୍ୟାନ୍‌କୁ ହାତ କରିଥାନ୍ତି କେଉଁଦିନ କେତେ ଘୋଡ଼ାଦାନା କଣା ହେଉଛି ବୁଝିବାକୁ ।

ବନମାଳୀ ବାବୁ ଏ କଥା ସବୁ ଜାଣନ୍ତି କିନ୍ତୁ ଅସଲ ବେଳକୁ ବ୍ରାହ୍ମଣିଆ ଚଙ୍ଗ ତାଙ୍କୁ ଗ୍ରାସକଲା । ସେ ଖୋର୍ଦ୍ଧା ରୋଡ଼ରୁ କଟକ ଥାର୍ଡ କ୍ଲାସ୍ ଟିକଟରେ ଆସି ସେକେଣ୍ଡ କ୍ଲାସ ଚାର୍ଜ କରିଦେଲେ । କୃଷ୍ଣ ନନ୍ଦେ ବି ସେଇ ଜାତ ; ଗସ୍ତ ଫେର୍ଚ୍ଚି । ବିଲ୍ ପାଶ୍ କଲାବେଳେ ସେକେଣ୍ଡକ୍ଲାସ ଟିକଟର ନମ୍ବର ମାଗି ଏକ ଲମ୍ବା ଚୌଡ଼ା ଚିଠି ହାଙ୍କିଦେଲେ, ବନମାଳୀ ବାବୁଙ୍କୁ ଜେଲଖାନା ଫାଟକ ଦିଶିଗଲା । ସେ ସବୁକଥା କହି ମୋତେ ନର୍ଦ୍ଦେଶ ଦେଲେ କଟକ ଷ୍ଟେସନ ମାଷ୍ଟରଙ୍କ ସଙ୍ଗେ ଦେଖାକରି ନିର୍ଦ୍ଦିଷ୍ଟ ଦିନ ଖୋର୍ଦ୍ଧା ରୋଡରୁ କଟକକୁ ହୋଇଥିବା ଗୋଟେ ସେକେଣ୍ଡ୍ କ୍ଲାସ

ଟିକେଟର ନମ୍ବର ଆଣିବାକୁ, ପ୍ରାୟ ଦଶଦିନ ପୂର୍ବରୁ ଘଟଣା ହୋଇଥିବାରୁ ସହଜରେ ମିଳିବ ବୋଲି ସେ ଆଶା କରିଥାନ୍ତି । ମୁଁ ଗଲି । ଏଇ ଅଫିସ୍ରେ ଇଣ୍ଡିଆନ୍ ଭଦ୍ରଲୋକଟି ଦୁଇ ତିନିଦିନ ହେଲା ମାତ୍ର ଆସିଥାନ୍ତି । ମୁଁ ପେଟ ମୁଣ୍ଡ ଦେଖାଇ ଗୁଡ଼େ କହିଲି । ଦରିଦ୍ର ଶିକ୍ଷକଟିର ସ୍କୁଲର ସ୍କୁଲଗଲେ ତା'ର ପିଲାପିଲି ଖେଇକ ଉପାସରେ ମରିଯିବେ । ତାଙ୍କ ଦୟାର୍ଦ୍ର ହୃଦୟ ତରଳିଗଲା । କାଲି ଏତିକବେଳେ ଆସ, ମୁଁ ଯାହା ପାରିବ କରିବ ବୋଲି ସେ ମୋତେ କହି ବିଦା କଲାବେଳକୁ, ବନମାଳୀ ବାବୁ ଦେଇଥିବା ପାଞ୍ଚଖଣ୍ଡି ଦଶଟଙ୍କିଆ ନୋଟ ମୁଁ ତାଙ୍କ ପାଖେ ଥୋଇଲି । ସେ ଅଗ୍ନିଶର୍ମା ହୋଇଗଲେ । ରୁକ୍ଷ ଭାବରେ କହିଲେ, 'ଯୁବକ ! ସେ କ'ଣ ? ତୁମେ କଣ ଜାଣନାହିଁ, ଏଇଥି ପାଇଁ ମୁଁ ତୁମକୁ ମଧ୍ୟ ଜେଲଖାନା ଦେଖାଇ ଦେଇପାରିବ ?' ମୁଁ ଟିକିଏ ଦବିଯାଇ ଯୋଡ଼ିଦେଲି, 'ଶିକ୍ଷକ ଜଣକ ସ୍କୁଲର ପିବା ଉପରେ ଏ ଟଙ୍କା ବନ୍ଧୁ କଷ୍ଟକରି ସଂଗ୍ରହ କରିଛନ୍ତି ।' ସେ କହିଲେ, 'ଆଚ୍ଛା, ହଉ ଏବେ ଯାଆ ନିଅ । କାଲି ଏତିକବେଳେ ଆସିବ । ତୁମ ଦେଶର ଲୋକ ମୋ ଜାଗାରେ ଥିଲେ ହୁଏତ ଏ ଟଙ୍କା ପକେଟରେ ପୂରେଇ ଦେଇଥାନ୍ତା ।'

ମୋତେ ଖୁସି ରାଗ ଲାଗିଲା । କ୍ଲାଇଭ୍, ଓ୍ୱାରେନ ହେଷ୍ଟିଂସ ଓ ଅନ୍ୟ ବ୍ରିଟିଶ "ନବାବ"ଙ୍କ ନାଁ କହିଦେବ ବୋଲି ମନ ହେଲା । ଆକଟ ପଡ଼ିଥିବାରୁ ତୁନି ହୋଇ ସ୍ୱେରପର ଦାନ୍ତ ଲେଫେଡ଼ି ଆସିଲି । ଏତେଦିନ ପରେ, ଆଜିର ଅବସ୍ଥା, ସ୍ୱରଥାଡ଼େ ଦେଖି, ମନେ କରୁଛି, ଭଦ୍ରଲୋକ ଠିକ୍ କହିଥିଲା । ସେକାଳେ ପି· ଡବ୍ଲ୍ୟୁ. ଡି.ର ଜଣେ ଏକଜିକ୍ୟୁଟିଭ ଇଞ୍ଜିନିୟର ବି ଲାଞ୍ଚ ନେବାର ଶୁଣାନଥିଲା ; ଆଜି ଚିଫ ଇଞ୍ଜିନିୟର, ସେକ୍ରେଟାରୀ ଓ ମନ୍ତ୍ରୀ ପର୍ଯ୍ୟନ୍ତ କେହି ଆସି ପହଞ୍ଚୁଥିବା ଲକ୍ଷ୍ମୀଙ୍କୁ ଅନାଦର କରୁନାହାନ୍ତି ; କେହି କେହି ତ ସେ କପର ଆସି ପହଞ୍ଚିବେ ବୋଲି ବାଟ ଜଗି ରହିଛନ୍ତି ।

ତହିଁ ଆରଦିନ ମୁଁ ଗଲାବେଳକୁ ମୋ ନାମରେ ଖଣ୍ଡିଏ କାଗଜ ଟୁକୁରା ଷ୍ଟେସନ୍ ମାଷ୍ଟରଙ୍କ ଟେବୁଲରେ ଥୁଆ ହୋଇଥାଏ ; ମୋ ନାଁ ତଳକୁ ଲେଖା ହୋଇଥାଏ ଟିକେଟର ନମ୍ବର । ମୋତେ ସେ ଦେଖି କହିଲେ, 'ଆଉ ୫ ମିନିଟ୍ରେ ମୁଁ ସ୍କୁଲଯାଇଥାନ୍ତି । ତୁମପାଇଁ ଏ କାଗଜ ଟିକକ ଲେଖି ରଖି ଯାଉଥିଲି । ତୁମର ଅବଶ୍ୟ ଜାଣିବା ଦରକାର ନାହିଁ । ତେବେ ଲୁଚେଇବ କାହିଁକି ? ଯେଉଁ ଦିନ ପାଇଁ ତୁମେ ଟିକଟ ଖୋଜୁଥିଲ, ସେଦିନ ଖୋର୍ଦ୍ଧା ରୋଡରୁ କଟକକୁ ସେକେଣ୍ଡ୍ କ୍ଲାସ୍ ଟିକଟ ହୋଇନାହିଁ । ତାହାର ପୂର୍ବଦିନର ଏ ନମ୍ବର । ଟିକଟ ହେବା ଗାଡ଼ି ଫେଲ୍ ହୋଇଗଲେ, ଆମେ ଟିକଟରେ ଦସ୍ତଖତ କରି ପରଗାଡ଼ିକୁ ଚଳ କରିଦେଉ । ଦରକାର ପଡ଼ିଲେ ଖୋର୍ଦ୍ଧା ରୋଡର ଷ୍ଟେସନ ମାଷ୍ଟର ବା ଆସିଷ୍ଟାଣ୍ଟ୍ ଷ୍ଟେସନ ମାଷ୍ଟରଙ୍କ ଦସ୍ତଖତ ମୁଁ ଆଣିଦେବ । ମୋତେ

କିନ୍ତୁ ଜଣାଯାଉଛି ସେଠାରେ ଲୋକ କଥା ଯିବନାହିଁ । ହଉ, ବିଦାୟ । ହଁ ହଁ, କାଲିର ଝଙ୍କା ସେ ଭଦ୍ରଲୋକଙ୍କୁ ଫେରାଇ ଦେଲଟିତ ?'

ମୋର ପିତ୍ତ ଚଢ଼ିଗଲା । ମୁଁ କହିଲି, 'ଆପଣଙ୍କର ବୋଧହୁଏ ସନ୍ଦେହ, ଆପଣଙ୍କୁ ଦେଲି ବୋଲି କହି ମୁଁ ଝଙ୍କାତକ ମାରନେଲି । ମୁଁ ସେପରଲୋକ ନା !' ଭଦ୍ରଲୋକ ମୋ ପାଖକୁ ଚାଲିଆସି ମୋ ପିଠିରେ ହାତମାରି କହିଲେ, 'ମୂବକ ! କଥାଟା ବାହାକୁ ନେଇ ଗଲ କି ? ମୁଁ କିଛି ନ ବୁଝିକ ଖାଲି ପଚାରିଦେଇଥିଲି !' ତାଙ୍କପ୍ରତି ମୋ ମନରେ ଭକ୍ତି ଜାତ ହେଲା ।

ମାଲଗୋଦାମରୁ ତାଙ୍କ ସଙ୍ଗେ ତାଙ୍କ ବସାକୁ ଗଲାବେଳେ ପୁଣି ସେଇ ଭକ୍ତି-ଭାବର ଉଦ୍ରେକ ହେଲା ; ମୁଁ ଅନୁଭବ କଲି ସେଦିନ ମୋ ପିଠିରେ ହାତ ବୁଲାଇବା ବେଳେ ତାଙ୍କ ମନରେ ଯେଉଁ ଭାବ ଥିଲା, ତାହା ଆଜି ଫେରିଆସିଛି । ସେ ସକାଳ ଖିଆ ନଖାଇ ଖାଲି ଚା'କପେ ପିଇ ମାଲଗୋଦାମକୁ ଯାଇଥିଲେ । ଦୁହେଁ ଯାକ ଏକା ଟେବୁଲରେ ଖାଇଲୁଁ । ମୁଁ ଭୁଡାଏ ଖାଇଲି ; ସେତେବେଳେ ମୋର ଖାଦ୍ୟା-ଖାଦ୍ୟ ବିଚାର ନ ଥାଏ, ଏବଂ କାହା ହାତରୁ ଖାଉଛି ସେ କୁଣ୍ଠା ତ ଆଜି ବି ନାହିଁ, ସେତେବେଳେ ଆଦୌ ନାହିଁ ।

ସେ ଟିକିଟିକି କରି ମୋଠାରୁ ସବୁ ବୁଝିଲେ । ଏତେ ଧୈର୍ଯ୍ୟ ଧରି ଅପରର ଭଲ ମନ୍ଦ ବୁଝିବା ଲୋକ ଏ ପର୍ଯ୍ୟନ୍ତ ମୁଁ ବେଶି ଦେଖିନାହିଁ । ସେ ସବୁବେଳେ କାର୍ଯ୍ୟବ୍ୟସ୍ତ, ତାଙ୍କ ଅମଳରେ ସେ କଟକ ଷ୍ଟେସନ୍ର ପରିପାଟୀ ଉପରେ ଯେତେ ନଜର ଦେଉଥିଲେ ଆଉ କେହି ସେହିପରି ଦେଇନାହାନ୍ତି, ଦେଉନାହାନ୍ତି ବୋଲି ବହୁ ବନ୍ଧୁଙ୍କଠାରୁ ଶୁଣିଛି । କିନ୍ତୁ ମୋ ସଙ୍ଗେ ସେ ଯେଉଁ ଅଧଘଣ୍ଟେ କଟାଇଲେ ତାହା ଦେଖିଲେ ମନେହେବ ସତେ ଯେପରି ମୋ ସଙ୍ଗେ କଥାବାର୍ତ୍ତା ହେବା ବ୍ୟତୀତ ଆଉ କିଛି କାମ ନାହିଁ । ବିଦାୟ ଦେଲାବେଳେ ମୋତେ କହିଲେ, 'ତୁମର ଗୁରୁଦେବଙ୍କୁ କହିଦେବ, ତୁମେ ପ୍ରେସ୍ ଆମଠାରୁ ଉଠାଇ ନେଇ ଚାଲୁ କଲା ପରେ ମଧ୍ୟ ଢେଙ୍କାନାଳ ରାଜା ତାହା ଜବତ୍ କରିପାରନ୍ତି । କିନ୍ତୁ ସେ ତ ଜାଣିଥିବେ, ଯେଉଁମାନେ ଉଚ୍ଛୃଙ୍ଖଳ ଓ ଅତ୍ୟାଚାରୀ ସେମାନଙ୍କ ପକ୍ଷେ ଗୋଟାଏ ବିଷୟରେ ଦୀର୍ଘଦିନ ଲାଗିରହିବା ସମ୍ଭବ ନୁହେଁ । ମୋତେ ଦିଶୁଛି, ତୁମ ଜିନିଷ କାଲି ଆସି ପହଞ୍ଚିବ, ଖଲାସ କରିବା ଜାଗାରେ ତାହା ତୁମେ ପଅରଦିନ ପାଇବ, ଏବଂ ଭଗବାନଙ୍କ ଅନୁଗ୍ରହରେ ତୁମର ପ୍ରେସ୍ ଚାଲିବ ।

ଷ୍ଟେସନ୍ରୁ ସିଧା ବସାକୁ ଗଲି ଏବଂ ଷ୍ଟେସନ୍ ମାଷ୍ଟରଙ୍କ ସଙ୍ଗେ ହୋଇଥିବା କଥାବାର୍ତ୍ତା ନୀଳକଣ୍ଠ ବାବୁଙ୍କୁ ଠିକଣଠି କରି କହିଲି । କିନ୍ତୁ ଫଳ ହେଲାନାହିଁ । ତାଙ୍କ ପାଖରେ ବସି ମୋ' ମୂର୍ଖାମି ବିଷୟରେ ଚର୍ଚ୍ଚା କରୁଥିବା ୩ । ୪ଜଣଙ୍କ ଆଗେ ସେ କହିଲେ, 'ଆରେ, ସେଇଟା ଷ୍ଟେସନ୍ ମାଷ୍ଟର ନା ପାଦ୍ରୀଟାଏ ମ', ନା,

ଜ୍ୟୋତିଷ ନାହାକ ? ତାକୁ ଦଶୁଚୁ ପ୍ରେସ୍ ନଣ୍ଟସ୍ ଗ୍ଲବ, ତେବେ ଏବେ କଣ ଦଶୁଚୁ । ସପର୍ଗଜା ଦୋଷଗୁଣା ଭବନ୍ତି । ତୁ ଏବେ ଜ୍ୟୋତିଷ ଆରମ୍ଭ କର ।' ଘୋର ହସ ଲାଗିଲା, ମୁଁ ବି ମିଶିଲି ।

ଗୋଟି ଗୋଟି ହୋଇ ସମସ୍ତେ ଗଲେ ; ଆମେ ରହିଲୁଁ ଗୋବିନ୍ଦ ମିଶ୍ରେ, ସେ ଓ ମୁଁ । ଦାଣ୍ଡକୁ ବାହାରିବାର ଉପକ୍ରମ କରିବାରେ ସେ କହିଲେ, 'ଏଗାରଟା ବାଜି ସାରିଲାଣି । କୁଆଡ଼େ ଯାଉଛୁ ? ମୁଁ କହିଲି, 'ଆପଣ ଗାଧୋଇ ସାରିଲାବେଳକୁ ମୁଁ ଆସି ପହଞ୍ଚୁଛି ।'

ମୁଁ ଗଲିଥିଲି ସୁଶୀଲ ପାଲିତଙ୍କ ପାଖକୁ । କାଜି ବଜାରରେ ତାଙ୍କର ଖଣ୍ଡେ ଅତି ପୁରୁଣା ଘର ଖାଲି ଥାଏ ବୋଲି ପଣ୍ଡିତ ଆକୁଳ ମିତ୍ରଙ୍କଠାରୁ ଶୁଣିଥାଏ । ବାହାରୁ ବି ଘରଟା ଦେଖିଥାଏ । ଆଜି ତାଙ୍କ ସଙ୍ଗେ ଭଡ଼ା ତୁଟାଇ ଚାବି ଆଣିବାର କଥା । ଭଡ଼ା ତୁଟିଗଲା, ପଣ୍ଡିତଜୀଙ୍କ ଉପସ୍ଥିତିରେ ସେ ମୋତେ ଚାବି ଦେଲେ ; ଭଡ଼ା ନିୟମିତ ମିଳିବା ବିଷୟରେ ସେ ଦାୟୀ ହେବେ ବୋଲି ପଣ୍ଡିତେ ଜବାବ ଦେଲେ । ମୁଁ ପଣ୍ଡିତଙ୍କ ଦୋକାନରେ ବସି କେବେଠାରୁ ପ୍ରେସ୍ ଖୋଲା ହେବ ଏବଂ ସେ କେଉଁ କେଉଁ ବହି ଆଗ ଛାପିବାକୁ ଦେବେ, ତାହା ତାଙ୍କ ସଙ୍ଗେ ଆଲୋଚନା କରୁଥାଏ । ସୋମନାଥ ମୋତେ ଖୋଜି ଖୋଜି ଦୋକାନଠାରେ ଆସି ପହଞ୍ଚିଲେ । ଦୁହେଁ ଯାଇ ଘରଟିକୁ ତନଖି କଲୁଁ । ବହୁ ଦିନ ହେଲା ଅବ୍ୟବହୃତ । ସମୁଦାୟ, କାଲି ସୁଦ୍ଧା ସଫା କରିବାକୁ ସୋମନାଥଙ୍କ ମୁଣ୍ଡରେ ଦେଇ ମୁଁ ବସାକୁ ଫେରିଲି । ନୀଳକଣ୍ଠ ବାବୁ ଯେଉଁପରି ବସିଥିଲେ, ସେଇପରି ବସିଥାନ୍ତି । ଗଙ୍ଗାବାବୁ ଓ' ଗୁରୁଜଣ ବି ଆସି ପହଞ୍ଚିଥାନ୍ତି । ମୋତେ ଦେଖି ହସିକରି କହିଲେ, 'ଆଉ କୁଆଡ଼େ ଯିବୁ ଯା; ମୋର ଗାଧୁଆ ସରିଲା ବେଳକୁ ଫେରି ଆସିବୁ ବୋଲି କହିଥିଲୁ । ଏବେ କୁଆଡ଼େ ଯାଇଥିଲୁ ? ଗୋଟାଏ ଗଡ଼ ଜିଣିଲା ପରି ତ ଦିଶୁଛୁ !' ମୁଁ ଘର ଭଡ଼ା ନେବା କଥା କହିବାରେ ସେ କହିଲେ, "ଯୁକ୍ତିରେ କହନ୍ତି, ମୂଳରୁ ମାଇପ ନାହିଁ ପୁଅ ନା ଗୋପାଳିଆ ।"

ସେ ଗାଧୋଇଲେ । ତାଙ୍କ ଗାଧୁଆ ବିଚିତ୍ର । ଗୋଟିଏ ଗ୍ରେଟ ଚାଲରେ ଦୁଇଚାଳ ମୁଣ୍ଡରେ ଅଜାଡ଼ି ଦିଅନ୍ତି, ବେଶ । ଅଧା ଶୁଖିଲା ଅଧା ଓଦା ଗାମୁଛାରେ ମୁଣ୍ଡଠାରୁ ଆରମ୍ଭ କରି ଅଣ୍ଟା ପର୍ଯ୍ୟନ୍ତ ପୋଛି ଦେଇ, ଧୋବ ଲୁଗା ପାଲଟିପକାନ୍ତି । ସେ ଗାଧୋଇ ବାହାରିଲେ ଇନ୍ଦ୍ରମଣି ବଢ଼ାବଢ଼ି ଆରମ୍ଭ କରେ । ଭାତ ଆସି ଥୁଆହୁଏ ଆଗ । ସେ ଲୁଗା ପାଲଟି ଆସି ବସନ୍ତି ପଛେ । ପନ୍ଦର ଦିନ ମାସକରେ ମୋ ଆଡ଼ୁ ଜୋର ଜବରଦସ୍ତି ହେଲେ ସେ ପାନିଆ ଖଣ୍ଡେ ଧରି ମୁଣ୍ଡ ବାଳ ଓ ଦାଢ଼ି ସଙ୍ଗେ ଦଶ ମିନଟ୍ କସରତ କରନ୍ତି ।

ଖାଇଲା ବେଳେ ପାଖରେ ଯେ' ଥାନ୍ତି ସେ ସମସ୍ତଙ୍କୁ ନିମନ୍ତ୍ରଣ ହୁଏ ଖାଇ ବସିବାକୁ । କେତେ ଗୁଡ଼ଏ ପଡ଼ୁଛି ସେ ବିଷୟ ତାଙ୍କ ଲଗା ନଥାଏ । ସେ ଦିନ ଆମେ ପାଞ୍ଚ ଓ ଅତିଥି ତିନି । ପାଞ୍ଚଜଣଙ୍କ ପାଇଁ ରନ୍ଧାହୋଇଥିବା ଭାତ ସମସ୍ତଙ୍କୁ ହୋଇଗଲା । ଏଇପରି ଅବସ୍ଥାରେ ଦିନେ ଦିନେ ମୁଁ ଆଗରୁ ଭୋଜନକାରୀମାନଙ୍କୁ ସତର୍କ କରିଦିଏ ଯେ ଆଜି କେହି ଦୋଅଡ଼ ମାଗିବେ ନାହିଁ । କ୍ରମେ ସମସ୍ତଙ୍କର ଅଭ୍ୟାସ ହୋଇଗଲା, ଦୋଅଡ଼ କେହି ନ ମାଗିବା । ଥିଲେ, ଇନ୍ଦ୍ରମଣୀ ବଳାଏ, ନ ଥିଲେ ସେ ଆପଣା ପାଇଁ ଅଟୁଆ ଫୁଟାଏ ବସାଏ । ସେ ଦିନ ସେ ଗୋଟାଏ ବଡ଼ ମାଛ ଆଣିଥିଲା ତିନିସେରରୁ ଟିକିଏ ବେଶୀ, ଦାମ ପନ୍ଦରଅଣା । ଭାତ ନ ଥାଇ ଦୁ'ଓଡ଼ ତିନିଓଡ଼ ମାଛ ଲଗିଲା । ନୀଳକଣ୍ଠ ବାବୁ କହୁଥାନ୍ତି, 'ଆରେ ଆମ ଦେଶଟା ହେଉଛି ମତ୍ସ୍ୟଦେଶ, ଖାଲି ମାଛ ଖାଇ ଚଳାଇବାର କଥା, ଯେଉଁ ଅଞ୍ଚଳରେ ସେ ଦୁଷ୍ପ୍ରାପ୍ୟ, ସେଠାରେ ଗୁଡ଼ାଏ ଗହମରେ ଲୋକେ ପେଟ ପୁରାନ୍ତି । ଆଜି ଝଣ୍ଟିଏ ମାଛ ସହିତ ତିନି ରୁଟାଙ୍କି ଗୁଡ଼ାଏ ପାର କଲାବେଳେ ସେ ବେଳ କଥା ମନେ ପଡ଼େ । ସେତେବେଳେ, ସକାଳ ଓଳି ମୋର ଯେତିକ ମାଛ, ସେତିକ ଓଜନର ଗୁଡ଼ାଏ, ତାଙ୍କର ମାଛର ଅଧେ ଭାତ, ପ୍ରାୟ ଦୁଇଛଟାଙ୍କିର । ରାତି ଓଳି ସେ ଖାନ୍ତି ମାତ୍ର ଗ୍ଲାସ ଖାଲି ଦୁଧରେ, ଆମେ ସବୁ ଖାଉ ପୁରି ତରକାରୀ ଓ ପୂଜା ଛାଣ, ବା କଦଳୀ ଚକଟା ।

କାଳୀବଜାର ବସାରେ ଆମ ସଙ୍ଗେ ଆସି ଳୁଟିଥାନ୍ତି ସ୍ୱର୍ଗୀୟ ଭଗବତୀ ପାଣିଗ୍ରାହୀ ଓ ସ୍ୱର୍ଗୀୟ ମାୟାଧର ମାନସିଂହ । ଭଗବତୀ କମ୍ୟୁନିଷ୍ଟ, ନୀଳକଣ୍ଠ ବାବୁ ଓ ମୁଁ କମ୍ୟୁନିଜମର ଘୋର ବିରୋଧୀ । ମାୟାଧରଙ୍କ କବିତାକୁ ଆମେ ଦୁହେଁ ନାପସନ୍ଦ କରୁ । କିନ୍ତୁ ଆମ ଚ୍ୟାରିଜଣଙ୍କ ଭିତରେ ଯେଉଁ ସଦ୍‌ଭାବ ତାହା ଏ କାଳର ପିଲେ ବିଶ୍ୱାସ କରିବେ ନାହିଁ । ଆମ କାଳୀବଜାର ବସା ଦୁଇବର୍ଷ ପରେ ଭାଙ୍ଗିବା ପର୍ଯ୍ୟନ୍ତ ଏ ଦୁହେଁ ଆମ ସଙ୍ଗେ ଥିଲେ । ଆଲୋଚନା କରୁ କରୁ ନୀଳକଣ୍ଠ ବାବୁ ପାଟି କରନ୍ତି, ମୂର୍ଖ ଚରିତହୀନ ଓ ବିଜାତୀୟ । ଏ ଶବ୍ଦ ତିନୋଟି ତ ଟିକିଏ ବିରକ୍ତ ହୋଇଗଲେ ସେ ପ୍ରତି ବାକ୍ୟରେ ଅନ୍ତତଃ ଥରେ ଥରେ ବ୍ୟବହାର କରିବା ମୁଦ୍ରାକର କିନ୍ତୁ ଅଧ ଘଣ୍ଟେ ଯାଉ ନ ଯାଉ ଯାହାକୁ ଖୁବ୍ ଗାଳି ଦେଇଥାନ୍ତି ତାକୁ ଡାକି, ଆଗରୁ, କିଛି ନ ହୋଇଥିଲା ପରି ଖୁସି ବାସି କଥାବାର୍ତ୍ତା ହୁଅନ୍ତି । ଭଗବତୀ ତାଙ୍କ ପଛରେ ବହୁବାର କହିବାର ମନେ ଅଛି, 'ସମସ୍ତ ମତଭେଦ ସତ୍ତ୍ୱେ ନୀଳକଣ୍ଠ ବାବୁଙ୍କ ସଙ୍ଗେ କଳି କରିବାକୁ ମୋତେ ଭାରି ସୁଖ ଲାଗେ । ନିଜର କଥାରେ ଜୋର୍ ଦେବାପାଇଁ ତାଙ୍କଠାରୁ ବହୁତ କଥା ମିଳେ ।' ମାୟାଧର ଅଭିମାନୀ, ତାଙ୍କ କବିତାର କ୍ରୁର ସମାଲୋଚନା ହେଲେ ସେ ଦୁଇ ତିନି ଦିନ ପର୍ଯ୍ୟନ୍ତ "ଦୋଣି ହଜାଇଲା ପରି" ମୁହଁ କରନ୍ତି ।

ସେ ଦିନ ଦୁ'ପହରେ, ନା ତିନିପହରେ, ସମସ୍ତେ ଖାଇ କରି ଉଠିଲାରୁ, ସେ କହିଲେ, 'ମାୟାଧର ! ସମସ୍ତେ ଟିକିଏ ବସ, ଆଜି ଗୋଟାଏ କାମ ତୁଟାଇଦେବା । (ମୋତେ ଦେଖାଇ) ଏ୍ୱା କହ୍‌ରେ ବୋଧହୁଏ ପ୍ରେସଟା ବସିବ । ଏବଂ ବସିବା ମାତ୍ରେ

ମାସିକ ପତ୍ରଟି ବାହାରିବ । ପ୍ରେସର ନାମ ଓ ମାସିକ ପତ୍ରର ନାମ ସ୍କୁଲ ଠିକଣା କରିଦେବା ।' ଗୋବିନ୍ଦ ମିଶ୍ରେ, ଯଦୁମଣି ମଙ୍ଗରାଜ ଓ ପାଠ୍ୟ ପୁସ୍ତକ ଲେଖକ ଜମେଇଁ ଦାଣେ ବି ଥାନ୍ତି । ଭଗବତୀ ଉପର ମହଲରୁ ତଳକୁ ହୋଇ ଆସିଲେ । ସ୍ବାଙ୍କର ଆମ କଥା ଓ କାର୍ଯ୍ୟରେ ମେଳ ନ ଥାଉ ପଛେ ସୌଜନ୍ୟ ସେ କେବେଁ ଭୁଲନ୍ତି ନାହିଁ ।

ମୁଁ ପ୍ରସ୍ତାବ କଲି : ସମସ୍ତେ କାଗଜ କଲମ ଧରି କାହାସଙ୍ଗେ ଆଲୋଚନା ନ କରି ୫ଟି ଲେଖାଏଁ ନାମ ଲେଖନ୍ତୁ । ଆମ କାଗଜର ଲକ୍ଷ୍ୟ କ'ଣ ହେବ ତାହା ତ ସବୁଦିନ ସବୁବେଳେ ଦଳାଚକଟା ହେଉଥାଏ, ଆଉ ଆଲୋଚନା କଣ ଦରକାର ? ସେଇଆ ହେଲା, ନୀଳକଣ୍ଠ ବାବୁ ବି କାଗଜ କଲମ ଧଇଲେ, ନିଜ ମାଣ୍ଡି ତଳ ଅଲଆ ଗଦାରୁ ଚଷମା ବାହାର କରି । ଆଉ ଜଣେ ମାତ୍ର ଚଷମାଧାରୀ ଆମ ଭିତରେ ଥାନ୍ତି, ଭଗବତୀ; କେବଳ ଶୋଇବା ବେଳ ବ୍ୟତୀତ ଆଉ ସବୁବେଳେ ତାଙ୍କ ନାକରେ ଚଷମା । ନୀଳକଣ୍ଠ ବାବୁଙ୍କର ଦରକାର ହୁଏ ପଢ଼ିଲା ବେଳେ, ଗୋବିନ୍ଦଜୀ ଚଷମା ଦରକାର ହେଲାଣି ବୋଲି ମଝିରେ ମଝିରେ କହୁଥାନ୍ତି ମାତ୍ର ।

ପ୍ରାୟ ୧୦ ମିନିଟ ପରେ ସମସ୍ତଙ୍କ କାଗଜ ଯଦୁମଣି ମଙ୍ଗରାଜେ ଛଡ଼ାଇ ନେଲେ । 'ଜ୍ୟୋତି' 'ଉନ୍ମେଷ' 'ଜାଗରଣ' 'ଅଗ୍ରଦୂତ' '' ଯୁଗପ୍ରଭା' 'ହୁଁକାର' 'ଝଙ୍କାର' 'ଟଙ୍କାର' (ଏ ତିନୋଟି ଯଦୁମଣି ବାବୁଙ୍କ ପାଞ୍ଚ ଭିତରେ), 'ଆବାହନୀ', 'ଆଗମନୀ', 'ବୀଣା', 'ଯୁଗବାଣୀ', 'ଆବାହନ', 'ରଶ୍ମି' ଏହିପରି ଆହୁରି କେତେ । ସାତଜଣଙ୍କୁ ୩୫ଟା ନାମ ହେବାର କଥା, କିନ୍ତୁ ଏକାଧିକ ବ୍ୟକ୍ତି ଏକ ନାମ ଦେଇଥିବାରୁ ସବୁ ମିଶି ହେଲା ୨୭ଟି । ସେଥି ଭିତରୁ ଗୋଟାଏ ବଛିବାର କଥା । ମୋ କାଗଜଟା ପଢ଼ାହେଲା ବେଳେ ମୋ ପ୍ରତି ଯଦୁମଣିବାବୁ ଓ ମାୟାଧର ଆକ୍ଷେପ କଲେ, ଆଗରୁ ନାମ ସ୍ଥିର କରି ଗୋଟାଏ ନବରଙ୍ଗ ଲଗାଇଛୁ ବୋଲି । ମୁଁ ମୋ କାଗଜରେ କେବଳ 'ନବଭାରତ' ନାମ ବିଭିନ୍ନ ପ୍ରକାରେ ଉପର ତଳ କରି ପାଞ୍ଚଥର ଲେଖିଥାଏ ! ମୁଁ ହଲପ କରି ବାରଂବାର କହିଲି ଯେ, ଆମେ ସାତଜଣ ସର୍ବସମ୍ମତିକ୍ରମେ ଯାହା ସ୍ଥିର କରିବା ମୁଁ ସେଥିରେ ଷୋଳପଣ ରାଜି । ଗୋବିନ୍ଦଜୀ କହିଲେ, ତୁ ଯେତେ ହଲପ କଲେ ବି ତୋ କଥା ବିଶ୍ୱାସଯୋଗ୍ୟ ନୁହେଁ । ସମସ୍ତେ ହସିଲୁ, ସେଇ ହସରେ ସମସ୍ତ ତିକ୍ତତା ଦୂର ହୋଇଗଲା ।

ଇନ୍ଦ୍ରମଣି ମଧ୍ୟ ଆମର ଏ ନବରଙ୍ଗର ମୂକ ସାକ୍ଷୀ ହୋଇ ଦୁଆର ମୁହଁରେ ଠିଆ ହୋଇଥାଏ । ନୀଳକଣ୍ଠ ବାବୁ କହିଲେ, 'ଇନ୍ଦ୍ରମଣି ! ସହଚରଙ୍କୁ ଆଣ ।' ସହଚର ବୋଇଲେ 'ଚା' । ମଝିରେ ମଝିରେ କେତେବେଳେ କେମିତି ମୁଁ ଚା' କପେ ଖାଇଥିଲି ; ଏଇ କାଳିବେଳାରକୁ ସେ ନିତ୍ୟ ସହଚର ହୋଇ ଆସିଲେ । ନୀଳକଣ୍ଠ ବାବୁଙ୍କର ଚା' ଅଭ୍ୟାସ ସେ ପର୍ଯ୍ୟନ୍ତ ହୋଇନଥାଏ ; ଯଦୁମଣି ବାବୁ ଓ ଗୋବିନ୍ଦ ବାବୁଙ୍କର ବି ନୁହେଁ ।

ତାଙ୍କ ବଜାର ବସାରେ ସକାଳେ ସଂଧ୍ୟାରେ ଦୁଇଥରରୁ ସ୍ୱେ ତିନିଥରକୁ ପ୍ରମୋଶନ ପାଇଲେ । ନିତ୍ୟ ସହଚରରୁ ଗ୍ଟ'ର ନାମ ସଂକ୍ଷେପରେ ହେଲା 'ସହଚର' । ସେ ନାଁ କୁଆଡ଼େ ଗଲାଣି ସିନା ଗ୍ଟ' ଦୈନିକ ଦୁଇଥର ହେଉ ହେଉ ଏବେ ମୋର ୮ । ୧୦ ଥରକୁ ଉଠିଲେଣି । ଯଦୁମଣି ବାବୁ ଓ ଗୋବିନ୍ଦଜୀ ପଛେ ପଛେ ଲାଗିଥିଲେ ଯେ, ତାଙ୍କୁ କାଲ ସହଲ ନାହିଁ ।

ଗ୍ଟ' ପରେ ଗ୍ଲଲା ପ୍ରତ୍ୟେକଙ୍କ ଚରକୁଟିର ବିଶ୍ଳେଷଣ । କୋଉ ନାମ କେତେଥର ଅଛି ଓ୍ୱାରିକା ହୋଇ ଦେଖାଗଲା 'ଜ୍ୟୋତି', 'ଜାଗରଣ', ରଣ୍ଟେ ଅଛନ୍ତି ଗ୍ଧରିକଙ୍କ ତାଲିକାରେ । 'ଯୁଗବାଣୀ' ଆଦି ୫ । ୬ ଟା ଅଛନ୍ତି ତିନି ଜଣଙ୍କର, 'ନବଭାରତ' ଦୁଇଜଣଙ୍କର ମୋର ଓ ନୀଳକଣ୍ଠ ବାବୁଙ୍କର । ଏ ଓ୍ୱାରିକା ହେବାପରେ ଲାଗିଲା ପୁଣି ହସ । ଯଦୁମଣି ବାବୁ କହିଲେ, ମିଆଁ ବିବି ରାଜି, କିଆ କରେଗା କାଜି । ଭଗବତୀ କହିଲେ, ଗୁରୁ ଶିଷ୍ୟଙ୍କର ଏ ବିଷୟରେ ପୂର୍ବରୁ ଆଲୋଚନା ହୋଇଛି ନିଶ୍ଚୟ ।

ସମସ୍ତଙ୍କ ପାଟିରେ ଖଣ୍ଡେ ଖଣ୍ଡେ ପାନ ପଶି ହସ ଓ ରହସ୍ୟ ବନ୍ଦ ହେବାରେ ପୁଣି ଗ୍ଲଲା ଅସଲ କାମ । ନୀଳକଣ୍ଠ ବାବୁ ମାନିଗଲେ ଯେ, ଅନ୍ତତଃ ଦେଢ଼ ମାସ ହେଲା ମୁଁ ନବଭାରତ ଦୁଆ ଧରିଛି । ସେ ଯୋଡ଼ିଲେ, 'ତଥାପି ମୋର ଅନ୍ତଃକରଣ ଶୁଦ୍ଧ ଅର୍ଥାତ୍ ନିରପେକ୍ଷ । ମୋ କାଗଜ ଦେଖ, ନବଭାରତ ଅଛି ପଞ୍ଚମ ସ୍ଥାନରେ ।' ମୁଁ କହିଲି, 'ଅନ୍ୟମାନଙ୍କ ପରି ଆପଣ ନବଭାରତ ନାମଟା ଏକାବେଳକେ ଯେ ଛାଡ଼ିଦେଇ ନ ପାରିଲେ ତାର କାରଣ କହନ୍ତୁ' । ଯଦୁମଣି ବାବୁ କହିଲେ, 'ତୁ ଯେତେବେଳେ ହରିନାମ ପରି ସେଇ ନାମଟା ଗଣ୍ଡି କରିଛୁ, ତୁ କହ !' ମୁଁ ଉତ୍ତର ଦେଲି, 'ନ କହି ପାରିବା ଲୋକ ଓକିଲ ମୁହଁରେ ନିଜ କଥା କୁହାନ୍ତି । ନିମେଇଁ ବାବୁ କହିଲେ ସେଇଆ ହେଉ । ସଭାରେ ବିଷୟାବୃତ୍ତି କହିବାର ବିଧି ।'

ଗୋବିନ୍ଦବାବୁ ତାଙ୍କ ଶ୍ୱାସ ବିକୃତ ସ୍ୱରରେ ଚିତ୍କାର କଲେ, 'ମୁଁ ଯାଉଛି । ତୁମ-ମାନଙ୍କଦ୍ୱାରା ଖଡ଼ା ବି ସିଝିବ ନାହିଁ । ସବୁବେଳେ ହେଁ ହେଁ ଫେଁ ଫେଁ ହେଲେ କାମ ହେବ ? ଆଜି ଏଇଠି ଥାଉ ପୁଣି କାଲିଆଡ଼କୁ ଗଡ଼ିବା । ମୋର ବହୁତ କାମ ଆଜି ମାଟି ହେଲାଣି ।' ସମସ୍ତଙ୍କୁ ନିଜନିଜ କାମ ଡାକିଗଲା । ମୋ'ର ବି ଜରୁର୍ କାମ । କୋଉଠି ଠାଏ ବସି ଦୁ'ଗ୍ଧରି ଘଣ୍ଟା ପଣା ଗଡ଼େଇଲେ ମନ ନିର୍ମଳ ହେବ, କର୍ମ ପ୍ରେରଣା ଆସିବ । ନୀଳକଣ୍ଠ ବାବୁଙ୍କୁ ଅନ୍ୟ କିଛି ଗୋଟାଏ ଆଳ ଦେଖାଇ ଯିବାକୁ ହୁଏ । ଆମ ସଭା ଭାଙ୍ଗିଲା । ମୁଁ ଗଲାବେଳେ ସେ କହିଲେ, '୯ଟା ପୂର୍ବରୁ ଆସିବୁ ଭାଇ ।' ସେ କୁଆଡ଼େ ଯିବେ କି ବୋଲି ପଗ୍ଧରିବାରୁ, ସେ କହିଲେ, 'ନବଭାରତ ନାମ କାହିଁକି ବୋଲି ଯାଉଛି ଖଣ୍ଡେ ଲେଖିବି ।' ଗଲାବେଳେ ଭଗବତୀ ଟିପ୍ପଣୀ କଲେ, 'କାଗଜର ପ୍ରଥମ ସଂଖ୍ୟାରେ

ବାହାରିବା ପାଇଁ ବୋଧହୁଏ ; ନୀଳକଣ୍ଠ ବାବୁ—'ତୁ ବଙ୍ଗୁଲି ଆଛେ । ତୁ' ଜଣ ଧରିନେଲୁ, ନବଭାରତ ନାମଟା ହୋଇଗଲା ବୋଲି ?' କାଲି ବା ଆଉ କେଉଁଦିନ ଏ ବିଷୟ ପଢ଼ିଲା-ବେଳକୁ ଏ ଲେଖାଟା ଦରକାର ହେବନାହିଁ ? ଏ ବିଷୟ ଆଉ ଥରେ ହୁଏତ ଖଣ୍ଡେ ପରେ ପଢ଼ିଲାବେଳକୁ ନୀଳକଣ୍ଠ ବାବୁଙ୍କ ଲେଖାଟା ପଢ଼ା ହେଲା ଏବଂ ଗୃହୀତ ହେଲା । ସେଥିରେ ମୋଟାମୋଟି ଏତିକି ଥାଏ, ଭାରତର ସ୍ୱାଧୀନତା ଆସନ୍ନପ୍ରାୟ । ନୂଆ ଯୁଗର ଏହି ଭାରତ କ'ଣ ହେବ, କପରି ହେବ ତାହାହିଁ ହେବ, ଆମ କାଗଜର ଉପଜୀବ୍ୟ ।

ସେଇଦିନ ରାତି "ସମାଜ"ରେ ଦେଖିଲି, ମଧୁ ବାବୁଙ୍କର ଦେହ ଖୁବ୍ ଖରାପ । ମୋର ମନରେ ପାପ ଛୁଇଁଲା, ସେ ବୋଧହୁଏ ଏଥର ଥାକବେ ନାହିଁ । ତହିଁ ଆରଦିନ ସକାଳୁ ଗାଧୋଇପାଧୋଇ ଚଣ୍ଡୀଙ୍କୁ ସାଇକେଲ୍‌ରୁ ନମସ୍କାରଟିଏ ପକାଇ ଚାଲିଗଲି ତାଙ୍କ ପାଖକୁ । ତାଙ୍କ ଘରର ଅଧିକାଂଶ ତ ମୋତେ ଜଣା । ତାଙ୍କ ବୁଢ଼ା ଚାକରଟି ମଧ୍ୟ ମୋତେ ଚିହ୍ନେ । ମୁଁ ସିଧା ଚାଲିଗଲି ତାଙ୍କ ଶୋଇବା ଘରକୁ । ବୁଢ଼ା ଚାକରଟି ଦୁଃଖ ଭିତରେ ଟିକିଏ ହସିଦେଇ କହିଲା, 'ବାବୁ ! ଆଜି ସକାଳ ଆସିଲ !' ପ୍ରାୟ ଚାରିମାସ ପୂର୍ବେ ମୁଁ ଏଟେରାଜାତମାହାଲର ପ୍ରଜାଙ୍କର ଗୋଟିଏ ମକଦ୍ଦମା ସଂପର୍କରେ ତାଙ୍କ ପାଖକୁ ଯାଇଥିଲି । ଆଉ ଥରେ ଦୁ'ଥର ଆସିଛୁ ଯେ, ତଳେ ତାହା ପ୍ରହ୍ଲାଦ ପଟ୍ଟନାୟକଙ୍କ ପାଖରୁ ଚାଲିଯାଇଥିଲି । ମଧୁବାବୁ ପଚାରିଲେ, 'କେ' ? ମୁଁ ତାଙ୍କୁ ମୁହଁ ଦେଖାଇବାରେ କହିଲେ, 'ଏସୋ ! ଏଇଖାନେ ବସୋ । ନୀଳକଣ୍ଠ କୋଥାୟ ? ଜେଲେ ଆଛେ ? ପଥଭ୍ରଷ୍ଟ ଯୁବକ । 'Misguided young man' । ସାଇମନ କମିଶନ ସଙ୍ଗେ କଂଗ୍ରେସବାଲା ଅସହଯୋଗ କରୁଥିବାରୁ ତାଙ୍କ ମନରେ ଘୋର ଆଘାତ ଲାଗିଥିଲା, ମୁଁ ଜାଣେ । ତାଙ୍କର ପୂର୍ଣ୍ଣ ବିଶ୍ୱାସ, ସାଇମନ କମିଶନ ଓ ଆଟଲୀ କମିଶନ ଆଗରେ ଆମର ଦାବୀ ଯଥାଯଥ ଭାବେ ଉପସ୍ଥାପିତ ହୋଇଥିଲେ ନୂତନ ଗଠିତ ହେବାକୁ ଯାଉଥିବା ଓଡ଼ିଶା ପ୍ରଦେଶର ବହୁ ମଙ୍ଗଳ ହୋଇଥାନ୍ତା । ତାଙ୍କ ପାଖେ ଚୁପ୍ ହୋଇ ୧୦ ମିନଟ୍ ଖଣ୍ଡେ ବସି ମୁଁ ସ୍ନେହିନ ଆଡ଼େ ବାହାରିଲି, ବିଦାୟ ନେଲାବେଳେ ତାଙ୍କୁ କହି ଆସିଲି, ନୀଳକଣ୍ଠ ବାବୁ ଯଥାଶୀଘ୍ର ଆସିବେ ।

ଚଣ୍ଡୀଙ୍କୁ ନମସ୍କାର ଓ ମଧୁବାବୁଙ୍କୁ ମୁଣ୍ଡିଆ ମାରିବାର ଫଳ ମାଲଗୋଦାମରେ ହାତେ ହାତେ ମିଳିଲା । କିରାଣୀଙ୍କଠାରୁ ଶୁଣିଲି, ଆମ ତବା ଆସିଯାଇଛୁ । 'ଦୁଇଚାରି ଘଣ୍ଟାରେ ମାଲ ଖଲାସ ହେବା ସ୍ଥାନରେ ଆସି ପହଞ୍ଚିବ । ଜରୁର ଥିଲେ ଆଜି ଛଅଟା-ବେଳେ ଆସନ୍ତୁ ।'

ଚୌଧୁରୀ ବଜାରରୁ ମାଛଟିଏ ଧରି ବସାକୁ ଫେରିଲି । ମଧୁବାବୁଙ୍କ କଥା କହିବା ପୂର୍ବରୁ ମାଲ ଆସିଯାଇଛୁ ବୋଲି କହିଲି । ତାଙ୍କୁ ପଥଭ୍ରାନ୍ତ ଯୁବକ ବୋଲି ମଧୁବାବୁ କହିବାର ଶୁଣି ସେ କାନ୍ଦ କାନ୍ଦ ହୋଇ ହସିଲେ । ମଧୁବାବୁଙ୍କ କଥା ତାଙ୍କଠାରୁ ମୁଁ

ବହୁବାର ଶୁଣିଥାଏ । ଆଜି ସେ କାନ୍ଦ କାନ୍ଦ ହୋଇ କହିଲେ, 'ଆରେ, ପ୍ରଥମ ଯୌବନରେ ଆମେ ସମସ୍ତେ ଦାସେ ଆପଣଙ୍କ ସଙ୍ଗେ, ତାଙ୍କର ପାଦତଳେ ବସି ସତ୍ଥ ଦେଉଥିଲୁଁ । ବୁଢ଼ା ପ୍ରକୃତ ଖ୍ରୀଷ୍ଟିଆନ୍ । ଆମେ ତାଙ୍କପ୍ରତି ଯେଉଁ ଦୁର୍ବ୍ୟବହାର କରୁଛୁଁ ସେ ସବୁକୁ 'ପଥଭ୍ରାନ୍ତ' କହି କ୍ଷମା କରିଦେଉଛନ୍ତି । ସେତେବେଳକୁ ପ୍ରାୟ ଦଶଟା । ସାଙ୍ଗେ ସାଙ୍ଗେ ଗାଧୋଇ ପଡ଼ି, ଖଣ୍ଡିଏ ମାଛଭଜା ଖାଇ ସେ ମୋତେ ପଠାଇଲେ ରିକ୍‌ସା ଡାକିବାକୁ । ସେତେବେଳେ ସବୁ ରିକ୍‌ସା ହାତଟଣା, ଏବେ ହାଉଯାଉ ହେଉନଥାଏ । ମୁଁ ରିକ୍‌ସା ଧରି ଆସିଲାବେଳକୁ ଯଦୁମଣି ବାବୁ ଆସି ପହଞ୍ଚିଥାନ୍ତି ; ସେ କହୁଥାନ୍ତି, 'ବୁଢ଼ାକୁ ମୋର ଟିକିଏ ଦେଖିବାକୁ ମନ ହେଉଛି । ୧୯୨୯ରେ ମୁଁ ତାଙ୍କ ପାଲଭୂତ ପୋଡ଼ିବାରେ ଆଗୁଆ ହୋଇଥିଲି, ବସ୍ତୁରବେ ସତେ ପୋଡ଼ିବାକୁ ଆସିଲି ।' ନୀଳକଣ୍ଠ ବାବୁ କହିଲେ, 'ଆରେ ଯା, ଏତେବେଳେ ସେସବୁଡ଼ାକ ଭାବନ୍ତି ? ଏତେବେଳେ ଯାଇ ଆଗରେ ମୁଣ୍ଡ ନୁଆଁଇଦେଲେ ସବୁ ଦୋଷ କ୍ଷମା ହୋଇଯିବ । ହଉ, ମାଛଭଜା ଦିଖଣ୍ଡ ଖାଇଦେ, ଆଜି ଭଲ ମାଛଟାଏ ଆସିଛି ।'

ମୋର ଟିକିଏ ମନ ହେଉଥିଲା, ବହୁ ବର୍ଷ ପରେ ମୋର ଏ ଦୁଇ ଗୁରୁଙ୍କର ମିଳନ କିପରି ହେବ ଦେଖିବାକୁ । ମଧୁବାବୁଙ୍କ ଚୌଗା ଚପକନ୍ ଓ ପଗଡ଼ି ତାଙ୍କ ଘରୁ ବୁଢ଼ା ଗୁଜ୍ଜରଠାରୁ ମାଗିଆଣି ପାଲଭୂତକୁ ବେଶକରି ମଧୁସୂଦନ ଦାସ, ସି. ଆଇ. ଇ. ବୋଲି ବଡ଼ବଡ଼ ଅକ୍ଷରରେ ବେକରେ ଟାଙ୍ଗି ନିଆଁ ଧରାଇଥିବା ଯଦୁମଣି ବାବୁଙ୍କୁ ଦେଖି ମଧୁ ବାବୁଙ୍କର କି ପ୍ରତିକ୍ରିୟା ହେବ ଦେଖିବାକୁ ମନ ହେଉଥାଏ । କିନ୍ତୁ ମନକୁ ରୋକି, ସାଇକେଲ ମୁହାଁଇଲି ବାଙ୍କାବଜାର ପ୍ରେସ୍ ଘରକୁ ।

ଦିନକରେ ଦିନଟା କଣ୍ଟ୍ରାକ୍ଟ ଧରି ଲାଗିଥାନ୍ତି କଣ୍ଟାମାରିଷ ଗଛ କାଟିବାରେ । ଘରେ କେହି ନ ଥିବାରୁ ଏ କଣ୍ଟା ବୁଦାଙ୍କ ପିହିଲି ପଡ଼ିଥାଏ ମାଡ଼ିବାକୁ, ଏପରିକି ବରଣ୍ଡାର ଫାଟମାନଙ୍କରେ ବି ସେମାନେ ଉଠିଥାନ୍ତି । ପ୍ରଥମ ଜଣକ ତ ସୋମନାଥ, ଦ୍ୱିତୀୟ ଜଣଙ୍କ ଲୋକନାଥ ଝା । ଲୋକନାଥ ଝା ଆଣିଥାନ୍ତି ମୋହନ ବୋଲି ଜଣକୁ; ସେ ମେସିନ୍‌ରୁ କାଗଜ ଉଠାଇବ । ମୋତେ ଦେଖି ଲୋକନାଥ ଝା କହିଲେ, 'ବାବୁ ! ମେଶିନ୍ ଚଲାଇବାକୁ ଇଲେକ୍‌ଟ୍ରିକ୍ ମୋଟର ବସାଇବେ, ନା ମଣିଷ ମେଶିନ୍ ବୁଲେଇବେ ?' ମୁଁ କହିଲି, 'ଏ ମେଶିନ୍ ଇଲେକ୍‌ଟ୍ରିକ୍ ମଟର ସମ୍ଭାଳିବ ନା ନାହିଁ ଦେଖିବା କଥା ତୁମର କାମ, ମୋର ନୁହେଁ !' ସେ କହିଲେ, 'ଲମ୍ବା ଛପା ମିଳିଲେ ଇଲେକ୍‌ଟ୍ରିକ୍ ଭଲ । ମେଶିନ୍ ବହୁତ ପୁରୁଣା ; ଆଗ ହାତରେ ଚଲା ପଛରେ ଦେଖିବା ।' କାହିଁକି ପଚାରୁଥିଲେ ବୁଝିବାରେ ସେ କହିଲେ, 'ମେଶିନ୍ ବୁଲାଇବାକୁ ଗୋଟାଏ ଭଲ ପିଲା ମିଳୁଛି । ପଠାଣ !'

ମୁଁ ମୋର ଶେଷ କଥା ଶୁଣାଇଦେଲି, 'ପ୍ରତି କଥା ମୋତେ ପଚାରି କରି ବସିଲେ କିଛି ହେବନାହିଁ । ତୁମେ ଦୁହେଁ ଯାହାଙ୍କୁ କହିବ ତାଙ୍କୁ ରଖିବା । ପ୍ରଥମେ ଦିନକୁ ୩ଟା ଫର୍ମା

ଛୁପା ହେଲପରେ ମଣିଷ ରଖିବା । କଂପୋଜିଟର୍ ପଛକୁ ଆସୁ, ଆଗ ଫ୍ଲାଟ୍ ମେଶିନ୍ ଓ ଟ୍ରେଡଲ ଫିଟ୍ କର । କଂପୋଜ କେଉଁଠି ହେବ ?'

ସୋମନାଥ କହିଲେ, 'ଆମେ ତ ସେଇ କଥା ବସୁରୁଥିଲୁଁ । ଏଇ ସ୍କୁଲଘର ସାହାଲକ ସଜାଡ଼ିଦେଲେ କଂପୋଜଖାନା ହେବ ; ୯ ଜଣ କଂପୋଜିଟର କାମ କରିବେ । ବାକୀ ଦୁଇଜଣ କରେକ୍ଟର୍ ଏଇ ବାରଣ୍ଡାରେ ବସିବେ ।'

ଓପର ମହଲକୁ ଗଲୁଁ । ଗୋଟାଏ ଲମ୍ବା ହଲ । ପଣ୍ଡିତଜୀ ଓ ମୁଁ ରହିବାକୁ ଯଥେଷ୍ଟ । ଅତିଥି ଅଭ୍ୟାଗତ ରହିବାକୁ ବାହାର ପଟର ଏକ ମହଲା ଉପରେ ସ୍ଥଳ କରିବାକୁ ହେବ । ଶୀତଦିନ ଅଧାଅଧି ହୋଇଯାଇଥାଏ । ଖରାଦିନେ ଛକାଉପରେ ଶୋଇ ହେବ । ପୁଣି ପଣ୍ଡିତଜୀ ତ ଦିଲ୍ଲୀ ଯିବେ ସେ ଆସୁ ଆସୁ ୩ ମାସ । ୧୦।୧୨ ଜଣ ଅତିଥି ଆସିଲେ ବି ଲମ୍ବା ହଲରେ ମୋର ଚଳିଯିବ । ତେଣୁ ମନେ ମନେ ସ୍ଥିର କରିଦେଲି ପଣ୍ଡିତଜୀ ଯେଉଁ ଦିନ ଗାଁକୁ ଯିବେ, ଦିଲ୍ଲୀପାଇଁ ପ୍ରସ୍ତୁତ ହେବାକୁ, ସେଇଦିନ ମୁଁ କାଜିବଜାର ବସା ଛାଡ଼ି ଏଠାକୁ ସ୍ଥଳଆସିବି । ମୋର ୭ ପ୍ରସ୍ତାବ ରହିଲା ନାହିଁ । ସେ କହିଲେ, 'ମାସ୍ଟାଧର, ଭଗବତୀଙ୍କ କଥା ବିସ୍ମରନାହିଁ । ସେ ଦୁହେଁ ଥିଲେ ଆମ ମୁଣ୍ଡର ଜପରଚ୍ ହେଉଛୁ । ଭଗବତୀ ଯୋଗୁଁ ଆମେ ନ ପଢ଼ି ମଧ୍ୟ ମାର୍କସ୍‌ଙ୍କ ତତ୍ତ୍ୱରେ ପଣ୍ଡିତ ହୋଇଗଲେଣି । ମାସ୍ଟାଧରଟା କବଟେ, କବଳ୍କୁ ପାଖରୁ ଛାଡ଼ନ୍ତୁ ନାହିଁ । ଟଙ୍କା ପନ୍ଦରଟା ପାଇଁ ଭାବ ହେଉଛୁ ?' କାଜିବଜାର ଘର ଆଗାମୀ ବର୍ଷାଦିନ ଶେଷପର୍ଯ୍ୟନ୍ତ ରହିଲା ।

ତହିଁ ଆରଦିନ ସନ୍ଧ୍ୟାସୁଦ୍ଧା ଆମ ଜନଷ ଷ୍ଟେସନରୁ ଆସିଲା । ଅକ୍ଷର ସଜାଡ଼ିବାରେ ସୋମନାଥଙ୍କୁ ସାହାଯ୍ୟ କରିବାକୁ ଦୁଇଜଣ କଂପୋଜିଟର୍ ସୋମନାଥ ଘେନି ଆସିଲେ । ମେଶିନ୍ ଚୁଲାଇବାକୁ ନିଯୁକ୍ତ ହୋଇଥିବା ମିଆଁଟି ଜନଷ ବୁହାବୁହି କରିବାରେ ଲାଗିବ, ଘରଛପର କରାଇବ ବୋଲି ସ୍ଥିର ହୋଇଗଲା । ୧୦ ଦିନରେ ପ୍ରେସ୍ ସ୍ଥଲ୍ ହୋଇଗଲା । ମେଶିନ ପାର୍ଟ ମରାମତି ମଧ୍ୟ ସାଙ୍ଗେସାଙ୍ଗେ ହୋଇଥାଏ । ଗୋଟିଏ ବଡ଼ ଅଭାବ ରହିଗଲା ମେଶିନଟିର । ତା'ର ହାଣ୍ଡିଟିରେ ୧୦ । ୧୨ଟା ବସନ୍ତ ଧାଗପର ଗାତ । ସେଥିରେ କାଗଜ ପଟିଦେଇ ଲୋକନାଥ ଜୀ ଫର୍ମାଟିମାନ କାଖ୍ଣକରି ରେଡ଼ି କରନ୍ତି । ପରୀକ୍ଷା ସ୍ୱରୂପ ପ୍ରଥମେ ଛପାହେଲା ମୋର ଗୋଟିଏ ବହି—ତିନୋଟି ଗପ । ଏ ବହି ଦେଖି ପଣ୍ଡିତେ, ଉମାଚରଣ ବାବୁ ଓ ରାଧାରମଣ ପୁସ୍ତକାଳୟ, ତିନୋଟି ସ୍ଥାୟୀ ଗ୍ରାହକ ମିଳିଗଲେ । ମାସେ ପୂରିଲା ବେଳକୁ ଭଲ ଛପା କରୁଁଲ ଛପାପାଇଁ ଆମର ନାମ ହୋଇଗଲା । ପଣାସଂକ୍ରାନ୍ତି ପରିବର୍ତ୍ତେ ଆମ ମାସିକପତ୍ର ରଜସଂକ୍ରାନ୍ତି ଦିନ ବାହାର କରିବାକୁ ସ୍ଥିର କଲୁଁ ।

ପ୍ରେସ୍ ଖୋଲୁ ହେବା ଦିନ ପଣ୍ଡିତ ଗଣେଶ୍ୱର ମିଶ୍ରଙ୍କୁ ଡକାଇଲୁଁ । ବିକ୍ରମ ଦେବଙ୍କ ଟଙ୍କାରୁ ହଜାରେ ଟଙ୍କା ମୁଁ ରଖିଥାଏଁ । ପ୍ରେସ୍ ଖୋଲୁ ହେବା ପରେ ଏଥିରୁ ଟଙ୍କା ୨ ଶହଯାଏଁ ହାତରେ ରହିଲା ଚଳନ୍ତି ମୂଳଧନ । ୨ ହଜାର ଟଙ୍କାରେ ଆପଣାର ହଜାରେ ମିଶାଇ ନୀଳକଣ୍ଠ ବାବୁ, ଗଣେଶ୍ୱର ମିଶ୍ରଙ୍କ ଦେଇଥିବା ହ୍ୟାଣ୍ଡ୍‌ନୋଟ ଫେରସ୍ତ ଆଣିଲେ ।

ସେ ଗଲେ ଦିଲ୍ଲୀ ମୁଁ ମାସିକ ପତ୍ର ବାହାର କରିବାର ଦାୟିତ୍ୱ ନେଲି । ନାମ ରହିଲା 'ନବଭାରତ', ଲେଖକମାନଙ୍କୁ ଧରି ପ୍ରବନ୍ଧାଦି ସଂଗ୍ରହ କରାହୁଥାଏ । ଗ୍ରାହକ ବି କରାହୁଥାଏ । ପଣ୍ଡିତଜୀଙ୍କ ନାମ ଓ ମୋ ଉଦ୍ୟମ ଫଳରେ ପ୍ରଥମ ସଂଖ୍ୟା ବାହାରିଲା ବେଳକୁ କଟକରୁ ଦେଢ଼ଶହ ଓ ବାହାରୁ ପ୍ରାୟ ୨ ଶହ ଗ୍ରାହକ ହୋଇଯାଇଥାନ୍ତି । ପ୍ରୁଫ୍ ରିଡର ଭାବେ ମିଳିଯାଇଥାନ୍ତି, ସେ କାଳେ ଓଡ଼ିଶାର ସବୁଠାରୁ ତୀକ୍ଷ୍ଣଦୃଷ୍ଟି ପ୍ରୁଫ୍ ରିଡର କୃଷ୍ଣ ଚନ୍ଦ୍ର କର ; ଏବଂ ପରିଚାଳନାରେ ସହକାରୀ ଭାବେ ମିଳିଥାନ୍ତି ରାମ ବାବୁ ବୋଲି ଜଣେ, ଯେ କି ସ୍ୱର୍ଣ୍ଣ ବଣିକ ହେଲେ ବି ହିସାବ ପତ୍ର ବଡ଼ ସାଧୁ ସୁନିର୍ମଳ ଭାବେ ରଖୁଥାନ୍ତି । ମୋର ଅଧ୍ୟବସାୟ ସାଙ୍ଗକୁ ଏ ଦୁଇଜଣଙ୍କ ଉଦ୍ୟମ ମିଶିଯିବାରେ 'ସୁର ପ୍ରତାପ' ପ୍ରେସ୍‌ର 'ରଦ୍ଦି ଲୁହା' ହୋଇଗଲା ସେତେବେଳେ ନାମ କରିଥିବା ନବଭାରତ ପ୍ରେସ୍ ।

ଆମ ପ୍ରେସ୍‌ର ମୂଳରେ ଜୟପୁରର ସାହିତ୍ୟ-ସମ୍ରାଟ ରାଜା ବିକ୍ରମ ଦେବ । ମୂଳରୁ ତାଙ୍କରି ଆଶ୍ରମ ହୋଇଗଲା ଅସନ୍ତୋଷର ପାତ୍ର । ଆନ୍ଧ୍ରରେ ସେ ତାଙ୍କ ତେଲୁଗୁ ଲେଖା ପାଇଁ ନାମ କରିଥିଲେ । ସାହିତ୍ୟ ଯୋଗୁଁ ତାଙ୍କର ନାମ ହୋଇଥିଲା କି ଆନ୍ଧ୍ର ପଣ୍ଡିତମାନଙ୍କ ପ୍ରତି ବଦାନ୍ୟତା ଯୋଗୁ ନାମ ହୋଇଥିଲା କହିହେବ ନାହିଁ । ସେ ନବଭାରତର ପ୍ରଥମ ସଂଖ୍ୟାପାଇଁ ଗୋଟିଏ କବିତା ପଠାଇଥିଲେ । ଏହା ମୁଁ ତାଙ୍କଠାରୁ ଅଣାଇଥିଲି । 'ନବଭାରତ' ପ୍ରକାଶ ପାଇବାରେ ବିଳମ୍ବ ହେବାରୁ ସେ ଦିବାକର ପଟ୍ଟନାୟକଙ୍କ ଆଗରେ କହିଲେ ଯେ, 'ପଣ୍ଡିତେ ଆମଠାରୁ ୩ ହଜାର ନେଇଯାଇ ତୁନି ହୋଇଗଲେ । କାହିଁ, ମାସିକ ପତ୍ରର ତ ନାମ ଗନ୍ଧ ନାହିଁ !' ଏ କଥା ମୁଁ ଶୁଣିଲିବେଳକୁ କେତେ ଜଣ କଟକ ବାହାର ସାହିତ୍ୟିକଙ୍କ ପାଖକୁ ଚିଠି ଲେଖୁଥାଏ । ତାଙ୍କ ପାଖକୁ ମଧ୍ୟ ଖଣ୍ଡିଏ ଲେଖିଦେଲି, ଟିକିଏ ପ୍ରଚ୍ଛନ୍ନ ଶ୍ଳେଷ ରଖି । ସେ କାଳେ ପଣ୍ଡିତ ନୀଳକଣ୍ଠଙ୍କୁ କିଏ କଣ ପଦେ କହିଲେ ଆମକୁ ସବୁ ଭାରି କାଟୁଥାଏ । ବିକ୍ରମ ଦେବଙ୍କଠାରୁ କବିତା ଆସିଲା ହପ୍ତେ ଖଣ୍ଡେ ଭିତରେ । ତାକୁ ପଢ଼ି ହସିଲି, ପଢ଼ି ବନ୍ଧୁମାନଙ୍କୁ ହସାଇଲି । ଅପରୂପ କବିତା । ସଂସ୍କୃତ ଉପେନ୍ଦ୍ରବଜ୍ରା ବୃତ୍ତରେ ଲିଖିତ । ଓଡ଼ିଆ କବିତା ସଂସ୍କୃତ ବୃତ୍ତରେ ଲେଖିବା ସ୍ୱାମୀଙ୍କର ନୂଆ ନୁହେଁ । ଚିକିଟି ରାଜା ରାଧାମୋହନ ରାଜେନ୍ଦ୍ର ଦେବଙ୍କ ସୁଧ୍ରକାବଳୀରେ ଦେଖିଥାଏ । ଗୁଡ଼ାଏ ଦୋଷ ବି ଥାଏ । ସେ ମାପକାଠିରେ ମଧ୍ୟ ବିକ୍ରମ ଦେବଙ୍କ କବିତା ନ୍ୟୂନ ହେଲା । ସର୍ବପ୍ରଧାନ ଦୋଷ, ସେଥିରେ ଆମମାନଙ୍କ ମନକୁ ଘେନିଲା ପରି ଭାବ

ଆଦୌ ନ ଥିଲା, ଅପ୍ରଚଳିତ ଶବ୍ଦ ବି ଘୁଞ୍ଚାଏ । ତଥାପି, ଅନ୍ତତଃ ଏହି ଥରକ ସ୍ବାଙ୍କ କବିତାଟି ଛପାଯାଉ, ଆମ କୃତଜ୍ଞତାର ନିଦର୍ଶନ ସ୍ୱରୂପ ବୋଲି ମୁଁ ନୀଳକଣ୍ଠ ବାବୁଙ୍କୁ ସୁପାରିଶ କଲି । କିନ୍ତୁ ହେଲା ନାହିଁ । ଟିକିଏ ବଳେଇବାରୁ ସେ ଗର୍ଜନ କରି ଉଠିଥିଲେ, 'ବାଇଆ ଦୁଇ ହଜାର କଥା ଛାଡ଼, ଆମେ ଆଣିଥିବା ଚନ୍ଦାହଜାର ଫେରସ୍ତ ମାଗିବ ବୋଇଲେ ଦେବା । ସେଇଥିପାଇଁ ସ୍ବାଙ୍କୁ ଆମେ ନବଭାରତରେ ଛାପି ପୃଷ୍ଠା କଳଙ୍କିତ କରିବା ?' ସ୍ବା ପରେ ଆଉ ମହାରାଜାଙ୍କ ସହିତ ସ୍ବାଙ୍କର ଦେଖା ହୋଇନାହିଁ । ସମ୍ବନ୍ଧ ଆହୁରି ତିକ୍ତ ହୋଇଗଲା ପ୍ରଥମ ବ୍ୟବସ୍ଥା ସମ୍ପର୍କୁ ନିର୍ବାଚନ ବେଳେ । ମୁଁ କାହାକୁ କିଛି ନ କହି କଟକରେ ଥରେ ଦେଖା କରିଥିଲି । ଦୁଇହଜାର ପାଇଁ ବାଟ କ'ଣ କରିବ ? ଶୁଣିଲି, 'ସାହିତ୍ୟ ପତ୍ରିକା ବୋଲି ମୋତେ ଭଣ୍ଡିଦେଇ ଚନ୍ଦାହଜାର ନେଇଗଲେ ପଣ୍ଡିତେ ।' ତାଙ୍କ ବିଗ୍ରହରେ ସାହିତ୍ୟ ପତ୍ରିକାରେ ରାଜନୀତିର ସ୍ଥାନ ରହିବନାହିଁ । ନୈଷଧୀୟ ଚରିତ ଓ ଶ୍ରୀମଦ୍ ଭାଗବତରୁ ଉଦାହରଣ ଦେବାକୁ ଉଦ୍ୟମ କରିଥିଲି, ଶୁଣିଲି, 'ହଉ ଥିଲ ହୁଅ ବାବୁ ! ଭାଗବତ ଅର୍ଥ କରିବା ବସ୍ତୁସ ହେଲେ ଅର୍ଥ ଦଶିବ ।'

ଜୟପୁର ମହାରାଜାଙ୍କର 'ନବଭାରତ' ମତ ଯାହା ହେଉ ପଛେ ସମସ୍ତ ଓଡ଼ିଶାରେ ନବଭାରତ ଅଳ୍ପ ଦିନରେ ଆଦୃତ ହେଲା । ତାହାର ଛାପା, ବିଷୟ ନିର୍ବାଚନ ଓ ବଳିଷ୍ଠ ସଂପାଦକୀୟ ପାଠକମାନଙ୍କର ଦୃଷ୍ଟିରେ ପଡ଼ିଲା । ଦୃଷ୍ଟିରେ ପଡ଼ିବା ପାଇଁ ସେତେବେଳେ ଯେଉଁ ପରିଶ୍ରମ କରିଥିଲି ତାହା ମନେପଡ଼ିଲେ କାମନା କରେ, ଏବର ଯୁବକ ସେହିପରି ଲାଗିଗଲେ ନ ହେବା କଥା ବି ହୁଅନ୍ତା ।

ମନେ ପଡ଼ୁଛି ପ୍ରଥମ ବର୍ଷ କଟକରେ ୨୫୦ ଜଣ ଗ୍ରାହକ କରିଥିଲି । ବହି ଛପେଇଲା ବାଲା ବା ଜବ୍‌କାମ କରିବାବାଲା ଯଦି ପଇସା ଦେଇନଥାନ୍ତି, ଡାକରୁ କିଛି ନ ଆସେ, ତାହେଲେ କାଲବିଳମ୍ବ ନ କରି ମୋର ସାଇକଲ୍ ବାହାରିପଡ଼େ । ପ୍ରତିଦିନ ସନ୍ଧ୍ୟାବେଳେ ଅନ୍ତତଃ ଦଶଟି ଟଙ୍କା ଦରକାର, କର୍ମଚାରୀଙ୍କ ଆଡ଼ଭାନ୍‌ସ ଆଠ ଟଙ୍କା ଓ ଆମର ଦିନକର ଖର୍ଚ୍ଚ ଦୁଇଟଙ୍କା । କର୍ମଚାରୀମାନେ ମାସକୁ ହାରାହାରି କୋଡ଼ିଏ ଟଙ୍କା ନିଅନ୍ତି; ଆମର କୋଡ଼ିଏ ଜଣ କର୍ମଚାରୀ ତିନିମାସରେ ହୋଇଗଲେ । ତାଙ୍କର ମାସକୁ ଚାରିଶହରୁ କିଛି ଅଧିକ ପଡ଼େ । ନବଭାରତର କାଗଜ ଖର୍ଚ୍ଚ ଛାପାଖର୍ଚ୍ଚ ଓ ଡାକଖର୍ଚ୍ଚ ମିଶି ମାସକୁ ୨ଶହ, ଆମର ସବୁସବୁ ଖର୍ଚ୍ଚ ମିଶି ମାସକୁ ୮୦୦ଠାରୁ ଶହେ ଭିତରେ । ଏହିପରି ସାତସହ, ସାଢ଼େ ୭ଶହ ମାସିକ ଖର୍ଚ୍ଚ—ପ୍ରେସ୍ ଘରଭଡ଼ା ଓ ରହିବା ଘରଭଡ଼ା ଟ ୪୦ ଙ୍କାରୁ ପଚାଶ ଟଙ୍କା ଭିତରେ, ମାସକୁ ହାରାହାରି ୯ ଶହ ଟଙ୍କାର କାମ ହୁଏ । ଉଦ୍‌ବୃତ୍ତ ଶହକ ସବୁ ମାସରେ ପ୍ରେସର ଇଂରେଜି ଓ ଓଡ଼ିଆ ଅକ୍ଷର ବଢ଼ାଇବାରେ ଓ ୧ ମୂଷ୍ଟ କରିବାରେ ଖର୍ଚ୍ଚ ହୁଏ ।

ପ୍ରଥମେ ବହ୍ମାଶଲ ବାଲୁବଜାରଠାରୁ ଜେଲଖାନା ଛକ ଭିତରେ ଦୁଇ-ସ୍ୱତନ୍ତ୍ର ବଡ଼ ଦୋକାନରେ ବିଲ୍, ରସିଦ୍ ବହି ଛପା ଅର୍ଡ଼ରପାଇଁ । ଓଡ଼ିଆ ଦୋକାନୀ ଦେଖିଲେ ଖଣ୍ଡିଏ ନବଷରତ ଲଦିବାକୁ ଚେଷ୍ଟାକରେ । ସେଇ ଭିତରେ ଯଦି ୧୦ଟି ଟଙ୍କା ହୋଇଗଲା ତେବେ ସେଇଠାରୁ ଫେରନ୍ତ । ୪ଟା ବାଜିବାକୁ ଯଦି ଘଣ୍ଟେ ଖଣ୍ଡେ ଥାଏ ତେବେ କୋଉଠି ଗୋଟାଏ ଖେଳର ଆଡ଼୍ଡା ଜମେ । ଖେଳରୁ ମଧ୍ୟ ପଇସା ବାହାରିପଡ଼େ । ଥରେ ଦିନ ପ୍ରାୟ ସାଢ଼େ ଗୋଟେ । ୩।୪ଟି ଛପା ଅର୍ଡ଼ର ପକେଟରେ ପକାଇଥାଏ । ଟଙ୍କା ମିଳିଥାଏ ମାତ୍ର ଦୁଇଟି । ଆଉ ଆଠଟି ନ ହେଲେ ଫେରିବ କେମିତି ? ରାଣୀହାଟ ମାଇନର ସ୍କୁଲର ହଷ୍ଟେଲରେ ପଶିଗଲି ବେଳକୁ ଜଣେ ବନ୍ଧୁ (ଏବେ ଅବସରପ୍ରାପ୍ତ ଆଇ. ଏ. ଏସ୍.; ସେତେବେଳେ କଲେଜରେ ବୋଧହୁଏ ଏମ୍. ଏ. ପଢ଼ୁଥାନ୍ତି ।) ସେତେବେଳେ ତି' ତାସ ଖେଳିବାକୁ ପ୍ରସ୍ତାବ କଲେ । ସେ ଦିନ ଶନିବାର । ଖେଳକୁ ମୁଁ କେବେହେଁ ନାହିଁ କଲି ପରି ମନେ ପଡ଼ୁନାହିଁ । ହଁ କଲି ଦୁଇଟି ସର୍ତ୍ତରେ, ମୁଁ ଖାଇନଥାଏ, ଜଳଖିଆ ଦେବାକୁ ହେବ । ଦ୍ୱିତୀୟରେ ମୋ ସାଙ୍ଗେ ଯେଉଁ ତିନିଜଣ ଖେଳିବେ ସେମାନେ ନବଷରତ ଗ୍ରାହକ ହୋଇଥିବା ଦରକାର । ସେରକିଏ ଖୀରମୋହନ ମିଳିଲା (୧୨ ଅଣା) ଓ ତିନିଜଣ ଗ୍ରାହକ ହେଲେ (୯ଟଙ୍କା ବାରଅଣା) । ଖେଳ ହେଲା ସେ ପ୍ରାୟ ୫ଟା ଯାଏ ।

ପ୍ରାୟ ୬ ଟାରେ କର୍ମଗୁରୁଙ୍କ କାମ ଛାଡ଼ି ଦିଅନ୍ତି ଓ ଦୁଆରମୁହଁରେ ଠିଆହୋଇ ରହିଥାନ୍ତି ମୁଁ ଆସିଲେ ପଇସା ନେବେ ବୋଲି ! ନୀଳକଣ୍ଠ ବାବୁ ଥିଲେ ଏ ଗହଳି ତାଙ୍କୁ ଅସହ୍ୟ ହୁଏ । ସେଦିନ ନୀଳକଣ୍ଠ ବାବୁ ଥାନ୍ତି, ଏବଂ ଆମେ କାଜିବଜାର ବସା ଭାଡ଼ି ପ୍ରେସରେ ଥାଉ । ମୁଁ ଫେରୁଥାଏ ଅମୀର୍‌ର ଆଡ଼୍ଡ଼ାରେ । ଚୌଧୁରୀବଜାରରେ ମୋର ଚହ୍ନା କେଉଟୁଣୀ ପସରା ମେଲାଉଥାଏ । ମୁଁ ତା' ସମ୍ମୁଖରେ ଯାଇ ଠିଆ ହେଉ ହେଉ ସେ ଟୋକେଇଭିତରୁ ଗୋଟିଏ ଭାକୁର ବାହାର କରିଦେଲା, ଓଜନ [illegible] ସେର । ସେର ପାଞ୍ଚଅଣା ଲେଖାଏଁ ପନ୍ଦରଅଣା ତାକୁ ଦେଇ ପ୍ରେସକୁ ଗଲି—ଗୋଟିଏ ହାତରେ ମାଛ, ଆର ହାତରେ ସାଇକେଲ ହ୍ୟାଣ୍ଡେଲ । ଦଶଟା ଟଙ୍କା କର୍ମଗୁରୁଙ୍କୁ ଦେବାପାଇଁ ମୋର ସହକାରୀଙ୍କ ଆଗରେ ପକାଇଦେଇ ମୁଁ ଉଠିଗଲି ଉପରକୁ । ପଣ୍ଡିତ ନୀଳକଣ୍ଠଙ୍କ ପାଖେ ଯଦୁମଣି ବାବୁ ବସିଛନ୍ତି । ମୁଁ କାହିଁକି ଏତେ ବେଳଯାଏଁ ନ ଆସିଛୁ ସେକଥା ପଣ୍ଡି ନୀଳକଣ୍ଠ ବାବୁ ରାଗିଯାଇଥିବାର କାରଣ । ଦୁହିଁଙ୍କ ଆଗରେ ମାଛଟା ପକାଇବା ପରେ ମଧ୍ୟ ନୀଳକଣ୍ଠ ବାବୁ ମାଛ ବିଷୟରେ କିଛୁ ନ ପଚାରି ଓଲଟି କହିଲେ, 'ସେଇଟା ଏଠାରେ କାହିଁକି ପକେଇଛୁ ? ଇନ୍ଦ୍ରମଣିକୁ ଦେଇଦେ ।' ମୁଁ ବରାଦକଲି, ଶୀଘ୍ର ମାଛ ଭାଜି ଆଣିବାକୁ । ମୋପାଇଁ ପଖାଳ ପ୍ଲେଟେ ଦେବାକୁ କହିଲି । ଭୋକ ହେଉଥିବାରୁ ନୁହେଁ, ଦି ପହରେ କିଛୁ ନ ଖାଇ ରହିଛୁ ବୋଲି ଦେଖାଇ ଟିକିଏ ଅନୁକମ୍ପା ପାଇବାକୁ ।

ଫଳ ହେଲା । ସେ ଟିକିଏ ନରମ ହେବା ଦେଖି ମୁଁ ଜଣାଇଦେଲି ଯେ, ମୁଁ ୩।୪ଟା ଛପା ଅର୍ଡ଼ର ଆଣିଛୁ, ତିନିଜଣ ଗ୍ରାହକ କରିଛୁ, ଓ କର୍ମଗୁରୁଙ୍କୁ ଦଶ ଟଙ୍କା

ହେଲାଣି । ସେଇଠୁ ଆରମ୍ଭ ହେଲା, 'ହେଇରେ ! ତୁ ତ ଏତେ କାମ କରି ଆସୁଛୁ ! ଆଉ ଯଦୁମଣି ଚ'ଣ କହୁଛନ୍ତି ତୁ ଗୁଣୀହାଟ ମାଇନର ସ୍କୁଲ ବୋର୍ଡ଼ିଙ୍ଗରେ ପଶା ଖେଳୁଥିଲୁ ବୋଲି ?'

ଫାଙ୍କିଲି । କିନ୍ତୁ ଯଦୁମଣି ବାବୁ ଡାକ୍ତରଖାନାରୁ ପୂର୍ବପଟ ରାସ୍ତାରେ ଆସିଲା ବେଳେ ମୋ' ପାଟିର '୧୭' ଡାକ ଶୁଣିଥାନ୍ତି । ତାହା ଆଉ କାହାରି ପାଟି ହୋଇ ନପାରେ ବୋଲି ତାଙ୍କର ଦୃଢ଼ ବିଶ୍ୱାସ । ଖୁବ୍ ଟଣାଟଣି ଲାଗିଲା ; ରସିଦ ବହି ଓ ଅର୍ଡର ବହିଖଣ୍ଡ ତାଙ୍କଆଡ଼କୁ ଫୋପାଡ଼ି ଦେଇ ଆହ୍ୱାନ କଲି, 'ଆପଣ କାଲି ଧନଯାକ ଭୁଲ ଆଟା ଗ୍ରାହକ କରନ୍ତୁ ତ ଦେଖି ?' 'ଏ କାମ ମୋଦ୍ୱାରା ହୋଇ ପାରିବ ନାହିଁ' ବୋଲି ମାନିଲେ, ତଥାପି କହିଲେ, 'କିନ୍ତୁ ତୋ' ସତର ତ ମୁଁ ଶୁଣିଛି ।'

ସମୁଦାୟ ମାଛଟି ଭଜାହୋଇ ଆମ ଚିନିଜଣଯାକର ରାତ୍ରି ଭୋଜନ ହୋଇ-ଗଲା । ଇନ୍ଦୁମଣି ପାଇଁ ଖଣ୍ଡେ ଦି'ଖଣ୍ଡ ରହିଲା କି ନାହିଁ କିଜାଣି, ପଖାଳ ବେଳକୁ ମୋତେ ଶେଷ କରିବାକୁ ପଡ଼ିବାରୁ ମୋର ଭାଗ କମ ହୋଇଥିବ । ଯଦୁମଣି ବାବୁ କହିଲେ, ତୋର ସମସ୍ତଙ୍କଠାରୁ ବେଶୀ ।' ବୃକୋଦର ନାମ ପଡ଼ିଲା । ଯାହାହେଉ, କଥା ବାର୍ତ୍ତାର ଜୋର ସେତେବେଳକୁ କମିଯାଇଥାଏ । ମୋ ପଶାଖେଳ କଥା ଛପିଗଲା ବୋଲି ମୁଁ ଆଶ୍ୱସ୍ତ ହେଉଥାଏ ।

ସମସ୍ତେ ଖଣ୍ଡେ ଖଣ୍ଡେ ପାନ ଖାଇଲୁଁ । ମୁଁ ତଳକୁ ଯାଇ ବାବୁମାନଙ୍କୁ ବିଦା କରିବି ବୋଲି ବାହାରୁଛି, ନୀଳକଣ୍ଠ ବାବୁ କହିଲେ, "ଆରେ, ସବୁ ହେଲା ଯେ, 'ସତର' ସମସ୍ୟାଟାର ତ ସମାଧାନ ହେଲାନାହିଁ । ତୋ ରସିଦ ବହିଟା ଦେଲୁ ।" 'ନବଭାରତ' ରସିଦ ଚିନିଖଣ୍ଡ ଓଲଟ ପାଲଟ କରି ସେ ଠିକଣାଗୁଡ଼ାକ ଚନଖିକରି କହିଲେ, 'ମୋତେ ସମାଧାନ ଦିଶୁଛି, ଚିନୋଟିଯାକ ଗ୍ରାହକ ସେହି ଗୋଟିଏ ସ୍ଥାନରେ । ହଠାତ୍ ବାବୁ ସେଠାରେ ପହଞ୍ଚି ଚିନୋଟି ଗ୍ରାହକ କରି ସେଇ ଚିନିଜଣଙ୍କୁ ଖେଳରେ ଆଗ୍ରହୀ କରିବାର ତ ସଂଭାବନା ଅଛି ? କେବଳ ଏତିକି ପ୍ରଶ୍ନ, ଭୋଜନ ହେଲା କ'ଣ ?' 'ଆଉ ସେ କଥା କାହିଁକି ଉଠାଉଛନ୍ତି' ବୋଲି ଅଭିଯୋଗ କଲି, କିନ୍ତୁ କହୁଁକହୁଁ ସବୁ କଥା ପଡ଼ିଗଲା ; କ୍ଷୀରମୋହନ ସେରକ କଥା ପର୍ଯ୍ୟନ୍ତ । ଯଦୁମଣୀ ବାବୁ ମୋତେ 'ମିଛୁଆ' 'ଗାଲୁଆ' ଉପାଧିରେ ଭୂଷିତ କରିଥାନ୍ତି । ଗୋଟାକ ବେଳେ ଗୋଟିକଠାରୁ ସେରଟି ଯାକ କ୍ଷୀର-ମୋହନ ଖାଇସାରି ଖାଲି ବାଦକୁ ଏତେଗୁଡ଼ାଏ ମାଛ ଓ ପଖାଳ ଖାଇଦେବାରୁ ଅଭିଯୋଗ କରି ମୋତେ ଅସୁର ବୋଲି ସେଦିନୁ ପ୍ରଥମେ ନାମକରଣ କଲେ । କିନ୍ତୁ ତାଙ୍କ ଅଭିଯୋଗ ରହିଲାନାହିଁ । ପଣ୍ଡିତଜୀ ରାଏ ଦେଲେ, 'କ୍ଷୀରମୋହନ ଯେପରି

ବାଦକୁ ଉଦରସ୍ଥ ହେଲେ, ପଖାଳ ମାଛ ସେହିପରି ଉଦରସ୍ଥ ହେଲେ ଏବଂ ସେଇ ବାଦକୁ 'ନବଗ୍ରହ' ବୁଲୁଛି । ବାଦ ଏ ଲୋକଙ୍କର ସ୍ୱଭାବଜ ହୋଇଥିବାରୁ ଅପରାଧ ବୋଲାଇ ପାରିବ ନାହିଁ । ଅପରାଧ କ'ଣ ଓ କ'ଣ ନୁହେଁ ତା' ଉପରେ ରହିଲା ଆଲୋଚନା ।

ସେ ଦିନଗୁଡ଼ିକ ମନେ ପକାଇଲେ ଅମୁଛୁଁକ ଲାଗୁଛି । ପଣ୍ଡିତ ନୀଳକଣ୍ଠଙ୍କର ସେଇ ବେଳଟା ମଧ୍ୟାହ୍ନ ବୋଲି ମୁଁ ମନେକରେ । ତାଙ୍କର ପ୍ରତ୍ୟେକ କଥା ଗାଳି ମଧ୍ୟ ସେତେବେଳେ ବହୁମୂଲ୍ୟ ବୋଲି ମୁଁ ମନେ କରୁଥାଏଁ । ତାଙ୍କର କଥାରେ ଉତ୍ସାହିତ ହୋଇ ମୁଁ ସେତେବେଳେ ଯେଉଁ ପରିଶ୍ରମ କରିପାରୁଥିଲି, ତାହା ମନେପଡ଼ିଲେ ବିସ୍ମୟରେ ଯେ, ନେତୃତ୍ୱ ମିଳୁଥିଲେ ଆଜିକାଲିର ପିଲେ ମଧ୍ୟ ତାଙ୍କ ପାରିବାପଣ ଦେଖାଇ-ପାରନ୍ତେ ।

ବର୍ଷଟି ପୂରିବା ବେଳକୁ ଆମର ତେର କଷ୍ଟକରେ ଟାଣ ହୋଇଗଲାଣି । ପ୍ରେସ୍‌ରେ କାମ ଓ ଲୋକସଂଖ୍ୟା ବଢ଼ିବାରୁ ଆଉ ଗୋଟିଏ ବଡ଼ ଘରର ଅନ୍ୱେଷଣରେ ଥାଉଁ । ମୋର ଭାଗ୍ୟକୁ କର୍ମଚାରୀଙ୍କର ଯେଉଁ ସହଯୋଗ ଓ ଆନୁଗତ୍ୟ ମିଳିଲା ତା ଫଳରେ ସବୁ କାମକୁ ଧ୍ରୁବ ହେଉଥାଏ । ୧୯୩୫ରେ ଶୀତଦିନେ ଛୁଟି ସମ୍ମିଳନୀର ସଭାପତି ଅଭିଭାଷଣ ଛପା-ହେବାକୁ ଆସିଲା ସନ୍ଧ୍ୟାବେଳକୁ । ତହିଁ ଆରଦିନ ସକାଳ ୯ଟାରେ ସମ୍ମିଳନୀ । ଇଂରାଜି ଲେଖା ୩୨ ପୃଷ୍ଠାରେ ହେଲା ୨୪ପୃଷ୍ଠା । ଗନ୍ଧର୍ବ ବେହେରା ବୋଲି ହେଡ୍ କଂପୋଜିଟର ହାତକୁ କପିଟା ବଢ଼ାଇଦେଲି । ସଂପାଦକଙ୍କୁ କହିଲି, ଯଦି ଛପା ହୋଇ ନ ପାରିବ, ତେବେ ୪ଟା କପି ମୁଁ ସକାଳ ସୁଦ୍ଧା ଟାଇପ୍ କରିଦେବି । ଏତିକରେ ଗନ୍ଧର୍ବ ବାହାରକୁ ନେଇଥିବା ସାଇକେଲ ଭିତରେ ଥୋଇଲା, କହିଲା ଆପଣ ଯେବେ ଟାଇପ କରିଦେବେ, ଆମେ ଚାରିଜଣ ଟାଇପ୍ ଖଞ୍ଜି ଦେଇପାରିବୁ ନାହିଁ ? ଛପାଖର୍ଚ୍ଚ ଅଠର ଟଙ୍କା । କଂପୋଜିଟର ଓ ଛପାବାଲା ପାଇଲେ ଛ'ଟଙ୍କା ; ରାତିରେ ସମସ୍ତଙ୍କପାଇଁ ବ୍ୟସ୍ତ ହେଲା ପ୍ରାୟ ତିନିଟଙ୍କା, ଅଳୁଅ ଇତ୍ୟାଦି'ଟଙ୍କା ଟାଏ । ଆଠଟି ଟଙ୍କା ପ୍ରେସ୍‌କୁ ମିଳିଲା । ସେତେବେଳେ ରାତିକୁ ଆଠଟଙ୍କା ଲାଭ ! କମ୍ ନୁହେ ।

ମୋର ଗାଲୁ ଫଳରେ ଗୁଡ଼ାଏ ଟଙ୍କା ବୃଥାରେ ଗଲା ବୋଲି ନୀଳକଣ୍ଠ ବାବୁଙ୍କ-ଠାରୁ ବହୁବାର ଅଭିଯୋଗ ଶୁଣିଛି ; ଅଭିଯୋଗ ପ୍ରାୟ ଭର୍ତ୍ସନା ଆକାରରେ ପ୍ରକାଶ ପାଏ । ଏହାର ମାତ୍ରା ବଢ଼ିଗଲେ ଦାଣ୍ଡକୁ ଶୁଭିଲା ପରି ପାଟି ଶୁଭେ । ତାଙ୍କର ଅନେକ ଅଭିଯୋଗ ପରି ଏଇଟା ସତ୍ୟ । ଜାଣିଲି ବେଳକୁ ଆଉ ଏପାଖ ସେପାଖ ହେବାକୁ ମନ ହେଲାନାହିଁ । ଆମେ ନବଯୁଗର ଆକାର ଡବଲ୍ କ୍ରାଉନ୍ ଚାରିପେଜ—୮୦ ପୃଷ୍ଠା କଲୁଁ । ଆମର ଛପା ହେଲା ଭଲ ହ୍ୱାଇଟ ପିଣ୍ଟ ଓ ଆଣ୍ଟିକ କାଗଜରେ । 'ସହକାର' ଛପା ହେଉଥାଏ, ନ୍ୟୁଜ ପ୍ରିଣ୍ଟ କାଗଜରେ ; ସବୁବେଳେ ୮୦ପୃଷ୍ଠା ବି ବାହାରେ ନାହିଁ । ତାର ବାର୍ଷିକ ମୂଲ୍ୟ ଚାରିଟଙ୍କା, ଆମର ସେଇ ହୋଇଥାଲା । ଶସ୍ତାଘୋଷୁ ପାଠକ

ଆକର୍ଷଣ କରିବାର ଭ୍ରାନ୍ତିରେ ମୁଁ ଅକାଶରୁ ତୋଳାଳ ପରି ହିସାବ କରିଦେଇ ଠିକକରି-ଦେଲି ଯେ ଚଳିଶଟଙ୍କା ଗୁରିଅଣା ବାର୍ଷିକ ଗ୍ରାହକ ହେଲେ ଯଥେଷ୍ଟ । ସେଇ ଅନୁସାରେ ବିଜ୍ଞାପନ ବାହାରିଗଲା । ପରେ ବୁଝିପାରିଲି, ଅମ ଗ୍ରାହକମାନେ ଚଳିଶଟଙ୍କା ଗୁରିଅଣା ଓ ଗୁରିଟଙ୍କାରେ ପାର୍ଥକ୍ୟ ଦେଖିବା ଲୋକ ନୁହନ୍ତି । କିନ୍ତୁ ବହୁ ବନ୍ଧୁଙ୍କର ପରାମର୍ଶ ସତ୍ତ୍ୱେ ଗ୍ରାହକ ଆଉ ବଢ଼ାଇ ପାରିଲି ନାହିଁ ।

ମୁଁ ପ୍ରଥମେ ଯେଉଁ ହିସାବ କରିଥିଲି ସେଥିରେ ଧରିନେଇଥିଲି ଯେ ଗ୍ରାହକ-ମାନେ ଗ୍ରାହକ ଦେବେ । ଏବଂ ବିନା ମୂଲ୍ୟ ବିତରଣରେ ସଂଖ୍ୟା ସୀମାରେ ରହିବ । ସହଜରେ ଗ୍ରାହକ ଗ୍ରାହକ ଦେବା ମାସିକ ପତ୍ର ଗ୍ରାହକଙ୍କ ଧର୍ମ ନୁହେଁ ବୋଲି ଜାଣିବାକୁ ବର୍ଷେ ଲାଗିଲା ନାହିଁ । ରାଜନୀତି ଗନ୍ଧ ବାଜିଥିବା ଲୋକେ ଖବରକାଗଜ ବା ମାସିକପତ୍ର ବାହାର କଲେ, ମାଗଣାରେ ବହୁତ କାଗଜ ଦେବାକୁ ପଡ଼େ । ନିଜ ଦଳବାଲା ଯଦି କାଗଜ ବିକିବାର ଏଜେଣ୍ଟ ହେଲେ, ତାଙ୍କଠାରୁ କାଗଜର ଦାମ ଆଦାୟ କରିବା ସହଜ ହୁଏ ନାହିଁ ।

ଯାହାହେଉ, 'ନବଭାରତ' ସ୍ୱାବଲମ୍ବୀ ନ ହୋଇପାରିଲେ ବି ଅମର ମନରେ କ୍ଷୋଭ ନ ଥାଏ । ପ୍ରେସ ଅମକୁ ଓ ନବଭାରତକୁ ଚଳାଇ ନେଉଥାଏ । ମୋତେ ଜଣେ ଯୋଗ୍ୟ ମନମାଫି ସହକାରୀ ମିଳିଗଲେ, ମୁକୁନ୍ଦ ମିଶ୍ରେ । ଏଭଳି ଦକ୍ଷ ଓ କର୍ମନିଷ୍ଠ ଲୋକ ମୁଁ ଖୁବ୍ କମ୍ ଦେଖିଛି । ଶ୍ରୀ କୃଷ୍ଣଚନ୍ଦ୍ର କର ଦରକାରୀ ପ୍ରେସରେ ଗୁକିରି ପାଇ-ସିବାରୁ ଗୁଲିଗଲେ । ଅମକୁ ମିଳିଗଲେ କବି, ସାହିତ୍ୟିକ ଓ ବହୁଭାଷାର ପ୍ରୁଫ୍ରିଡର ୬ ପଣ୍ଡିତ ଭୁବନେଶ୍ୱର ମିଶ୍ରେ । ବଳଦେବ ଦାସେ କରିଙ୍କ ପାଖରୁ ସ୍ମାଙ୍କପାଖକୁ କପି ହୋଲଡର ହୋଇ ଆସିଲେ । କିନ୍ତୁ ଆଜିକାଲିର ପ୍ରୁଫ୍ରିଡରଙ୍କ ତୁଳନାରେ ସ୍ୱେ ଢେର ଉଚ୍ଚସ୍ତରର କର୍ମୀ ।

ମୋତେ ପ୍ରେସ କାମରେ ଆଗପରି ଏତେ ଖଟିବାକୁ ପଡ଼ିଲାନାହିଁ । ମଝିରେ ମଝିରେ ପଇସା ଯୋଗେଇଦେଲେ ମୋ କାମ ସରିଲା । ମୋତେ ବେଳ ମିଳିଲା ରାଜନୀତିରେ ଅଧିକ ଅଂଶ ଗ୍ରହଣ କରିବାକୁ ।

ପ୍ରେସ ଆରମ୍ଭ ହେଲାଦିନୁ ଆମ ପ୍ରେସ କଂଗ୍ରେସ ରାଜନୀତିର ଗୋଟିଏ ଆଡ୍ଡା ହୋଇ ଯାଇଥିଲା । ଗଞ୍ଜାମ ଓ ପୁରୀ କଂଗ୍ରେସ ବାଲାଙ୍କର ତ ଆମ ପ୍ରେସ ହୋଇଗଲା ହେଡ୍କ୍ୱାର୍ଟର । କଟକ ଓ ବାଲେଶ୍ୱରର କେତେଜଣ ସ୍ଲେଟବଡ଼ କଂଗ୍ରେସବାଲା ମଧ୍ୟ ଆମ ଗୋଷ୍ଠୀରେ ମିଶିଗଲେ । ୧୯୨୧ରୁ ତ ଓଡ଼ିଶା କଂଗ୍ରେସ ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲା । ପୁରୀ କଂଗ୍ରେସର ଅଭ୍ୟର୍ଥନା ସମିତି ଗଢାହେଲାବେଳେ ଏ ଦୁଇ ଗୋଷ୍ଠୀ ହୋଇଗଲେ ଦୁଇଫାଙ୍କ । କଟକ ଓ ବାଲେଶ୍ୱର ଜିଲା ଯୋଡ଼ିକ ଛାଡ଼ିଦେଲେ ଆଉ ସବୁ

ଆମ ପକ୍ଷେ ଚନ୍ଦା ପଢ଼ୁଥାଇଥାନ୍ତି । କୋରାପୁଟ ସେତେବେଳେ ନୂଆ ନୂଆ ହୋଇ କଂଗ୍ରେସ ରାଜନୀତରେ ପଶୁଥାଏ ; ସେ ମଧ୍ୟ ଗଞ୍ଜାମର ପ୍ରଭାବରେ ଆମ ପକ୍ଷିଆ ହୋଇଥାନ୍ତି ।

୧୯୩୫ ମଧ୍ୟଭାଗକୁ ସମଗ୍ର ଓଡ଼ିଶା କଂଗ୍ରେସକୁ ଘୋଟିଗଲା ନିର୍ବାଚନ ରାଜନୀତି । ୬ଟି ଜିଲ୍ଲାର ଗୋଟିଏ ଗ୍ରେଟିଆ ପ୍ରଦେଶ ଆମପାଇଁ ମଂଜୁର ହୋଇଯାଇଥାଏ ଏବଂ ପ୍ରାଦେଶିକ ସ୍ୱାଧୀନତା ଭାରତକୁ ମିଳିବାର ବି ସ୍ଥିର ହୋଇଯାଇଥାଏ । ୧୯୩୭ରୁ ସ୍ୱତନ୍ତ୍ର ପ୍ରଦେଶର ବ୍ୟବସ୍ଥା ଦଶ ଗଢ଼ା ହୋଇ ମନ୍ତ୍ରୀମଣ୍ଡଳଦ୍ୱାରା ପ୍ରାଦେଶିକ ଶାସନ ଚାଲିବାର ଚୂଡ଼ାନ୍ତ ନିଷ୍ପତ୍ତି ବ୍ରିଟିଶ୍ ପାର୍ଲିମେଣ୍ଟ କରିଦେଇଥାନ୍ତି । ୧୯୩୭ ଆରମ୍ଭରେ ନିର୍ବାଚନ । ସେଥିପାଇଁ ଆୟୋଜନ ୧୯୩୫ର ଏପ୍ରିଲ୍ ମେ'ରୁ ଆରମ୍ଭ ହୋଇଗଲା ।

ସେତେବେଳକୁ ଭୋଟର ତାଲିକା ଛପାହେବା ଆରମ୍ଭ ହୋଇଯାଇଥାଏ । ସେତେବେଳେ ଭୋଟର ତାଲିକା ଛପାଖର୍ଚ୍ଚ ପୃଷ୍ଠାକୁ (ଫୁଲ୍‌ସ୍କ୍ୟାପ୍ ଅଧା, ଗୋଟିଏ ପାଖ ଛପା) ଦେଢ଼ଟଙ୍କା । ସେତେବେଳେ ତାହା କମ ଲାଭଜନକ ନ ଥିଲା । ପ୍ରାୟ ଦୁଇହଜାର ପୃଷ୍ଠା ଭୋଟର ତାଲିକା ମୁଁ ଯୋଗାଡ଼ ଯନ୍ତ୍ର କରି ପାଇଥାଏ । ଆଜିକାଲି ଯୋଗାଡ଼ ଯନ୍ତ୍ର ବୋଇଲେ ଯାହା ବୁଝାଏ ସେତେବେଳେ ସେକଥା ନ ଥିଲା । ଇଲେକ୍ସନ ଅଫିସରଙ୍କ ପାଖକୁ ୩ । ୪ଥର ଯାଇ ପେଟମୁଣ୍ଡ ଦେଖାଇବାରେ ତାହା ମିଳିଗଲା । ଆମ ମାମୁଲି କାମ ସଙ୍ଗେ ଏତକ ମିଶିଯିବାରୁ ମୁଁ ପ୍ରେସ୍‌ପାଇଁ ଚିନ୍ତା କରିବାରୁ ଏକାବେଳକେ ମୁକ୍ତ ହୋଇଗଲି ବୋଲି କହିଲେ ଚଳେ । ପଇସା ପାଇଁ ମୁଁ ଜୀବନରେ କେତେବେଳେ ଲାଳସୀ ହୋଇନାହିଁ । ଚଳିଲେ ହେଲା । ଚଳିବା ତ ସେତେବେଳେ ଅତି କମ୍ ବ୍ୟୟସାପେକ୍ଷ । କଂଗ୍ରେସ ବାଲା ବୋଇଲେ ସେତେବେଳେ ଖୁରାକ ମାମୁଲି ଓ ପିନ୍ଧା ଦେଢ଼ ଲୁଗା ଉପରେ ଖଣ୍ଡେ କାମିଜ—ସେ ପୁଣି ହାଫ୍ । ତାହାର ବ୍ୟବସ୍ଥା ପ୍ରେସ୍‌ରୁ ସ୍ୱଚ୍ଛନ୍ଦରେ ହୋଇଯିବାରୁ ମୁଁ ପୁରା ନିଶ୍ଚିନ୍ତ । ମୁଣ୍ଡ ଉଶ୍ୱାସ ହେବାରୁ ବହୁତ ବଡ଼ବଡ଼ କଥା ମୁଣ୍ଡରେ ଚକ୍ରୁଥାଏ ।

ଏଇ ସମୟରେ ମୁଣ୍ଡରେ ଢୁକିଲା, ନୀଳକଣ୍ଠ ବାବୁ ଗୋଦାବରୀଶ ବାବୁଙ୍କୁ ମିଳେଇ ଦେବି । ୧୯୨୧ରେ ଏମାନଙ୍କୁ ଚହ୍ନିବା ଦିନୁ ଦେଖିଆସିଛୁ ଏ ଦୁହିଁଙ୍କର କଥାବାର୍ତ୍ତା ନ ଥାଏ । ନୀଳକଣ୍ଠ ବାବୁଙ୍କଠାରୁ ଶୁଣିଥାଏ ପଢ଼ିଲାବେଳେ ଓ ପ୍ରଥମେ ସତ୍ୟବାଦୀ ସ୍କୁଲ ଆରମ୍ଭ କଲାବେଳେ ଏ ଦୁହିଁଙ୍କର ମନ ମିଳୁଥିଲା । ଗୋଦାବରୀଶ ବାବୁ ଏମ୍. ଏ. ଉପରେ ବି. ଟି. ପାସ୍ କଲା ପରେ ତାଙ୍କର ଅହଂକାର ଯୋଗୁଁ ବା ନୀଳକଣ୍ଠ ବାବୁଙ୍କ ମାନମନ୍ୟତା ଯୋଗୁଁ ଦୁହେଁ ଅପଢ଼ ହେଲେ ସେ ହେଲାପରି ହୋଇଗଲେ । ନୀଳକଣ୍ଠ ବାବୁ ହେଡ଼ମାଷ୍ଟ୍ର ଥାଇ ସେ ସତ୍ୟବାଦୀରେ ତାଙ୍କ ଅଧୀନସ୍ଥ ଶିକ୍ଷକ ହୋଇ ରହିବେ ନାହିଁ ବୋଲି ଅଡ଼ିବସିଲେ । ତାଙ୍କପାଇଁ ଦାସେ ଆପଣେ ଚକ୍ରଧରପୁରରେ ସ୍କୁଲ ସ୍ଥାପନା କରିଦେଲେ । କୃପାସିଂଧୁ ମିଶ୍ରଙ୍କୁ ତା ପରେ ଧରିଲା ସେଇ ରୋଗ । ନୀଳକଣ୍ଠ ବାବୁ କଲିକତା ବିଶ୍ୱବିଦ୍ୟାଳୟକୁ ଅଧ୍ୟାପକ ହୋଇ ଗଲେ, କୃପାସିଂଧୁ ବାବୁ ହେଲେ

ଆମର ହେଡ଼ମାଷ୍ଟ୍ର । ୧୯୨୧ ଆରମ୍ଭରେ ନୀଳକଣ୍ଠ ବାବୁ କଲିକତା କାମ ଛାଡ଼ିଲା ପରେ ସମ୍ବଲପୁରରେ ଜାତୀୟ ବିଦ୍ୟାଳୟ ସ୍ଥାପନ କଲେ ସିନା ସତ୍ୟବାଦୀ ସ୍କୁଲକୁ ଫେରିଲେ ନାହିଁ । ସେତେବେଳେ କଂଗ୍ରେସ ପ୍ରଚାର ବ୍ୟାପକ କରିବାପାଇଁ ଏହା କରାଗଲା ବୋଲି ଦାଣ୍ଡରେ କହିଲେ ବି ଆମେ ସେସବୁ ସତ୍ୟବାଦୀରେ ଥାଉ ସେମାନେ ଭଲକରି ଜାଣିଥାଉଁ ଯେ କୃପାସିନ୍ଧୁ ବାବୁଙ୍କର ନୀଳକଣ୍ଠ ବାବୁଙ୍କ ସଙ୍ଗେ ପଡ଼ୁନଥାଏ । କୃପାସିନ୍ଧୁ ବାବୁ ତ ଅକାଳରେ ଚାଲିଗଲେ, ଗୋଦାବରୀଶ ବାବୁ ବାଣପୁରରେ ସିନା ରହିଲେ, ସତ୍ୟବାଦୀ ମାଟି ଆଉ ମାଡ଼ିଲେ ନାହିଁ । ବାଣପୁରରେ ଟୋଦାବରୀଶ ବାବୁ ବେପାର କରିବାକୁ ମନ ବଳାଇଲେ । କିନ୍ତୁ ତାଙ୍କର ପ୍ରିୟ ଛାତ୍ର ସୁଦର୍ଶନ ପାଣିଗ୍ରାହୀଙ୍କ ଦୋଷ ହେଉ ବା ବ୍ୟବସାୟ ବୁଦ୍ଧିର ଅଭାବ ଯୋଗୁଁ ହେଉ, ଦୁହେଁଯାକ ଜେଲ ଗଲେ । ନୀଳକଣ୍ଠ ବାବୁ ସମସ୍ତଙ୍କ ଆଗେ ଗୋଦାବରୀଶ ବାବୁଙ୍କର ଏଇ ବେପାର ବିଷୟରେ ବହୁତ ଦୁର୍ନାମ କରନ୍ତି ; ଏହା ଗୋଦାବରୀଶ ବାବୁଙ୍କ କାନକୁ ଯାଉଥିବ । ୧୯୩୪—୩୫ ବେଳକୁ ଦୁହେଁ ଘୋର ଶତ୍ରୁ । କଟକ, ବିଶେଷ କରି ପୁରୀର କଂଗ୍ରେସବାଲା କେତେଜଣ ଗୋଦାବରୀଶ ବାବୁଙ୍କୁ ଆମ ଗୋଷ୍ଠୀରୁ ଏକାବେଳକେ ଆଡ଼େଇ ଦେଇଥାନ୍ତି । 'ସମାଜ' କଟକ ଆସିବାଦିନୁ, ବିଶେଷ କରି ଦାସେ ଆପଣଙ୍କ ତିରୋଧାନ ପରେ, ରାଧାନାଥ ବାବୁ ଓ ତାଙ୍କ ସଙ୍ଗେ ଲିଙ୍ଗରାଜ ବାବୁ ପର୍‌ା 'କଟକିଆ' ହୋଇଯାଇଥାନ୍ତି ।

ଗୋଦାବରୀଶ ବାବୁଙ୍କୁ କେମିତି ଆମପଟକୁ ଆଣିବା ବୋଲି ମୋ ମୁଣ୍ଡରେ ଚିକିଲା । ନୀଳକଣ୍ଠ ବାବୁଙ୍କୁ ଏ କଥା ସୂଚାଇବା ଆଗରୁ, କହିଲି ଏବର ଅବସରପ୍ରାପ୍ତ ହାଇକୋର୍ଟ ଜଜ୍ ଶ୍ରୀ ହରିହର ମହାପାତ୍ରଙ୍କୁ । ସେ ଚାଳିଶ ଛାତ୍ର ଓକିଲାତି କରୁଥାନ୍ତି, ଏବଂ ଏବେ ଯେଉଁ ଘରେ ଅଛନ୍ତି ସେ ଘର କିଣିସାରିଥାନ୍ତି । ସେ ସତ୍ୟବାଦୀର ଛାତ୍ର, ମୋ' ଠାରୁ ପାଞ୍ଚକ୍ଲାସ ଓପରର । ମୁଁ କଲେଜରେ ପଶିଲାବେଳକୁ, ତାଙ୍କର ଏମ୍. ଏ. ପରୀକ୍ଷା ଦେଇ କଲେଜରୁ ବାହାରିବା ବେଳ । ତାଙ୍କର ନମ୍ରଜାତି ଢଙ୍ଗଯୋଗୁଁ ସେ ଆମ-ମାନଙ୍କ ସଙ୍ଗେ ଖୁବ୍ ମିଶନ୍ତି । ଦୁଇଜଣଯାକ ଶିକ୍ଷକଙ୍କ ପ୍ରତି ତାଙ୍କର ସମାନ ମାନ୍ୟ ଥିଲେ ହେଁ, ଗୋଦାବରୀଶ ବାବୁଙ୍କର ସେ ମୂଳରୁ ପ୍ରିୟ ଛାତ୍ର—ଇଂରାଜୀ ଉଚ୍ଚାରଣ ଯୋଗୁଁ ହୋଇଥିବ ।

ମୋ କଥା ଶୁଣି ସେ ଆଗ କଥାଟାକୁ ଉଡ଼ାଇଦେଲାପରି ଖୁବ୍ ହସିଲେ ; ସୂର୍ଯ୍ୟ ପଶ୍ଚିମଦିଗରୁ ଉଦୟ ହେବା ଯେପରି ସଂଭବ ନୀଳକଣ୍ଠ ବାବୁ ଓ ଗୋଦାବରୀଶ ବାବୁ ମିଶିବା ସେହିପରି ସଂଭବ ବୋଲି କହିଲେ । ମୁଁ କେବଳ ଘୋଷା ଲଗାଇଥାଏଁ ଯେ, ହରିବାବୁ ଚାହିଲେ ଅସଂଭବ ସଂଭବ ହୋଇଯିବ । ଯାହା ହେଉ ଦୁଇ ଚାରିଦିନ କଥାବାର୍ତ୍ତା ହେବା ପରେ ତାଙ୍କର ମନ ମାନିଲା ଏବଂ ସେ ଯଥାସମ୍ଭବ ଚେଷ୍ଟା କରିବେ ବୋଲି ଅଣ୍ଟା ଭିଡ଼ିଲେ । ମୋତେ ଖାଲି ଏତିକି ସତର୍କ କରାଇଥାନ୍ତି ଯେ, ଗୋଦାବରୀଶ ବାବୁଙ୍କର

ଅନୁକୂଳ ମତ ହେବାବେଳକୁ ନୀଳକଣ୍ଠ ବାବୁ ଯେପରି ଅଡ଼ି ନ ବସନ୍ତୁ ? ଭଗବାନଙ୍କ ଆଶୀର୍ବାଦରୁ ହରିହର ବାବୁଙ୍କ ଆନ୍ତରିକ ଉଦ୍ୟମ ଫଳରେ ଦୁଇ ପଣ୍ଡିତେ ମିଶିଗଲେ । ମୋର ତ ମୂଳରୁ ଗୋଦାବରୀଶ ବାବୁଙ୍କପ୍ରତି ପକ୍ଷପାତିତା ଥାଏ, ସେ ଆମ ସାହିର ଭଣଜା ଓ ଗାଁ ଲେଖାରେ ମୁଁ ତାଙ୍କ ମାମୁଁପୁଅ ଭାଇ, ମୋତେ ୮।୯ବର୍ଷ ହେଲାଦିନୁ ମୁଁ ତାଙ୍କୁ ଚହ୍ନିଥାଏ । ଗୋଦାବରୀଶ ବାବୁ ଓ ନୀଳକଣ୍ଠ ବାବୁ ଏକ ହୋଇଯିବାରେ ମୋର ସବୁଠାରୁ ବଡ଼ ଲାଭ ହେଲା ବୋଲି ମୁଁ ମନେକଲି ।

ତାର ଅଳ୍ପ ଦିନ ପରେ କେନ୍ଦ୍ର ଆସେମ୍ବ୍ଲି କଂଗ୍ରେସ ଦଳର ନେତା, ଭୂଲାଭାଇ ଦେଶାଇ ପଣ୍ଡିତ ନୀଳକଣ୍ଠଙ୍କୁ ଓଡ଼ିଶା ନିର୍ବାଚନ ପାଇଁ ସମସ୍ତ ଆୟୋଜନ କରିବାକୁ ଭାର ଦେଲେ ଏବଂ କେନ୍ଦ୍ର କଂଗ୍ରେସ କର୍ତ୍ତୃପକ୍ଷଙ୍କଠାରୁ ଆଠହଜାର ଟଙ୍କା କରେଇଦେଲେ । ନୀଳକଣ୍ଠ ବାବୁଙ୍କ ଦାୟିତ୍ୱ, ସେ କଂଗ୍ରେସ ପ୍ରାର୍ଥୀ ବାଛିବେ ଏବଂ ସେମାନେ ଯେପରି ନିର୍ବାଚନରେ ଜିଣିବେ ତାହାର ଇନ୍ତଜାମ କରିବେ ।

## ନିର୍ବାଚନ ପାଇଁ ପ୍ରାର୍ଥୀ ସଂଗ୍ରହ

୧୯୩୨ ଆନ୍ଦୋଳନ ପର କଥା । ପ୍ରତି ଆନ୍ଦୋଳନ ପରେ କଂଗ୍ରେସରେ କିମିତି ଗୋଟାଏ ଅବସାଦ ଆସେ । ୧୯୨୧ ପରେ ୧୯୨୪ ବେଳକୁ ସେହିପରି ହୋଇଥିଲା । କଂଗ୍ରେସ ବାଲାଙ୍କ ଭିତରେ ବଡ଼ ଦଳେ ବାହାରିଗଲେ ରାଜନୀତିରୁ ଅଲଗା ରହି ଗଠନ-ମୂଳକ କାର୍ଯ୍ୟ କରିବାକୁ । ୧୯୩୦ ଆନ୍ଦୋଳନ ପରେ ୧୯୩୨ ବେଳକୁ ସେହିପରି ହୋଇଥିଲା । ୧୯୩୨ ବେଳକୁ କଂଗ୍ରେସ ସଂଗଠନ ଅତି ଦୁର୍ବଳ । ୧୯୩୨ ଆନ୍ଦୋଳନ ମହାତ୍ମା ଗାନ୍ଧୀଙ୍କ ଆଡ଼ୁ ନ ହୋଇ ସରକାରଙ୍କ ଆଡ଼ୁ ହେଲା ବୋଲି କହିଲେ ଚଳେ । ୧୯୩୫ ବେଳକୁ କଂଗ୍ରେସ ମୁମୂର୍ଷୁ । ଆମ ଓଡ଼ିଶାରେ ତ ମହତାବ ବାବୁଙ୍କ ପରି କେତେଜଣ ବିଶ୍ୱାସ କରିପାରୁନଥାନ୍ତି ଯେ, କଂଗ୍ରେସ ଓଡ଼ିଶା ଆସେମ୍ବ୍ଲିରେ ସଂଖ୍ୟା-ଗରିଷ୍ଠତା ହାସଲ କରିବ । ସେମାନେ କଳ୍ପନା ଜଳ୍ପନା କରୁଥାନ୍ତି, ବେକଂଗ୍ରେସ ବାଲାଙ୍କ ସଙ୍ଗେ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିବେ ।

ନୀଳକଣ୍ଠ ବାବୁଙ୍କ ସାହସ ଆଉ କାହାରି ନ ଥାଏ । ହାତରେ ପଇସା ପଡ଼ିଯିବାରୁ ଏ ସାହସ ବହୁଗୁଣିତ ହୋଇଯାଇଥାଏ, ପ୍ରାର୍ଥୀ ମିଳିବେ ଓ ଜିଣିବେ । ଖୁବ୍ ଲାଗିଲାଗି ସେ ୩୬ଜଣଙ୍କୁ ଠିଆ ହେବାକୁ ମଙ୍ଗାଇଲେ । ଅବଶ୍ୟ ବାଲେଶ୍ୱରର ପ୍ରାର୍ଥୀ ବାଛିବା ଓ ସେମାନଙ୍କ ପାଇଁ ପ୍ରଚାର କରିବା ନୀଳକଣ୍ଠ ବାବୁଙ୍କ ହାତରେ ନ ଥିଲା । ମହତାବଙ୍କର ନୀଳକଣ୍ଠ ବାବୁଙ୍କ ପ୍ରତି ଭାବ, ମୁଣ୍ଡି ଶିଳପୁଆର କାତଘଷ୍ଟା ପ୍ରତି ଯେଉଁ ଭାବ । ସେ ଅଡ଼ିବସିଲେ ଯେ, ବାଲେଶ୍ୱରର ପ୍ରାର୍ଥୀ ବାଛିବାରେ ନୀଳକଣ୍ଠ ବାବୁ ହସ୍ତକ୍ଷେପ କରିବେ

ନାହିଁ ଓ ପ୍ରସ୍ତରରେ ବାଲେଶ୍ୱରର ଭୂମି ମାଡ଼ିବେ ନାହିଁ । ବାଲେଶ୍ୱରର ପ୍ରାର୍ଥୀ ସେ ବାଛିବେ, ଏବଂ ସେମାନଙ୍କୁ ଜଣାଇବାର ଦାୟିତ୍ୱ ସେ ନେବେ । ନୀଳକଣ୍ଠ ବାବୁ ଆଗ ଏହା ଶୁଣି ଚଟିଗଲେ, କିନ୍ତୁ ମୋର ବାରମ୍ବାର ଅନୁରୋଧରେ ମହତାବଙ୍କୁ ତାଙ୍କ ରାସ୍ତାରେ ଛାଡ଼ିଦେଲେ । ଗୋଦାବରୀଶ ବାବୁ ମୋ ସଙ୍ଗେ ମିଶିଯାଇନଥିଲେ ମୁଁ ଏକୁଟିଆ ପାରି ନ ଥାନ୍ତି । ଯଦୁମଣି ବାବୁ ହେଉଛନ୍ତି ମଧ ପାଳଧରିଲେ ଯେ ବାଲେଶ୍ୱର ଛାଡ଼ିଦେଲେ ଆଉ ପାଞ୍ଚଟି ଜିଲ୍ଲା ଅଛି । ନୀଳକଣ୍ଠ ବାବୁ ଲଗିଗଲେ, ଏହି ପାଞ୍ଚଟା ଜିଲ୍ଲାରେ ବି ସଂଖ୍ୟା-ଗରିଷ୍ଠତା ହୋଇଯିବ ।

ଏଥର ଆରମ୍ଭ ହେଲା ପ୍ରାର୍ଥୀ ସଂଗ୍ରହ କରିବା । ପ୍ରଥମେ ସେ ଓ ମୁଁ ଗଲୁଁ ସମ୍ବଲପୁର । ସମ୍ବଲପୁର ଜିଲ୍ଲାରୁ ତିନିଜଣ ନିର୍ବାଚିତ ହେବାର କଥା । ବନ୍ଧୁମାନଙ୍କ ସଙ୍ଗେ ଆଲୋଚନା କରି ସ୍ଥିର ହେଲା ସଦରରୁ ଠିଆ ହେବେ ବୋଧରାମ ବାବୁ । ୧୯୨୧ରୁ ପଣ୍ଡିତ ନୀଳକଣ୍ଠଙ୍କର ବୋଧରାମ ବାବୁଙ୍କ ସଙ୍ଗେ ଭଲ ପରିଚୟ, 'ସେ କହିଲେ ବୋଧରାମ ନିଶ୍ଚୟ ରାଜି ହେବ' ଏହି ଦୃଢ଼ ବିଶ୍ୱାସରେ ନୀଳକଣ୍ଠ ବାବୁ ଆମେ ଯାଇ ପହଞ୍ଚିବାର ପରଦିନ ସଂଧ୍ୟାବେଳେ ବୋଧରାମ ବାବୁଙ୍କ ଦୁଆରେ ଉଠିଲେ, ମୁଁ ସାଙ୍ଗରେ ଥାଏ । ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ହେବା କଥା ଶୁଣିବା ମାତ୍ରେ ବୋଧରାମ ବାବୁ ଅଗ୍ନି ଶର୍ମା ହୋଇଗଲେ । ୧୯୨୧ ରେ ତାଙ୍କର କଂଗ୍ରେସ ପ୍ରତି ଯେଉଁ ଅନୁରକ୍ତି ଥିଲା ତାହା ତାଙ୍କର ପୁରାପୁରି ଛାଡ଼ି ଯାଇଥାଏ । ସେ ବିଦେଶୀ ଲୁଗା ପିନ୍ଧିଥାନ୍ତି । ଅତି ପତଳା କାମିଜ୍ ଖଣ୍ଡେ ଲଗାଇଥାନ୍ତି । ସ୍ୱାଙ୍କୁ କାହିଁକି କୁହାହେଉଛି ବୋଲି ମୁଁ ମନେମନେ ବିରକ୍ତ ହେଉଥାଏ । କିନ୍ତୁ କାହାକୁ କିଛି ନ କହି ତୁନି ଥାଏ । ନୀଳକଣ୍ଠ ବାବୁ ଟିକିଏ ବେଶୀ ବଳାଇ-ବାରୁ ବୋଧରାମ ବାବୁ ଅତି ଅଭଦ୍ରଭାବରେ ଘରୁ ବାହାରିଯିବାକୁ ନୀଳକଣ୍ଠ ବାବୁଙ୍କୁ କହିଲେ । ନୀଳକଣ୍ଠ ବାବୁ ଚଡ଼କରି ଉଠିଗଲେ, ଯାଉ ଯାଉ କହିକହି ଗଲେ, 'ଆରେ ! ମିଛରେ ଅସ୍ଥାନରେ ଆସି ପ୍ରଥମଟାରୁ ପହଞ୍ଚିଗଲେ ; ଘୁଷୁରିକୁ ପାଚିଲାକଦଳୀ କୁଆଡ଼ୁ ସୁଆଦ ଲାଗିବ ?'

ଘରୁ ଛାଡ଼ିବାରେ ମୋର ମନରେ ଗୋଟାଏ ଜିଦ୍ ହୋଇଗଲା । ସ୍ୱାଙ୍କୁ ନିଶ୍ଚୟ କଂଗ୍ରେସ ପ୍ରତିଜ୍ଞା ପତ୍ର ଦସ୍ତଖତ କରାଇବି, ଏବଂ ପ୍ରାର୍ଥୀ ହେବାକୁ ରାଜି କରାଇବି । ନୀଳକଣ୍ଠ ବାବୁଙ୍କୁ ବସାକୁ ପଠାଇଦେଇ ମୁଁ ବୋଧରାମ ବାବୁଙ୍କ ବୈଠକଖାନାକୁ ଫେରିଲି, ଯେଉଁଠି ବସିଥିଲି ସେଠାରେ ତୁନି ହୋଇ ବସିଲି । 'ଆପଣ ଆଉ କାହିଁକି ଆସିଲେ ?' ବୋଲି ସେ ପଚାରିବାରେ ମୁଁ କହିଲି, 'ଆପଣ ମହକିଲମାନଙ୍କ କାମ ସାରନ୍ତୁ । ମୋର ଟିକିଏ କଥାବାର୍ତ୍ତା ଅଛି ।' ଅଧଘଣ୍ଟାକରେ ସମସ୍ତେ ଚାଲିଗଲେ । ଆମର କଥା ପଡ଼ିଲା । ପ୍ରଥମରେ ମୁଁ କହିଲି, 'ବୁଢ଼ାକୁ ଏପରି ଘରୁ ଛାଡ଼ିଦେବା କ'ଣ ଠିକ୍ ହେଲା ?' ତାଙ୍କ ପ୍ରତିକ୍ରିୟାରୁ ଜଣାଗଲା, ସେ ଏ କଥାଟା ଠିକ୍ ହେଲାନାହିଁ ବୋଲି ଆଗରୁ ବିଚାରିସାରିଥାନ୍ତି । ଏଥର ମୁଁ ତାଙ୍କୁ ହାଇକୋର୍ଟ ଦେଖାଇଲି । ସେ ବୁଝିଗଲେ ଯେ,

ନୀଳକଣ୍ଠ ବାବୁ ତାଙ୍କୁ ସେତକ ଶ୍ରଦ୍ଧା କରନ୍ତ ବୋଲି ଏ ପ୍ରସ୍ତାବ ଆଣି ଆସିଥିଲେ । ଲାଗିପଡ଼ି ତାଙ୍କୁ ବୁଝାଇଦେଲି ଯେ, ଫେଲ୍ ହେବାର ସମ୍ଭାବନା ନାହିଁ । କଂଗ୍ରେସ ସରକାର ଗଢ଼ିଲେ ତାଙ୍କର ମନ୍ତ୍ରୀ ହେବା ନିଶ୍ଚିତ । ତାଙ୍କ ମନ ଟିକଏ ଯୋରେଇଲା । ହସିହସି ମୋତେ କହିଲେ, ଆପଣ ଓକିଲ ହୋଇଥିଲେ ଖୁବ୍ ଭଲ କରିଥାନ୍ତେ । ଶେଷରେ ଖଦଡ଼ ମୁଁ ପିନ୍ଧି ପାରିବ ନାହିଁ ବୋଲି କହିଲେ । ମୁଁ ନୀଳକଣ୍ଠ ବାବୁଙ୍କର ଲୁଗାଖଣ୍ଡେ ପିନ୍ଧିଥାଏ । ସେ ଛଅଖଣ୍ଡ ଲୁଗା ଏଥର ଦିଲ୍ଲୀରୁ ଆଣିଥାନ୍ତି । ଆନ୍ଧ୍ର ଲୁଗା, ସେଗୁଡ଼ାକ ସହଜ ଲୁଗାଠାରୁ ଆହୁରି ପତଳା । ମୁଁ ପ୍ରଥମେ ଦେଖିଲାବେଳେ ଏହା ଖଦଡ଼ ନୁହେଁ ବୋଲି ଆଗ ସନ୍ଦେହ କରିଥିଲି । ପାଟସାଲିଆ ସୂତାକଥା ନୀଳକଣ୍ଠ ବାବୁଙ୍କଠାରୁ ଶୁଣିଥିଲି ଏବଂ ବଣାଖାପାଟଣାର କଂଗ୍ରେସ କମିଟି ଯାକୁ ଖଦଡ଼ ବୋଲି ସାର୍ଟିଫିକେଟ୍ ଦେବାର ଦେଖିଥିଲି । ତାହା ବୋଧରାମ ବାବୁଙ୍କୁ କହିଲି ଏବଂ ଏ ଲୁଗା ମୁଁ ଆଣି ଯୋଗାଇବି ବୋଲି ଜବାବ୍ ଦେଲି । ଯାହା ହେଉ, ବୋଧରାମ ବାବୁଙ୍କ ସଙ୍ଗେ ଘଣ୍ଟେଖଣ୍ଡେ ଗପିଲା ପରେ ତାଙ୍କ ଘରେ ଖାଇଲି ଏବଂ ବୋଧରାମ ବାବୁଙ୍କୁ କଂଗ୍ରେସ ମେମ୍ବର କରାଇ ଆସେମ୍ବ୍ଲିକୁ ଠିଆ ହେବେ ବୋଲି ଚିଠି ଖଣ୍ଡେ ଧରି ପ୍ରାୟ ୧୦ଟାକୁ ବସାକୁ ଫେରିଲି । ବୋଧରାମ ବାବୁ ବି ବାହାରୁଥିଲେ ମୋ ସଙ୍ଗେ ଆସି ନୀଳକଣ୍ଠ ବାବୁଙ୍କୁ କହିକରି ଯିବାକୁ । କାଲି ସକାଳେ ଆସିବାକୁ ତାଙ୍କୁ ମନାଇ ଏକୁଟିଆ ଆସିଲି । ବୋଧରାମ ବାବୁଙ୍କ ବ୍ୟବହାରରେ ଦୁଃଖିତ ହୋଇ ନୀଳକଣ୍ଠ ବାବୁ ଖଟରେ ଗଡ଼ଗଡ଼ ହୋଇ ମୋତେ ଅପେକ୍ଷା କରୁଥାନ୍ତି । ଦୁଇଟି ଯାକ ଦସ୍ତଖତ ଦେଖି ତାଙ୍କର ଦୁଃଖ କୁଆଡ଼େ ଗଲା ; କାଲି ବରଗଡ଼ ଯିବା ବାଟେ ବୋଧରାମ ବାବୁଙ୍କ ଘରେ ହାବୁଡ଼ିବାକୁ ସେ ସାଙ୍ଗେ ସାଙ୍ଗେ ରାଜିହେଲେ ।

ତହିଁ ଆରଦିନ ଫଙ୍କିରା ବେହେରା ବୋଲି ଜଣେ 'ସିଦ୍ଧିରସ୍ତୁ ବବର୍ଜିତ' କଂଗ୍ରେସ କର୍ମୀ ବରଗଡ଼ ପାଇଁ ଓ ବୁଢ଼ାସମ୍ବର ଅଞ୍ଚଳ ପାଇଁ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କଠାରୁ ସମ୍ମତ ମିଳିଗଲା । ଫଙ୍କିରା ବେହେରା ନ ହୋଇ ଦୟାନିଧି ମିଶ୍ରେ ବରଗଡ଼ର ପ୍ରାର୍ଥୀତ୍ୱ ନେଇ-ଥିଲେ ପଣ୍ଡିତଜୀ ଖୁବ୍ ଖୁସି ହୋଇଥାନ୍ତେ, କିନ୍ତୁ ଦୟାନିଧି ବାବୁଙ୍କୁ ମଙ୍ଗେଇ ହେଲା-ନାହିଁ ।

ସିଆଡ଼ୁ ସିଆଡ଼ୁ ଗଲୁଁ କୋରାପୁଟ । ସେଠାରେ ତିନିଜଣ ପ୍ରାର୍ଥୀ ହେଲେ । ରାଧାକୃଷ୍ଣ ବିଶ୍ୱାସରାୟଙ୍କ ବ୍ୟତୀତ ବାକି ଦୁଇଜଣଙ୍କୁ ରାଜି କରାଇବାକୁ ଭିଡ଼ ହେଲା । ରାଧାମୋହନ ସାହୁଙ୍କୁ ମଙ୍ଗେଇବା ଅପେକ୍ଷା ସଦାଶିବ ତ୍ରିପାଠୀଙ୍କ ନନାଙ୍କୁ ମଙ୍ଗେଇବା ଅଧିକ ଭିଡ଼ ହେଲା । ସଦାଶିବ ବାବୁଙ୍କ ସଙ୍ଗେ ମୋର ବ୍ରହ୍ମପୁରରେ ଥିଲାବେଳୁ ପରିଚୟ ; ମୁଁ ଆଶା ଅଫିସ୍‌ରେ ଥିଲାବେଳେ ସେ ଟ୍ରେନିଂ ସ୍କୁଲରେ ଛାତ୍ର । ଟଙ୍କା ତିରିଶଟିରେ ଖଣ୍ଡିଏ ସ୍କଲର ପାଇଥାନ୍ତି । କଂଗ୍ରେସରେ ମିଶିଗଲେ ସ୍କଲର ଖଣ୍ଡି ଯିବ ବୋଲି ତାଙ୍କ ନନାଙ୍କର ଭୟ । ନୀଳକଣ୍ଠ ବାବୁ ତାଙ୍କ ଉପରେ ରାଗିଯାଇ ଡାକବଙ୍ଗଳାକୁ ଚାଲିଗଲେ । ମୁଁ ରହି ବୁଢ଼ାଙ୍କୁ ମନାଇଲି ।

ସଦାଶିବ ବାବୁ ତ ପ୍ରଥମରୁ ରାଜି ଥିଲେ । ତାଙ୍କ ନନାଙ୍କୁ ମୁଁ ସଦାଶିବ ବାବୁଙ୍କ ରାଜନୀତକ ଭବିଷ୍ୟତ୍‌ର ଚିତ୍ର ଦେଖାଇଦେବାରେ ସେ ରାଜି ହୋଇଗଲେ ; ସଦାଶିବ ବାବୁ କଂଗ୍ରେସ ପ୍ରାର୍ଥୀ ପତ୍ରରେ ଦସ୍ତଖତ କରି, ପ୍ରାର୍ଥୀ ହେବାକୁ ଆବେଦନ ପତ୍ର ଲେଖିଦେଲେ ।

ସଦାଶିବ ବାବୁଙ୍କ ପିତାଙ୍କ ନାମ ଏତେବେଳକୁ ମନେ ପଡ଼ୁନାହିଁ । ଘର ବିଶ୍ୱର-ବନ୍ତ ଓ ପଣ୍ଡିତ ମଧ୍ୟ । ବ୍ରାହ୍ମଣିଆ କାମରେ ଦକ୍ଷ ଓ ତାଙ୍କର ଦୃଢ଼ ବିଶ୍ୱାସ, ଦେଶର ସବୁଠାରୁ ଜାଣିବା ଶୁଣିବା ଓ ପାରିବାର ଲୋକେ ଦୈହିକ ସୁଖ ସ୍ୱାଚ୍ଛନ୍ଦ୍ୟକୁ ନ ଗୃହିଁ, ଜନତାର ମଙ୍ଗଳ ପାଇଁ ବ୍ରତୀ ହେବା ଦରକାର । ଏଇଠାରେ ମୁଁ ତାଙ୍କୁ ଧରିଲି । ସଦାଶିବ ବାବୁଙ୍କ ଭଳିଆ ମୃଦୁଭାଷୀ, ବିଳାସବ୍ୟସନ-ଶୂନ୍ୟ ଯୁବକମାନେ ହିଁ ଏତେବେଳେ ଆଗକୁ ଆସି ଦେଶର ଶାସନଭାର ନେବା ଉଚିତ ବୋଲି ବୁଝିବାକୁ ତାଙ୍କୁ ବେଳ ଲାଗିଲା ନାହିଁ । ତାଙ୍କର ଏକମାତ୍ର ଆଶଂକା ତାଙ୍କ ପୁଅର ଚାକିରି ଖଣ୍ଡି ( ୩୦ ଟଙ୍କା ଦରମା ) ଚାଲିଗଲେ ଘର ଚଳିବ କେମିତି ? ମୁଁ ଆସେମ୍ବ୍ଲି ମେମ୍ବରଙ୍କ ଦରମା ଓ ମନ୍ତ୍ରୀ ହେବାର ସମ୍ଭାବନା ବିଷୟ ତାଙ୍କୁ ବୁଝାଇଲି । ସେ କହିଲେ 'ଆଗ ନିର୍ବାଚନରେ ଜିଣିଲେ ସିନା ! ମହାରାଜାଙ୍କ ପ୍ରାର୍ଥୀ ନ ଜିଣି ଏ ଜିଣିବେ ? ଆକାଶ କଇଁଆ ଚଳିକା ମାଛ !'

ମୁଁ ପଚାରିଲି, 'ଆପଣମାନେ ଏ ସ୍ଥାନକୁ ପୁରୀ ଜିଲ୍ଲା ବୀରରାମଚନ୍ଦ୍ରପୁରରୁ ଆସିଥିଲେଟି ? ତାହା ଆଜକୁ କେତେ ବର୍ଷ ତଳେ ?'

ସେ କହିଲେ 'ଦେଢ଼ ଶହ ବର୍ଷ ହେବ ପରା !'

ମୁଁ କହିଲି, 'ସେତେବେଳେ ରେଳ ନ ଥିଲା , ଏତେ ଦିନରେ ତ ଆସି ଆସି ଏପଟେ ରାୟଗଡ଼ା ଓ ସାଲୁର୍ ଏବଂ ସେ ପଟେ ରାଇଜାଗ ପର୍ଯ୍ୟନ୍ତ ଆସିଛୁ । ସ୍ୱାଠାରୁ ସେତେବେଳେ ଆହୁରି ଘୋର ଜଙ୍ଗଲ ଥିଲା । ଜଙ୍ଗଲକୁ ନ ଡରି, ଦୂରବାଟକୁ ନ ଡରି ଏବଂ ବାଟର ଖଣ୍ଡ ଓ ବନ୍ୟ ଜନ୍ତୁଙ୍କୁ ନ ଡରି ଯେଉଁମାନେ ସେତେବେଳେ ଆସିଥିଲେ ସେମାନଙ୍କ ଆଶା, ଆଶଂକାକୁ ବଳେଇ ଥିଲା ବୋଲି ସିନା ଆଜି ଆପଣ ଏଠାରେ ଅଛନ୍ତି ଓ ନିରାଳମ୍ବରେ ରହିବାକୁ ଗୃହୁଁଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ କୁହାନ୍ତି, ଦେଢ଼ଶହ ବର୍ଷ ପୂର୍ବର ଆପଣଙ୍କ ପୂର୍ବ ପୁରୁଷଙ୍କ ପରି ଏବେ ଆପଣଙ୍କ ପୁଅ ତାଙ୍କ ଅଣନାତି ପଣନାତିଙ୍କ ପାଇଁ ଏ ଦେଶକୁ ଗଢ଼ିବା ପାଇଁ ନିର୍ବାଚନରେ ଠିଆ ହେବାକୁ ସାହସ କରିବେ । ଆମେ ସବୁ ତ ଚିରକାଳ ଆଶାବାଦୀ, ଆଶଙ୍କାକୁ ମନରେ ସ୍ଥାନ ଦେବା କଣ ଉଚିତ ହେବ ବୋଲି ଆପଣ ବିଚାରୁଛନ୍ତି ?'

ରାତି ପହରକୁ ପଣ୍ଡିତ ତ୍ରିପାଠୀ ମୋ ପ୍ରସ୍ତାବ ଗ୍ରହଣ କଲେ ଏବଂ ସଦାଶିବ ବାବୁ ଆମ ମେଳରେ ପଶିଲେ । ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ମଙ୍ଗାଇବାକୁ ଦରକାର ହେଲା ନାହିଁ ।

ସେ ବହୁତ ଦିନୁଁ ନିଆଁକୁ ଡେଇଁଥିଲେ । ଏଥର ଡେଇଁବାକୁ ତିଆର । ରାଧାମୋହନ ବାବୁ ପ୍ରାଇଭେଟ୍ ଡାକ୍ତର । ନିର୍ବାଚନରେ ହାରିଗଲେ ତ ରୋଗ ଉଭେଇଯିବ ନାହିଁ କି ରୋଗୀ ସକାଳୁ ଦୁଆରେ ଆସି ରୁଣ୍ଡ ହେବା ବନ୍ଦ ହୋଇ ଯିବ ନାହିଁ !

ଓଡ଼ିଶାରେ ନିର୍ବାଚନ ରାଜନୀତିର ପିତା ବୋଲି ମୁଁ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ମନେକରେ । ତାଙ୍କ ସଙ୍ଗେ ଏଥର ୨।୮ ଦିନ ବୁଲିବା ଫଳରେ, ବିଶେଷ କରି ନିଜର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଖାତିର ନ କରି, ନ ଖାଇ ନ ପିଇ ଏପରି କି ସବୁଦିନ ନ ଗାଧୋଇ ସେ ଦିନକୁ ଅଠର ଘଣ୍ଟା ବା ତହିଁରୁ ଅଧିକ ପରିଶ୍ରମ କରି ଏ ନିର୍ବାଚନ ପାଇଁ ପ୍ରାର୍ଥୀ ଠିକଣା କରିବାରେ ଯେଉଁ ଅଦମ୍ୟ ଉତ୍ସାହ ଓ ତେଜରେ ଲାଗିଥାନ୍ତି ତାହା ଦେଖି ମୁଁ ଉଲ୍ଲସିତ ହୋଇଗଲି ଏବଂ ତାଙ୍କ ସଙ୍ଗେ ମିଶି ଅନ୍ୟଙ୍କୁ ପ୍ରୋତ୍ସାହିତ କରିବାରେ ଲାଗିଲି ।

କୋରାପୁଟରେ ଆଉ ମୁହୂର୍ତ୍ତେ ନ କଟାଇ ଏବଂ ପ୍ରାର୍ଥୀ ପତ୍ର ଯାଞ୍ଚ ସରିଲେ ସେ ପୁରା ଦଶଦିନ କୋରାପୁଟରେ ରହି କରିବେ ବୋଲି ଜବାବ୍ ଦେଇ, ପଣ୍ଡିତ ନୀଳକଣ୍ଠଙ୍କ ସଙ୍ଗେ କଟକ ମୁହାଁ ମଟର ଗାଡ଼ିରେ ଦିନକର ରାତି ଅଧରେ । ସାଲୁର ଘାଟି ପାରି ହୋଇ ବାଟ ଭୁଲିଲୁଁ ଯେ ବିଜୟନଗର ରାସ୍ତାରେ ପ୍ରାୟ ୫।୭ ମାଇଲ୍ ଆଗେଇଗଲୁଁ ବିପଜ୍ଜନକ ଢାଲରେ । ଦୈବାତ୍ ପାଞ୍ଚ ସାତଜଣ ଲୋକ ୧୦ । ୧୨ ହଳ ବଳଦ ଧରି ସଡ଼କ ପାଖ ଗୋଟିଏ ତୋଟାରେ ବଧା କରିଥିଲେ । ସେମାନଙ୍କୁ ପଚରା ଉଚରା କରିବାରେ ଆମ ଭୁଲ୍ ଧରା ପଡ଼ିଲା । ଡ୍ରାଇଭର ମଟର ବୁଲାଉଛି, ନୀଳକଣ୍ଠ ବାବୁଙ୍କର ନିଦ ଭାଙ୍ଗିଗଲା । ସେ ପଛ ସିଟ୍‌ରେ ବସିଥାନ୍ତି । ଶେଯ, ଜିନିଷ ପତ୍ର, ମୁଁ ୩ ଦିନ ତଳେ କିଣିଥିବା ନାଲିଆ କଦଳୀ ପୁଆ ଇତ୍ୟାଦି ଭିତରୁ ମୁହଁ ବାହାର କରି ସେ ଝରକା ବାଟେ ଟିକିଏ ମୁହଁ ବାହାର କରି ପାଟିକରି ଦେଲେ, 'କିରେ, କିଏ ପୁଣି ଟ୍ୟୁବ୍ ଫାଟିଲା !' ସେତେବେଳକୁ ମୁଁ ମଟର ଭିତରର ଲାଇଟ୍ ମାରି ଦେଇଥାଏ । ମଟରକୁ ଲାଗି ଠିଆ ହୋଇଥିବା ବଳଦିଆ ଟୋକାଟେ ତାଙ୍କ ଅପରୂପକୁ ଦେଖି ଭେଟଣା ହେଲାପରି ପାଟିଟେ କରିଦେଲାବେଳକୁ ନୀଳକଣ୍ଠ ବାବୁ ତା ଆଡ଼କୁ ମୁହଁ କରି 'ଉ' ବୋଲି ଖଟେଇ ହୋଇ ପଡ଼ିଲେ । ଲାଗିଲା ଗୋଟାଏ ହସ ରୋଳ । ରାତି ଛନଛନ । ଆମ ହସ ଗୁରିଆଡ଼େ ପ୍ରତିଧ୍ୱନିତ ହୋଇ ବଡ଼ ଶବ୍ଦ କରୁଥାଏ । ସେଠାରୁ ଆରମ୍ଭ ହେଲା ଦୁଃଖ ସୁଖ, ପାନଖିଆ, ହିଆ ; ପଣ୍ଡିତଜୀ ବଳଦ ବେପାରୀଙ୍କ ପସରା ବୁଲି ବୁଲି ଟର୍ଚ୍ଚ ଲାଇଟ୍‌ରେ ଦେଖିଲେ ! ବଳଦଙ୍କ ଦାମ୍ ପଚରା ଉଚରା ହେଲା । ଅଧଘଣ୍ଟେ ବୁଲାବୁଲି କରି ଆମେ ପୁଣି ରାସ୍ତା ଧରିଲୁଁ ।

ଲୋକଗୁଡ଼ିକ ଜିଜ୍ଞାସୁ ହେବାରୁ ମୁଁ ପଣ୍ଡିତଜୀଙ୍କ ପରିଚୟ ଦେଲି । ସେମାନଙ୍କ ସମ୍ମାନ ବହୁଗୁଣରେ ପ୍ରକାଶ ପାଇଲା କିନ୍ତୁ ଟୋକାଟାକରିଆ ଦୁଇ ଚାରିଜଣଙ୍କର ତାଙ୍କ ରୂପରୁ ଆଖି ଫେରୁନଥାଏ । ତାଙ୍କ ଦାଢ଼ୀ ଓ ମୁଣ୍ଡର ବାଳ ଲମ୍ବରେ ସମାନ ରୁଖଣ୍ଡେ ଲେଖାଏଁ ହେବ । ପାଚିଲା ବାଳ ସଙ୍ଗେ ସଡ଼କ ଧୂଳି ମିଶି ବିଚିତ୍ର ଦିଶୁଥାଏ । ପିନ୍ଧା ଅଧା ହାତ ଧଳି,

କୋଟ ଓ ଧଳା ଲୁଗା ; ତାହା ବି ଧୂଳିରେ ଚହଟି । ମଟର ଚକ ଗଡ଼ିବା ସଙ୍ଗେ ସଙ୍ଗେ ତାଙ୍କର ଆଖି ବୁଜି ହୋଇଗଲା । ବାଟରେ ଡ୍ରାଇଭର କହିଲା, 'ବଡ଼ ବାବୁ ଗାଡ଼ିରେ ଥିଲେ, ତାଙ୍କ ବ୍ୟତୀତ ଆଉ କାହାକୁ ନିଦ ଲାଗିବାର ଉପାୟ ନାହିଁ ।' ଘାଟି ପାର ହେଲାବେଳେ ସେ ଦୁଇଥର ଢୁଳାଇବାର ମୁଁ ଲକ୍ଷ୍ୟ କରି ତାଗିଦ୍ କରିଥିଲି । ମୋତେ ଆଦୌ ନିଦ ନ ଥାଏ । ମୁଁ ଖାଲି ରଟ ମଟ କରି ଚାହିଁଥାଏ ସାମନାକୁ, ମଟର ଆଲୁଅରେ ବନ୍ୟଜନ୍ତୁ ଦେଖିବା ସକାଶେ । ଘାଟି ଉପରେ ଗୋଟିଏ ଚିତା ବାଘୁଣୀ ଦେଖିଥିଲି ।

ବ୍ରହ୍ମପୁରରେ ପହଞ୍ଚିଲା ବେଳକୁ ହୋଇଯାଇଥାଏ ବାରଟା । ବାଟରେ ଡ୍ରାଇଭର କ୍ଲିନର ଓ ମୁଁ ଦାନ୍ତଫାନ୍ତ ଘଷି ଜଳଖିଆ କରିଥାଉ । ନୀଳକଣ୍ଠ ବାବୁ ମଝିରେ ଥରେ ଉଠିଥିଲେ ପ୍ରାୟ ୯ଟା ବେଳେ । ବ୍ରହ୍ମପୁର ଆଉ ୪୦ ମାଇଲ୍ ଅଛି ଶୁଣି ଶୋଇଲେ ଯେ ଉଠିଲେ ବ୍ରହ୍ମପୁରରେ । ୧୦ ଦିନରେ ଏଇ ଗୋଟିକ ଯେ ପୁରା ୧୦ ଘଣ୍ଟା ଶୋଇଥିଲେ । କଟକ ଛାଡ଼ିବା ଦିନୁଁ କେଉଁଦିନ ତାଙ୍କର ୪ ଘଣ୍ଟା ତ, କେଉଁଦିନ ୫ଘଣ୍ଟା, ଏ ସବୁ ମଟରରେ । ମଟର ରହିଲା ତ ସେ ଉଠନ୍ତି ଯେ ପୁଣି ଆଉ ଥରେ ମଟର ଚାଲିବା ପର୍ଯ୍ୟନ୍ତ ଆଖିପତା ପଡ଼େନାହିଁ । କାମ ଲାଗିଥାଏ । କାମ ମଝିରେ ମୋ ସଙ୍ଗେ ଗପ । ସେ ଗପ କିନ୍ତୁ ହୁଏ ଏକ ପଟିଆ । ସେ ଗପିଲା ବେଳକୁ ମୋର ମନ ହେଉଥାଏ କେମିତି ଟିକିଏ ଶୋଇପଡ଼ନ୍ତି । ମଟରରେ ତ ମୁଁ ଆଦୌ ଶୋଇପାରେ ନାହିଁ । ସେ ଅନର୍ଗଳ କହୁଥାନ୍ତି, ମୁଁ ଖାଲି ହୁଁ ହୁଁ କରୁଥାଏ ; ହୁଁ ବନ୍ଦ ହୋଇଗଲେ, ଶୋଇଲ୍ କିରେ ? ବୋଲି ଏଡ଼େ ପାଟି କରନ୍ତି । ଏବଂ 'ଚରିତ୍ର ହୀନ' ବୋଲି ସାର୍ଟିଫିକେଟ୍ ଦିଅନ୍ତି । କଥାବାର୍ତ୍ତା ବେଳେ ଶୋଇପଡ଼ିବା ତ ଚରିତ୍ର ହୀନତା ।

ଆଜିକାଲି ଯେଉଁଟା ନ୍ୟାସନାଲ୍ ହୋଟେଲ ହୋଇଛି ସେହି ପ୍ରଶସ୍ତ ଜାଗାଟା ଓ ଲମ୍ବା କୋଠା ଦୁଇ ସାହାଲା ହୋଇଥାଏ ଖଦୀ ଭଣ୍ଡାର ଓ କଂଗ୍ରେସ ଅଫିସ୍ । ସେଠାରେ ଥାନ୍ତି ତିନିଜଣ ଅତି ସଚ୍ଚା, ନିରଳସ କର୍ମୀ, ୬ ଦିବାକର ବାବୁ, ଜଗନ୍ନାଥ ମିଶ୍ରେ ଓ ବଳରାମ ପଣ୍ଡା, ନୀଳକଣ୍ଠ ବାବୁଙ୍କର ପରମ ବିଶ୍ୱାସୀ ଓ ଅନୁରକ୍ତ । ପ୍ରଥମ ଜଣକ ଏବେ, ଏଇ ୧୯୭୭ରେ ଦୁର୍ଘଟଣାରେ ମରିଗଲେ । ବାକୀ ଦୁଇଜଣ ଅଛନ୍ତି, ମୋର ସମବୟସ୍କ । ଦିବାକର ବାବୁ ଥିଲେ ଆମମାନଙ୍କଠାରୁ ୫।୬ ବର୍ଷ ବଡ଼ । ବଳରାମ ପଣ୍ଡେ ନୀଳକଣ୍ଠ ବାବୁଙ୍କ ଗାଧୁଆ ପାଧୁଆ, ଖିଆ କଥା ବୁଝୁଥାନ୍ତି । ଆଉ ଦି ଜଣ ଓ ମୋ ସଙ୍ଗେ ସମ୍ବଲପୁର ଓ କୋରାପୁଟରେ କ'ଣ ହେଲା ଏବଂ ଗଞ୍ଜାମରେ କିଏ କିଏ ଠିଆ ହେବେ ଏ ବିଷୟରେ, ଗାଧୋଇଲା ବେଳେ ବି, ସେ ଆଲୋଚନା କରୁଥାନ୍ତି । ବହୁଦିନ ପରେ ସେ ଦିନ ନୀଳକଣ୍ଠ ବାବୁଙ୍କ ଦିହରେ ସାବୁନ ବାଜିଲା । ପ୍ରଥମ ବର୍ଷିପାଣି ପରି ରଙ୍ଗର ପାଣିଧାର ତାଙ୍କ ଗଧୋଇବା ଜାଗାରୁ ବରଣ୍ଡା ତଳକୁ ବୋହିଯିବାର ଏବେ ବି ମୋତେ ଦିଶୁଛି । ହୋଟେଲରୁ ଖାଇବାକୁ ଆସିଲା, ମାଛ ବହୁଲ । ଖାଇବା ବେଳେ ଓ ଖାଇସାରି ଚାଲିଥାଏ ଗପ । ସେ ବକ୍ତା ଓ ଆମେ ତିନିଜଣ ଶ୍ରୋତା ।

ସେଇଦିନ ବ୍ରହ୍ମପୁରଠାରେ ମସୁଧା ହେଲା, ନବଭାରତ ପ୍ରେସ୍‌ରୁ ବାହାରିବ 'ଲୋକମତ' ବୋଲି ଗୋଟିଏ ସାପ୍ତାହିକ, ନିର୍ବାଚନ ପ୍ରଚାର ପାଇଁ । ନୀଳକଣ୍ଠ ବାବୁଙ୍କ କଥା ଓ କାମ ବିଷୟରେ ବିଶେଷ କିଛି ବାହାର କରିବାକୁ ସମାଜ ସବୁବେଳେ କୁଣ୍ଠିତ । ଶଶିବାବୁଙ୍କ ଦୈନିକ ଆଶା ଗଞ୍ଜାମ ପରି ଅନ୍ୟ ଜିଲ୍ଲାରେ ପ୍ରଚଳିତ ନୁହେଁ । ସେତେବେଳକୁ ମଧ୍ୟ ଶଶିବାବୁଙ୍କର ସ୍ୱାସ୍ଥ୍ୟ ଭଲ ନ ଥିବାରୁ ସେ କାଗଜରେ ମନ ଦେଇପାରୁନଥାନ୍ତି । ମୁଁ ଯାହା ପଠାଇବି ତାହା ନିଶ୍ଚୟ ଛପାହେବ ବୋଲି ତାଙ୍କର ଅର୍ଡ଼ର ଥିଲେ ବି ବେଳେବେଳେ ବହୁତ କାଟଛାଂଟ ହୋଇଯାଏ । ଏବଂ ଛପା ଆଜକାଲର ମାତୃଭୂମି ଓ ସ୍ୱରାଜ୍ୟର ଛପାପରି ହୋଇଥିବାରୁ ପାଠକମାନଙ୍କର ଏଥିପ୍ରତି ଆଗ୍ରହ ନ ଥାଏ । ତେଣୁ ନୀଳକଣ୍ଠ ବାବୁଙ୍କର ନିର୍ଦ୍ଦେଶ, ଆମେ ସ୍ୱତନ୍ତ୍ର ସାପ୍ତାହିକ ଖଣ୍ଡେ କରିବା ଏବଂ ଆମ ପ୍ରାର୍ଥୀମାନଙ୍କୁ ଏହା ଯୋଗାଇବା ପ୍ରଚାର କରିବାପାଇଁ । ମୁଁ, ଦିବାକର ବାବୁ ଓ ନିମାପଡ଼ାର ମୋହନ ଦାସେ ଏହାର ସଂପାଦକ ହେବାର ବି ସ୍ଥିର ହୋଇଗଲା । ମୁଁ ଉତ୍ସାହିତ ହୋଇଗଲି ଏବଂ ଅତି ଅସ୍ଥାୟୀ ଭାବରେ ହିସାବ କରି ଶୁଣାଇଦେଲି ଯେ ୨ ହଜାର ଗ୍ରାହକ (ବାର୍ଷିକ ଚାନ୍ଦା ଟ ୪.୦୦) ହୋଇଗଲେ କାଗଜ ବେଶ୍ ଚାଲିବ ।

ସେଇ ୪ଟା ବେଳେ କଟକ ବାହାରିଲୁ । ଗଞ୍ଜାମର ପ୍ରାର୍ଥୀ ବଛାହୋଇ-ଯାଇଥାନ୍ତି । ମାସକଭିତରେ ପ୍ରାର୍ଥୀପତ୍ର ଦାଖଲ ହେବାର କଥା । ତାଲିକା ସାଫି ହୋଇ ଶୀଘ୍ର ଭିତରେ ଆମ ତାଲିକା କେନ୍ଦ୍ର କଂଗ୍ରେସ କମିଟିଦ୍ୱାରା ଅନୁମୋଦିତ ହୋଇ ପ୍ରତ୍ୟେକ ପ୍ରାର୍ଥୀଙ୍କୁ ଯଥାସମୟରେ ଜଣାଇଦେବା ଦରକାର ।

ଓଡ଼ିଶା ଆସେମ୍ବ୍‌ଲିରେ ୬୦ ଟି ସ୍ଥାନ । ସେଥିରୁ ୫୬ ଟି ନିର୍ବାଚିତ । ୮।୧୦ ଦିନକାଳ ଖୁବ୍ ଧାଁ ଧପଡ଼, ଚିଠି, ଟେଲିଗ୍ରାମ୍ ଏବଂ ରାତି ଅନିଦ୍ରା ହୋଇ କୁହାପୋଛା ଫଳରେ ପ୍ରାର୍ଥୀ ବାହାରିଲେ ୩୬ ଜଣ । ଏଥିରୁ ୪ଜଣ ବାଲେଶ୍ୱର ଜିଲ୍ଲାର । ମହତାବ୍ ବାବୁ ଜିଦ୍ ଧରିଥାନ୍ତି । ବାଲେଶ୍ୱର ଜିଲ୍ଲାକୁ ପଣ୍ଡିତ ନୀଳକଣ୍ଠ ଥରେ ବି ପ୍ରଚାର କରି-ବାକୁ ଯିବେନାହିଁ । ନୀଳକଣ୍ଠ ବାବୁ ହଁ କରିଥାନ୍ତି । ମୋତେ କହନ୍ତି, ହୁଏତ ମୂର୍ଖଟା ବାଲେଶ୍ୱରରୁ ବୋଧହୁଏ ଗୋଟାଏ ଦୁ'ଟା ଥାନ ହରେଇବ । ତଥାପି ତାଙ୍କର ଦୃଢ଼ ବିଶ୍ୱାସ, ଓଡ଼ିଶା ଆସେମ୍ବ୍‌ଲିରେ କଂଗ୍ରେସର ସଂଖ୍ୟା ଗରିଷ୍ଠତା ହେବ । ଏଭଳି ଅଟଳ ବିଶ୍ୱାସ ବଡ଼ ବିଚିତ୍ର ଜଣାପଡ଼ୁଥାଏ । ଓଡ଼ିଶାରେ କେହି, ନିଜେ ପ୍ରାର୍ଥୀମାନେ ମଧ୍ୟ ଜିଣିବେ ବୋଲି ଭରସା ରଖିନଥାନ୍ତି । ମୋର ନୀଳକଣ୍ଠ ବାବୁଙ୍କଠାରେ ଖାଣ୍ଟି ବିଶ୍ୱାସ । ମୁଁ ବି ଆଶା କରିପାରୁନଥାଏ ଯେ ୩୬ରୁ ୩୬ ଆସିବେ । ନିତାନ୍ତପକ୍ଷେ ୩ । ୪ ଜଣ ନିଶ୍ଚୟ ହାରିବେ ବୋଲି ମୁଁ ଆଶଙ୍କା କରୁଥାଏ । ମହତାବ୍ ଓ ତାଙ୍କ ଦଳ ବିଚାରୁଥାନ୍ତି, ଖୁବ୍ ହେଲେ ୧୪।୧୫ ଜଣ ଆସିବେ । ବେକଂଗ୍ରେସ ମେମ୍ବର କେତେଜଣଙ୍କ ସମର୍ଥନ ସଳାସୂତରି କରି ବା ମନ୍ତ୍ରୀତ୍ୱ ଆଦି ଦେଇ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିପାରେ ବୋଲି ସେମାନେ ଆଶା କରୁଥାନ୍ତି ; ମହତାବ ବାବୁ ଏ ଦିଗରେ ବି ଉଦ୍ୟମ କରୁଥାନ୍ତି ବୋଲି ଶୁଣୁଥାଉଁ ।

ନିର୍ବାଚନରେ ୩୬ ଜଣରୁ ୩୫ ଜଣ ଜିଣିଲେ । ଜଣେ ମାତ୍ର ହାରିଲେ ସ୍ୱର୍ଗତ ପଣ୍ଡିତ ଗୋବିନ୍ଦ ମିଶ୍ରେ । ସେ ବି ହାରନ୍ତାନ୍ତେ । ଗୋପ ବାବୁ, ନବ ବାବୁ ପ୍ରଭୃତିଙ୍କ ଷଡ଼ଯନ୍ତ୍ର ଓ ପଣ୍ଡିତ ନୀଳକଣ୍ଠଙ୍କ ଏମାନଙ୍କ ଗୋଷ୍ଠୀକୁ ଭୟ ଯୋଗୁଁ ଗୋବିନ୍ଦ ବାବୁ ହାରିଲେ । ଗୋବିନ୍ଦବାବୁ ପ୍ରଥମେ ଗୋପବାବୁଙ୍କ ପକ୍ଷିଆ ଥିଲେ ; ଏବେ କେତେ ମାସ ହେଲା ସେ ଆମ ପକ୍ଷକୁ ଆସିଥାନ୍ତି । ଗୋପ ବାବୁ, ନବ ବାବୁ, ବିଶେଷକରି ପ୍ରାଣକୃଷ୍ଣ ପଢ଼ିଆରୀ ସ୍ୱାଙ୍କୁ ହରେଇବାକୁ ପ୍ରାଣପଣେ ଲାଗିଲେ । ଗୋବିନ୍ଦ ମିଶ୍ରେ ବହୁକାଳ ମହାତ୍ମା ଗାନ୍ଧୀଙ୍କ ସାବରମତୀ ଆଶ୍ରମରେ ଥିଲେ । ମହାତ୍ମାଜୀଙ୍କ ଆଶୀର୍ବାଦରେ ସେ ବମ୍ବେର ଶେଠମାନଙ୍କ ଅନୁଗ୍ରହର ପାତ୍ର ହୋଇଥିଲେ । ୧୯୨୨ରେ ତେଣୁ ସତ୍ୟବାଦୀ ସ୍କୁଲ ପାଇଁ ବମ୍ବେରେ ଚାନ୍ଦା ଉଠାଇ ୨୦।୨୨ ହଜାର ଟଙ୍କା ଆଣି ଦାସେ ଆପଣଙ୍କୁ ଦେଇଥିଲେ । ପରେ ନିଜ ପାଇଁ ଚାନ୍ଦା ଉଠାଇ ମଧୁପୁର ନିକଟ ଚମ୍ପାପୁରଠାରେ ଗୋଟିଏ ଖଦୀ କେନ୍ଦ୍ର ଓ ହାଇସ୍କୁଲ ବସାଇଲେ । ଗୋପବନ୍ଧୁ ବସ୍ତିରେ ଯେଉଁ ଆଶ୍ରମ କରିଥାନ୍ତି, ଚମ୍ପାପୁର ଆଶ୍ରମ ତା'ର ପ୍ରତିଦ୍ୱନ୍ଦୀପରି ହୋଇଥାଏ । ଚୌଧୁରୀ ଗୋଷ୍ଠୀର ବିଷ ଦୃଷ୍ଟିର ଏହାହିଁ ପ୍ରଧାନ କାରଣ । ଗୋବିନ୍ଦ ବାବୁଙ୍କ ନାମରେ ବିଭିନ୍ନ ଅଭିଯୋଗମାନ କରି ଏମାନେ ମହାତ୍ମା ଗାନ୍ଧୀଙ୍କୁ ତାଙ୍କ ବିରୁଦ୍ଧରେ ଏପରି ବିଗାଡ଼ିଦେଲେ ଯେ, ମହାତ୍ମା ଗାନ୍ଧୀ ଖଣ୍ଡେ ଚିଠି ଲେଖିଦେଲେ ଯେ ଗୋବିନ୍ଦ ମିଶ୍ରଙ୍କୁ କଂଗ୍ରେସ ପ୍ରାର୍ଥୀ କରାଯିବା ଉଚିତ ନୁହେଁ ଏବଂ ଲୋକେ ତାଙ୍କୁ ଭୋଟ ଦେଲେ କଂଗ୍ରେସର ବିରୋଧୀ ହେବେ । ସେତେବେଳକୁ ପ୍ରାର୍ଥୀ ପତ୍ର ଦାଖଲ ସରିଥାଏ । ସ୍କ୍ରୁଟିନି ବି ସରିଥାଏ । ନବବାବୁ ପ୍ରଭୃତିଙ୍କ ଆଡ଼ୁ ଜିଦ୍ ଲାଗିଲା, ମହାତ୍ମାଜୀଙ୍କର ଏ ଚିଠି ପ୍ରଚାରପତ୍ର ଆକାରରେ ଗୋବିନ୍ଦ ବାବୁଙ୍କ ନିର୍ବାଚନମଣ୍ଡଳୀରେ ପ୍ରଚାର କରାଯାଉ । ନବବାବୁ, ଭାଗୀରଥି ମହାପାତ୍ରେ ଓ ପ୍ରାଣକୃଷ୍ଣ ପଢ଼ିଆରୀଙ୍କୁ ଉପର ନୀଳକଣ୍ଠ ବାବୁ ଏ ପ୍ରଚାରପତ୍ର ଛପାଇ ବଣ୍ଟାଇଲେ । ଏବଂ ସେ ଅଞ୍ଚଳକୁ କୁଦର୍ଥ ଗଲେ ନାହିଁ । ମୁଁ ଏହାର ଘୋର ବିରୋଧ କଲି । ମୁଁ କହିଲି ଯେ ନିର୍ବାଚନ ପରେ ଗୋବିନ୍ଦଜୀଙ୍କ ବିରୁଦ୍ଧରେ ଯେଉଁ କାର୍ଯ୍ୟ ପନ୍ଥା ଗ୍ରହଣ କରା-ଯିବାର କରାଯାଉ, କିନ୍ତୁ ଶେଷ ମୁହୂର୍ତ୍ତରେ ଏ ଆତ୍ମଘାତୀ ନୀତି ଅବଲମ୍ବନ କଲେ ଅନ୍ୟ ପ୍ରାର୍ଥୀମାନଙ୍କ ଉପରେ ଆଞ୍ଚ ଆସିବ । ମନେ ପଡ଼ୁଛି, ମୁଁ ଏହି ବାଦ କଲାବେଳେ ପଢ଼ିଆରୀ ମହାଶୟଙ୍କର ତେଜ । ସେ ଚିତ୍କାର କଲେ ନୀତି ସ୍ୱାର୍ଥ ପାଇଁ ଭଲ ମନ୍ଦର ବିଚାର ଭୁଲିଯିବା ମହା ପାପ । ଗୋବିନ୍ଦ ମିଶ୍ର ଯଦି କଂଗ୍ରେସ ପ୍ରାର୍ଥୀ ଭାବେ ଭୋଟରେ ଜିଣିକରି ଆସନ୍ତି, ତେବେ ପବିତ୍ର କଂଗ୍ରେସ ଅନୁଷ୍ଠାନରେ କଳଙ୍କ ଲାଗିବ ଏବଂ ମହାତ୍ମାଜୀଙ୍କ ମହତ୍ତ୍ୱ ନଷ୍ଟ ହେବ । ମୁଁ ଖୁବ୍ ଗାଳି ପେଲିଲି । ମହାତ୍ମା ଗାନ୍ଧୀଙ୍କ ଚିଠିଟା ପ୍ରଚାର ନ କରି, ଗୋବିନ୍ଦଜୀଙ୍କ ପାଇଁ ଗୋଟାଏ ପ୍ରଚାରପତ୍ର ପଣ୍ଡିତ ନୀଳକଣ୍ଠଙ୍କ ନାମରେ ଛପାଇ ରଖିଥାଏ ବଣ୍ଟାଇବାକୁ ; କିନ୍ତୁ ନୀଳକଣ୍ଠବାବୁ ଭଲାଗଲେ । ଆମ ପ୍ରଚାରପତ୍ର ନଷ୍ଟ କରିଦିଆଗଲା ଏବଂ ଗାନ୍ଧୀଙ୍କ ଚିଠି ପ୍ରଚାରିତ ହେଲା । ପଣ୍ଡିତଜୀ ଅଳ୍ପ ଭୋଟରେ ହାରିଲେ । ମୋର ଏପର୍ଯ୍ୟନ୍ତ ଦୃଢ଼ବିଶ୍ୱାସ ନୀଳକଣ୍ଠ ବାବୁ ଥରେ ଗୋବିନ୍ଦଜୀଙ୍କ ନିର୍ବାଚନମଣ୍ଡଳୀକୁ ଯାଇଥିଲେ ଓ ଆମ ପ୍ରଚାରପତ୍ର ବଣ୍ଟାହୋଇଥିଲେ ୩୬ରୁ ୩୬ଯାକ ଜିଣିଥାନ୍ତେ ।

ଯେଉଁ ୩୫ ଜଣ ଜିଣିଲେ ତାଙ୍କ ଭିତରୁ ୩୨ ଜଣଙ୍କୁ ଛାଡ଼ିଦେଲେ ବାକୀ ସମସ୍ତଙ୍କ ବିଜୟ ମୂଳରେ ପଣ୍ଡିତ ନୀଳକଣ୍ଠଙ୍କ ଅଦମ୍ୟ ଉତ୍ସାହ ଓ ନିରଳସ ପରିଶ୍ରମ। ତିନୋଟି ନିର୍ବାଚନମଣ୍ଡଳୀର ପୂର୍ଣ୍ଣ ଦାୟିତ୍ୱ ମୋ ଉପରେ ଥିଲା। ତଥାପି ପ୍ରାୟ ୧୫ ଦିନ ମୁଁ ପଣ୍ଡିତ ନୀଳକଣ୍ଠଙ୍କ ସଙ୍ଗେ ଥିଲି। ଖାଇବା, ଶୋଇବା, ଗାଧୋଇବା ପ୍ରତି ଖାତିର ନ କରି ସେ ଯେପରି ପରିଶ୍ରମ କରୁଥାନ୍ତି ତାହା ମୋତେ ତାଜୁବ୍ ଲାଗୁଥାଏ। ଏ ପନ୍ଦର ଦିନଯାକର ଘଟଣା ମୋ ମନରେ ଖୋଳା ହେଲା ପରି ରହିଛି। ଗୋଟିଏ ମାତ୍ର ଦିନର ଘଟଣା ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଦେଉଛି। ଦିନେ ଓପରଓଳି ବ୍ରହ୍ମପୁରର ପଦ୍ମପୁରରୁ ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ମିଶ୍ରଙ୍କଠାରୁ ଟେଲିଗ୍ରାମ ଆସିଲା। ତହିଁଆରଦିନ ସନ୍ଧ୍ୟାରେ ସେଠାରେ ଗୋଟିଏ ବିରାଟ ସଭାର ଆୟୋଜନ ମିଶ୍ରେ ଆପଣେ କରିଛନ୍ତି। ନୀଳକଣ୍ଠବାବୁ ସେଥିରେ ନିଶ୍ଚୟ ଯୋଗ ଦେବେ। ତହିଁ ଆରଦିନ ସ୍ୱାଙ୍କର ପ୍ରୋଗ୍ରାମ ଥାଏ, ଗଞ୍ଜାମ ଜିଲ୍ଲାରେ ଗସ୍ତ କରିବାକୁ ଯିବାକୁ। ଲକ୍ଷ୍ମୀନାରାୟଣ ବାବୁଙ୍କ ପ୍ରତିଦ୍ୱନ୍ଦ୍ୱୀ ଟାଣୁଆ; ସେ ନୀଳକଣ୍ଠ ବାବୁଙ୍କ ଉପରେ ବିଶେଷ ନିର୍ଭର କରିଥାନ୍ତି ଓ ସେହି ନିର୍ଭରରେ ଆଗରୁ ନ ଜଣାଇ ସଭାର ଯୋଗାଡ଼ କରିଥାନ୍ତି। ଟେଲିଗ୍ରାମଟା ପଢ଼ିଦେଇ ନୀଳକଣ୍ଠ ବାବୁ ତାଙ୍କ ସ୍ୱାଭାବିକ ଢଙ୍ଗରେ ଭାରି ବିଗିଡ଼ିଗଲେ, କହିଲେ, 'ହୁଡ୍ ମୂର୍ଖଟେ। ମୁଁ ତା' ଟେଲିଗ୍ରାମ କଟକରେ ପାଇବି ବୋଲି କମିତି ଜାଣିଲା ଯେ ୨୪ ଘଣ୍ଟାରେ ମୁଁ ଯାଇ ପହଞ୍ଚିବି ବୋଲି ଏଗଉ୍ନା ପଠାଇଦେଲା।'

ପାଞ୍ଚ ମିନଟ୍ ଭିତରେ ରାଗ ଶାନ୍ତ ହୋଇଗଲା। ସଂକଳ୍ପ ହେଲା, ସେ ରାତି ଆଠଟାରେ ବାହାରି ସକାଳ ସୁଦ୍ଧା ସମ୍ବଲପୁରରେ ପହଞ୍ଚିବା; ସମ୍ବଲପୁରରୁ ୯ଟା ୧୦ଟା ସୁଦ୍ଧା ବାହାରିପଡ଼ିଲେ ଅନାୟାସରେ ପଦ୍ମପୁରରେ ପହଞ୍ଚିହେବ। ଦିବାକର ବାବୁଙ୍କ ପାଖକୁ ଟେଲିଗ୍ରାମ ପଠାହେଲା। ପଦ୍ମପୁରଠାରୁ ପଅର ଦିନ ସକାଳୁ ବାହାରି ସିଧା ବ୍ରହ୍ମପୁରରେ ପହଞ୍ଚିବାକୁ। ପଦ୍ମପୁରରୁ କେଉଁବାଟେ ବ୍ରହ୍ମପୁର କେତେବେଳେ ପହଞ୍ଚିବୁଁ ତା'ର ଧାରଣା ମୋର ନ ଥାଏ କି ତାଙ୍କର ନ ଥାଏ। ଗାଡ଼ି ସମ୍ଭାଳିବ କି ନାହିଁ ସନ୍ଦେହ କରିବାରୁ କହିଲେ, 'କ୍ଷେତେ କର୍ମ ବିଧୀୟତେ'। ଗାଡ଼ି ବୋଇଲେ ଖଣ୍ଡେ ପୁରୁଣା ଫୋଇଲର୍ ଗାଡ଼ି। ମୁଁ ଟ୍ୟାକ୍ସି କରିବ ବୋଲି ଏ ଖଣ୍ଡ ସେ ଦୁଇମାସ ହେଲା ଦିଲ୍ଲୀରୁ ଆଣିଥାନ୍ତି। ୫ ଶହ ଟଙ୍କାରେ ରେଳରେ ନ ଆସି ଏଇ ଗାଡ଼ିରେ ଦିଲ୍ଲୀଠାରୁ ଗାଁକୁ ଆସିବାରେ ପାଞ୍ଚଶହ ଟଙ୍କା ଉଠିନାଇଥାଏ। ତଥାପି ମୁଁ ଜବାବ ଦେଇଥାଏ ଯେ, ଏଥିରେ ସେ ଯେତେଥର କଟକରୁ ଗାଁକୁ ଯିବା ଆସିବା କଲେ ବି ମୁଁ କିଛି ପଇସା ନେବି ନାହିଁ। ନିର୍ବାଚନବେଳ ହୋଇଥିବାରୁ ସ୍ଥିର ହେଲା ଯେ, ଦୈନିକ ମୁଁ ପେଟ୍ରୋଲ ମୋବିଲ୍ ଖର୍ଚ୍ଚ ବାଦ୍ ପାଞ୍ଚ ଟଙ୍କା ଲେଖାଏ ପାଇବି। ବାଟରେ ନ ଅଟକି ଗାଡ଼ିଟା ଦିଲ୍ଲୀରୁ ଆସିଥିଲା। କେଣୁ ଓଡ଼ିଶା ଭିତରେ ଯେତେ ବୁଲିଲେ ବି ଏହା ଖରାପ ହେବାର ଆଶଙ୍କା କରିବା ମୂର୍ଖାମି ବୋଲି ସେ ମୋତେ ସବୁବେଳେ ଧମକାଇ ଦେଉଥାନ୍ତି। ପୁଣି ବୁଝାଇଦେଉଥାନ୍ତି ଯେ ଗୁରୁଟା ଚକ ଯେତେବେଳେ ଅଛି ସଡ଼କ ଥିଲେ ଆଚ୍ଛା ନ ଥିଲେ ଆଚ୍ଛା। ନିଶ୍ଚୟ ବୁଲିବ। ଭଲ ଡ୍ରାଇଭରଟାଏ ମିଳିଥାଏ।

ତା'ର ବଣ୍ଟାସ ଖଣ୍ଡେ ଫାଉଡ଼ା ଓ ଖଣ୍ଡେ ଟାଙ୍ଗିଆ ହେଲେ ସଡ଼କର ଅଭାବ ବାଧିବ ନାହିଁ । ସେ କାଳେ ଟ୍ୟୁବ୍ ପ୍ୟାଚ୍ କରିବାକୁ ସମସ୍ତ ସରଞ୍ଜାମ ଗାଡ଼ି ସଙ୍ଗେ ନେବାକୁ ପଡ଼ୁଥିଲା । ଷ୍ଟେପିନ ଚକରେ ଯଦି ହେଲା ତ ହେଲା, ନ ହେଲେ ଆମ ଡ୍ରାଇଭର ମୋହନ୍ ମିଆଁ ୨୦ ମିନିଟ୍‌ରେ ଟ୍ୟୁବ୍ ପ୍ୟାଚ କରି ଲଗାଇଦେବାରେ ସିଦ୍ଧହସ୍ତ । ଗାଡ଼ିର ଗତି ବଢ଼ାଇଲା କାମ ନୀଳକଣ୍ଠ ବାବୁଙ୍କର । ଯଥାସମୟରେ ଯାଇ ପହଞ୍ଚିପାରିବା ନାହିଁ ବୋଲି ସନ୍ଦେହ ହେଲେ ନୀଳକଣ୍ଠ ବାବୁ ନ ଶୋଇ ପଛ ସିଟ୍‌ରୁ ପାଟିକରୁଥାନ୍ତି, 'ଆରେ ଶଗଡ଼ ନା ମଟର ମ ? ଟିକିଏ ମଟରପରି ଚଲା ।' ମିଆଁ ମୋଠାରୁ ଦୁ' ସ୍ୱରଥର କଡ଼ା ଉପଦେଶ ପାଇ ତାଙ୍କ ପଦେ ଉତ୍ତର ନ ଦେଇ ଯନ୍ତ୍ରପରୀ ନୀରବରେ ଗତି ବଢ଼ାଉଥାଏ । ପଞ୍ଚମ ଥର, ମୋହନ ମିଆଁର ଖାଲଢିପ ରାସ୍ତାରେ ପ୍ରକୃତ ଗୁଣ୍ଡ଼ଯାଇଥିବାରୁ, ସେ କ'ଣ ଗୋଟାଏ ଜବାବ୍ ଦେଇଦେଲା । ନୀଳକଣ୍ଠ ବାବୁ ଅଗ୍ନି ଶର୍ମା ହୋଇ ଗାଡ଼ି ଅଟକାଇ କହିଲେ, 'ଭୃତ୍ୟଶ୍ଚୋତ୍ତରଦାୟକଃ' । ଏ ଲୋକ ଚଳାଉଥିବା ଗାଡ଼ିରେ ବସିବା ଉଚିତ ନୁହେଁ । କୌଣସିମତେ ମୋ ଚେଷ୍ଟାରେ ବଡ଼ ଧରଣର ଗୋଟେ ହିନ୍ଦୁ ମୁସଲମାନ ସଂଘର୍ଷ ନବର୍ତ୍ତିଗଲା । ତେବେ ନୀଳକଣ୍ଠ ବାବୁଙ୍କ ତ ଷୋଳପଣ ହିନ୍ଦୁ କୁହାଯାଇନପାରେ । ମୋହନ ମିଆଁ ହାତରୁ ପାଣି ପିଇବା ତ ଆମର ସାଧାରଣ କଥା ; ଦରକାର ହେଲେ ସେ ରୋଷେଇ ବି କରେ । ତା ରନ୍ଧା ସ୍ୱାଙ୍କୁ ଏତେ ଭଲ ଲାଗେ ଯେ କଟକରେ ମୋହନ ମାଛ ମାଂସ ରାନ୍ଧୁ ବୋଲି ଜିଦ୍ କରନ୍ତି ।

ଆଜିକାଲି ତ ଦୁଆରୁ ଗାଡ଼ିରେ ବସିଲେ ସମ୍ବଲପୁର ହୋଇଯିବ । ସେତେବେଳେ ବାଟରେ ବହୁତ ଘାଟି । ଆଗ ତ ମହାନଦୀ ପାର ହେବାକୁ ହେବ । ସାଙ୍ଗେ ସାଙ୍ଗେ ବଡ଼ାନାଣି ଯାଇ ସ୍ଥାପ ଠିକଣା କଲି, ମଟର ପାର ହେବାକୁ । ସ୍ୱରଟଙ୍କା ପାଉଣା ଶୁଣାଇ-ଦେବାକୁ କେଉଟ ରାଜି ହୋଇଗଲେ ରାତି ଆଠଟାରେ ଚହଟା ଘାଟରେ ସ୍ଥାପ ଭିଡ଼ିଦେବାକୁ । ଆମେ ଯାଇ ୯ଟାରେ ପହଞ୍ଚିଲାବେଳକୁ ନାଉରି ଡାକିବାକୁ ଲୋକ ଯାଇଥାଏ ଗାଁ ଭିତରକୁ । ସେତିକବେଳୁ ନୀଳକଣ୍ଠ ବାବୁଙ୍କର ମଗଜ ଖରାପ ହେଲା ଯେ, ତହିଁ ଆରଦିନ ସକାଳ ୯ଟାରେ ସମ୍ବଲପୁରରେ ପହଞ୍ଚିବା ପର୍ଯ୍ୟନ୍ତ । ତାଙ୍କ ଯେତେବେଳେ ନିଦ ହୋଇଯାଏ ସେଇ ସମୟତକ ମୋହନ ଓ ମୁଁ ଶାନ୍ତିରେ ଥାଉଁ । ସର୍ବପ୍ରଥମେ ଡଙ୍ଗା ଲାଗିଲା ଗୋଟାଏ ଚଢ଼ାରେ । କେଉଟଙ୍କ ସଙ୍ଗେ ମୋହନ ଓ ମୁଁ ପାଣିରେ ପଶି ଠେଲି ଠେଲି ନିସ୍ତାର ହେଲୁଁ, ଆଉ ଖଣ୍ଡେ ଯାଇଛୁ କି ନାହିଁ ପଡ଼ିଲା ଗୋଟିଏ ଢିପ । ଆମ ଗାଡ଼ିରୁ ଫାଉଡ଼ା ବାହାରିଲା ରାସ୍ତା କରିବାକୁ ।

ଆର କୂଳରେ ପହଞ୍ଚିଲାବେଳକୁ ସାଢ଼େ ଏଗାରଟା । ଗାଡ଼ି ଷ୍ଟାର୍ଟ ହେବାରେ ଟିକିଏ ଡେରି ହେଲା, ବ୍ୟାଟେରୀରେ କେମିତି ପାଣି ପଡ଼ିଯାଇଥିବାରୁ । ଘୁଡ଼ାଏ ଗାଳି ଖାଇଲି ; ଘଣ୍ଟାକୁ ୩୦ ମାଇଲ ହିସାବରେ ଗଲେ ସୂର୍ଯ୍ୟୋଦୟ ବେଳକୁ ଆମେ ନିଶ୍ଚୟ ପହଞ୍ଚିବା ବୋଲି କର୍ଭିର ଜବାବ ଦେଲାବେଳକୁ ଗାଡ଼ି ଷ୍ଟାର୍ଟ ହୋଇଗଲା । ନୀଳକଣ୍ଠ ବାବୁ ସାଙ୍ଗେ

ସାଙ୍ଗେ ଶୋଇପଡ଼ିଲେ, ଯେ ତାଙ୍କ ନିଦ ଭାଙ୍ଗିଲା ବେଳକୁ ୬ ଟା ହୋଇଯାଇଥାଏ ଓ ଆମେ ରେଢ଼ାଖୋଲରେ ପାଞ୍ଚମିନିଟ୍ ହେଲା ରହି ଦାନ୍ତ ଘଷୁଥାଉ ବଣବଡା ଛଣାଉଥାଉ । 'ସେ କ'ଣ ସମ୍ବଲପୁର' ବୋଲି ସେ ବାହାରକୁ ଯାଇ ଗର୍ଜି ଉଠିଲା ବେଳକୁ ମୁଁ ଯାଇ କହିଲି, ଦାନ୍ତ ଘଷି ଟିକିଏ ଚୁ' ଖାଇ ଦିଅନ୍ତୁ, ସାଙ୍ଗେ ସାଙ୍ଗେ ବାହାରିବା । ବାଟରେ ବଡ଼ ଦୁର୍ଘଟଣା ଘଟିଯାଇଥାନ୍ତା । ଏଁ ବୋଲି କହି ସେ ଭୂମା ହୋଇଗଲେ ଏବଂ ଖାଲି ମୁହଁ ଧୋଇ ଚୁ ମୁହେ ପିଇଦେଇ ଶୋଇପଡ଼ିଲେ । ୮ ଟା ବେଳେ ପ୍ରହ୍ଲାଦ ରାଏ ଲାଠଙ୍କ ଦୁଆରେ ଗାଡ଼ି ଲାଗିଲା ।

ସେଠିକି ବେଳୁ ଲାଗିଲା ନିର୍ବାଚନ ପ୍ରଚାର ପ୍ରାୟ ସାଢ଼େ ଏଗାରଟା ଯାଏଁ । ଅଧ-ଘଣ୍ଟାକ ଭିତରେ ଲାଠଙ୍କ ଘରେ ଲାଗିଗଲା ଗହଳି । ଲାଠ ମଧ୍ୟ ଜଣେ ପ୍ରାର୍ଥୀ । କଂଗ୍ରେସର କର୍ମକର୍ତ୍ତା ଓ କର୍ମୀମାନେ ଆସି ପହଞ୍ଚିଗଲେ । କେଉଁଠି କିପରି ପ୍ରଚାର ହେଉଛି, ବିରୋଧିଙ୍କ ପକ୍ଷରୁ କ'ଣ ସବୁ କୁହାହେଉଛି ଶୁଣି ମୀଳକଣ୍ଠ ବାବୁ ପ୍ରଚାରର ଦିଗ୍‌ନିର୍ଦ୍ଦେଶ ଦେଉଥାନ୍ତି ଓ ବିରୋଧିଙ୍କୁ କିପରି ଭୂକ କରିବାକୁ ହେବ ବତାଉଥାନ୍ତି । ୧୦ ଦିନ ପରେ ସେ ଆସି ଥରେ ସମଗ୍ର ଜିଲା ବୁଲିବାକୁ ପ୍ରୋଗ୍ରାମ ହୋଇଗଲା । ଏଇ ସବୁ ଭିତରେ ତାଙ୍କର ଦାନ୍ତଘଷା, ବାହ୍ୟକର୍ମ ଓ ଗାଧୁଆ ଚାଲିଥାଏ । ସେ ଗାଧୁଆ ତ ଦେଖିବାର କଥା । ଗାଧୁଆ ହେଲା, ସବୁଦିନେ ହୁଏ, ଦୁଇ ଡାଲ ପାଣିରେ । ମୁଣ୍ଡରେ ଦୁଇଡାଲ ପାଣି ଅଜାଡ଼ି ଦେଇ ମୁଣ୍ଡଆଉ ପାଦଯାଏ ଖଣ୍ଡେ ଶୁଖିଲା ତଉଲିଆରେ ଘଷିଦେଲେ ଗାଧୁଆ ଶେଷ । ରାତିରେ ଯେଉଁ ଲୁଗା କାମିଜ ପିନ୍ଧିଥିଲେ ଗାଧୁଆ ସାର ତାକୁ ପୁଣି ପିନ୍ଧିଲେ । ଗାଧୁଆ ପାଧୁଆ ସାରି ଖାଇ ବସିଲା ବେଳକୁ ତାଙ୍କ ମୁଣ୍ଡ ବାଳରେ ଓ ଦାଢ଼ିରେ ସଡ଼କର ଧୂଳି ମେଞ୍ଚା ମେଞ୍ଚା ହୋଇ ଲାଗି-ଥିବାର ଦେଖି ଜଣେ କିଏ କହିଦେଲା, ସେ କି ଗାଧୁଆ ? ସାଙ୍ଗେ ସାଙ୍ଗେ ତାଙ୍କ ଉତ୍ତର ମିଳିଲା 'କାକସ୍ନାନ' । 'ଶ୍ୱାନନିଦ୍ରା' ର ପ୍ରମାଣ ତ ରାତିଯାକ ପାଇଥାଉଁ । ଯେ କୌଣସି କାରଣରୁ ବାଟରେ ଗାଡ଼ି ଟିକିଏ ଅଟକିଲେ, ମୁହୂର୍ତ୍ତକ ଭିତରେ ପଚାରନ୍ତି, 'କ'ଣ ହେଲା' ? ନିର୍ବାଚନ ବେଳେ ତ' ବକଧ୍ୟାନର ପ୍ରମାଣ ସମସ୍ତେ ପାଉଥାନ୍ତି । ସେଥରର ନିର୍ବାଚନରେ ଆମର ବିଜୟ ଏଇ 'ବକଧ୍ୟାନ' ଯୋଗୁଁ ହେଲା ବୋଲି ମୁଁ ନିଃସନ୍ଦେହ । ବୋଧରାମ ବାବୁ ତ ସେଇ ଦୁଇ ତିନି ଘଣ୍ଟା ତାଙ୍କ ପାଖେ ରହି ଏକନିଷ୍ଠ କଂଗ୍ରେସବାଲା ହୋଇଗଲେ ।

ଏଗାରଟା ବାଜିଗଲା ବୋଲି ଶୁଣି ସେ ମୋ ଉପରେ ରାଗିଯାଇ ପାଟିକଲେ । କରେ, ପଦ୍ମପୁର ଯିବାକଥା ପାସୋର ଦେଲୁ ପରା । ସାଙ୍ଗେ ସାଙ୍ଗେ ଭାତ ବଢ଼ା ହୋଇଗଲା । ଲାଠଙ୍କ ଘରେ ମାଛ ତ ପଶିବ ନାହିଁ । ବସାଦହି ସବୁତକ ଭାତରେ ଗୋଳାଇଦେଇ ସେ ଚାରି ପାଞ୍ଚ ଗୁଣ୍ଡାରେ ଗିଳିଦେଇ ଡାଲି ତରକାରୀ ସାରୁସାରୁ ମୋତେ ଆକଟ କରୁଥାନ୍ତି, ଭାତକୁ ଏତେ ଚୋବାଉଛୁ କାହିଁକି ବୋଲି ।

ମୋର ଅହଂକାର ଯେ ମୁଁ ଭାତ ଶୀଘ୍ର ଖାଇପାରେ । ତାଙ୍କ ପଛେପଛେ ମୋର ସରିଲା । ମୋହନ ମିଆଁ ଖାଇଲେ ଗାଡ଼ି ଚଳେଇ ପାରିବ ନାହିଁ ବୋଲି ଆଗରୁ ବାଟ ଢାକି-

ଦେଇଥାଏ । ହାତ ଧୋଉ ଧୋଉ ଗାଡ଼ିକୁ ଗ୍ଭଲିଲ୍, ଦାନ୍ତ ଫାନ୍ତ ବାହାର କଣ ଧୋଇଲେ ବି ନାହିଁ । ଦାନ୍ତରେ ଭାତ ଲଗିଥିବାର ଗାଡ଼ିରେ କହିଲି, ଅଧା ଓଦା ଗାମୁଛାଟା ଦାଢ଼ିରେ ବୁଲାଇ ଦେଇ କହିଲେ, 'ଗଲା' ? ଯାଇନଥାଏ ।

ଅତାବିରା ଡାକବଙ୍ଗଳା ପାଖେ ହାଟରେ ଲୋକ ଜମୁଥାନ୍ତି । ଅଟକିବାକୁ କହିଲେ । ସେତେବେଳକୁ ତ ସାବାଳକ ଭୋଟ ପ୍ରଥା ଗ୍ଭଲିନଥାଏ । ମୁଁ ଆପତ୍ତି କଲି, 'ଏଠାରେ କାହିଁକି ବକ୍ତୃତା କରିବା ? ଦି ଗ୍ଭରି ଜଣ ଭୋଟର ଥିବେ କି ନଥିବେ ?' କହିଲେ, 'ମୂର୍ଖଟାଏ କରେ, ପବନରେ ପ୍ରଗ୍ଭର କଲେ ବି କଥା ଯାଇ ଭୋଟରଙ୍କ ପାଖେ ବାଜିବ । ସ୍ତ୍ରୀ ଭିତରେ ଭୋଟର ନ ଥିଲେ ଭୋଟରଙ୍କ ଗ୍ଭକର ବାକର ନ ଥିବେ ? ମାଇପେ ନଥିବେ ? ଦି' ପଦ କହିଦେଲେ ଫଳ ନିଶ୍ଚୟ ହେବ ।'

ଡାକବଙ୍ଗଳା ବାରଣ୍ଡାରେ ଚଉକିଟିଏ ପଡ଼ିଲା । ଅଧଘଣ୍ଟେ ଖଣ୍ଡେ କହିଲେ । ସାର କଥା : ପନ୍ଦରବର୍ଷ ହେଲା ଇଂରେଜଙ୍କ ସଙ୍ଗେ କଂଗ୍ରେସର—ମହାତ୍ମା ଗାନ୍ଧୀଙ୍କର ଲଢ଼େଇ ଲଗିଛି । ଆଇନଅମାନ୍ୟ ଲୁଣମରା ପର୍ବ ପରେ ଏବେ ଆରମ୍ଭ ହୋଇଛି ଭୋଟ ଲଢ଼େଇ । ଯେଉଁମାନଙ୍କର ଭୋଟ ଅଛି ସେମାନେ କଂଗ୍ରେସ ବାକ୍ସରେ ଭୋଟ ଦିଅ, ଗାନ୍ଧୀମହାତ୍ମାଙ୍କ ହାତ ଟାଣ ହେବ, ସ୍ୱରାଜ୍ୟ ଆସିବ, ଆମ ଦେଶରୁ ଇଂରେଜ ଯିବେ । କିଛି ଭୟ ନାହିଁ । କିଏ କାହାକୁ ଭୋଟ ଦେଲା ବ୍ରହ୍ମା ବି ଜାଣିପାରିବେ ନାହିଁ । କଂଗ୍ରେସରୁ କିଏ ଠିଆହୋଇଛି ସେ କଥା ବିଗ୍ଭରିବ ନାହିଁ । ଇଟା ପଥର ଯେ କଂଗ୍ରେସ ନାମରେ ଠିଆହୋଇଛି ତାକୁ ଭୋଟ ଦେଲେ କଂଗ୍ରେସର ଟେକ ରହିବ । ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି । କଂଗ୍ରେସ ବାକ୍ସରେ ତୁମ ଭୋଟ ଯାହା ନାମରେ ଯାଉ ପଛେ ଗାନ୍ଧୀମହାତ୍ମା ପାଇବେ । ତାଙ୍କଠାରେ ଦ୍ରୋହୀ ହୁଅ ନାହିଁ । ଗାନ୍ଧୀ ଭଗବାନଙ୍କ ଅବତାର । ତମ ଗାଁରେ ଯେତେ ଭୋଟର ଅଛନ୍ତି ତାଙ୍କୁ ଶୁଣାଇଦେବ । ଗାନ୍ଧୀ ଦ୍ରୋହୀ ହେଲେ ସେମାନଙ୍କର ଘୋର ଅମଙ୍ଗଳ ହେବ ।

କିଏ କ'ଣ ବୁଝିଲେ କେଜାଣି ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନିରେ ଗ୍ଭରିଆଡ଼ କମ୍ପିଗଲା । ଶ୍ରୋତାଙ୍କ ଭିତରେ ଯେଉଁମାନେ ଟିକିଏ ଶିକ୍ଷିତ ସେମାନେ ସ୍ପିକର କିଏ ବୋଲି ପଗ୍ଭରି ନୀଳକଣ୍ଠ ବାବୁଙ୍କ ନାମ ମୋଠାରୁ ଶୁଣିଥାନ୍ତି । ସେମାନେ, ନୀଳକଣ୍ଠ ଦାସଙ୍କ ଜୟ ବୋଲି ସ୍ୱର ମିଶାଇଦେଲେ । ଆଗେ ମଟରକୁ ଗଲାବେଳକୁ ଗୋଟିଏ ଧୋକଡ଼ ବୁଢ଼ୀ ମୋତେ ପଗ୍ଭରିଦେଲା 'ବୁଆ, ଏ ମହାତ୍ମା କାଏଁ ?, ମୁଁ ହଁ ବୋଲି କହି ମଟରକୁ ପଶିଗଲି । ମଟର ଗ୍ଭଲିଲା, ରହସ୍ୟ କରି ମୋତେ କହିଲେ, ଏ ଯେଉଁ ହଁ ଟି କଲୁ, ସେ ତ ମିଥ୍ୟା । ପ୍ରାୟଶ୍ଚିତ୍ତ କଣ ? ମୁଁ ପିଲାଦିନେ ଆମ ଗାଁରେ ଶୁଣିଥିଲି ସକୃତ୍ ଅସତ୍ୟ ସଂଭାଷଣେ କୃଷ୍ଣାନୁସ୍ମରଣଂ ପ୍ରାୟଶ୍ଚିତ୍ତମ୍ । ସେଇ କଥା କହିଲି । ସେଇଥିରୁ ବାହାରିଲା କେତେ କଥା, ପ୍ରାୟଶ୍ଚିତ୍ତ ବିବେକ ଓ ଜଗନ୍ନାଥ ଦାସଙ୍କ ଭଗବତରୁ ଉଦ୍ଧାର କରି କେତେ କହିଲେ । ଗୋଟିଏ ମାତ୍ର କଥା ମନେଅଛି : 'ଗୋ ବ୍ରାହ୍ମଣ ହିତାର୍ଥେ କୁର୍ବନ ମିଥ୍ୟା ନ ଲିପ୍ୟତେ । ଜଗନ୍ନାଥ ଦାସଙ୍କ ଭଗବତରୁ ଉଦ୍ଧାର କରି କହିଲେ, ଥରେ କୃଷ୍ଣନାମ ନେଇଲେ ଯେତେ ପାପ ଧୋଇ ହୋଇଯାଏ

ମଣିଷ ସେତେ ପାପ ଜୀବନଯାକ ଲାଗିପଡ଼ି କରି ପାରିବ ନାହିଁ । ଜଗନ୍ନାଥ ଦାସେ ଅନେକ ଜାଗାରେ ସଂସ୍କୃତ ଭାଗବତକୁ ଚପିଯାଇଛନ୍ତି ନାମ ଭକ୍ତିରେ । ପରେ ଜାଣିଲି, ସ୍ୱେ ସେଇଥିରୁ ଗୋଟିଏ ।

ଗପ୍ ଗପ୍ ବରଗଡ଼ ହୋଇଗଲା । ମଝିରେ କହୁଥାନ୍ତି । ବେଗେ ନ ଗଲେ ଲକ୍ଷ୍ମୀ ନାରାୟଣର ପ୍ରକୃତି ଗ୍ରହିବ । କିନ୍ତୁ ବରଗଡ଼ ହୋଇଯିବାରୁ କହିଲେ ଟିକିଏ କବିଭୂଷଣଙ୍କୁ ସଂଖୋଳଦେଇ ଯିବା । ପଣ୍ଡିତ ସ୍ୱପ୍ନେଶ୍ୱର ଦାସ କବିଭୂଷଣଙ୍କ ନାମ ମୁଁ ବଲାଙ୍ଗିରରେ ଶୁଣିଥିଲି । ନୀଳକଣ୍ଠ ବାବୁଙ୍କଠାରୁ ପ୍ରତି ହପ୍ତାରେ ଶୁଣେ । ତାଙ୍କଠାରେ ସ୍ୱାଙ୍କର ଭାରି ଶ୍ରଦ୍ଧା କବିଭୂଷଣ ନୀଳକଣ୍ଠ ବାବୁଙ୍କଠାରୁ ଦଶ ପନ୍ଦର ବର୍ଷ ବଡ଼ । ବଡ଼ ପଣ୍ଡିତ ନୁହନ୍ତି । କିନ୍ତୁ ଯାହା ଜାଣନ୍ତି ତାକୁ ଭଲକରି ଜାଣନ୍ତି । ନୀଳକଣ୍ଠ ବାବୁ କହନ୍ତି, ତାଙ୍କ ପାଠ ସଂଘାଶୁଖିଲା । କବିତା କରୁଥିଲେ, ତାଙ୍କର କେତେ ଖଣ୍ଡ ବହି ବି ବାହାରିଥିଲା । ସେଇ ଦିନଠାରୁ ମୋର ତାଙ୍କ ସଙ୍ଗେ ପରିଚୟ ।

ପଣ୍ଡିତେ ମାମୁଲି ପଣ୍ଡିତ ନ ଥିଲେ । ଦୃଢ଼ ଜାତୀୟବାଦୀ ; ରାଜନୀତି ବୁଝୁଥିଲେ । ମୁଁ ବଲାଙ୍ଗିରରେ ପଢ଼ିଲା ବେଳେ ସମ୍ବଲପୁରରୁ ଖଣ୍ଡିଏ ସାପ୍ତାହିକ ବାହାର କରୁଥିଲେ । ଦୁଇ ପଣ୍ଡିତେ ସାକ୍ଷାତ ହେବାର ପାଞ୍ଚମିନିଟ ଭିତରେ ନିର୍ବାଚନ କଥା ପଡ଼ିଲା । ବରଗଡ଼ ନିର୍ବାଚନ ମଣ୍ଡଳୀରୁ ଆମର ଠିଆ ହୋଇଥାନ୍ତି ଶ୍ରୀ ଫକୀର ବେହେରା—ମୁଁ ଥରେ ଦି ଥର ଉଁକିରି ମଧ୍ୟ ତାଙ୍କ 'ର' ରୁ ଆକାରଟା କଟାଇପାରିନଥିଲି । ସରଳ ଲୋକ, ବରଗଡ଼ ଅଞ୍ଚଳରେ ତାଙ୍କର ନାମ ଥିଲା । କିନ୍ତୁ ଅସହଯୋଗ ଆନ୍ଦୋଳନ ପୂର୍ବରୁ ସେ ବହୁତ ଦିନ ଖାଉଥିଲେ ପରା ! ତାଙ୍କ ମୂର୍ଖତା ଓ ପୂର୍ବଚରିତ ଯୋଗୁଁ ପଣ୍ଡିତ ସ୍ୱପ୍ନେଶ୍ୱରଙ୍କର ତାଙ୍କ ପ୍ରାର୍ଥୀତ୍ୱରେ ବିରୋଧ । ତାଙ୍କର ବର୍ତ୍ତମାନର ଆଚରଣ ଓ ଉପଯୁକ୍ତତର ପ୍ରାର୍ଥୀଙ୍କର ଅଭାବ ଦେଖାଇ ନୀଳକଣ୍ଠ ବାବୁ କବିଙ୍କୁ ପ୍ରାଣକୁ ବାଗେଇଦେଲେ । ପ୍ରାୟ ଅଧଘଣ୍ଟା ପରେ ଆମେ ତାଙ୍କଠାରୁ ବିଦାୟ ନେଲା ବେଳକୁ ବରଗଡ଼ରେ ୧୦ । ୧୨ ଜଣ ବିଶିଷ୍ଟ ଲୋକ ଆସି ଜୁଟିଥାନ୍ତି । ମଟରକୁ ଆସିବା ବେଳେ ନୀଳକଣ୍ଠ ବାବୁ କବିଭୂଷଣଙ୍କଠାରୁ ଏବଂ ଆସି ପହଞ୍ଚିବା ଭଦ୍ରଲୋକଙ୍କଠାରୁ ପ୍ରତିଶ୍ରୁତି ଆଦାୟ କଲେ ଯେ, ସେମାନେ ଯେତେବେଳେ ପାରିବେ ଆମ ପ୍ରାର୍ଥୀଙ୍କପାଇଁ ପଦେ ପଦେ କହିବେ । ସ୍ୱାଙ୍କ ପାଖେ ଆସି ଆଡ୍ଡା ମାରିଲା ବେଳେ ମୁଁ ହୁଁ ହୁଁ ହେଉଥିଲି ଯେ ବୃଥାରେ ଘଡ଼ାଏ ସମୟ ନଷ୍ଟ ହେବ । ଫେରିଲାବେଳେ ମାନିଲି ଯେ ଏତେଗୁଡ଼ିଏ ବିଶିଷ୍ଟ ଲୋକଙ୍କୁ ଆମର ପ୍ରଚାରକ କରି ପାଇବା କମ୍ କଥା ନୁହେଁ ।

ତେଣୁ ବରପାଲିଠାରେ ଗାଡ଼ି ରଖ ବୋଲି ହୁକୁମ ହେବାରେ ମୁଁ ଆଉ ପାଟି ଫିଟାଇଲି ନାହିଁ । ଭଗବାନ ବାବୁ ହେରିକା ଆସି ଜୁଟିଗଲେ । ସେଦିନ ସେଠାରେ ବି ହାଟ । ଗୋଟାଏ ସଭା ହେଲା । ମୁଁ ସେଥିରେ ବକ୍ତୃତା ଦେଲି । ପଣ୍ଡିତଜୀ ସଭା ସରିଲା

ବେଲକୁ ଦୁଇଖଣ୍ଡ ଏଣ୍ଡି ଗ୍ୱଦର କଣି ଯାଉଥାନ୍ତି । ବରପାଲିରେ ସେ କିଛି କହିଲେ ନାହିଁ । ମୋ ବକ୍ତୃତା ତାଙ୍କୁ ସୁଖ ଲଗିଲା । ବରପାଲି ପରେ ବାଟରେ ସେ ଆଉ ଠାଏ ସଭା କରିବାକୁ ମନ କରୁଥିଲେ । ପଦ୍ମପୁରରେ ପହଞ୍ଚିଲା ବେଲକୁ ସୁଡ଼ାଏ ଡେରି ହୋଇଯିବ ବୋଲି ମୁଁ କହିବାରେ ସିଧା ପଦ୍ମପୁର ଗଲୁ । ଆମେ ଯାଇ ପହଞ୍ଚିଲାବେଲକୁ ରାତି ପ୍ରାୟ ୮ଟା । ଲୋକ ଫେରିଯାଉଥିଲେ । ମଟର ଶବ୍ଦ ଶୁଣି ପୁଣି ରୁଣ୍ଡ ହୋଇଗଲେ । ଆମେ ଆସିବାକୁ ଡେରି ହେବାରେ ଲକ୍ଷ୍ମୀନାରାୟଣ ମିଶ୍ରେ ହତୋତ୍ସାହ ହୋଇ ଗରମ ହୋଇ ଉଠୁଥିଲେ । ଆମେ ପହଞ୍ଚିବାରେ ଉତ୍ସାହିତ ହୋଇ ସଭାର ଆୟୋଜନରେ ଲାଗିଗଲେ । ସେ କାଳେ ଅଳ୍ପକେ ବଡ଼ ସଭା ହେଉଥିଲା । ପଦ୍ମପୁର ସଭା ଆମ ନିର୍ବାଚନ ଅଭିଯାନର ସବୁଠାରୁ ବଡ଼ ସଭା ବୋଲି ମନେ ପଡ଼ୁଛି । ଆଜି ଜରୁରୀକାଳୀନ ପରିସ୍ଥିତିର ବାର୍ଷିକୀ ପାଳନ ପାଇଁ ଯେଉଁ ସଭା ଭୁବନେଶ୍ୱରରେ ହୋଇଥିଲା ତାହା ଦେଖି ପଦ୍ମପୁରର ସଭା ମନେପଡ଼ୁଛି । ଆଜି ସଭାକୁ ଆସିଥିବା ପ୍ରତ୍ୟେକ ଲୋକଙ୍କୁ ଖୋରାକ ଟଙ୍କା ଓ ଯିବା ଆସିବା ବାଟଖର୍ଚ୍ଚ ଦିଆ ହେଉଛି ବୋଲି ଶୁଣିଛି । ତଥାପି ଲୋକ ହୋଇଥିଲେ ହଜାରକରୁ କମ । ସେ ଦିନ ପଦ୍ମପୁର ପରି ଜନବିରଳ ଅଞ୍ଚଳରେ ୫ ହଜାରରୁ ଅଧିକ ଲୋକ କିପରି ଏକାଠି ହୋଇ-ଥିଲେ ବିଚାରିଲା ବେଲକୁ ମନରେ କ୍ଷୋଭ ହେଉଛି ।

ସଭା ସରିଲା ପ୍ରାୟ ରାତି ଏଗାରଟାରେ । ବକ୍ତୃତା ଦେଲି, ନୀଳକଣ୍ଠ ବାବୁ ଦେଲେ ଏବଂ ଆମ ଦୁହିଁଙ୍କ ଆଗରୁ ଉପକ୍ରମଣିକା କଲେ ପଣ୍ଡିତ ଲକ୍ଷ୍ମୀନାରାୟଣ । ତାଙ୍କର ଭାଷା ସଂସ୍କୃତ ବୋଲି କହିଲେ ଚଳେ । ପଦ୍ମପୁରର ସାଧାରଣ ଲୋକ ତାଙ୍କ ବକ୍ତୃତା ବୁଝି ପାରିବା ଅସମ୍ଭବ । ତାଙ୍କ ଅବଲମ୍ବ ଓ କହିବା ଠାଣିରେ ଶ୍ରୋତାମାନେ ଉଦ୍‌ବୁଦ୍ଧ ହେଉଥାନ୍ତି ବୋଲି ଜଣାପଡ଼ୁଥାଏ, ଘନଘନ କରତାଳିରୁ । ପଣ୍ଡିତ ନୀଳକଣ୍ଠଙ୍କର ଆମ ଆଡ଼ ଓଡ଼ିଆ । ସେ ୧୯୨୮ ଓ ୧୯୨୨ ରେ ସମ୍ବଲପୁରରେ ଥିଲେହେଁ ତାଙ୍କ ଭାଷାରେ ପ୍ରବେଶ କରିପାରି-ନଥାନ୍ତି । ତାଙ୍କ ଦାଢ଼ି ଓ ଦର୍ପ ତ ଶ୍ରୋତାଙ୍କର ମନୋରଞ୍ଜନ ହେଉଥାଏ । ମୋ ବକ୍ତୃତାରେ ସମ୍ବଲପୁରୀ ଚଳିଭାଗ ଓ ଆମ ଓଡ଼ିଆ ଭାଗେ । ଲୋକେ ଆଁ କରି ଶୁଣୁଥାନ୍ତି ଏବଂ ତାଙ୍କ ଆଖିରୁ ମୁଁ ବେଶ ଜାଣିପାରୁଥାଏ, କଥା ତାଙ୍କ ମଗଜରେ ପଶୁଛି ।

ସଭା ଶେଷରେ ଡାକବଙ୍ଗଳାରେ କଥାବାର୍ତ୍ତା ବେଳେ ଲକ୍ଷ୍ମୀନାରାୟଣ ବାବୁ ଗୋକୁଳାନନ୍ଦ ନାୟକ ପ୍ରମୁଖ ସ୍ଥାନୀୟ ଓକିଲମାନଙ୍କ ସମର୍ଥନରେ ନିର୍ଭର ଭାବେ ଜଣାଇ ଦେଲେ ଯେ ଏ ଅଞ୍ଚଳରେ ଆମର ବିଜୟ ବିଷୟରେ ସଂଶୟ ନାହିଁ । ପଣ୍ଡିତ ନୀଳକଣ୍ଠ ସତର୍କ କରାଇଦେଉଥାନ୍ତି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜାଗରିଥାଇ ହେବାକୁ ହେବ । ହଠାତ୍ ଶେଷ ମୁହୂର୍ତ୍ତରେ ଲୋକଙ୍କ ମନ ବଦଳିଯାଇପାରେ । ସେତେବେଳେ ସାବାଳକ ଭୋଟ ନୁହେ । ଚୌକିଦାରଙ୍କୁ ଖଜଣା ଦେଉଥିବାବାଲା ସେତେବେଳେ ଭୋଟର । ତଥାପି ଏମାନେ ବି ବେଳେ ବେଳେ ଉଇଁଣୀଉଠାରେ ଉଠିଯାଆନ୍ତି । ଡିଷ୍ଟ୍ରିକ୍ଟ ବୋର୍ଡ ଓ ବିହାର ଓଡ଼ିଶା ଆସେମ୍ବ୍ଲି ନିର୍ବାଚନ ସମ୍ପର୍କୀୟ ଅନୁଭୂତ କହି ସେ ସମସ୍ତଙ୍କୁ ଆମୋଦିତ କରୁଥାନ୍ତି । ସେ

ସ୍ୱତ ପାହୁଯାଇଥାନ୍ତି । ଭେଟିବାକୁ ଆସିଥିବା ବନ୍ଧୁମାନେ ଉଠୁନଥାନ୍ତି । ସ୍ୱାଙ୍କର ବ କଥାର ବିରାମ ନଥାଏ । ମୁଁ ଲଗାଇ ଲଗାଇ ପ୍ରାୟ ଗୋଟାକ ବେଳକୁ ସମସ୍ତଙ୍କୁ ବିଦାୟ ଦେଲି । ଆମେ ରହିଲୁଁ ଦୁହେଁ ଓ ପ୍ରାର୍ଥୀ ଲକ୍ଷ୍ମୀନାରାୟଣ ବାବୁ । ପଣ୍ଡିତଜୀ କହିଥିବାର ମନେଅଛି ଯେଉଁମାନେ ଲୋକପ୍ରତିନିଧି ହେବେ ସେମାନେ ଜନସ୍ୱାର୍ଥରେ ନିଜର ସବୁପ୍ରକାର ସ୍ୱାର୍ଥକୁ ଭୁଲିଯିବା ଦରକାର । ଏ କଥାରେ ସର୍ବାନ୍ତଃକରଣରେ ଏକ ହେବା ଭଳିଆ ଲୋକ ଥିଲେ ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରେ—ଭାରି ସିଧା ଓ ଖାଣ୍ଟି । ତାଙ୍କ ଭଳି କଂଗ୍ରେସ ବାଲା ଆଜ (୧୯୭୭) ବିରଳ ।

ସେ ରାତିଟାଯାକ ଆମ ଦୁହିଁଙ୍କର—ଲକ୍ଷ୍ମୀନାରାୟଣ ବାବୁ ଖାଇବା ପରଠୁ ଶୋଇଲେ —ଗଲା ନିର୍ବାଚନ ଫଳର କଳ୍ପନା ଜଳ୍ପନାରେ ଓ ପ୍ରଚାରର ଯୋଜନା ସାଫିଁ କରିବାରେ । ସକାଳ ହେବା ପୂର୍ବରୁ ଆମେ ବାହାରିଲୁ ବ୍ରହ୍ମପୁର ଅଭିମୁଖେ ବଲାଙ୍ଗିର, ସୋନପୁର, ଫୁଲବାଣୀ ବାଟେ । ରସଲକୁଣ୍ଡାରେ ପହଞ୍ଚିଲା ବେଳକୁ ପ୍ରାୟ ୪ଟା । ଦିବାକର ବାବୁ ଅପେକ୍ଷା କରିଥାନ୍ତି । ସେଦିନ ସନ୍ଧ୍ୟାରେ ଦୁଇଟା ବଡ଼ ଗାଁରେ ଦୁଇଟା ମିଟିଂ ହେଲା । ରାତି ରାତି ଯାଇଁ ବ୍ରହ୍ମପୁରରେ ପହଞ୍ଚିଲୁ । ମଟରରେ ମଝିରେ ମଝିରେ ନୀଳକଣ୍ଠ ବାବୁ ଶୋଇ ପଡ଼ନ୍ତି ଥରକୁ ୧୦ । ୧୫ ମିନଟ୍ ଲେଖାଏ, ଦିନ ଭିତରେ ପ୍ରାୟ ୮ । ୧୦ ଥର । ଏଇଥିରେ ତାଙ୍କର କ୍ଳାନ୍ତି ଦୂର ହୁଏ । ଉଠିଲେ ତ ସେଇ ନିର୍ବାଚନ ଚିନ୍ତା ଓ ଆଲୋଚନା । ଏପରି ଏକନିଷ୍ଠ ହୋଇ କାମ କରିବା ଲୋକ ଆଜିକାଲି ବିରଳ ।

ବ୍ରହ୍ମପୁରରୁ ତହିଁ ଆରଦିନ ନୀଳକଣ୍ଠ ବାବୁ ବାହାରିଲେ ଦିବାକର ବାବୁଙ୍କ ସାଙ୍ଗେ ମଫସଲକୁ । ମୋତେ ହୁକୁମ ହେଲି ଶୀଘ୍ର 'ଲୋକମତ'ର କାମ ସାରିଦେଇ ଅନୁଗୁଳ ଓ ଖୋର୍ଦ୍ଧା ପ୍ରଚାରରେ ଯିବାକୁ । ଏ ଦୁଇଟି ନିର୍ବାଚନ ମଣ୍ଡଳ ମୋର ସ୍ୱତନ୍ତ୍ର ଦାୟିତ୍ୱ ।

ଅନୁଗୁଳରେ ଜଣେ ସ୍ଥାନୀୟ କଣ୍ଟ୍ରାକ୍ଟର ଗିରିଜାଭୂଷଣ ଦତ୍ତ ବଲାଙ୍କୋରରେ ମନୋନୀତ ହୋଇଥାନ୍ତି ଓ ଖୋର୍ଦ୍ଧା ସିଟ୍‌ରେ ସ୍ୱର୍ଗୀୟ ପ୍ରାଣନାଥ ପଟ୍ଟନାୟକ । ମୋର ବନ୍ଧୁମାନଙ୍କର ମନ ଥିଲା ମୁଁ ଖୋର୍ଦ୍ଧାରୁ ଠିଆ ହୁଅନ୍ତି । ମୋ ନାମ ମଧ୍ୟ କେନ୍ଦ୍ରରେ ମନୋନୀତ ହୋଇଥିଲା । କିନ୍ତୁ ମୁଁ ମୂଳରୁ ଧରିଥାଏଁ ଯେ ଯେଉଁମାନେ ଲେଖା ଲେଖି କରିବେ ବିଶେଷ କରି ସାଂବାଦିକତାରେ ରହିବେ ସେମାନେ ବ୍ୟବସ୍ଥା ସଭାକୁ ଯିବାର ନୁହେଁ । ଗଲେ ନିଜ ଦଳର ଅନ୍ଧ ସମର୍ଥକ ହେବାକୁ ପଡ଼ିବ । ଖବରକାଗଜର ମର୍ଯ୍ୟାଦା ରହିବ ନାହିଁ କି ବ୍ୟବସ୍ଥାପକର ଇଜ୍ଜତ ରହିବ ନାହିଁ । କେନ୍ଦ୍ରରୁ ତାଲିକା ଆସିବା ପରେ ମଧ୍ୟ ମୁଁ ଅଡ଼ି ବସିଲି, ଠିଆହେବି ନାହିଁ । ଜଣେ ବନ୍ଧୁ ବିଦ୍ରୂପ କରି କହିଲେ, ଫେଲ ହୋଇଯିବ ବୋଲି ଡର । ମୁଁ କହିଦେଲି, କୁକୁର ପିଲାଟିଏ ମଧ୍ୟ ଠିଆ କର ମୁଁ ତାକୁ ଜଣାଇଦେବି । ପ୍ରକୃତରେ ମୋର ସେତେବେଳେ ଖୋର୍ଦ୍ଧା ଅଞ୍ଚଳରେ ଭାରି ଲୋକପ୍ରିୟତା । ପ୍ରାୟ ଶହେ ଖଣ୍ଡେ ଚିଠି ପ୍ରାଦେଶିକ କଂଗ୍ରେସ କମିଟିକୁ ଆସିଥାଏ, ମୋତେ ଠିଆ କରିବାକୁ ଅନୁରୋଧ କରି । ସେତେ-ବେଳକୁ କଂଗ୍ରେସ ଅସ୍ପୃଶ୍ୟ ବିଦ୍ୱେଷ, ହିଂସା ଓ ପେଷ ପାଞ୍ଚର ଗନ୍ତାଘର ହୋଇ ଆସୁଥାଏ ।

କେତେଜଣ ବନ୍ଧୁ ପ୍ରଥମାବସ୍ଥାରେ ପ୍ରଚାର କରୁଥିଲେ ଯେ, ମୁଁ ନିଜେ ଚେଷ୍ଟା କରି ଏ ଚିଠି-ଗୁଡ଼ାକ ଲେଖାଇପଠାଉଛି । ଶେଷରେ ପ୍ରାଣନାଥ ପଟ୍ଟନାୟକଙ୍କୁ ଠିଆ କରିବାର ହେଲା ଓ ମୋ ଉପରେ ଭାର ରହିଲା ମୁଁ ନିଜେ ଠିଆ ହେଲାଭଳି ସେଠାରେ ପ୍ରଚାର କରିବି । ନୀଳକଣ୍ଠ ବାବୁଙ୍କ ନିରଳସ ଚେଷ୍ଟାର ଅନୁକରଣ କରି ମୁଁ ଏ ଦୁଇ ନିର୍ବାଚନ ମଣ୍ଡଳୀରେ ଲାଗିଲି । ସମୟ ମିଳିଲେ କଟକର ଅନ୍ୟ ଦୁଇ ଚାରିଟା ନିର୍ବାଚନ ମଣ୍ଡଳୀକୁ ମଧ୍ୟ ବୁଲିଆସେ ।

ନୀଳକଣ୍ଠ ବାବୁଙ୍କ ଯୋଗୁଁ ଓଡ଼ିଶାର ନିର୍ବାଚନ ପ୍ରଚାର ଗୋଟିଏ ଜାତୀୟ ଆନ୍ଦୋଳନର ଆଡ଼ା ନେଲା । ନିର୍ବାଚନ ଦିନ ଯେତିକି ଯେତିକି ନିକଟ ହେଉଥାଏ, ପଣ୍ଡିତ ନୀଳକଣ୍ଠଙ୍କ ଓ ତାଙ୍କ ଗୋଷ୍ଠୀର ଆଶା ସେତିକି ମୋଟ ହେଉଥାଏ । ଆନ୍ତରିକ ଭାବରେ ନ ହେଲେ ବି ପଣ୍ଡିତ ନୀଳକଣ୍ଠଙ୍କ ହଟହଟା ଦେଖି ଖୁସି ହେବାର ଆଶାରେ ଆମ ଦଳର ଅନେକ ଚାହିଁ ରହିଥାନ୍ତି, କିପରି ଅଧିକାଂଶ କଂଗ୍ରେସ ପ୍ରାର୍ଥୀ ଫେଲ୍ ହୋଇଯାନ୍ତେ । ଅନ୍ତତଃ ୩୦ରୁ କେମିତି ହେଲେ କମ କଂଗ୍ରେସ ବାଲା ବ୍ୟବସ୍ଥାପକକୁ ଆସନ୍ତେ ।

ଭୋଟ ଗଣତି ଦିନ ପାର ହୋଇଗଲା । ସମସ୍ତ ଭାରତ ଆଶ୍ଚର୍ଯ୍ୟ ହୋଇଗଲା ଯେ ଆମର ମୋଟ ୩୭ ଜଣ ପ୍ରାର୍ଥୀଙ୍କ ଭିତରୁ ୩୫ ଜଣ ଜିଣିଲେ । ଆମର ନିର୍ବାଚନ ଫଳ ଅନେକ ପ୍ରଦେଶର ନିର୍ବାଚନ ପୂର୍ବରୁ ବାହାରିଯିବାରୁ ଆମର ବିଜୟ ସେହି ସେହି ପ୍ରଦେଶର ଭୋଟରମାନଙ୍କ ଉପରେ ନିଶ୍ଚିତ ଭାବରେ ପ୍ରଭାବ ପକାଇଥିଲା । କେନ୍ଦ୍ର ନିର୍ବାଚନ କମିଟିରୁ କଂଗ୍ରେସ ସଂପାଦକ ଶ୍ରୀ କୃପାଳନୀ ପଣ୍ଡିତ ନୀଳକଣ୍ଠଙ୍କୁ ବହୁମାନ ଦେଇ ଟେଲିଗ୍ରାମ ପଠାଇଥିଲେ ।

## କଂଗ୍ରେସରେ ଦୋଫାଙ୍କ

ନିର୍ବାଚନ ସରିଲା ପରେ ଆରମ୍ଭ ହେଲା ପଣ୍ଡିତ ନୀଳକଣ୍ଠ ଦାସଙ୍କ ବିପର୍ଯ୍ୟୟ । ତହିଁ ସଙ୍ଗେ ତାଙ୍କ ସଙ୍ଗେ କ୍ଷୀରରେ ନୀରପରି ମିଶିଯାଇଥିବା ଆମ୍ଭମାନଙ୍କର ବି ଅସ୍ତ୍ରସମସ୍ତ —ଆମେ ବୋଇଲେ, ପୁରୀ ଓ ଗଞ୍ଜାମର ଅଧିକାଂଶ କଂଗ୍ରେସ ବାଲା ଏବଂ ସମ୍ବଲପୁର ଓ କଟକର କେତେଜଣ । ବାଲେଶ୍ୱରରେ ଆମର ଜଣେ କେହି ନ ଥାନ୍ତି କହିଲେ ଚଳେ । ସେହିପରି କୋରାପୁଟରେ ଆମ ପ୍ରତିଦ୍ୱନ୍ଦ୍ୱୀଙ୍କର କେହି ନ ଥାନ୍ତି । କଂଗ୍ରେସରେ ଆମ ଦଳ ସଂଖ୍ୟାଗରିଷ୍ଠ । ବ୍ୟବସ୍ଥାପକ ସଭାର ମୋଟ ସଭ୍ୟ ସଂଖ୍ୟା ଷାଠିଏରୁ ୩୫ ଜଣ କଂଗ୍ରେସ ବାଲା ହୋଇଥିବାରୁ ପଣ୍ଡିତ ନୀଳକଣ୍ଠ ଧରିନେଲେ ଏହି ୩୫ ଜଣଯାକ ତାଙ୍କର । ଏହି ଧାରଣାରେ ତାଙ୍କର ମନେହେଲା ସେ ନିର୍ଦ୍ୱନ୍ଦ୍ୱରେ ପ୍ରଧାନମନ୍ତ୍ରୀ ହୋଇଯାଇପାରିବେ । ଏହି ସଂଖ୍ୟାଗରିଷ୍ଠତା ମିଳିବା ପରେ ତାଙ୍କ ମନରେ ପ୍ରଧାନମନ୍ତ୍ରୀତ୍ୱର ଆକାଂକ୍ଷା ହେଲା ବୋଲି ମୁଁ ଲକ୍ଷ୍ୟ କରିଛି । କିନ୍ତୁ ଆମ ସଙ୍ଗେ ପଡ଼ୁ ନଥିବା ଅନେକଙ୍କଠାରୁ ମୁଁ ଶୁଣିଛି, ନୀଳକଣ୍ଠ ବାବୁ ନିର୍ବାଚନ ପୂର୍ବରୁ ଏହି ଆକାଂକ୍ଷା ରଖିଥିଲେ । ସେ ନିଜେ ଠିଆ ହୋଇନଥିଲେ ହେଁ, ମୋତେ ଖୋର୍ଦ୍ଧାରେ ଏବଂ ମୋହନ ଦାଶଙ୍କୁ ନିମାପଡ଼ାରେ ଠିଆ କରାଇବାକୁ ବସିଲା ବେଳେ ସେ ଫିକର କରିଥିଲେ ମୋତେ ବା ମୋହନ ଦାସଙ୍କୁ ନିର୍ବାଚନ ପରେ ଇସ୍ତଫା ଦିଆଇ ନିଜେ

ସେଇ ଠାରୁ ନିର୍ବାଚିତ ହୋଇଯିବେ । ବ୍ୟବସ୍ଥା ସଭାର ମେମ୍ବର ନ ଥିବା ବ୍ୟକ୍ତି ପ୍ରଧାନମନ୍ତ୍ରୀ ବା କୌଣସି ମନ୍ତ୍ରୀ ହେବାରେ ବାଧା ନ ଥିଲା କି ଏବେ ବି ନାହିଁ । ୬ ମାସ ଭିତରେ ମେମ୍ବର ହୋଇଗଲେ ଗଲା ।

ପୂର୍ବରୁ ପଣ୍ଡିତ ନୀଳକଣ୍ଠ ଏହିଭଳି କୁପାଞ୍ଚ କରି ନିର୍ବାଚନ ଅଭିଯାନ ଚଳାଇଥିଲେ ବୋଲି ଆମର ବିରୋଧି ଗୋଷ୍ଠୀଙ୍କର କଥାରେ ମୁଁ ବିଶ୍ୱାସ କଲି ନାହିଁ । ପଣ୍ଡିତ ନୀଳକଣ୍ଠଙ୍କର ଏ ଅଭିସନ୍ଧି ଥିଲେ ମୁଁ ଅନ୍ତତଃ ଜାଣିପାରିଥାନ୍ତି । ମୁଁ ନିର୍ବାଚନ ପ୍ରସ୍ତୁତି ଚାଲିଥିଲା ବେଳେ ଏକାଧିକ ବାର ଲୋକମତରେ ଲେଖିଛି ଯେ, କଂଗ୍ରେସର ଦୁଇଟି ବାହୁ ରହିବ—ରାଜନୈତିକ ଦଳ ଓ ଶାସକ ଗୋଷ୍ଠୀ । କଂଗ୍ରେସର ଯେ ଜେଣ୍ଟ୍ରୀ ତାଙ୍କର ମନ୍ତ୍ରୀମଣ୍ଡଳକୁ ଚାଳିତ କରିବାର କ୍ଷମତା ରହିବ । ନିକୁଞ୍ଜ ପକ୍ଷରେ ଉଭୟେ ପୂର୍ଣ୍ଣ ସହଯୋଗରେ କାମ କରିବେ ଓ କଂଗ୍ରେସ ସଭାପତି ଓ ପ୍ରଧାନମନ୍ତ୍ରୀ କଦାପି ନ କାଳେ ଏକ ବ୍ୟକ୍ତି ହେବେ ନାହିଁ । ପଣ୍ଡିତ ନୀଳକଣ୍ଠଙ୍କ ମନରେ ପ୍ରଧାନମନ୍ତ୍ରୀ ହେବା କଥା ଅଛି ବୋଲି ଜାଣିଥିଲେ ଏ କଥା ମୁଁ ଲେଖିନଥାନ୍ତି । ଏବଂ ସେ ମୋତେ ଖୋର୍ଦ୍ଧାରେ ଠିଆ ହେବାକୁ କହିବା ବେଳେ ମୁଁ ଠିଆ ନହେବାକୁ ଜିଦ୍ କରିନଥାନ୍ତି ।

କଂଗ୍ରେସ-ବ୍ୟବସ୍ଥାପକମାନଙ୍କର ମିଟିଂ ହେବା ପୂର୍ବରୁ ମହତାବ ବାବୁଙ୍କ ଉଦ୍ୟମରେ ଅନ୍ଧାରିଆ କାମ ହୋଇ ସ୍ଥିର ହୋଇଥାଏ ଯେ, ଶ୍ରୀ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେବେ । ନୀଳକଣ୍ଠ ବାବୁ ହେବା ଉଚିତ ନୁହେଁ ବୋଲି କହିଲା ବେଳେ ଆମ ବନ୍ଧୁମାନେ ବି ଲୋକମତର ଯୁକ୍ତି ପୁନରାବୃତ୍ତି କରନ୍ତି । ବୋଧରାମ ବାବୁଙ୍କୁ ମନ୍ତ୍ରୀ ଓ ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ ଓ ଜଗନ୍ନାଥ ମିଶ୍ରଙ୍କୁ ପାର୍ଲିମେଣ୍ଟାରୀ ସେକ୍ରେଟାରୀ ପଦ ଦେବାରେ ମଧ୍ୟସ୍ଥ କରି ଶ୍ରୀ ହରେକୃଷ୍ଣ ମହତାବ ନୀଳକଣ୍ଠ ବାବୁଙ୍କ ଅନ୍ତରଙ୍ଗ ଗୋଷ୍ଠୀରେ ଫାଟ ମେଲାଇ ଦେଲେ । ମହତାବ ବାବୁ ନିର୍ବାଚନରେ ଠିଆ ହେବାକୁ ସେତେବେଳେ ଅଯୋଗ୍ୟ ହୋଇଥିଲେ ; ନହୋଇଥିଲେ ସେ ଠିଆ ହୋଇଥାନ୍ତେ ଓ ନିଶ୍ଚୟ ପ୍ରଧାନ ମନ୍ତ୍ରୀତ୍ୱର ଆଶା ରଖିଥାନ୍ତେ । ତାଙ୍କର ଭୟ ଯଦି ନୀଳକଣ୍ଠ ବାବୁ ଥରେ ରାଜ୍ୟର ଶାସନ ଭାର ପାଇଯାନ୍ତି ତେବେ ତାଙ୍କ ଜୀବଦ୍ଦଶାରେ ଆଉ ତାଙ୍କୁ ହଟାଇ ହେବ ନାହିଁ । ଯେ ଧରିବସିଥାନ୍ତି ଆଉ ଯେ ହେଉ ପଛେ ନୀଳକଣ୍ଠ ବାବୁ ନ ହୁଅନ୍ତୁ । ତେଣୁ ସେ ଲାଗିଥାନ୍ତି ବିଶ୍ୱନାଥ ବାବୁ କେମିତି ହେଲେ ପ୍ରଧାନମନ୍ତ୍ରୀ ହୁଅନ୍ତୁ । ତାଙ୍କ ଅଦମ୍ୟ ଚେଷ୍ଟା ଫଳରେ କଂଗ୍ରେସ ବ୍ୟବସ୍ଥାପକମାନଙ୍କ ବୈଠକରେ ବିଶ୍ୱନାଥ ବାବୁଙ୍କ ନାମ ଗୃହୀତ ହେବାରେ ବାଧା ରହିଲା ନାହିଁ ।

ଏ ଆଘାତଟା ପଣ୍ଡିତ ନୀଳକଣ୍ଠ ସମ୍ଭାଳିନେଇଥିଲେ ସବୁ ସୁରୁଖୁରୁରେ ଚାଲିଥାନ୍ତା । କିନ୍ତୁ ନୀଳକଣ୍ଠ ବାବୁ ତ ସେ ଢଙ୍ଗର ଲୋକ ନୁହନ୍ତି । ତାଙ୍କ ତୁଣ୍ଡ ଖୋଲ ଖୋଲ ; ପେଟର କଥା ପେଟରେ ରଖିବା ମଧ୍ୟ ତାଙ୍କ ଧାତୁରେ ନ ଥାଏ । ଅନେକ ସମୟରେ ଲକ୍ଷ୍ୟ କରିଛି ତାଙ୍କ ପେଟରେ ଯେତେ ଅସୂୟା ନ ଥାଏ ତୁଣ୍ଡରେ ତହିଁରୁ ଅଧିକ ପ୍ରକାଶ କରନ୍ତି ।

ବିଶ୍ୱନାଥ ଦାସେ ପ୍ରଧାନମନ୍ତ୍ରୀ ହେବା ସଙ୍ଗେ ସଙ୍ଗେ ସେ ଗୃଣ୍ଡରେ ଓ ନବଭାରତରେ ତାଙ୍କ ମନ୍ତ୍ରୀମଣ୍ଡଳର କଡ଼ା ସମାଲୋଚନା ଆରମ୍ଭ କରିଦେଲେ ।

ଲୋକମତରେ ମୁଁ ଏତେ ଦୂର ଯାଇପାରିଲି ନାହିଁ । ମୋର ବିଶ୍ୱନାଥ ଦାସଙ୍କ ପ୍ରତି ମୂଳରୁ ଅନୁକୂଳ ମନୋଭାବ । ତାହାର ପ୍ରଧାନ କାରଣ ମାତ୍ର ୩୭ । ୩୭ ବର୍ଷରେ ତାଙ୍କର ସ୍ତ୍ରୀ ବିୟୋଗ ହୋଇଥିଲେ ହେଁ ସେ ଦ୍ୱିତୀୟଦାର ପରିଗ୍ରହ ନ କରି ବ୍ରହ୍ମଚର୍ଯ୍ୟ ପାଳି ରହିଥିଲେ । ଗଞ୍ଜାମର ଜମିଦାରମାନଙ୍କ ଭିତରୁ ୨ । ୩ ଜଣଙ୍କୁ ଛାଡ଼ିଦେଲେ ଅବଶିଷ୍ଟ ପ୍ରତ୍ୟେକଙ୍କଠାରୁ ସେ ଅଧିକ ସମ୍ପତ୍ତିର ମାଲିକ ହୋଇଥିଲେ ହେଁ ପ୍ରଥମ ଯୌବନରୁ ଅତି କଷିକାଷି ହୋଇ ଚଳନ୍ତି । ଲାଲା ନଗେନ୍ଦ୍ର କୁମାର ରାଏଙ୍କଠାରୁ ଶୁଣିଥାଏ, ସେ କଲିକତାରେ ଆଇନ୍ ପଢ଼ିବାବେଳେ ଜାଣ୍ଡିଆ କୁଣ୍ଡା ଓ ଲୁଣ ସକାଳେ ଜଳଖିଆ କରୁଥିଲେ । ତାଙ୍କ ବକ୍ତୃତା ଓ ଲେଖା ( ବିଶେଷକରି ଓଡ଼ିଆ ) ଉଚ୍ଚ ଧରଣର ନ ହେଲେ ମଧ୍ୟ ତାଙ୍କ ଚରିତ୍ର ଓ ସାଧାରଣ ବ୍ୟବହାର ଯୋଗୁଁ ମୁଁ ତାଙ୍କର ପକ୍ଷପାତୀ ଥାଏ । ମୋର ପକ୍ଷର ଲୋକ ପଣ୍ଡିତ ନୀଳକଣ୍ଠ, ଶଶିବାବୁ ଓ ଦିବାକର ବାବୁ ତାଙ୍କ ବିରୁଦ୍ଧରେ ସଦାସର୍ବଦା ଲାଗିଥିବାରୁ ମତେ ମଧ୍ୟ ଏ ଗୋଷ୍ଠୀଭୁକ୍ତ ହେବାକୁ ପଡ଼େ । କିନ୍ତୁ ଅନ୍ତରରେ ସମର୍ଥନ ଥିବାରୁ ଲେଖାରେ ମୁଁ ଲଗାମଛଡ଼ା ହୋଇପାରେନାହିଁ । ଏଥି ଯୋଗୁଁ ମୁଁ ପଣ୍ଡିତ ନୀଳକଣ୍ଠଙ୍କଠାରୁ ଅନେକ ସମୟରେ ଟାଣ ଟାଣ କଥା ଶୁଣିଛି । ଥରେ ମୋତେ ସେ ଢୋଲ ଭିତରେ ମୂଷା ବୋଲି ମଧ୍ୟ କହିଥିଲେ ।

ବିଶ୍ୱନାଥ ବାବୁ ପ୍ରଧାନ ମନ୍ତ୍ରୀ ( ସେତେବେଳେ ପ୍ରଦେଶର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନ ମନ୍ତ୍ରୀ କୁହାଯାଉଥିଲା । କେନ୍ଦ୍ରରେ ପଣ୍ଡିତ ଜବାହର ପ୍ରଧାନ ମନ୍ତ୍ରୀ ହେବା ପରେ, ପ୍ରଦେଶ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କହିଲେ ତାଙ୍କ ପ୍ରୌଢ଼ୀରେ ଆଘାତ ହେବାରୁ ଏମାନଙ୍କୁ ମୁଖ୍ୟମନ୍ତ୍ରୀ ପଦ ଦିଆଗଲା ) ହେବାର ଅଳ୍ପଦିନ ପରେ ସେ ଗୋଟିଏ କାରଣରୁ ଲୋକପ୍ରିୟ ହୋଇଗଲେ । ଆମ ପକ୍ଷର ଅନେକ ଲୋକ କହିଲେ ଯେ, ଏ କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠ ବିଶ୍ୱନାଥ ବାବୁଙ୍କ ସାହସ ଦେଖାଇପାରିନଥାନ୍ତେ । କଂଗ୍ରେସ ମନ୍ତ୍ରୀତ୍ୱ ଗ୍ରହଣ କଲାବେଳେ ଆମ ପ୍ରଦେଶର ଲାଟ ଥିଲେ ସାର ଜନ୍ ଅଷ୍ଟିନ୍ ହବାକ । ସେ କେତେ ମାସ ଛୁଟିରେ ଯିବାକୁ ଦରଖାସ୍ତ କରିବା ହେତୁ ଭାରତର ଭାଇସରୟ ତାଙ୍କ ଛୁଟି ମଞ୍ଜୁର କରି ତାଙ୍କ ସ୍ଥାନରେ କଟକର କମିଶନରଙ୍କୁ ଅସ୍ଥାୟୀ ଲାଟ କରିବାକୁ ଆଦେଶ ଦେଲେ । ବିଶ୍ୱନାଥ ବାବୁ ଅଡ଼ି ବସିଲେ, ତାଙ୍କ ଅଧୀନସ୍ଥ କମିଶନର ଯଦି ଲାଟ ହୋଇ ତାଙ୍କ ଉପରକୁ ଯାନ୍ତି ତେବେ ସେ ଇସ୍ତଫା ଦେଇଦେବେ । ଆମ ପ୍ରଦେଶ କଂଗ୍ରେସ କମିଟି ମଧ୍ୟ ବିଶ୍ୱନାଥ ବାବୁଙ୍କ ପକ୍ଷ ସମର୍ଥନ କଲେ । ପଣ୍ଡିତ ନୀଳକଣ୍ଠଙ୍କର ଭିତିରି ମତଲବ ଥାଏ ବିଶ୍ୱନାଥ ଦାସେ ଗଲେ କଣ୍ଟା ଯିବ । ଭାରତ କଂଗ୍ରେସ ବିଶ୍ୱନାଥ ବାବୁଙ୍କ ଦାବୀକୁ ସମର୍ଥନ କଲେ । ଭାରତ ସରକାର ଦେଖିଲେ କ୍ରିମିଟି ଖେଳରୁ ମହାଭାରତ ହୋଇଯିବ । ଏତେ ସାଧ୍ୟ ସାଧନାର ଆଂଶିକ ସ୍ୱାଧୀନତା ପ୍ରଦେଶମାନଙ୍କୁ ଯାହା ଦିଆହୋଇଛି ତାହା ଭଣ୍ଡୁର ହୋଇଯିବ । ବିଶ୍ୱନାଥ ବାବୁ ଇସ୍ତଫା

ଦେଲେ ଅନ୍ୟ ସବୁ ପ୍ରଦେଶର କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେବେ ଓ ଭାରତ ସରକାରରେ ହିନ୍ଦୁ ମୁସଲମାନଙ୍କୁ ମିଳାଇ ଯେଉଁ ଆଂଶିକ ସ୍ୱାୟତ୍ତ ଶାସନର କଳ୍ପନା ହୋଇଥାଏ ତାହା ଅକାମି ହୋଇଯିବ । ବଡ଼ ବିଚକ୍ଷଣ ଭାବରେ ଭାରତ ସରକାର ଏ ପରିସ୍ଥିତକୁ ସୁଧାରିଦେଲେ । ସାର୍ ଜନ ହବାକ୍ ଭାରତ ସରକାରଙ୍କୁ ଜଣାଇଦେଲେ, ସେ ଯେଉଁ କାରଣରେ ଛୁଟି ନେଉଥିଲେ ସେ କାରଣ ଆଉ ନାହିଁ । ତାଙ୍କର ଯେଉଁ ଛୁଟି ମଞ୍ଜୁର ହୋଇଥିଲା ତାହା ରଦ୍ଦ ହୋଇଗଲା ।

ବିଶ୍ୱନାଥ ବାବୁଙ୍କର ମର୍ଯ୍ୟାଦା ଓଡ଼ିଶାରେ ବଢ଼ିଗଲା । ନୂଆ ଓଡ଼ିଶା ପ୍ରଦେଶ ସମଗ୍ର ଭାରତର ଆଖିରେ ପଡ଼ିଲା । ଘର ବାହାର ପ୍ରତ୍ୟେକ କଂଗ୍ରେସ ବାଲା ବଡ଼ କଣ୍ଢାପରି ଟାଏ ହେଲା ବୋଲି ଭାବି ଫୁଲିଇଲେ । ପଛକୁ ପଛ ବିଶ୍ୱନାଥ ବାବୁ କେତେଗୁଡ଼ିଏ କାମ ହାତକୁ ନେଲେ ଯାହାକି କଂଗ୍ରେସ ପକ୍ଷରୁ ବହୁ ବର୍ଷ ହେଲା ଆପତ୍ତି ହେଉଥିଲା । ସେଥିରୁ ଦୁଇଟି ପ୍ରଧାନ : (୧) ଓଡ଼ିଶାର ସବୁ ଅଞ୍ଚଳର ମଠବାଡ଼ି ଦୁର୍ନୀତିର ଗନ୍ତାଘର ହୋଇଗଲା । ବିଶେଷ କରି ପୁରୀର ମଠବାଡ଼ିର ଦୁର୍ନୀତି ବିରୋଧରେ ଆମ ଗୋଷ୍ଠୀ ବହୁତ ଲେଖାପଢ଼ା କରିଥିଲୁଁ । ଭାଗିମାନଙ୍କୁ ଖାଇବାକୁ ଦେବା ଓ ମଠରେ ରହିବାକୁ ସ୍ଥାନ ଦେବା ମଠମାନଙ୍କର ପ୍ରଧାନ କାମ ଥିଲା । ଏ ସବୁ ମୂଳରୁ ଯାଇଥାଏ । ମହନ୍ତମାନେ ଦଅଁକୁ ଆଖି ମିଟିକା ମାରି ବିଳାସ ବ୍ୟସନରେ ମାତିଥିଲେ ଏବଂ ନଜର ଭାଇ ଭଉଜାଙ୍କୁ ଆଣି ମଠରେ ପୋଷୁଥିଲେ । କଂଗ୍ରେସ ମନ୍ତ୍ରୀମଣ୍ଡଳ ଏହାର ପ୍ରତିକାର କଲେ । ଦେବୋତ୍ତର କମିଶନର ନିଯୁକ୍ତ କରି ଦେବୋତ୍ତର ବିଭାଗ ମଠବାଡ଼ିର ଆୟ ବ୍ୟୟ ନୀତିନିୟମ ଉପରେ ହସ୍ତକ୍ଷେପ କରି ମଠ ବାଡ଼ିର ସୁପରିଚାଳନା ଉପରେ ଦୃଷ୍ଟି ଦେଲେ । (୨) ଜମିଦାରମାନେ ପ୍ରଜାଙ୍କ ଜମି ବିକ୍ରୀ ଖରିଦ ବେଳେ ଶତକଡ଼ା ୨୫ ଟଙ୍କା କରି ଦାଖଲ ଖାରଜ ରୋଷମ୍ ନେଉଥିଲେ । ଜଗନ୍ନାଥ ମହାପ୍ରଭୁଙ୍କୁ ଏଖରାଜାତ ମାହାଲର ଜମିଦାର କରି ଠାକୁର ରାଜା ଏ ମାହାଲରେ ମଧ୍ୟ ଦାଖଲ ଖାରଜ ରୋଷମ ଆଦାୟ କରୁଥିଲେ । ପ୍ରଜାମାନେ ଆନ୍ଦୋଳନ କରି ଏଖରାଜାତ ମାହାଲରୁ ଦାଖଲଖାରଜ ରୋଷମ ଉଠାଇ ଖାତାଫଡ଼ା ଫିଜ୍ ଭାବରେ ମାତ୍ର ଦୁଇଟଙ୍କା ରାଜା ନେଇପାରିବେ ବୋଲି କୋର୍ଟରେ ଡିଗ୍ରୀ କରାଇଥିଲେ । ଦାଖଲ ଖାରଜ ରୋଷମ ଏକାବେଳକେ ଉଠାଇ ଦେବାରେ ସେ ବି ଉଠିଲା । ମୁଁ ଏଖରାଜାତ ମାହାଲର ଆନ୍ଦୋଳନରେ ନେତୃତ୍ୱ ନେଇଥିବାରୁ ଏ ବିଷୟରେ ମନ୍ତ୍ରୀମଣ୍ଡଳକୁ ବିଶେଷ ଭାବେ ପ୍ରଶଂସା କଲି । ଏହା ନୀଳକଣ୍ଠ ବାବୁଙ୍କୁ ସୁଖ ଲାଗିଲା ନାହିଁ ।

ଏକାବେଳକେ ଜମିଦାରୀ ପ୍ରଥା ଉଠାଇଦେବାକୁ ଏଇ ସମୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ କଳ୍ପନାଜଳ୍ପନା କରୁଥାନ୍ତି । ମନ୍ତ୍ରୀମଣ୍ଡଳର ନିତ୍ୟାନନ୍ଦବାବୁ ଓ ଜଗନ୍ନାଥ ବାବୁ ଓ ମନ୍ତ୍ରୀମଣ୍ଡଳର ବେସରକାରୀ ପୁରୋଧା ମହତାବ ବାବୁ ଓ ଆଉ ୪ । ୫ ଜଣ ଙ୍ଗ୍ରେଟ ବଡ଼ ଜମିଦାର । ସେମାନେ ଜମିଦାରୀ ଉଠିବା ଦୁଆରେ ମିଶିଥାନ୍ତି କିନ୍ତୁ ସ୍ପଷ୍ଟ ଜଣାପଡ଼ୁଥାଏ ଏମାନଙ୍କର ଭିତରି ଇଚ୍ଛା ଜମିଦାରୀ ଉଚ୍ଛେଦର ଧିମା ଚାଲିଥାଉ କିନ୍ତୁ ଏହା କେତେଦିନ

ରହିପାରିବ ରହୁ । ମହତାବ ବାବୁଙ୍କର ନିଜ ଜମିଦାରୀର ଉପସ୍ୱତ୍ୱରେ ଚଳିବା ବ୍ୟତୀତ ଅନ୍ୟ ଉପାୟ ନ ଥାଏ । ନିଜ ଜମିଦାରୀର ପ୍ରଜାମାନଙ୍କଠାରୁ ସେ କିପରି ଧମକ ଦେଇ ଓ ପିଟିରେ ହାତ ମାରି ନାନା ପ୍ରକାର ପାଉଣା ଆଦାୟ କରୁଥାନ୍ତି ସେ କଥା ସେଇ ସମୟରେ ବାଲେଶ୍ୱରର ଜଣେ ଓକିଲ ( ବଲାଙ୍ଗିରରେ ମୋ ପିଲାଦିନର ଶିକ୍ଷକ ) 'ଲୋକମତ'ରେ ଉପଯୁକ୍ତ ପ୍ରମାଣ ଦେଇ ଲେଖିଥିଲେ । ସେ ପାଇଥିଲେ ଜମିଦାରୀ, ଅଗରପଡ଼ା ଜମିଦାରଙ୍କର ପୋଷ୍ୟପୁତ୍ର ଭାବେ । ନିତ୍ୟାନନ୍ଦ ବାବୁଙ୍କ ବାପା ସେ କାଳର ଡେପୁଟି ମାଜିଷ୍ଟ୍ରେଟ୍ ଥାଇ ସଂପତ୍ତି ଓ ଜମିଦାରୀ କରିଥିଲେ । ନିତ୍ୟାନନ୍ଦ ବାବୁ ଓକିଲାତି ପାସ କରିଥିଲେ ହେଁ ସେ ବୃତ୍ତି ନ କରି ବାପାଙ୍କ ପୁଅ ବୋଲି ଚଳୁଥାନ୍ତି । ପଇସା ପତ୍ର ବିଷୟରେ ଉଭୟେ ବଦ୍ଧମୁଷ୍ଟି ଓ ରାଜନୀତିରୁ ଧନ ଉପାର୍ଜନ କରିବାରେ ଆକାଂକ୍ଷୀ । ଅନ୍ୟ କଂଗ୍ରେସ ଜମିଦାରଙ୍କର ବି ଏହି ମନୋବୃତ୍ତି । ଏତେବେଳକୁ କଂଗ୍ରେସ ଦଳରୁ ମହାତ୍ମା ଗାନ୍ଧୀଙ୍କ ତ୍ୟାଗ ବୃତ୍ତି ଏକାବେଳେ ଉଭେଇଯାଇଥାଏ ବୋଲି କହିଲେ ଚଳେ । ସମସ୍ତେ ଲାଗିଥାନ୍ତି ନିଜନିଜର ବିଭବ ବଢ଼ାଇବାରେ— ଧନୀ ଜମିଦାର ଓ ଦୀନ ଦରିଦ୍ର ବାନରହେନାପର୍ଯ୍ୟନ୍ତ ସମସ୍ତେ ।

ଖଲ୍ଲିକୋଟର ଜମିଦାର ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ଦେବ ଜମିଦାରୀ ଉଠିବା ଧ୍ୱନିରେ ଆତଙ୍କିତ ହୋଇଗଲେ । ତାଙ୍କ ଆତଙ୍କ ବଢ଼ାଇବାରେ ପ୍ରଧାନ ସହାୟକ ଥିଲେ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ । ସେ ମୂଳରୁ ବିଶ୍ୱନାଥ ବାବୁଙ୍କର ବିରୋଧି । ଜମିଦାରୀ ଉଠୁ ବା ନ ଉଠୁ ସେଥିରେ ସ୍ୱାଙ୍କର କୌଣସି ଦୃଢ଼ ସମର୍ଥନ ବା ବିରୋଧ ନ ଥିଲା । ସ୍ୱାଙ୍କର ପ୍ରଧାନ ଉଦ୍ଦେଶ୍ୟ ଦାସୁଡ଼ୁ ବିଶ୍ୱନାଥ କେମିତି ପ୍ରଧାନମନ୍ତ୍ରୀତ୍ୱରୁ ଯାନ୍ତେ । ତାଙ୍କୁ କୌଣସି ପଦ, ପଦବୀ ମିଳିଲେ ଆଚ୍ଛା ନ ମିଳିଲେ ଆଚ୍ଛା । ସ୍ୱାଙ୍କର ପଦବୀ ମୋହ ବା ଧନର ଲାଳସା ଅଧିକ ମାତ୍ରାରେ ଥିବାର ଲକ୍ଷ୍ୟ କରିନାହିଁ । ସ୍ୱାଙ୍କର ପ୍ରେରଣାରେ ଖଲ୍ଲିକୋଟ ରାଜାବାହାଦୁରଙ୍କର ଇଚ୍ଛାକାଂକ୍ଷା ସେ ଗଢ଼ନ୍ତେ ମନ୍ତ୍ରୀମଣ୍ଡଳ । ପାରଳା ମହାରାଜାଙ୍କ ସଙ୍ଗେ ତାଙ୍କର ପଡ଼ୁ ନଥିଲେ ମଧ୍ୟ ସେ ଆଶା କରୁଥାନ୍ତି ବିକଳ୍ପ ମନ୍ତ୍ରୀମଣ୍ଡଳ ଗଢ଼ାହେଲେ ପାରଳାଙ୍କ ଦଳ ସହଯୋଗ କରିବେ । ସେ ହିସାବ କରିଥାନ୍ତି କଂଗ୍ରେସ ଦଳରୁ ୧୪ । ୧୫ ଜଣ ତାଙ୍କ ଆଡ଼କୁ ଆଉଜିଗଲେ, ବିଶ୍ୱନାଥ ବାବୁଙ୍କର ସଂଖ୍ୟାଗରିଷ୍ଠତା ରହିବ ନାହିଁ । ଏହି ସମୟରେ ପଣ୍ଡିତ ନୀଳକଣ୍ଠ ଲିଙ୍ଗରାଜ ବାବୁଙ୍କ ପ୍ରସ୍ତାବରେ ଉତ୍ସାହିତ ହୋଇ ତାଙ୍କ କଥାରେ ଭିଡ଼ିଗଲେ ଏବଂ ତାଙ୍କୁ ଜବାବ ଦେଲେ ଯେ ଖଲ୍ଲିକୋଟ ରାଜାଙ୍କ ପକ୍ଷରୁ ତାଙ୍କୁ ଲେଖାରେ ଅନୁରୋଧ କଲେ ଏ ବିଷୟରେ ତାଙ୍କ ଚେଷ୍ଟା ଅଗ୍ରସର ହେବ ।

ପଣ୍ଡିତ ନୀଳକଣ୍ଠ ଓ ମୁଁ ତ ଆସେମ୍ବିଲି ମେମ୍ବର ନ ଥାଉ । କିନ୍ତୁ ନୀଳକଣ୍ଠ ବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ଓ ମୁଁ ତାଙ୍କର ଛାୟା ଭାବରେ କେତେକ ଆସେମ୍ବିଲି ମେମ୍ବରଙ୍କ ଉପରେ କାରପଟଦାରୀ କରିଥାଉଁ । ଆମ ଗୋଷ୍ଠୀର ଯେଉଁମାନେ ନିର୍ବାଚନ ପୂର୍ବରେ ଆମର ଅନ୍ତରଙ୍ଗ ଥିଲେ ସେମାନେ ଏତେବେଳକୁ ଅମଠୁ କରିଛଡ଼ା ଦେଉଥାନ୍ତି । ମୁଁ ବନ୍ଧୁମାନଙ୍କ ପେଟଭିତରେ ପଶି ବାରିଥାଏ ଯେ ଖୁବ ଅଳ୍ପ ସଂଖ୍ୟକ

କଂଗ୍ରେସୀ ବ୍ୟବସ୍ଥାପକ ନୀଳକଣ୍ଠ ବାବୁଙ୍କ ସଙ୍ଗେ ଗଭୀର ଖାତକୁ ଡେଇଁବାକୁ ପ୍ରସ୍ତୁତ ଥାନ୍ତି । ଏ ସବୁ ଦେଖି ଏବଂ ନିଜର ବିବେଚନାରେ ମୁଁ ସ୍ଥିର କରିଥାଏ ଏତେବେଳେ ବିଶ୍ୱନାଥ ବାବୁଙ୍କ ବିରୋଧରେ ଯିବାକୁ କଂଗ୍ରେସବିରୋଧି କାର୍ଯ୍ୟ କରିବା ମୂର୍ଖତା ହେବ । ଏଥିଯୋଗୁ ନୀଳକଣ୍ଠ ବାବୁଙ୍କ ସଙ୍ଗେ ମୋର ଅନେକ ସମୟରେ ଘୋର ମତଭେଦ ହୁଏ । ଅବଶ୍ୟ ଆପଣା ଘରର ରୁଦ୍ଧ ଦ୍ୱାର ଭିତରେ । ମୋର ଦୃଢ଼ ବିଶ୍ୱାସ ଥାଏ, ଏ ମତଭେଦ ଯୋଗୁ ଆମ ଦୁହିଁଙ୍କର ମନ ଭେଦ ହେଉନଥାଏ । ଏହା ଭୁଲ ବୋଲି ଅନେକ ଦିନ ପରେ ଜାଣିଲି ।

ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହିଙ୍କ ସଙ୍ଗେ ମୋର ବିଶେଷ ସଦ୍‌ଭାବ ଥାଏ । ମୁଁ ଆଣ୍ଡା ଅର୍ଫ ଘରେ ଥିବା କାଳରୁ ତାଙ୍କର ମୋର ବୟସରେ ବହୁ ତାରତମ୍ୟ ଥିବା ସତ୍ତ୍ୱେ ମୋ ସଙ୍ଗେ ରାଜ୍ୟନୀତିକ ଆଲୋଚନା କରନ୍ତି । ମୁଁ ତାଙ୍କ ମୋ ପଣକୁ ଜାଣି ପାରିଥାଏ ଯେ, ଏତେବେଳେ ଆମ ପକ୍ଷରେ କଂଗ୍ରେସରୁ ବାହାରିଯିବା ଠିକ ହେବ ନାହିଁ । କିନ୍ତୁ ବିଶ୍ୱନାଥ ବାବୁଙ୍କ ବିରୁଦ୍ଧରେ ତାଙ୍କର ମନୋଭାବ ମୋ ଉପରେ ପ୍ରଭାବ ପକାଉଥାଏ । ଏହି ସମୟରେ ବିଶ୍ୱନାଥ ବାବୁ ସ୍ୱର୍ଗୀୟ ଉମାଚରଣ ପଟ୍ଟନାୟକଙ୍କୁ ଗଞ୍ଜାମର ସରକାରୀ ଓକିଲ ନିଯୁକ୍ତ କଲେ ଏବଂ ତାଙ୍କ ଭାଇ ବିପ୍ରଚରଣ ଦାସଙ୍କୁ ଗୋଟାଏ କଣ୍ଟ୍ରାକ୍ଟ ଦେଲେ ବନ୍ୟାକ୍ଲିଷ୍ଟ ବ୍ରହ୍ମଗିରି ( ପୁରୀ ଜିଲ୍ଲା ) ଅଞ୍ଚଳ ପାଇଁ ମୁଗ ମଞ୍ଜି ଯୋଗାଇବା ସକାଶେ । ଲିଙ୍ଗରାଜ ବାବୁଙ୍କର ସରକାରୀ ଓକିଲ ହେବା ପାଇଁ ଆକାଂକ୍ଷା ନ ଥିଲା । କିନ୍ତୁ ମୁଁ ଏକମତ ହେଲି ଯେ, ବ୍ରହ୍ମପୁରର ଆଡ୍‌ଭୋକେଟ୍ ଓଡ଼ିଆଙ୍କ ଭିତରେ ଏପରି ଅନେକ ଓକିଲ ଥିଲେ ଯେଉଁମାନେ ଉମାଚରଣଙ୍କଠାରୁ ଓକିଲ ଓ ମଣିଷ ହିସାବରେ ବେଶ ଉଚ୍ଚ ସ୍ତରର । ବିଶ୍ୱନାଥ ବାବୁ ନିଜର ପ୍ରିୟ ଲୋକଙ୍କୁ ନିଯୁକ୍ତ କରି ଅନ୍ୟାୟ କରିଛନ୍ତି ବୋଲି ମୁଁ ଉତ୍ତ୍ୟକ୍ତ ହେଲି । ନିଜ ଭାଇଙ୍କୁ କଣ୍ଟ୍ରାକ୍ଟ ଦେବା ଯେ ଘୋର ଅନ୍ୟାୟ ଏଥିରେ ତ ଦ୍ୱିମତ ହେବାର ନୁହେଁ । ଆମେ ଦୁଇଜଣ ମିଶି ଗୋଟାଏ ଲମ୍ବା ଅଭିଯୋଗ ପତ୍ର ତିଆରି କଲୁ କଂଗ୍ରେସ ସଭାପତିଙ୍କ ପାଖକୁ ପଠାଇବା ପାଇଁ । ମୋ ଦସ୍ତଖତରେ ତାହା ପଠାଗଲା ।

ଇତିମଧ୍ୟରେ ଗଠନମୂଳକ କାର୍ଯ୍ୟ ଆଗେଇ ନେବା ପାଇଁ ଗୋଟିଏ ସମ୍ମିଳନୀ ପୁରୀ ଜିଲ୍ଲା ବେଲଙ୍ଗଠାରେ ହୋଇଯାଇଥାଏ । ସେଥିରୁ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ ଆମେ ସବୁ ଯାଇ ମହାତ୍ମା ଗାନ୍ଧୀଙ୍କ ଆଗରେ ଆମ ପ୍ରଦେଶରେ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀ-ମଣ୍ଡଳର ଦୁଷ୍କୃତ ବିଷୟରେ ବ୍ୟାଖ୍ୟାନ କରିଥାଉଁ । ମହାତ୍ମା ଗାନ୍ଧୀ ଶ୍ରୀଯୁକ୍ତ କୃପାଳନୀଙ୍କୁ ବିଶ୍ୱାଦ କରିଥାନ୍ତି ଆମ ଅଭିଯୋଗମାନ ଶୁଣି ସତ୍ୟାସତ୍ୟ ତାଙ୍କୁ ଜଣାଇବା ପାଇଁ । ସ୍ପଷ୍ଟ ଜଣା ପଡୁଥାଏ, ଶ୍ରୀଯୁକ୍ତ କୃପାଳନୀ ଆମ ପକ୍ଷକୁ ଢଳିଥାନ୍ତି । ମହାତ୍ମାଜୀ ନିରପେକ୍ଷ ବିଚାର ନ କରି ବନ୍ଧୁମାନଙ୍କ କଥାରେ ଭାସିଯାନ୍ତି ବୋଲି ମୋର ସେତେବେଳକୁ ଦୃଢ଼ ଧାରଣା ହୋଇଯାଇଥାଏ । କେତେକ ବିଷୟରେ ତାଙ୍କର ଧାରଣା, କାରଣ ଥାଇ ବା ନଥାଇ, ଏପରି ଦୃଢ଼ ହୋଇଯାଏ ଯେ ଯେତେ ବୁଝାଇଲେ ବି ସେ ଧାରଣା ବଦଳାଇପାରନ୍ତି ନାହିଁ ।

ପଣ୍ଡିତ ନୀଳକଣ୍ଠଙ୍କ ବିଷୟରେ ତାଙ୍କର ମନ୍ଦ ଧାରଣା ବହୁ ଦିନର, ତାଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ସେ ଏହାକୁ ଲୁଚ଼ାଇପାରୁନଥିଲେ । ତାଙ୍କର ଏ ଧାରଣା ପ୍ରତ୍ୟହ ଦୃଢ଼ କରିବାକୁ ଗୋପବନ୍ଧୁ ଚୌଧୁରୀଙ୍କ ଗୋଷ୍ଠୀ ନିରବଚ୍ଛିନ୍ନ ଚେଷ୍ଟା କରୁଥାନ୍ତି । ଆମ ପକ୍ଷରୁ ଏ ଧାରଣା ଦୂର କରିବାକୁ ଆଦୌ ଚେଷ୍ଟା ହେଉନଥାଏ । ଚନ୍ଦୁଲ୍ ଚପଟ ବକ୍ତୃତାରେ ପ୍ରତିକାର କରିବାକୁ ନୀଳକଣ୍ଠ ବୃଥା ସମୟକ୍ଷେପ ବୋଲି ମନେ କରନ୍ତି । ଥରେ ଦୁ'ଥର ମୁଁ ତାଙ୍କୁ କହିଥିଲି, ମଝିରେ ମଝିରେ ଆମ ପ୍ରଦେଶର କଂଗ୍ରେସ ଓ ସରକାର ବିଷୟରେ କିଛି ମହାତ୍ମା ଗାନ୍ଧୀଙ୍କୁ ଜଣାଇବା ପାଇଁ । ସେ ଉତ୍ତର ଦେଲେ, ଆରେ, ସେ ମହାତ୍ମାଟେ, ତା'ର ଶୁଙ୍ଗ ବଙ୍କା ହୋଇଥିଲେ ତାକୁ ଟଳିଯିବା ଅସମ୍ଭବ । ନିଜ ମହାତ୍ମ୍ୟରେ ତା ମହତ୍ତ୍ୱର ବିଗ୍ରହ ହେଉଥାଉ । ଏଥି ପୂର୍ବ ପଦଯାତ୍ରା ବେଳେ ଆମେ ଦାଣ୍ଡମୁକୁନ୍ଦପୁର ଚଟିରେ ମାଛ ଖାଇ-ଥିବାରୁ ସେ ଉତ୍ତ୍ୟକ୍ତ ହୋଇଯାଇଥିଲେ । ସେ ଉତ୍ତେଜନା ପ୍ରକାଶ ପାଇଥିଲା ଦୁଇ ତିନି ଦିନ ପରେ ବାଲିଅନ୍ତାଠାରେ । ସେ ଅଞ୍ଚଳର ଦରିଦ୍ର ଜନତାଙ୍କୁ ସମ୍ବୋଧନ କରି ସେ ମାଛ ମାଂସ ନ ଖାଇ ଦୁଧ ଓ ଗହମ ଖାଇବାକୁ ଉଦ୍‌ବୋଧନ ଦେଇଥିଲେ । ମୋର ପ୍ରତିବାଦ ପଣ୍ଡିତଜୀ ତାଙ୍କ ଆଗେ ପ୍ରକାଶ କରି ବୁଝାଇଥିଲେ ଯେ, ଦିନକୁ ଛ' ପଇସା ମଜୁରି ପାଇ କୁଟୁମ୍ବ ଚଳାଉଥିବା ଲୋକଙ୍କୁ ଦୁଧ ଓ ଗହମ ସ୍ୱପ୍ନ । ସେମାନେ ଯାହା ପାନ୍ତି ସେଥିରେ ଚାଉଳ କିଣନ୍ତି ଏବଂ ବିଲରୁ ମାଛ ଓ ପଡ଼ିଆରୁ ଅନାବନା ଶାଗ ସଂଗ୍ରହ କରି କୌଣସି ରୂପେ ଚଳନ୍ତି । ସେମାନଙ୍କୁ ମାଛ ମନାକରିବା ଠିକ ନୁହେଁ । ଏ କଥା ମହାତ୍ମା ଗାନ୍ଧୀ ମାନିଥିଲେ ଏବଂ 'ହରିଜନ'ରେ ଲେଖିଥିଲେ ଯେ ଦରିଦ୍ର ଓଡ଼ିଆଙ୍କ ମାଛଖିଆରେ ଆପତ୍ତି କରିବାର ନୁହେଁ । କିନ୍ତୁ ସେଦିନ ଯେପରି ମୁହଁ କରି ସେ ପଣ୍ଡିତ ନୀଳକଣ୍ଠଙ୍କ କଥାରେ ମଙ୍ଗିଥିଲେ, ତାହା ମୋର ପାସୋର ଯାଇନାହିଁ ।

ଡେଲଙ୍ଗଠାରେ ମଧ୍ୟ ସେହିପରି ଗୋଟିଏ ଘଟଣା ଘଟିଥିଲା । ଶ୍ରୀମତୀ କସ୍ତୁରବା ଡେଲଙ୍ଗଠାରୁ ଜଗନ୍ନାଥ ଦର୍ଶନକୁ ଚାଲିଗଲେ ସ୍ୱାମୀଙ୍କୁ ନ ଜଣାଇ । କସ୍ତୁରବା ଜଗନ୍ନାଥ ଦର୍ଶନକୁ ଯାଇଛନ୍ତି ଶୁଣି ସେ ଯେପରି ଅଗ୍ନିଶର୍ମା ହେଲେ ତାହା ମୁଁ ଦେଖିଛି । ଦୈବ ଯୋଗକୁ କସ୍ତୁରବା ଫେରି ଏ ବିଷୟରେ ମହାତ୍ମା ଗାନ୍ଧୀଙ୍କ ସଙ୍ଗେ କଳି କରିବାର ଅଳ୍ପ ସମୟ ପରେ ଆମ ଗୋଷ୍ଠୀଙ୍କ ଡାକରା ହେଲା ମହାତ୍ମାଙ୍କ ସଙ୍ଗେ ଦେଖା କରିବାକୁ । ସେ ସେତେବେଳେ ମଧ୍ୟ କହୁଥାନ୍ତି ଯେ ହରିଜନମାନେ ମନ୍ଦିର ପ୍ରବେଶ କରିବାକୁ ଅନୁମତି ନ ପାଇବା ଯାଏଁ ଆମେ ମନ୍ଦିରକୁ ଯିବା ନାହିଁ ବୋଲି ମୁଁ କହିଥିବା ସ୍ଥଳେ ମୋ ସ୍ତ୍ରୀ ସେ ମନ୍ଦିରକୁ ଯାଇ ଘୋର ଅନ୍ୟାୟ କରିଛନ୍ତି । ସେତିକବେଳେ କଥା ପ୍ରସଙ୍ଗରେ ମୁଁ କହିଦେଲି, ଦେଉଳକୁ ଯିବାନଯିବାରେ ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା ରହିବା ଉଚିତ ବୋଲି ଅନେକ ମନେ କରନ୍ତି । ଓଃ ସେତେବେଳେ କି ମୁହଁ । ଏ ମୁହଁ ଦେଖି ଆମେ ଯେଉଁଥିପାଇଁ ଦେଖାକରିବାକୁ ଯାଇଥିଲୁ, ତାହା ନିଷ୍ଫଳ ହେଲା ବୋଲି କଣ୍ଠାପାଳର ଜଗନ୍ନାଥ ଦାସେ

ମୋତେ କହୁଥିଲେ । ଯାହାହେଉ, ମହାତ୍ମା ଗାନ୍ଧୀ ଆମକୁ ଜଣାଇଦେଲେ ଯେ ଆମର ଆପତ୍ତି ଅଭିଯୋଗର ଯଥାଯଥ ବିଚାର ହେବା ଉଚିତ ।

ସ୍ଥିର ଅଳ୍ପଦିନ ପରେ ମୋ ପାଖକୁ ନିଖିଳ ଭାରତ କଂଗ୍ରେସ କମିଟିରୁ ଚିଠି ଆସିଲା, ମୋ ଅଭିଯୋଗର ତଦନ୍ତ ପାଇଁ ଜଣେ କଂଗ୍ରେସ ପ୍ରତିନିଧି ଅମୁକ ତାରିଖରେ କଟକ ଆସିବେ । ମୁଁ ତ ତାଜୁବ ହୋଇଗଲି । ଆମ ଅନୁଷ୍ଠାନର ଉଚ୍ଚ ବ୍ୟକ୍ତି ଜଣେ ଆସିବେ । ଜଣେ ସହକାରୀ ସେକ୍ରେଟାରୀ ପଠାଇପାରିଥାନ୍ତେ । ଅନ୍ଧକାଳର ମନୋବୃତ୍ତିରେ ଝଟ୍ରେ ଧମକ ଆସିପାରିଥାନ୍ତା—ନିଜ ଦଳର ମନ୍ତ୍ରୀଙ୍କ ବିରୁଦ୍ଧରେ ଏପରି ଅଭିଯୋଗ କଲେ ଶୃଙ୍ଖଳା ଭଙ୍ଗ କରିଥିବା ଯୋଗୁଁ ଦଣ୍ଡ ଦିଆଯିବ ବୋଲି । ଏଣେ କଂଗ୍ରେସର ଶୀର୍ଷ ନେତାମାନଙ୍କ ଭିତରେ କେବଳ ରାଜେନ୍ଦ୍ର ପ୍ରସାଦଙ୍କଠାରେ ମୋର ସମ୍ମାନ । ବଲ୍ଲଭ ଭାଇଙ୍କୁ ମୁଁ ଗଡଜାତ ରାଜା ବୋଲି ମନେକରେ ; ଜବାହର ଲାଲଙ୍କୁ ମୁଁ ମନେକରେ ବଡ଼ ଲାଟ ବୋଲି । ଖାଲି ଏତିକି ପ୍ରଭେଦ ଯେ, ସେ ବଡ଼ ଲାଟ ନିଜକୁ ସମ୍ରାଟଙ୍କଠାରୁ ବଡ଼ ମନେକରୁଥିଲେ । ସେ ଓପର ମୁହାଁ, ଦରିଦ୍ର ଜନସାଧାରଣଙ୍କ କଥା ଛାଡ଼, ନିଜର ସହକର୍ମୀମାନଙ୍କୁ ବି ସେ ବଡ଼ ହୀନ ଦୃଷ୍ଟିରେ ଦେଖନ୍ତି । ଓଡ଼ିଶାକୁ ସେ ନିର୍ବାଚନ ପ୍ରଚାରରେ ଆସିବା ବେଳେ ସେଙ୍କ ସଙ୍ଗେ କିଛି ବାଟ ଯାଇଁ ମୁଁ ସେଙ୍କ ମନରେ ଘୃଣା କରେ । ସଂପ୍ରତି ବମ୍ବେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ମୋର ମନର ଭାବ କିଛି ଅଂଶରେ ପ୍ରକାଶ ହୋଇଯାଇଥିଲା । ରାଜେନ୍ଦ୍ର ବାବୁ ଆସିବାର ଶୁଣି ଆମ ସମସ୍ତଙ୍କ ମନରେ (କେବଳ ନୀଳକଣ୍ଠ ବାବୁଙ୍କ ବ୍ୟତୀତ) ଗୋଟାଏ ଆଶା ଜାଗତ ହୋଇଥିଲା ଯେ, ଆମ ଅଭିଯୋଗର ସୁବିଚାର ହେବ । ମୁଁ ସେକ୍ରେଟାରୀଏଟ୍‌ରୁ ସଂଗ୍ରହ କରିଥିବା କେତେକ କାଗଜ ପତ୍ରର ନକଲ ସଜାଡ଼ି ରଖି କ'ଣ କହିବ ପ୍ରସ୍ତୁତ କରୁଥାଏ ।

ନିର୍ଦ୍ଦିଷ୍ଟ ଦିନ ଜାନକୀନାଥ ଭବନରେ ଉଭୟ ପକ୍ଷର ଭେଟାଭେଟି ହେଲା । ନୀଳକଣ୍ଠ ବାବୁ, ଗୋଦାବରୀଶ ବାବୁ ଓ ଲିଙ୍ଗରାଜ ବାବୁ ( ପାଣିଗ୍ରାହୀ ) ମୋ ପଟେ ବସି-ଥାନ୍ତି, ଆରପଟେ ବିଶ୍ୱନାଥ ବାବୁ ଓ ତାଙ୍କ ସଙ୍ଗେ ଚିଫ୍ ସେକ୍ରେଟାରୀ ମ୍ୟାନ୍‌ସଫିଲ୍ଡ୍ ଓ ତାଙ୍କ ପଛରେ ଆଇନ ଓ ସ୍ୱରାଜ୍ୟ ବିଭାଗର ଡେପୁଟି ସେକ୍ରେଟାରୀ ଦୁଇଜଣ । ସବୁ ପ୍ରଥମେ ମୋତେ ଚାହିଁ ରାଜେନ୍ଦ୍ର ବାବୁ କହିଦେଲେ, 'ମିଶ୍ରଜୀ, ଥୋଡ଼ା ଖଇନି ମିଲ୍‌ଯାୟ' । ମୁଁ କୃତକୃତ୍ୟ ହୋଇଗଲି । ହଜାରୀବାଗ କଥା ସେ ମନେରଖିଛନ୍ତି । ସେ ଘଟଣାଟି ସେ ସମସ୍ତଙ୍କ ଆଗେ ବର୍ଣ୍ଣନା କରି ବାୟୁମଣ୍ଡଳଟାକୁ ମୁଲାୟମ କରିଦେଲେ । କଥା ପଡ଼ିଲା, ମୁଁ ଖବର ରଖିଥିଲି ଯେ, ବିଶ୍ୱନାଥ ବାବୁଙ୍କ ଆଉ ଉମାଚରଣ ବାବୁ ସରକାରୀ ଓକିଲ ହୁଅନ୍ତୁ ବୋଲି ଅର୍ଡ଼ର ହୋଇଥିଲା । ମ୍ୟାନସଫିଲଡ୍ ସାହେବ ଫାଇଲ୍‌ଟା ଦେଖାଇଦେଲେ ଯେ କଲେକ୍ଟରଙ୍କ ପ୍ରସ୍ତାବ ଓ ସେକ୍ରେଟାରୀଙ୍କ ଅନୁମୋଦନରେ ବିଶ୍ୱନାଥ ବାବୁ ହଁ ଭରିଥିଲେ ମାତ୍ର । ମୁଁ ପ୍ରତିବାଦ କଲି । ମୁଁ ଫାଇଲର ଯେଉଁ ନକଲ ରଖିଥିଲି ସେଥିରେ ମୋର ଅଭିଯୋଗ

ଯଥାର୍ଥ ବୋଲି ମନେ ହେବାର କଥା । ମୋ କଥା ଭୁଲ ବୋଲି କହିବା ପ୍ରସଙ୍ଗରେ ଚିଫ୍ ସେକ୍ରେଟାରୀ ମୋତେ ପଚାରିଦେଲେ, 'ଆପଣ ଏ ଲେଖା କୁଆଡ଼ୁ ପାଇଲେ ?' ମୁଁ ଉତ୍ତର ଦେଇ ପକାଇଲି, 'ଆପଣଙ୍କର ସେକ୍ରେଟାରୀଏଟ୍‌ର କର୍ମଚାରୀମାନେ ଆମର ଲୋକ, କୌଣସି କାଗଜ ଆପଣ ଆମଠାରୁ ଗୋପ୍ୟ କରିପାରିବେ ନାହିଁ ।' ସେ ଗମ୍ଭୀର ହୋଇଗଲେ । ରାଜେନ୍ଦ୍ର ବାବୁଙ୍କ ମୁହଁରୁ ଜାଣିଲି ମୋର ଏପରି କହିବା ଭଲ ହେଲା ନାହିଁ ।

ପ୍ରଥମ ଦିନ ପ୍ରାୟ ଦୁଇ ଘଣ୍ଟା ବସିବା ପରେ ତହିଁ ଆର ଦିନକୁ କଥା ରହିଲା । ୨ୟ ଦିନ ପଡ଼ିଲା ବିପ୍ରବାବୁଙ୍କ ମୁଗମଞ୍ଜି ବ୍ୟାପାର ଓ କେତେକ ଆନୁସଂଗିକ କଥା । ବିଶ୍ୱନାଥ ବାବୁଙ୍କ ପକ୍ଷରୁ ବୁଝାଇଦିଆଗଲା ଯେ ଅନ୍ୟ କେହି ଏତେ ଶୀଘ୍ର ଏତେ ଶସ୍ତା ଦରରେ ବିହନ ଯୋଗାଇପାରିନଥାନ୍ତେ । ଆମେ ପ୍ରତିବାଦ କରିଥାଉ । ରାଜେନ୍ଦ୍ର ବାବୁ ଆମ ପକ୍ଷିଆ ହୋଇ କହିଲେ, 'କାର୍ଯ୍ୟ ଠିକ ହେଉ ପଛେ ଠିକ ଭାବରେ ହେବା ଉଚିତ । ସର୍ବସାଧାରଣଙ୍କ ବିଶ୍ୱାସଭାଜନ ହେବାକୁ ହେଲେ ଲୋକପ୍ରତିନିଧି ସରକାର ଖଣ୍ଡା ଧାରରେ ଚାଲିବା ଦରକାର ।' ତାଙ୍କ ଅନ୍ତେ ଲୋକପ୍ରତିନିଧି ସରକାରଙ୍କ ଗତି କ'ଣ ହେବ ସେକଥା ସେ ଜାଣନ୍ତେ କେମିତି ? ମୁଁ ଉତ୍ତେଜିତ ଭାବେ କଣ କହୁଛି ଏହି ସମୟରେ ମୋ ପଛ ଆଡ଼ୁ ଜଣେ କିଏ ମୋତେ ଟେଲିଗ୍ରାମଟିଏ ବଢ଼ାଇ ଦେଲା । ମୁଁ ତାକୁ ପକେଟରେ ଭର୍ତ୍ତି କରୁ କରୁ ମୋର ବକ୍ତବ୍ୟ କହୁଛି, ରାଜେନ୍ଦ୍ର ବାବୁ ହାତ ବଢ଼ାଇ ଟେଲିଗ୍ରାମଟା ନେଇଗଲେ ଏବଂ କହିଲେ, 'ଟେଲିଗ୍ରାମଟା ନ ପଢ଼ି କାହିଁକି ରଖିଦେଉଛ ? ପଢ଼ ।'

ମୁଁ ପଢ଼ିଲି ; ମୋର ମୁହଁ ଶୁଖି ଯିବାର ଦେଖି ସେ ବାତ୍ସଲ୍ୟପୂର୍ଣ୍ଣ ସ୍ୱରରେ ପଚାରିଲେ, 'କ'ଣ ?' ମୁଁ କହିଲି, 'ଆମ ଘର ପୋଡ଼ିଯାଇଛି । ଆଜିର ବାରେ (ଶୁକ୍ରବାର) ଗାଁର ଅଧେ ପୋଡ଼ିଯାଇଥିଲା, ଆଜି ଆମ ଅଧିକ ପୋଡ଼ିଗଲା ।' ସମସ୍ତଙ୍କ ମୁହଁରେ ସହାନୁଭୂତିର ସଂକେତ । ସବୁଠାରୁ ବେଶୀ ବିଶ୍ୱନାଥ ବାବୁଙ୍କ ମୁହଁରେ । ରାଜେନ୍ଦ୍ର ବାବୁଙ୍କ ଶ୍ୱାସ ଓ କାଶ ଚିର ସହଚର, ହଜାରୀବାଗରେ ଦେଖିଥିଲି । ସେତିକିବେଳେ ସେ ବାହାରିଲା । ଗୁଡ଼ାଏ କାଶି, ଗୁଡ଼ାଏ ସଁ ସଁ ହୋଇ, ଦୁଇଟା ବଡ଼ ମାଣ୍ଡିରେ ମୁଣ୍ଡ ଗୁଞ୍ଜି କିଛି ସମୟ ରହି ସେ କିଞ୍ଚିତ ସୁସ୍ଥ ହୋଇ ବିଶ୍ୱନାଥ ବାବୁଙ୍କୁ ଓ ମୋତେ ଦୁଇଜଣଙ୍କୁ ଡାକି କହିଲେ, 'ଏଇଠାରେ ଆମର ଏ କାର୍ଯ୍ୟ ଶେଷ ହେଉ । ବହୁ କାଳ ପରେ ଆମେ ଆମର ରାଜ୍ୟ ଶାସନ କରିବାର ଅଧିକାର ପାଇଥାଉଁ । ଏ ଅଧିକାର ଅଦ୍ୟାପି ଆଂଶିକ ହେଲେ ମଧ୍ୟ କମ୍ ନୁହେଁ । ବିଶ୍ୱନାଥଜୀ ଗତ ଦୁଇବର୍ଷ ଭିତରେ ଗଭର୍ଣ୍ଣରର ଓ ଅଫିସରମାନଙ୍କର ସମ୍ମାନର ପାତ୍ର ହୋଇଛନ୍ତି । ଲକ୍ଷ୍ୟ କରୁଛି ଆମ ଭିତରେ କନ୍ଦଳ ଲାଗିଲେ ଏ ସମ୍ମାନ କ୍ଷୁଣ୍ଣ ହେବ । ମୁଁ ଉଭୟଙ୍କୁ ଅନୁରୋଧ କରୁଛି ପୂର୍ବ କଥା ପାସୋରି ଦେଇ ପରସ୍ପର ସହଯୋଗରେ କାର୍ଯ୍ୟ ଚାଲୁ ।' ପଣ୍ଡିତ ନୀଳକଣ୍ଠଙ୍କୁ ପାଖକୁ ଡାକି କହିଲେ, "କଂଗ୍ରେସ ଭିତରେ ଯେଉଁ ଦୋ ଫାଙ୍କ ଅଛି ତାହା ମିଶାଇବା ଆପଣଙ୍କର କାମ ।" ପଣ୍ଡିତ ନୀଳକଣ୍ଠ ଯେଉଁ ହୁଁ କଲେ ତାହା ଓପର ମନରେ ବୋଲି ମୁଁ ଲକ୍ଷ୍ୟ କଲି ।

ରାଜେନ୍ଦ୍ର ବାବୁଙ୍କଠାରୁ ବିଦାୟ ହେବା ପରେ ମୁଁ ବାହାରିଲି, କେମିତି ଶୀଘ୍ର ଯାଇଁ ଗାଁରେ ପହଞ୍ଚିବି । ବିଶ୍ୱନାଥ ବାବୁ ମୋ ପିଠିରେ ହାତ ଦେଇ ଆଶ୍ୱାସନା ଦେଲେ ଏବଂ ଗାଁରୁ ଫେରିଲେ ତାଙ୍କ ସଙ୍ଗେ ଦେଖା କରିବାକୁ ଅନୁରୋଧ କଲେ । ନୀଳକଣ୍ଠ ବାବୁ ପଚାରିଲେ, ପାଖରେ ପଇସା ଅଛି କି ନାହିଁ । ମୁଁ ହଁ କଲି, ପାଖରେ ଥାଏ ବାଇଶି ଟଙ୍କା । ସେଇ ସେ ଦିନ ମୋର ସର୍ବସ୍ୱ । ନୀଳକଣ୍ଠ ବାବୁ ତାଙ୍କ ମନି ବ୍ୟାଗରେ ଯାହା ଥିଲା ସେଥିରୁ ଦଶଟି ଟଙ୍କା ରଖି ନ ଗଣି ମୋ ହାତକୁ ବଢ଼ାଇ ଦେଲେ । ମୁଁ ବି ନ ଗଣି ତାକୁ ପକେଟରେ ପୂରାଇ ଗୋଦାବରୀଶ ବାବୁଙ୍କ ମଟରରେ ଷ୍ଟେସନକୁ ଗଲି । ତାଳଚେର ଟ୍ରେନ ଠିକ ଛୁଟୁଥାଏ ।

କଟଣୀରେ ଆମ ଗାଁକୁ ଯିବାର ଅନ୍ୟ କିଛି ଉପାୟ ନ ପାଇ ୧୫ ଟଙ୍କାକୁ ଗୋଟିଏ ମଟର ଭଡ଼ାକରି ଗାଁକୁ ଗଲି । ଆର ହପ୍ତାରେ ଯେତକ ନ ପୋଡ଼ି ରହିଯାଇଥିଲା ଆଜି ସେ ସମୁଦାୟ ଯାଇଥାଏ । ଆଗ ଗଲି ମୋ ନିଜ ଘରକୁ । ପାଉଁଶ କୁଢ଼ ଜମା ହୋଇଥାଏ । ଘରେ ଯେ କେହି ନ ଥାନ୍ତି ତାହା କହିବା ବାହୁଲ୍ୟ ମାତ୍ର । ଆମ ସାଇର ସମସ୍ତେ ଦିଅଁଙ୍କ ଦେଉଳରେ ଅଛନ୍ତି ବୋଲି ଶୁଣି ସେଠାକୁ ଧାଇଁଲି । ସାଇ ସାଜର ସମସ୍ତେ ସେଠେଇ । ମୋ ସ୍ତ୍ରୀ ତାର ଛନୋଟି ଯାକ ଝିଅଙ୍କୁ ଗୋଟିଏ କୋଣରେ ଶୁଆଇ ସମସ୍ତଙ୍କ ପାଇଁ ଭୋଜନ ବ୍ୟବସ୍ଥା ଯଥାଯଥ କରିଥାଏ । ସେଇଠି ପାଞ୍ଚଟା ଆର ହପ୍ତାରେ ପୋଡ଼ିଥିଲା ସେ ପଟୁ ଆଳୁ ଓ ବାଇଗଣ ତା' ପାଖରେ ଦେଇ ଦୁଇ ତିନିଜଣ ସାଙ୍ଗଙ୍କ ସଙ୍ଗେ ପୋଡ଼ା ଘରମାନଙ୍କର ପରିଦର୍ଶନ କଲି । ଆଜି ରାତିଟା କଟିଲେ କାଲିଠାରୁ ଘର ସଫାକରି ଫେର ଘର ତୋଳି-ବାର ଆଶ୍ୱାସନା ଦେଇ ମୋ ଘରକୁ ଫେରିଲି ।

ଆମର ଦ୍ୱିମହଲା ଘର । ଓପର ମହଲାଟା ଦକ୍ଷିଣୀ ଆଟୁ—ମାନେ ଘର ଉପରେ ଶାଳପଟା ମାଟି ଲେପା ହୋଇ ତା' ଉପରେ ପ୍ରାୟ ୨ ଫୁଟ ଉଚ୍ଚ ଛପର ହୋଇଥାଏ । ଓପର ମହଲାର ଏହି ୪ ବଖରା ଘର ଭିତରେ ନିଆଁ ପଶିପାରିନଥାଏ । କେବଳ ଦୁଇଟି ବଖରାର ଜାଉଁଳି କବାଟ ୪ ଫାଳ ପୋଡ଼ି ଯାଇଥାଏ ମାତ୍ର । ଏହି ଘରରୁ ଗୋଟିକରେ ଦୁଇଟିଣ ପେଟ୍ରୋଲ (୪ ଗ୍ୟାଲେନ) ଥିଲା । ସେ ପର୍ଯ୍ୟନ୍ତ ନିଆଁ ଯାଇଥିଲେ ବିସ୍ଫୋରଣ ହୋଇ ଘର କୁଟେଇ ହୋଇ ପଡ଼ିଥାନ୍ତା ଓ ଘରେ ପେଟ୍ରୋଲ ସାଇତିଥିବାରୁ ପୁଲିସ କେସ ମଧ୍ୟ ହୋଇଥାନ୍ତା । ବାଟସାରା ମୁଁ ଏଇ ଚିନ୍ତାରେ ଆସିଥିଲି । ପେଟ୍ରୋଲ ନିରାପଦରେ ରହିଥିବାର ଦେଖି ମୋ ମନ ଏତେ ଉଲ୍ଲାସ ହୋଇଗଲା ଯେ, ଘର ପୋଡ଼ିଗଲା ପରି ଲାଗିଲା ନାହିଁ ।

ଆମ ଘର ପୋଡ଼ିଗଲା ବୋଲି ଖବର ପାଇ ପାଖ ଗାଁର ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଶଙ୍କ ଲିବାକୁ ଆସିଥାନ୍ତି । ତାଙ୍କର ଉଦ୍ୟମରେ ଦେଉଳରେ ଭୋଜନ ହେଉଥାଏ । ମୁଁ, ସେ ଓ ସାଇର ଦୁଇଜଣ ସାଙ୍ଗ ମିଶି ଆମ ଦାଣ୍ଡ ଦୁଆର ସ୍ୱଚ୍ଛନ୍ଦେ ସଫା କଲୁ । ଯେତେ ପାଣି ଅଜାଡ଼ିଲେ ମଧ୍ୟ ତଳ ପଥର ଚଟାଣରୁ ତାତିଯାଉନଥାଏ । ଚଟାଣ ଉପରେ ଦୁଇଟା

ହେଁସ ଓ ବଡ଼ ସତରଞ୍ଜି ବିଛାଇ ଆରମ୍ଭ ହେଲା ଖେଳ, ରାତି ବାରଟାଠାରୁ ସୂର୍ଯ୍ୟ ଉଦୟ ପର୍ଯ୍ୟନ୍ତ । ତାପରେ ଚାଲିଲା ଗାଁଟି କିପରି ପୂର୍ବାବସ୍ଥାକୁ ଫେରିବ ।

/ / ଠିକ ସାତ ଦିନ ପୂର୍ବେ ଶୁକ୍ରବାର ଦିନ ଆମ ଗାଁର ପଶ୍ଚିମ ଫାଳକ ପୋଡ଼ି ଯିବା ବେଳେ ମୁଁ ଥାଏ ଖୋର୍ଦ୍ଧାରେ । ପ୍ରାୟ ଗୋଟାଏ ସମୟରେ ଗୁଡ଼ାଏ ପାଉଁଶ ଉଡ଼ିଆସି କଚେରୀ ହତାରେ ପଡ଼ିବାକୁ ଲାଗିଲା । ଖରାଦିନ, ଜୋର ଦକ୍ଷିଣା ପବନ ବହିବାର ସମୟ । କିନ୍ତୁ ପାଞ୍ଚ ମାଇଲ ଦୂର ଆମ ଗାଁରୁ ପାଉଁଶ ଆସିବ ବୋଲି କିଏ କେମିତି ବିଶ୍ୱାସ କରିବ ! ଆମ ଗାଁ ଓ ଖୋର୍ଦ୍ଧା ସହର ମଝିରେ କୋଉ ଗାଁ ପୋଡ଼ି ଯାଉଛି ବୋଲି ଆଶଂକା କରି ବେଗେ କାମ ତୁଟାଇ ଘେରକୁ ଯିବାକୁ ତରତର ହେଉଥାଏ । ମୁଁ ଆସିଥାଏ ଡିଷ୍ଟ୍ରିକ୍ଟ ବୋର୍ଡର ବାଇ-ଇଲେକ୍ସନ୍‌ରେ ପ୍ରାର୍ଥୀପତ୍ର ଦାଖଲ କରିବାକୁ । ପ୍ରାୟ ତିନିମାସ ଆଗରୁ ପୁରୀ ଜିଲ୍ଲା ବୋର୍ଡ଼ ନିର୍ବାଚନ ହୋଇଥିଲା । ଖୋର୍ଦ୍ଧାରେ ମୁଁ ଠିଆ ହେବାକୁ କେତେଜଣ ବନ୍ଧୁ ଲଗାଇଥିଲେ । ସେମାନଙ୍କର ଇଚ୍ଛା ଥାଏ, ମୁଁ ନିର୍ବାଚନରେ ଠିଆ ହୋଇ ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନ ହେବି । ଆସେମ୍ବ୍ଲି ନିର୍ବାଚନବେଳେ ମୁଁ ଯେଉଁ ଯୁକ୍ତି ଦେଖାଇଥିଲି ସେଇ ଯୁକ୍ତି ଦେଖାଇ ମୁଁ ଓହରି ଗଲି ଏବଂ ଖୋର୍ଦ୍ଧାରେ ଯେ ଠିଆ ହେବ ତାକୁ ମୁଁ ଜିଣାଇ ଦେବି ବୋଲି ନିର୍ଭର ଦେଇଥିଲି । ଖୋର୍ଦ୍ଧାପାଇଁ ଯାହାକୁ ବଛାଗଲା ତାଙ୍କ ସଙ୍ଗେ ଖୁବ୍ ବୁଲା ବୁଲି କଲି । କିନ୍ତୁ ସେ ହାରିଲେ ଓ ଜଣେ ସ୍ୱାଧୀନ ପ୍ରାର୍ଥୀ ଜିଣିଲେ । ସ୍ୱାଧୀନ ପ୍ରାର୍ଥୀ ଜଣକ ମୋର ଦୂର ସମ୍ପର୍କୀୟ ବନ୍ଧୁ ହୋଇଥିବାରୁ ଚହଳ ହେଇଥାଏ ଯେ, ମୋର ବନ୍ଧୁ ବୋଲି ମୁଁ ତାଙ୍କ ବିରୁଦ୍ଧରେ ଆନ୍ତରିକ ଉଦ୍ୟମ କରିନାହିଁ । ପ୍ରକୃତ କାରଣ କିନ୍ତୁ ତାହା ନ ଥିଲା । ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାରେ ନୂଆ ହୋଇଥିବାରୁ ମୁଁ ତାଙ୍କ ବିଷୟରେ ଯାହା କହିଲି ତାହା ଲୋକେ ଗ୍ରହଣ କରିନେଲେ । କିନ୍ତୁ ଜିଲ୍ଲା ବୋର୍ଡର ଏ ପ୍ରାର୍ଥୀ ଜଣକ ଖୋର୍ଦ୍ଧାର ଓ ସୁଧଖୋର ମହାଜନ ବୋଲି ପ୍ରସିଦ୍ଧ । ପ୍ରାଣନାଥ ପଟ୍ଟନାୟକ ଶିକ୍ଷିତ ଓ ତାଙ୍କର ତୁଣ୍ଡ ଫିଟୁଥିଲା ବହୁଦିନର ରାଜନୈତିକ ସାଧନା ଯୋଗୁଁ; ସ୍ୱାଙ୍କର ପାଠ ନ ଥିଲା କି ଦିପଦ କହିବାର ସାମର୍ଥ୍ୟ ନ ଥିଲା । ପଟ୍ଟନାୟକେ ନିର୍ବାଚନ ହେବା ସଙ୍ଗେ ସଙ୍ଗେ ମୋତେ ଭୁଲି ଆମ ଗୋଷ୍ଠୀକୁ ଭୁଲି ଆମ ବିରୁଦ୍ଧରେ ଯିବାକୁ ପଶ୍ଚାତ୍‌ପଦ ନ ହେବାରୁ ଲୋକେ ମୋ ସଙ୍ଗେ ସମବେଦନା ଜଣାଇ ମୋ କଥାକୁ ଆଉ ପୂର୍ବପରି ଗ୍ରହଣ କଲେ ନାହିଁ । ସର୍ବୋପରି ସ୍ୱାଧୀନ ପ୍ରାର୍ଥୀ ଜଣକ ଲୋକଙ୍କ ଭଲ ମନ୍ଦ ପ୍ରତି ଦୃଷ୍ଟି ଦେଉଥିଲେ ଏବଂ ନିଜ ଗାଁ ଚାରିପଟେ ଗୁଡ଼ିଏ ଲୋକଙ୍କୁ ମୁଠାରେ ରଖିଥିଲେ । ନିର୍ବାଚନ ଫଳ ବାହାରିବାର ମାସକ ଭିତରେ ତାଙ୍କର ଅତି ଅକାଳ ମରଣ ହୋଇଯିବାରୁ ଉପନିର୍ବାଚନ ଦରକାର ହେଲା । ମୋର ବନ୍ଧୁମାନେ, ନୀଳକଣ୍ଠ ବାବୁ, ଗୋଦାବରୀଶ ବାବୁ ମଧ୍ୟ ଧରିବସିଲେ ମୁଁ ଠିଆହେବି ଏବଂ ଖୋର୍ଦ୍ଧା ଲୋକାଲ ବୋର୍ଡ଼ର ଚେୟାରମ୍ୟାନ ହେବି । ବାଧ୍ୟ ହୋଇ ସେଦିନ ପ୍ରାର୍ଥୀପତ୍ର ଦାଖଲ କରିବାକୁ ଯାଇଥିଲି । ମୃତ ଭଦ୍ର ବ୍ୟକ୍ତିଙ୍କ କକେଇ ଠିଆ ହେବାକୁ ସଜବାଜ ହୋଇ ଆସିଥିଲେ । ମୁଁ ପ୍ରାର୍ଥୀପତ୍ର ଦାଖଲ କରିବାକୁ ସ୍ଥିର କରିବାରୁ ସେ ଓହରି ଗଲେ । ତାଙ୍କ

ସଙ୍ଗେ ଓ ଆମ ଦଳର ବନ୍ଧୁମାନଙ୍କ ସଙ୍ଗେ ପ୍ରାର୍ଥୀପତ୍ର ଦାଖଲ କରିସାରି କଥାବାର୍ତ୍ତା ହେଉଛୁ ନଡ଼ା-ପୋଡ଼ା ପାଉଁଶ ଆସି ଆମ ପାଖରେ ପଡ଼ିଲା । ମୁଁ ତରତର ହୋଇ ଫେରି ପାଟ ଆଖ ଗାଁ ମାନଙ୍କୁ ବୁଲି ଫେରୁଛୁ ଆମ ଗାଁରେ ଏ କାଣ୍ଡ ।

ସେଇ ରାତିରେ ଗୋଟି ଗୋଟି କରି ସମସ୍ତଙ୍କ ଘରକୁ ଗଲି ଏବଂ ବର୍ଷା ଆରମ୍ଭ ହେଲା ବେଳକୁ ସମସ୍ତଙ୍କର ଘର ତୋଳା ହୋଇଥିବ ବୋଲି ଦରିଦ୍ରଙ୍କୁ ଆଶ୍ୱାସନା ଦେବା ସଙ୍ଗେ ସଙ୍ଗେ ଧନୀ ଲୋକମାନେ ପ୍ରତ୍ୟେକେ ଅନ୍ତତଃ ଜଣେ ଦରିଦ୍ରର ଘର ତୋଳାଇ ଦେବେ ବୋଲି ପ୍ରତିଶ୍ରୁତି ଆଦାୟ କଲି । ତହିଁ ଆର ଦିନ ଏସ.ଡି.ଓ. ତାଙ୍କ ମନକୁ ଆସି ପହଞ୍ଚିଲେ ଏବଂ ମୋ ସଙ୍ଗେ ପୋଡ଼ି ଯାଇଥିବା ଘରମାନ ଦେଖି ଖାଦ୍ୟମାନଙ୍କ ଫଣ୍ଡରୁ ୮ ଶହ ଟଙ୍କା ଦରିଦ୍ରଙ୍କୁ ସାହାଯ୍ୟ ଦେବାକୁ ମଞ୍ଜୁର କଲେ । ସେଇଦିନ ସନ୍ଧ୍ୟା ବେଳେ ଗାଁ ସଭାକରି ସ୍ଥିର କଲି ଏସ.ଡି.ଓ.ଙ୍କ ଟଙ୍କା କେବଳ ଉପର ସୁଆଁ ଦିଆ ( ଘର ଛପର କରିବା ମୂଲିଆ ) ମଜୁରି ଦେବାକୁ ରହିବ । ବାଉଁଶ ଓ ନଡ଼ା ଆଖ ପାଖ ଗାଁର ଧନୀ ଓ ମଧ୍ୟବିତ୍ତ ଲୋକଙ୍କ ଠାରୁ ଆଦାୟ ହେବ । ସାଙ୍ଗେ ସାଙ୍ଗେ ସେ ଉଦ୍ୟମ ହେଲା । ଆମ ପାଟର ଥିବା ବାଲି କେତେ-ଜଣ ମଧ୍ୟ ଟଙ୍କା ଓ ନଡ଼ା ସାହାଯ୍ୟ ଦେଇ ପାରିଥିଲେ । ଏଥର ସେମାନଙ୍କର ବିପତ୍ତି !

ପ୍ରଥମ ଥର ଘର ପୋଡ଼ିରେ ରଙ୍ଗଣୀ ସାହିଟି ପୋଡ଼ି ଯାଇଥିଲା । ସେମାନଙ୍କର ସର୍ବସ୍ୱ ଯାଇଥିଲା । ଲୁଗାବୁଣା ଯନ୍ତ୍ର ଆଦି ସମସ୍ତ । ଜଗତ ସେବକ ସମାଜର ଲକ୍ଷ୍ମୀନାରାୟଣ ସାହୁ ଚୌଦ୍ୱାରରେ ଥିବା ତାଙ୍କ ଲୁଗାବୁଣା ଅନୁଷ୍ଠାନଟି ଭିତ୍ତି ସବୁତକ ଯନ୍ତ୍ର ସାମଗ୍ରୀ ଆମକୁ ଦାନ କରିଥିଲେ । ତାହା ଆସି ପହଞ୍ଚି ସାରିଥାଏ । ଆମ ପାଟ ପୋଡ଼ିଯିବା ପରେ ମୁଁ ସଂକଳ୍ପ କଲି, ସମସ୍ତଙ୍କର ଦରଦ୍ୱାର ତିଆରି ହେଲା ପରେ ଆମ ଘର ତିଆରି କରାଯିବ । ଉପର ସାହାଲ ତ ଦକ୍ଷିଣୀ ଅଛି । ବର୍ଷା ପୂର୍ବରୁ ଛପର ନ କଲେ ଚଳିବ । ଆଟୁ ଉପର ଭଲକରି ଲିପିଦେଇ ତାରି ତଳେ ଆମର ଚଳିଲା, ସେପ୍ଟେମ୍ବର ପର୍ଯ୍ୟନ୍ତ । ବର୍ଷା ଆରମ୍ଭ ହୋଇଗଲା ପରେ ମଧ୍ୟ ପ୍ରତି ଅପରା ଶେଷରେ ଆଟୁ ଉପର ଲିପାଇ ଦିଏ । ଦିଲ୍ଲୀ ଗଲା ବାଟରେ ମୁଁ ଦେଖିଥାଏ ଯୁକ୍ତ ପ୍ରଦେଶ ଓ ରାଜପୁତାନାର ଗାଁକୁ ଗାଁ ଖାଲି ଖଡ଼ି ଆଟୁ ତଳେ ରହିଛନ୍ତି । ନଡ଼ାର ଦେଖା ଦର୍ଶନ ନାହିଁ । ସେ ଅଞ୍ଚଳରେ ବର୍ଷା ଖୁବ୍ କମ୍ ହେଉଥିବାରୁ ଉପର ଛପର ନ କଲେ ଚଳେ । ସେଇଥିରୁ ମୁଁ ଭାବନେଇଥାଏ, ଆମର ଦକ୍ଷିଣୀ ଆଟୁ ଛପର ନ ହୋଇ ଅନ୍ତତ ଗୋଟାଏ ବର୍ଷାଋତୁ ସହିପାରିବ । ସେତେଦିନ ଗଲାନାହିଁ । ଶ୍ରାବଣ ଶେଷକୁ ଆମ ଘରର ଉପର ସାହାଲ ଓ ସବା ତଳ ସାହାଲ ( ଗୁହାଳ ସାହାଲ ) ଛପର ହୋଇଗଲା । ମଝି ସାହାଲ ସେଇମିତି ପଡ଼ି ରହିଲା ବର୍ଷକରୁ ଅଧିକ କାଳ । ଆଉ ଖରାଦିନେ ସ୍ଥିର କଲି ସେ ସାହାଲଟା ପକ୍କା କରିଦେବି । ଭବିଷ୍ୟତରେ କେବେ ଘର ପୋଡ଼ିଗଲେ ପିଲେ ଆଉ

ଦେଉଳରେ ଆଶ୍ରୟ ନେବା ଦରକାର ପଡ଼ିବ ନାହିଁ, ଓଲଟି ଆମ ସାହି ସାକର ପିଲ୍ଲ କେବଳ ଆମର ଏଇ ସାହାଲରେ ଦ'ଘଣ୍ଟା ଦିନ ରହିଯାଇପାରିବେ ।

ସେ ତ ପରକଥା । ଘର ପୋଡ଼ିଯାଇଥିଲା ଏପ୍ରିଲ କି ମେ ମାସରେ, ଠିକ ମନେ ପଡ଼ୁ ନାହିଁ । ସମସ୍ତଙ୍କର ଅତି ଆନ୍ତରିକ ଚେଷ୍ଟାରେ ଅତି ଅଳ୍ପ ସମୟରେ ଆମ ଗାଁର ଅଧିକାଂଶ, ପ୍ରାୟ ସମସ୍ତଙ୍କର କହିଲେ ଚଳେ, ଘର ତିଆରି ହୋଇଗଲା । ଗାଁର ଓ ବାହାର ଗାଁର ପ୍ରାୟ ୧୫ । ୨୦ ଜଣ ସଙ୍ଗୀ ଯେପରି ସାଧୁଆ, ଖିଆ ଭୁଲି ଏ କାର୍ଯ୍ୟରେ ଲାଗିଥିଲେ ତାହା ମନରୁ ପାସୋର ଯାଇ ନାହିଁ । ଅନ୍ୟ କମନ୍ତେ ସେପରି ଉଦ୍ୟମ ଆଜିକାଲି ଏକା-କେଲକେ ବିରଳ ହୋଇଗଲାଣି । ଆମ ଗାଁରେ ପ୍ରାୟ ୬ ଶହ ପରିବାର ; ଏଥିରୁ ପ୍ରାୟ ପାଞ୍ଚ ଶହ ଦରିଦ୍ର ; ମଧ୍ୟବିତ୍ତ ଓ ଧନୀ ହେବେ ଶହେ ( ସେତେବେଳେ ଥିଲେ, ଏବେ ଏ ସଂଖ୍ୟା ଆହୁରି କମି ଗଲଣି । ) ଏଇ ଘରପୋଡ଼ି ସନ୍ଦର୍ଭରୁ ମୁଁ ଆମ ଗାଁର ଧନୀ ମଧ୍ୟବିତ୍ତ ଲୋକଙ୍କ ଉପରେ ପ୍ରଭାବ ପକାଇ, ଦରିଦ୍ରଙ୍କ ପ୍ରତି ବଦାନ୍ୟତା ଦେଖାଇବାକୁ ସେମାନଙ୍କୁ ଜାଗ୍ରତ କରାଇବାକୁ ଚେଷ୍ଟା କଲି । ମୋର ଦୃଢ଼ ବିଶ୍ୱାସ, ଏ ଉଦ୍ୟମ ସଫଳ ହେଲା । ଯୁଦ୍ଧ ସମୟରେ ଆମ ଗାଁର ଧନୀ ଲୋକେ ଦରିଦ୍ରଙ୍କୁ ଶସ୍ତାରେ ଧାନ ଯୋଗାଇବାରେ ଯେପରି ଆଗ୍ରହୀ ହୋଇଥିଲେ ତାହା ସମଗ୍ର ରାଜ୍ୟର ଦୃଷ୍ଟିରେ ପଡ଼ିଥିଲା । ଦରିଦ୍ର ଲୋକଙ୍କର ଆଶୀର୍ବାଦ ମୋତେ ମିଳିଥିଲା ବୋଲି ମୁଁ ଅନୁଭବ କରୁଛି । ଦରିଦ୍ରତା ମୋର ଚିର ସହଚର, କିନ୍ତୁ ଏଇ ସମୟରୁ ମୋର ଆତ୍ମସନ୍ତୋଷ ଶଳା ମାରି ମୋତେ ଆଜିଯାଏ ବଞ୍ଚାଇ ରଖିଛି ।

ମୁଁ ନିର୍ଦ୍ୱନ୍ଦ୍ୱରେ ଜିଲ୍ଲା ବୋର୍ଡ଼ ମେମ୍ବର ନିର୍ବାଚିତ ହୋଇ ଯିବାର ପଛେ ପଛେ ଯୋର୍ଦ୍ଧା ଲୋକାଲ ବୋର୍ଡର ଚେୟାର ମ୍ୟାନ ନିର୍ବାଚିତ ହୋଇଗଲି । ଶେଷ ପର୍ଯ୍ୟନ୍ତ ଏ ପଦ ଗ୍ରହଣ କରିବି କି ନାହିଁ କୁଣ୍ଠୁ କୁଣ୍ଠୁ ହୋଇ ଶେଷରେ ବନ୍ଧୁମାନଙ୍କ ସମବେତ ଚାପରେ ଏହା ଗ୍ରହଣ କରିବାକୁ ପଡ଼ିଲା । ମୋର କାମ ବହୁ ଗୁଣ ବଢ଼ିଗଲା ।

କଟକରେ ପ୍ରେସ । ନବ ଭାରତ ମାସିକ ପତ୍ର ସାଙ୍ଗକୁ ସାପ୍ତାହିକ ଲୋକମତ ଚାଲିଥାଏ । ନିର୍ବାଚନ ପରେ ପରେ ଏହାକୁ ବନ୍ଦ କରିବାକୁ ପ୍ରଥମେ କଳ୍ପନା ଥିଲା କିନ୍ତୁ ଏହାଦ୍ୱାରା ଲୋକଙ୍କର ମଙ୍ଗଳ ହେଉଛି, ସେମାନଙ୍କର କଥା ବଡ଼ଲୋକଙ୍କ ଆଖି ଓ କାନକୁ ଆସୁଛି ବୋଲି ଅନୁଭବ କରି ଏହାକୁ ଚଳାଇବାକୁ ଜିଦ୍ କରିଥାଏ । ନବ ଭାରତର ସମ୍ପାଦକ ଥାଆନ୍ତି, ନୀଳକଣ୍ଠ ବାବୁ ; କିନ୍ତୁ ନାମକୁ ମାତ୍ର । ଅନେକ ସମୟରେ ସଂପାଦକୀୟ ମଧ୍ୟ ମୋତେ ଲେଖିବାକୁ ପଡ଼େ । ଦୁଇଟି ଯାକ କାଗଜ କ୍ଷତିରେ ଚାଲୁଥାଏ । ପ୍ରେସ୍‌ର ଆୟରୁ ଏ ଦୁହେଁ ଚଳୁଥାନ୍ତି । ପ୍ରେସକୁ ବୁଲିବେଲେ କମିତି କାମ ମିଳିବ, ଟଙ୍କା ଠିକ ସମୟରେ ଆଦାୟ ହେବ, ଏ ଦାୟିତ୍ୱ ସମ୍ପୂର୍ଣ୍ଣରୂପେ ମୋର । ତା' ଉପରେ ଜିଲ୍ଲା ବୋର୍ଡ ଓ ଲୋକାଲ ବୋର୍ଡର କାମ ।

ଜିଲ୍ଲା ବୋର୍ଡର ଚେୟାରମ୍ୟାନ ଜଗନ୍ନାଥ ରଥେ ଓ ଭାଇସ ଚେୟାରମ୍ୟାନ ଦୁଃଖିଶ୍ୟାମ ଦାସେ । ଏ ଦୁହିଁଙ୍କ ଭିତରେ ପ୍ରାୟ ବୁଲିବେଲେ ମତାନ୍ତର ଓ ମନାନ୍ତର । ଏ

ଦୁହିଙ୍କୁ ଏକାଠି କରିବାର ଦାୟିତ୍ୱ ମୋର । ଦୁଇଜଣ ଯାଜକ ମୋ'ଠାରେ ଶ୍ରଦ୍ଧା ଥିବାରୁ ଏ ଦାୟିତ୍ୱ ତୁଲାଇବା କଷ୍ଟକର ହେଉନଥାଏ । ଜିଲ୍ଲା ବୋର୍ଡ଼ର ବିଭିନ୍ନ ସମସ୍ୟା ସମାଧାନ କରିବା ପାଇଁ ମାସକୁ ଅନ୍ତତଃ ତିନିଦିନ ପୁରୀରେ ରହିବାକୁ ପଡ଼େ । ଲୋକାଲ ବୋର୍ଡର ଚେୟାରମ୍ୟାନ ଭାବେ ଖୋର୍ଦ୍ଧା ସବ୍‌ଡିଭିଜନ୍‌ର ତିନୋଟି ସର୍କଲର ପ୍ରତ୍ୟେକ ପ୍ରାଇମେରି ସ୍କୁଲକୁ ପରିଦର୍ଶନ କରିବାର କଥା । ଏହା ବାଦ୍ ବୁଲିଏ ଗ୍ରାମ୍ୟ ସଡ଼କ ମଧ୍ୟ ଲୋକାଲ ବୋର୍ଡ ଅଧୀନରେ । ପୂର୍ବର ଚେୟାରମ୍ୟାନମାନେ ଖୋର୍ଦ୍ଧାର ଲୋକାଲ ବୋର୍ଡ ଅଫିସରେ ବସି ସବୁ କାମ କରି ଦିଅନ୍ତି ; ସେଇ ଅଫିସରେ ବସି ମଧ୍ୟ ସବୁ ଆଡ଼ ଟୁର କରି ଗସ୍ତ ଖର୍ଚ୍ଚ ଆଦାୟ କରନ୍ତି । ଗାଁର ସ୍କୁଲମାନ ସବୁଦିନ ଫିଟେ ନାହିଁ । ଗ୍ରାମରେ ବେକାର ଯୁବକଙ୍କ ସଂଖ୍ୟା ଆଜିକାଲି ବଢ଼ି ଥିବାରୁ ଗାଁର ଭଲମନ୍ଦ ବେଳେ ବେଳେ ଲୋକଲୋଚନକୁ ଆସୁଛି । ସେତେବେଳେ ଗାଁ ଗହଳି ବିଷୟରେ ସମ୍ବାଦ କ୍ୱଚିତ୍ ବାହାରେ । ଗ୍ରାମ୍ୟ ସଡ଼କ ମରାମତି ପାଇଁ ମାଇଲକୁ ପ୍ରାୟ ପଚିଶ ଟଙ୍କାରୁ ବେଶୀ ମିଳେ ନାହିଁ । ସେତକ ମଧ୍ୟ ଖର୍ଚ୍ଚ ହୁଏ ନାହିଁ । ଚେୟାରମ୍ୟାନ, ତାଙ୍କ ଅଫିସ କିରାଣୀ ଓ ଓଭରସିଅରଙ୍କୁ ଧରାଧରି କରି ଗାଁ ମାମଲତକାରମାନେ ନାମକୁ ମାତ୍ର କୋଉଠି କେମିତି ମାଟି ପୁଙ୍କାଏ ପୁଙ୍କାଏ ପକାଇ ପଇସା ଚୂଡ଼ା ଭୁଡ଼ା କରି ଦିଅନ୍ତି । ଏ ସବୁ ବିଷୟରେ ତୀକ୍ଷ୍ଣ ଦୃଷ୍ଟି ଦେବି ବୋଲି ପ୍ରଥମ ଦିନରୁ ସଂକଳ୍ପ କଲି ।

ସେଇ ପ୍ରଥମ ଦିନରୁ ଲୋକାଲ ବୋର୍ଡ ମେମ୍ବରମାନଙ୍କ ସଙ୍ଗେ ଖୋଲି ଗପ କରୁକରୁ ସ୍ଥିର ହୋଇଗଲା, ଦୁଇ ତିନିଟା ହାଇସ୍କୁଲ ଓ ୧୦ ଟା ମାଇନର ସ୍କୁଲ ଜନସହଯୋଗରେ ପ୍ରତିଷ୍ଠା କରିବା ଏବଂ ଅନ୍ତତଃ ୫୦ ମାଇଲ ନୂଆ ଗ୍ରାମ୍ୟ ସଡ଼କ କରାଇବା ସରକାରର ବିନା ସାହାଯ୍ୟରେ । ସ୍ୱାବାଦ କୂଅ ଖୋଳା କାମ ଡିଷ୍ଟ୍ରିକ୍ଟ ବୋର୍ଡର ସାହାଯ୍ୟରେ । ଗଛ ଲଗାଇବା ଓ ଭଲ ଗାଈ ଓ ଛେଳି ମେଣ୍ଢା ରଖିବା ଆଦି ଲୋକଙ୍କ ମଙ୍ଗଳ ପାଇଁ ଯାହା ଯାହା ମନକୁ ଆସିଲା ସବୁ କଥା ପାଇଁ ସଂକଳ୍ପ ହୋଇଗଲା । ଏ ସଂକଳ୍ପ ସବୁ ସଫଳ ହେବାରେ ମୂଳ ମୁଁ । ମୋ ଆଡ଼ୁ ନ ଗେଧେଇଲେ କେହି ଚଳୁ ନ ଥାନ୍ତି ।

ସର୍ବୋପରି ମୋ ନିଜ ଗାଁ । ଆମ ଗାଁ ଖୋର୍ଦ୍ଧାର ପାଞ୍ଚ ମାଇଲ ଭିତରେ ହୋଇଥିବାରୁ ମୋର ହେଡ଼କ୍ୱାର୍ଟର ହେଲା ଗାଁରେ । ମୋର ସ୍ତ୍ରୀ ଓ ଝିଅ ତିନୋଟି ସ୍ଥାୟୀ ଭାବରେ ଗାଁରେ ରହିଲେ । ଆମ ଘର ତୋଳା ତ ପଛକୁ ଥାଏ ; ଗାଁର ସମସ୍ତଙ୍କ ଘର ତୋଳା ଓ ସମସ୍ତଙ୍କ ଚୂଲିକି ହାଣ୍ଡି ଯିବା ଦାୟିତ୍ୱ ବି ମୋର ।

ଶସ୍ତାରେ ଖଣ୍ଡିଏ ଜେ.ଏଲ୍.ଓ. ବାଇକ୍ ମିଳିଯାଇଥିଲା । ଗ୍ୟାଲେନେ ପେଟ୍ରୋଲରେ ପ୍ରାୟ ୧୨୦ ମାଇଲ ଯାଉଥାଏ । ଗ୍ୟାଲେନେ ପେଟ୍ରୋଲର ଦାମ ସେତେବେଳେ ପ୍ରାୟ ଟଙ୍କାଟେ । ଗ୍ୟାଲନକ ପାଞ୍ଚ ଲିଟର । ଆଜି ଲିଟରେ ପେଟ୍ରୋଲର ଦାମ ୩ ଟଙ୍କା ୨୫ ପଇସା(୧୯୭୬) । ଏଇ ମଟର ସାଇକେଲ ଖଣ୍ଡ ହୋଇଥାଏ ମୋର ସହାୟ । ପ୍ରତି ହପ୍ତାରେ

ଆ ଧନ ପାଇଁ ଯାଏ କହକ ; ସେଇ ଧନ ଧନରେ ଲୋକମତ ଲେଖା ହୋଇ ବାହାରେ, ନବ ଭାରତର କାମ ହୁଏ, ଏବଂ ପ୍ରେସ ହସ୍ତାକ ଚଳିବା ପାଇଁ କାମ ଓ ପଇସା ସଂଗ୍ରହ ହୁଏ, ଛାପିବା ପାଇଁ କାଗଜ ତ ରଙ୍ଗଲାଲ ମୋଦିଙ୍କ ଦୋକାନରୁ ସ୍ଲିପ୍ ଖଣ୍ଡେ ଦେଲେ ମିଳିଯାଉଥାଏ ।

ତତ୍ତ୍ୱାସ୍ଥ ଧନର ଓପରଓଲି ଗାଁକୁ ଫେରିବା । ଗୃଶଧନ ତମାମ ଚଷ୍ଟ । ଏ ଗସ୍ତର ବିବରଣୀ ତ ଜିଲ୍ଲା ବୋର୍ଡ ଓ ଲୋକାଲ ବୋର୍ଡ଼ ଅଫିସରେ ଥିବାର କଥା କିନ୍ତୁ ସ୍ୱାଧୀନତା ପରେ ପୁରୁଣା କାଗଜ ପତ୍ର ରଖିବାରେ ଘୋର ଅବହେଳା ଆମ ସରକାରର ପ୍ରତ୍ୟେକ ସ୍ତରରେ ଲକ୍ଷିତ ହେଉଛି । ୧୯୪୭ ପୂର୍ବେ ପଚାଶ ଶହେ ବର୍ଷର କାଗଜ ମାଗିବା ମାତ୍ରେ ମିଳିପାରୁଥିଲା । ଏବେ ଦଶ ବର୍ଷ ପୂର୍ବର କାଗଜ ଖଣ୍ଡେ ପାଇବାକୁ କେତେ ଅଣ୍ଡାନୁଣ୍ଡା କେତେ ଧାଇଁବା ଦୌଡ଼ିବା ପଡୁଛି ତାହା ପ୍ରତ୍ୟେକେ ଅଙ୍ଗେ ନିଭାଉଥାଏଁ । ସେ କାଳର ଜିଲ୍ଲାବୋର୍ଡ, ଲୋକାଲ ବୋର୍ଡ଼ ଗଲେଣି; ତାଙ୍କ ଜାଗାରେ ହୋଇଥିବା ଜିଲ୍ଲା· ପରିଷଦ, ପଞ୍ଚାୟତ ସମିତି, ଗ୍ରାମ ପଞ୍ଚାୟତ ହେଇଛି ଅଛି ହେଇଛି ନାହିଁ ମାପ୍ୟା କାଳରେ ଯାଉଛନ୍ତି, ଆସୁଛନ୍ତି ଉଚ୍ଚ କର୍ତ୍ତୃପକ୍ଷଙ୍କର ମରଜି ଅନୁସାରେ । ଆଜିକାଲର ରବାଦ ଦେଖିଲେ ମୋ ଭଳିଆ ପୁରୁଣାକାଳିଆ ଲୋକଙ୍କର ଦୀର୍ଘ ନିଃଶ୍ୱାସ ପକାଇବା ବ୍ୟତୀତ ଗତ୍ୟନ୍ତର ନାହିଁ ।

ମୋ ଲୋକାଲ ବୋର୍ଡ କାଳର ଗସ୍ତ ବିବରଣୀ ମୋର ମନରେ ଅଙ୍କିତ ହୋଇ ରହିଛି । ଖାଲି ଲୋକପ୍ରତିନିଧି କାହିଁକି, ସରକାରୀ ସ୍କୁଲ ସବ୍‌ଇନସ୍‌ପେକ୍‌ଟର, ଡେପୁଟି ଇନସ୍‌ପେକ୍ଟରମାନେ ସେ କାଳରେ କିପରି ବେଗାଫେଲିପା କାମ କରୁଥିଲେ ଓ ଅତି ସାମାନ୍ୟ ଲାଞ୍ଚଲୁଆ ନେଇ କିପରି ଶିକ୍ଷକମାନଙ୍କୁ ନିଜ କାର୍ଯ୍ୟରେ ଅବହେଳା କରିବାର ବାଟ ଦେଖାଉଥିଲେ ତାହା ମୋ ନଜରକୁ ଆସିଥିଲା । ଜଣେ ଲୋକପ୍ରତିନିଧିଙ୍କର ଗ୍ରାମସ୍ଥ ପ୍ରାଇମେରୀ ଶିକ୍ଷକ ଗୁମାସ୍ତା କାମ କରୁଥିଲେ । ଏକ ଶିକ୍ଷକ-ବିଶିଷ୍ଟ ସ୍କୁଲ; ପିଲାମାନେ ସ୍କୁଲକୁ ନ ଆସି ମାଷ୍ଟ୍ରଙ୍କ ଗୁମାସ୍ତା ଗଦିକୁ ଯାଉଥିଲେ ଓ ସେଇଠାରେ ପ୍ରେଜେଣ୍ଟ୍ ପକାଇ ଘରକୁ ଯାଉଥିଲେ ଛୁଟି ନେଇ । ଜଣେ ଡେପୁଟି ଇନ୍‌ସପେକ୍ଟର ଜଣେ ମାଷ୍ଟ୍ରଙ୍କଠାରୁ ଗୋଟିଏ ଧୁଇ ଧନ ବାଲ୍‌ଟି ପାଣି ଧରିବା ଭଳି ପଥର କୁଣ୍ଡ ପାଇ ମାଷ୍ଟ୍ରଙ୍କୁ ପାଠ ପଢ଼ାଇବା କାର୍ଯ୍ୟରୁ ଏକାବେଳକେ ଶହାଦ ଦେଇଥିଲେ । ଆଉ ଥରେ ଗୋଟିଏ ସ୍କୁଲ ଭିତରେ ପଶି-ଗଲା ବେଳକୁ ପୋଡ଼ା ଘିଆ ଘିଅ ଗନ୍ଧରେ ମୋର ନାକ ଚ ଣ୍ଟି ହୋଇଯାଇଥିଲା । ଭିତରେ ଘର ପ୍ରତିଷ୍ଠା ହୋମ ହେଉଛି ପରା ବୋଲି ଅନୁମାନ କରି ପଶି ଗଲା ବେଳକୁ ଗୋଟାଏ କୁଣ୍ଡରେ ମାଷ୍ଟ୍ରେ ପୁରି ଛାଣୁଛନ୍ତି, ଏ କୁଣରେ ପ୍ରାୟ ଦଶଟି ପିଲା ଜଙ୍ଘରେ ସିଲଟ ଥୋଇ ବା ଅଗରେ ବହି ମେଲାଇ ପୁରିର ବାସ୍‌ନା ଆଘ୍ରାଣ କରୁଛନ୍ତି । ବହୁତ ପଚରା ପଚରି କରିବାରେ ମାଷ୍ଟ୍ରଙ୍କଠାରୁ ଆଦାୟ କଲି, 'ବାବୁ (ସବ୍‌ଇନ୍‌ସ୍‌ପେକ୍‌ଟର) ପାଖ ଗାଁର ସ୍କୁଲ ପରିଦର୍ଶନ କରିବାକୁ ଯାଇଛନ୍ତି, ଏଇଠାରେ ଖାଇବେ, ଓ ଦି ପହରେ ବିଶ୍ରାମ କରିବେ ।' ସେତେବେଳକୁ

ସାଢ଼େ ୯ଟା ସକାଳ ; ସ୍କୁଲ ଛୁଟି ସମୟ ଏଗାରଟା । ସାଙ୍ଗେ ସାଙ୍ଗେ ସେଇ ପାଙ୍କ ନାଁ ଆଡ଼କୁ ମୋର ଯାନ ମୁହାଁଇଲା । ବାବୁଙ୍କ ସାଙ୍ଗେ ବାଟରେ ଦେଖାହେଲା । ତାଙ୍କୁ କହିଲି, 'ଆପଣଙ୍କ ପୁତ୍ର ଅସ୍ଥିର ହୋଇଯାଉଛି, ଶୀଘ୍ର ଯା'ନ୍ତୁ ।' ଭଦ୍ରଲୋକ ଇନ୍‌ସ୍‌ପେକ୍‌ଟରଙ୍କୁ କ୍ଷମା ପୋଚ୍ଛ କରି ବାଲେଶ୍ୱର ବଦଳି ହୋଇଗଲେ ।

ଏହିପରି ବହୁ ଘଟଣା ଏକ ସାଙ୍ଗରେ ମନକୁ ଆସୁଛି । ସେଥିରୁ ଗୋଟାଏ ମାତ୍ର ଦୃଷ୍ଟାନ୍ତ ଦେଇ ଏ ବିଷୟରେ ଉପସଂହାର କରିବି । ବାଣପୁର ସର୍କଲରେ ଚଣ୍ଡେଶ୍ୱର ସ୍କୁଲ । ସେ ସ୍କୁଲରେ ଯାଇ ପହଞ୍ଚିଲି ବେଳକୁ ଦ୍ୱାରରେ ତାଲା । ତାଲାଟି ଖୁବ୍ ପତଳା, ସେ କାଳର 'ମିଲର୍' ତାଲା; ପିଞ୍ଜୁଳା ଭିତରେ ଗଳିଗଲା । ଘରେ ପଶିଗଲି ବେଳକୁ ଗୃହଣେ ବହଳରେ ଅନ୍ଧାର । ମାଷ୍ଟରଙ୍କ ଟେବୁଲ କଡ଼ରେ ଗୋଟିଏ ଗୁଣ୍ଠୁଣୀ କାନ୍ଥରେ ଡେରି ହୋଇଥିଲା । ସ୍କୁଲ ଘରଟି ଭଲ କରି ଓଳାଇଲି ଏବଂ ପାଖ ଦୋକାନରୁ ସେର ଚକଡ଼ି ମଗାଇ ମଇଳାତକ ଓଜନ କଲି—ଦୁଇ ସେରରୁ କିଛି କମ୍ ହେଲା । ମାଷ୍ଟରଙ୍କ ଟେବୁଲ୍ ଉପରେ ସବୁ କାଗଜ ପତ୍ର । ଗତ ଶନିବାର ପର୍ଯ୍ୟନ୍ତ ଉପସ୍ଥାନ ପଡ଼ିଛି । ୩୨ ଜଣ ଯାକ ପିଲା ଉପସ୍ଥିତ । ଉପସ୍ଥାନ ବହିରେ ଖଣ୍ଡିଏ ଦରଖାସ୍ତ—'ପିତାଙ୍କ ଶ୍ରାଦ୍ଧଯୋଗୁଁ ଅଳ୍ପ ଆସି ପାରିବି ନାହିଁ' । ଦରଖାସ୍ତ ଖଣ୍ଡି ସବ୍‌ଇନସ୍‌ପେକ୍‌ଟରଙ୍କ ପାଖକୁ ଲେଖା ହୋଇଥିଲେ ହେଁ ସେ ଖଣ୍ଡି ପକେଟରେ ପୂରାଇ ସେକ୍ରେଟାରୀଙ୍କ ପାଖକୁ ଚଳି । ତାଙ୍କର ମୋର ଦେଖା ସାକ୍ଷାତ ନ ଥିଲା କିନ୍ତୁ ଆମେ ପରସ୍ପରର ନାମ ଜାଣିଥିଲୁଁ । ଶିକ୍ଷକଙ୍କ ବିଷୟ ସେ କହିଲେ ଓ ସ୍କୁଲ୍କୁ ଅନ୍ୟତ୍ର ବଦଳି କରିଦେବାକୁ ଅନୁରୋଧ କଲେ । ଶିକ୍ଷକଙ୍କ ଘର ପାଣିଓରଡ଼ ବୋଲି ଶୁଣିଲି । ସେଠାରେ ତାଙ୍କ ଘରେ ଖାଇବାକୁ କହିଲେ କିନ୍ତୁ ମୁଁ ଗାଁକୁ ଯିବାପାଇଁ ବୋଲି କହି ଚାଲି ଆସିଲି । ଚନ୍ଦନାଖଲାରେ ଆମର ଜଣେ ମେମ୍ବରଙ୍କ ଦେଉଳରେ ଖାଇ ଟିକିଏ ବିଶ୍ରାମ କରି ପାଣିଓରଡ଼ ଚାଲିଲି । ବଡ଼ ସଡ଼କରୁ ଗମ୍ଭୀର ବିଲରେ ବଡ଼ କଷ୍ଟରେ ଯିବାକୁ ପଡ଼ିଲା । ବିଶ୍ୱନାଥ ନାୟକଙ୍କ ଘର କେଉଁଠା ବୋଲି ପଚାରି ପଚାରି ଯେଉଁଠାକୁ ଗଲି ସେଠାରେ ଧମା ଧମ ଖେଳ ଚାଲିଥାଏ । ମୁଁ ଟିକିଏ ଖେଳକୁ ଚାହିଁବାରେ ଜଣେ ଉଠିଯାଇ ମୋତେ ବସିବାକୁ କହିଲେ । ଘଣ୍ଟେ ଦୁଇ ଘଣ୍ଟା ଖେଳ ସରିବା ପରେ ଗାଁକୁ ଯିବି ବୋଲି ଉଠିପଡ଼ି ମାଷ୍ଟରଙ୍କ ବାପା ଅଛନ୍ତି ବୋଲି ପଚାରିଲି । ମୋ ବିରୁଦ୍ଧରେ ଯେ ଖେଳୁଥିଲେ, ୫୦।୫୫ ବର୍ଷର ଟଗରା ଭଦ୍ରଲୋକ ହସି ହସି କହିଲେ 'ମୁଁ ପରା' । ତାଙ୍କୁ ମାଷ୍ଟରଙ୍କ ଦରଖାସ୍ତ ଖଣ୍ଡ ଦେଖାଇଲି । ସେ ସେହିପରି ହସି ହସି କହିଲେ, 'ଧାନ କଟାକଟି ଆରମ୍ଭ ହୋଇଗଲାଣି ବୋଲି ତ ତାକୁ ଲେଖି ଚାଲି ଆସିଛୁ ।' ପିତୃଶ୍ରାଦ୍ଧ କଥାଟା ବୋଧହୁଏ ତାଙ୍କ ଆଖିରେ ପଡ଼ିନାହିଁ ବୋଲି ମନେକରି ତାଙ୍କଠାରୁ ବିଦାୟ ନେଇ ତଳକୁ ଓହ୍ଲାଇଲି ବେଳକୁ ମଣ୍ଡପରୁ ଜଣେ ଯୁବକ ଓହ୍ଲାଇ ପଡ଼ି କହିଲେ, 'ଚାଲନ୍ତୁ ଆଜ୍ଞା, ମୁଁ ସାଇକେଲ ବଡ଼ସଡ଼କକୁ ଉଠାଇ ଦେଇ ଆସିବି ।' ସେଇ ବିଶ୍ୱନାଥ ନାୟକ, ଅଧ ଘଣ୍ଟେ ହେଲା ବିଲରୁ ଆସି ଖେଳ ଦେଖୁଥିଲେ । ଗମ୍ଭୀର ବିଲ ପାରି ହୋଇ ବଡ଼ ସଡ଼କରେ ତାଙ୍କଠାରୁ ସାଇକେଲ ନେବା ବେଳେ ପଚାରିଲି, 'ସ୍କୁଲକୁ କେତେ ଦିନ

ହେଲା ଯାଇ ନାହିଁ ?' ସେ ଅଳ୍ପକେ ମାନି ଗଲେ, ୧୦ । ୧୫ ଦିନ ହେଲା ଯାଇ ନାହାନ୍ତି । ଦରଖାସ୍ତରେ ତାରିଖ ନଥିବା କଥା ଦର୍ଶାଇବାରୁ କହିଲେ, 'ଆଜ୍ଞା, ଛୁଡ଼ି ଯାଇଛି ।' ପ୍ରକୃତ କଥା ବୁଝିଲି, ଯଦି କେହି ପରିଦର୍ଶକ ଆସି ଦରଖାସ୍ତଟା ଦେଖି ନେଇ ଯାନ୍ତି, ତେବେ ତାଙ୍କୁ ଖବର ଦେବାକୁ ଲୋକ ଠିକଣା ହୋଇଥାନ୍ତି । ଖବର ପାଇ ସେ ଦିନେ ଦୁଇଦିନ ସ୍କୁଲକୁ ଆସନ୍ତି ଓ ଆଉ ଖଣ୍ଡେ ଦରଖାସ୍ତ ଲେଖିଦେଇ ପୁଣି ଆପଣା କାମରେ ଲାଗନ୍ତି । ତାଙ୍କର କାମ ଜାତକ ସାଧିବା ଓ ଉପଚାର କରିବା ।

ତାଙ୍କ ସଙ୍ଗେ ଆଉ ପଦେ ଦି'ପଦ କଥା ବାର୍ତ୍ତା ହୋଇ କହିଲି, 'ତୁମକୁ ଏ ଚାକିରୀରୁ ବାହାରି ଯିବାକୁ ହେବ । ଜ୍ୟୋତିଷ କାମ କଲେ ତ ଚଳିବ । ତାପରେ ତୁମର ଭୂଇଁ ବାଡ଼ି ଜମିବାଡ଼ି ଅଛି ।'

ସେ କହିଲେ, 'ଅଜ୍ଞା, ଯେତେ ଥିଲେ ବି ପଇସା କିଏ ଗଣ୍ଡାଉଛି ! କାହିଁକି ଛାଡ଼ିବ ?'

ମୁଁ କହିଲି, 'ତୁମେ ଛାଡ଼ିଲେ ଛାଡ଼ ନ ଛାଡ଼ିଲେ ନାହିଁ । ମୁଁ ତୁମକୁ ବରଖାସ୍ତ କରିଦେବ ।'

କିଛିକ୍ଷଣ ତାଙ୍କଠାରେ ହସି ହସି କହିଲେ, 'ଆଜ୍ଞା, ଆପଣ ମୋତେ ତଡ଼ି ପାରିବେ ନାହିଁ । ସେ କ୍ଷମତା ଅଛି ଜିଲ୍ଲାବୋର୍ଡ ଚେୟାରମ୍ୟାନଙ୍କର ଯେ, ମୋତେ କୌଣସି ପ୍ରକାର ଦଣ୍ଡ ନ ଦେବାକୁ ମୁଁ ଇନସପେକ୍ଟର ମିଷ୍ଟର ରାସ୍ ଓ ଡିରେକ୍ଟର ତ୍ରିପାଠୀ ସାହେବଙ୍କଠାରୁ ଚିଠି ଜିଲ୍ଲାବୋର୍ଡ ଚେୟାରମ୍ୟାନଙ୍କ ପାଖକୁ ଆଣି ପାରିବ ।' ଏତିକି କହିସାରି ସେ ପୁଣି ମତେ ଧରି ବୁଝାଇ ଦେଲେ, 'ଅଜ୍ଞା, ମୋ ସଙ୍ଗେ ଲାଗିଲେ ଆପଣ ଅପମାନ ମାତ୍ର ପାଇବେ । ଏ କଥା ମନରୁ ଛାଡ଼ନ୍ତୁ । ବରଂ ଆପଣଙ୍କ ଜାତକ ଦିଅନ୍ତୁ । ମୁଁ ସାଧିଦେବି । ମୋପରି ଜ୍ୟୋତିଷ ଖୋର୍ଦ୍ଧାରେ କେହି ନାହାନ୍ତି ।' ମୁଁ ଉତ୍ତର ନ ଦେବାରୁ ପୁଣି କହିଲେ, 'ଅଜ୍ଞା, ମୁଁ ଜାତକ ସାଧିଲେ ହାକିମମାନଙ୍କଠାରୁ ପଇସା ପତ୍ର ନିଏ ନାହିଁ । ମୋ କଥା ତ୍ରିପାଠୀ ସାହେବ କହିବେ, ମିଷ୍ଟର ରାସ୍ କହିବେ. ଦୁଃଖିଶ୍ୟାମ ବାବୁ (ମିଶ୍ର) ବି କହିବେ ।'

ଏତେ ବେଳକୁ ମୋର ରାଗ ପଞ୍ଚମକୁ ଚଢ଼ି ଯାଇଥାଏ । ତାଙ୍କଠାରୁ ସାଇକେଲ ଧରି ହ୍ୱାର୍ଣ୍ଣ ମାରୁ ମାରୁ କହିଲି, 'ନାୟକେ, ତୁମ ଜାତକ ଆଗ ସାଧ । ଏ ଚାକିରି କେତେ ଦିନ ରହିବ ଜାଣି ପାରିବ ।' ସନ୍ଧ୍ୟା ହୋଇ ଆସୁଥାଏ । ଏକା ଦମକେ ଘରକୁ ଗଲି । ରାସ୍ତେ ଦୋମିମାଳରେ, ଜଙ୍ଗିଆ ପାଞ୍ଚ ଛଅ ମାଇଲ ଥାଇ, ଗୋଟାଏ ବାଘ ପୂର୍ବ ଆଡ଼ୁ ସଡ଼କ ପାର ହୋଇ ମୁଣ୍ଡିଆ ଅଡ଼କୁ ଯାଉଥାଏ । ସାଇକେଲର ଗତି ଆହୁରି ବଢ଼ିଗଲା ।

ଯଥା ସମୟରେ ଜିଲ୍ଲବୋର୍ଡ ଚେୟାରମ୍ୟାନଙ୍କ ପାଖକୁ ମୋର ଟୁର୍ ଡାଇରୀ ଏବଂ ସେହି ଶିକ୍ଷକଙ୍କୁ ହଟାଇ ତାଙ୍କ ସ୍ଥାନରେ ଆଉଜଣଙ୍କ ନାମ ଦେଇ ଅଲଗା ଖଣ୍ଡେ ଚିଠି ଦେଲି । ମୋର ଦୃଢ଼ ବିଶ୍ୱାସ ଥାଏ, ଚେୟାରମ୍ୟାନ ମୋ ପ୍ରସ୍ତାବ ନିଶ୍ଚୟ ମଞ୍ଜୁର କରିବେ ।

ଏ ଘଟଣାର ପ୍ରାୟ ପନ୍ଦର ଦିନ ପରେ ଜିଲାବୋର୍ଡ଼ ମିଟିଂ ହେଲା । ଚେୟାରମ୍ୟାନଙ୍କ ସଙ୍ଗେ ଦେଖା ହେଲା ମାତ୍ରେ ସେ କହିଲେ, 'ହଇଏ ! ସେ ବିଶ୍ୱନାଥ ନାୟକ କଥା ତର ଗଣ୍ଡଗୋଳିଆ ହେଲାଣି । ମୁଁ କଟକ ଯାଇଥିଲି । ତ୍ରିପାଠୀ ସାହେବ କାନେ କାନେ କହିଛନ୍ତି, ବିଶ୍ୱନାଥ ନାୟକଙ୍କୁ କିଛି ଦଣ୍ଡ ନ ଦେବାକୁ । ତା ଜାତକ ସାଧିବାରେ ମୁଁ ଭୁଲ କରୁଛି ।' ୧୯୧୮ ମସିହାର୍ କଥା ବାର୍ତ୍ତା ପରେ ସେ ସଂପୃକ୍ତ କିରାଣୀଙ୍କୁ ଡାକି ମୋ ପ୍ରସ୍ତାବରେ ରାଜି ହୋଇ ମୋତେ ଚିଠି ଲେଖିବାକୁ କହିଦେଇ ମୋତେ କହିଲେ, 'ଟିକିଏ ତ୍ରିପାଠୀ ସାହେବଙ୍କ ସଙ୍ଗେ ଦେଖା କରିବ ।'

ତ୍ରିପାଠୀ ସାହେବଙ୍କ ସଙ୍ଗେ ଦେଖାହେଲା । ମୁଁ ପୂର୍ବ ଛାତ୍ରାବାସରେ ଥିଲାବେଳେ ସେ ଥିଲେ ଓ୍ୱାର୍ଡେନ୍ । ମୋ ଉପରେ ତାଙ୍କୁ ବେଶ୍ ଜଣା । ବିଶ୍ୱନାଥ ନାୟକଙ୍କ କଥା ପଡ଼ିଲା । ମୁଁ ସେ ଦିନର ଝୁରି ତାଙ୍କୁ ଦେଖାଇଲି । ସ୍କୁଲ ଘରର ମଇଲା ମୁଁ ଓଜନ କରିବାର କଥା ଶୁଣି ସେ ଖୁବ୍ ହସିଲେ, ତାଙ୍କ ସ୍ୱାଭାବିକ ଢଙ୍ଗରେ । ପଚାରିଲେ, ଜଗନ୍ନାଥ ବାବୁ ତୁମ ପ୍ରସ୍ତାବ ମଞ୍ଜୁର କଲେଣି ?' ମୁଁ ଜାଣିନାହିଁ ବୋଲି କହିଦେଲି ; କହିଲେ, 'ତାଙ୍କ ଚିଠି ପାଇଲେ ସାହା କରିବ । ଲୋକଟା ମୋ ପକ୍ଷରେ ଖୁବ୍ ଗୋଡ଼େଇଛି । ଆଜି ତ ଆସିଛି । ବୋଧ ହୁଏ ତୁମକୁ ଦେଖି ଲୁଚିଯାଉଥିବ ।' ସେ ଲୁଚି ନ ଥିଲେ । ତ୍ରିପାଠୀ ସାହେବଙ୍କ ଟାଇପିଷ୍ଟ ପାଖରେ ବସି ନିର୍ବାଷ୍ଟ ଚିତ୍ତରେ ଜାତକ ସାଧୁଥିଲେ । ମୁଁ ସାହେବଙ୍କଠାରୁ ଫେରିଲାବେଳେ ମୋ ଉପରେ ତାଙ୍କର ଆଖି ପଡ଼ିଯିବାରୁ ଠିଆ ହୋଇ ପଡ଼ି ଖୁବ୍ ମାନ୍ୟରେ ନମସ୍କାରଟାଏ ହୋଇଥିଲେ । ମୁଁ କଟକରୁ ଫେରିବା ବେଳକୁ ଜଗନ୍ନାଥ ବାବୁଙ୍କ ଚିଠି ଆସି ସାରିଥିଲା । ତାଙ୍କୁ ବାହାର କରି ନୂଆ ଲୋକ ଜଣେ ସେ ସ୍କୁଲକୁ ପଠାଇଲି । ଗୋଳମାଳ ନ କରି ସେ ଚାର୍ଜ ଦେଇଦେଲେ ବୋଲି ଶୁଣିଲି । ଆଉ ଥରେ ଚଣ୍ଡେଶ୍ୱର ଗଲା ବେଳକୁ ନୂଆ ଶିକ୍ଷକ ସେ ଗାଁରେ ନାମ କରିଥାନ୍ତି ଓ ନିଯୁକ୍ତି ପାଳ (ଝୁଣ୍ଟିକ) ପାଇ ଆନନ୍ଦରେ ଥାନ୍ତି । ପାଞ୍ଚ ବର୍ଷ ପରେ ସରକାରଙ୍କ ପବ୍ଲିସିଟି ଅଫିସର ଭାବରେ ଝାଙ୍ଗୀ (ଖୋର୍ଦ୍ଧା) ଗଲାବେଳେ ନାୟକେ ଆସି ଦେଖା କଲେ । ସେ ସେତେବେଳେ ଅଧିକ ଦରମାରେ ଜଣେ ଚାଉଳ କଳ ମାଲିକଙ୍କ ମେନେଜର ହୋଇଛନ୍ତି ବୋଲି ପ୍ରୌଢ଼ି ଦେଖାଇଲେ ।

ଲୋକାଲ ବୋର୍ଡ଼ ପାଇଁ ଯେଉଁ ଘୋଡ଼ାଟି ରଖିଥାଏ ସେଥିରୁ ଦିନକ କଟେ ଗସ୍ତ କରିବାରେ । ସକାଳ ସାଢ଼େ ଆଠଟା ସୁଦ୍ଧା ନିତ୍ୟକର୍ମ ଓ ସକାଳ ଖିଆ ସାରି ଜେ. ଏଲ୍.ଓ. ଖଣ୍ଡ ପିଣ୍ଡାରୁ ତଳକୁ ଖସାଏ, ଏବଂ ଯେଉଁ ଆଡ଼କୁ ମନ ହେଲା ସେ ଆଡ଼େ ଯାଏ । ଆଗରୁ କାହାକୁ କିଛି ଖବର ଦେବା ତ ଦୂରର କଥା, ମୁଁ ବି ନିଜେ ଜାଣି ନ ଥାଏ କୁଆଡ଼େ ଯିବ ବୋଲି । ଅଗ୍ନୁନକ ଯାଇ ସ୍କୁଲମାନଙ୍କରେ ପହଞ୍ଚି ଯିବାରୁ ପ୍ରତି ଶିକ୍ଷକ ଆଶଙ୍କା କରୁଥାନ୍ତି, ପ୍ରତିଦିନ ମୁଁ ଆସି ପହଞ୍ଚିଯିବି ବୋଲି । ମାଷ୍ଟରମାନଙ୍କ ବେଗାଫେଲିଆ ଛଅ ମାସ ଭିତରରେ କୁଆଡ଼େ ଗଲା । ମାଷ୍ଟରମାନଙ୍କର ସବୁଠାରୁ ବେଶୀ ଦରମା ମାସିକ

ଏଗାର ଟଙ୍କା, ସର୍ବନିମ୍ନ ୨ଟଙ୍କା । ଏଇ ସ୍ୱଳ୍ପ ବେତନକୁ ମାଷ୍ଟରଙ୍କର ସେତେବେଳେ ଯେତେ ଲୋଭ ଥିଲା ଆଜି କାଲିର ଅଢ଼େଇଶହ ତିନିଶହକୁ ସେତେ ଥିଲା ପରି ମନେ ହେଉନାହିଁ । ଆଜିକାଲିର ଶିକ୍ଷକମାନେ ଗାଁର ଯେତେ ଯାକ ଲଫଙ୍ଗା ସେମାନଙ୍କର ସାଙ୍ଗ । ପରିଦର୍ଶକ କର୍ମଚାରୀଙ୍କ ପ୍ରତି କାହାରି ବିଶେଷ ଖାତିର ଥିଲାପରି ମନେ ହେଉନାହିଁ । ଆଜି କାଲିର ପରିଦର୍ଶକ କର୍ମଚାରୀମାନେ ମଧ୍ୟ ତାଙ୍କ ପୂର୍ବବର୍ତ୍ତୀମାନଙ୍କ ନିଷ୍ଠା ହରାଇଛନ୍ତି, ସ୍ଥାନୀୟ ଏମ୍. ଏଲ୍. ଏ. ଓ ତାଙ୍କ ପାର୍ଶ୍ୱଲୋକଙ୍କୁ ସନ୍ତୁଷ୍ଟ କଲେ ସେମାନଙ୍କ କାମ ସରୁଛି । ମାଷ୍ଟରମାନେ କେୟାର (CARE) ସଂସ୍ଥାରୁ ଯେତେ ଆତ୍ମସାତ୍ କରୁଛନ୍ତି ସେଥିରୁ ପଣେ ଦି'ପଣ ସବ୍‌ଇନସ୍‌ପେକ୍ଟରଙ୍କ ଭୋଗରେ ଲଗାଇଲେ ଉଭୟେ କୃତାର୍ଥ । ସେତେବେଳର ଶିକ୍ଷକ ନିଜ କର୍ତ୍ତବ୍ୟଠାରୁ ପାଉଣାକୁ ବଡ଼ ବୋଲି ମନେ କରୁଥିଲେ । ବିଶ୍ୱନାଥ ନାୟକଙ୍କ ପରି ପଞ୍ଚୁ ଯେ ନ ଥିଲେ ନୁହେଁ । କିନ୍ତୁ ସେମାନଙ୍କର ସଂଖ୍ୟା ଶତକଡ଼ା ୨୦/୨୫ରୁ ଅଧିକ ନ ଥିଲା । ଆଜିକାଲି ଭଲ ଶିକ୍ଷକ ଥିଲେ ଥିବେ ଅବା ଶତକଡ଼ା ୨୦/୨୫ । ଆଉ ଗୋଟିଏ କଥା । ୧୯୪୦ ପର୍ଯ୍ୟନ୍ତ ଶିକ୍ଷା ବିଭାଗର ଡିରେକ୍ଟର ଥିଲେ ସାହେବ । ତାଙ୍କ ଆଦର୍ଶରେ ଓ ଭୟରେ ଡି.ଏ.ଙ୍କ ଠାରୁ ଦୁଇଟଙ୍କିଆ ଶିକ୍ଷକ ପର୍ଯ୍ୟନ୍ତ ସମସ୍ତେ କାମ ଉପରେ ଜୋର ଦେଉଥିଲେ । ଦେଶୀ ଲୋକ ଡିରେକ୍ଟର ହେବା ଦିନୁ ପରିଦର୍ଶନ ନାମକୁ ମାତ୍ର ଅଛି କହିଲେ ଚଳେ । ଦେଶୀ ଡିରେକ୍ଟରମାନଙ୍କର ପ୍ରଧାନ ଧ୍ୟେୟ ହୋଇଛି ନିଜର ଥାଟ ଓ ଉପର ବାଲାଙ୍କର ତୋଷଣ । ଏ ରୋଗ ତଳ ସ୍ତରକୁ ବି ବ୍ୟାପିଛି । ସ୍ୱାଧୀନ ଭାରତରେ ପ୍ରତ୍ୟେକ କର୍ମଚାରୀଙ୍କର ଏକ ମାତ୍ର ଚିନ୍ତା, କିପରି ନିଜର ଦରମା, ଭତ୍ତା ଆଦି ତକ ପାଇବା । ଗସ୍ତଖର୍ଚ୍ଚ ଅର୍ଜିବା ଏମନ୍ତ ଢଙ୍ଗ ଧରିଲାଣି ଯେ ଭୁବନେଶ୍ୱରରୁ ଦିନେ ବ୍ରହ୍ମପୁର ଗଲେ, ଦୁଇ ଦିନରେ ପୁଣି ସେଠି ଭୁବନେଶ୍ୱରକୁ ଛତ୍ରପୁର ଯାଉଛନ୍ତି । ଏହାକୁ ଚେକ୍ କରିବାରେ ସର୍ବୋଚ୍ଚ କର୍ତ୍ତାମାନଙ୍କର ନିଷ୍ଠା ନାହିଁ । ୧୯୪୦ ବେଳେ ଅଙ୍କୁର ଉଠୁଥିବା ଏହି ରୋଗସବୁ ଏତେବେଳକୁ ମହାଦ୍ରୁମ ହୋଇଗଲାଣି । 'ସବୁ ଦୋଷ ରାଜା ମୁଣ୍ଡରେ' ନୀତିରେ ଯାହା ଖରାପ ଦିଶୁଛି ସବୁଥି ପାଇଁ ମନ୍ତ୍ରୀଙ୍କୁ ଦୋଷ ଦିଆଯାଉଛି । କିନ୍ତୁ କର୍ମଚାରୀଙ୍କ ସାଧୁତା ଓ ନିଷ୍ଠାରେ ମନ୍ତ୍ରୀମାନେ ଦବିଯାଇ ନିଜକୁ ସଂଯତ କରିବାର ମନ୍ତ୍ରୀ ଶାସନର ପ୍ରଥମାବସ୍ଥାରେ ମୁଁ ଦେଖିଛି ।

ସ୍କୁଲ ଗୁଡ଼ିକର ନିୟମିତତା ବିଷୟରେ ମୋର ଆସ୍ଥା ହୋଇଯିବା ପରେ ମୁଁ ଦୃଷ୍ଟି ଦେଲି ଗ୍ରାମ ସଡ଼କମାନଙ୍କ ଉପରେ । ସଡ଼କମାନଙ୍କର ପାଖ ଆଖ ଗ୍ରାମମାନଙ୍କୁ ଯାଇ ଗାଁର ମୁରବି ଶ୍ରେଣୀୟ ଲୋକମାନଙ୍କ ସଙ୍ଗେ ସାକ୍ଷାତ କଲି । ଏବଂ ସେମାନଙ୍କ ପରାମର୍ଶରେ ସେମାନଙ୍କ ମନୋନୀତ ଲୋକଙ୍କୁ ଗ୍ରାମ ସଡ଼କମାନଙ୍କ ପାଇଁ କଣ୍ଟ୍ରାକ୍ଟର ନିଯୁକ୍ତ କଲି । ସେମାନେ ବୁଝିଲେ ଯେ, ଗ୍ରାମ ସଡ଼କ ମରାମତିରୁ ଫାଇଦା ଉଠାଇବା ଅନ୍ୟାୟ ହେବ । ଅତି ଅଳ୍ପ ପଇସା ସଡ଼କ ମରାମତିପାଇଁ ମିଳୁଛି । ସଡ଼କଗୁଡ଼ିକ ଭଲ କରିବାକୁ ହେଲେ ଗ୍ରାମର ସ୍ୱଚ୍ଛଳ ଲୋକେ ସେଥି ସକାଶେ କିଛି କିଛି ଦାନ କରିବା ଉଚିତ । ସେ ଦାନ ପଇସା ଆକାରରେ ନ ଦେଇ କାମରେ ଦେଲେ ସବୁ ଦିଗରୁ ଭଲ ହେବ । ଯେଉଁମାନଙ୍କର ବଳଦ

ଓ ଶଗଡ଼ ଅଛୁ ସେମାନେ ସଡ଼କରେ କରକରୁ ବିଛାଇବା ଦକାଣ ଗୋଟିଏ ଦିନ ଶଗଡ଼ ବଳଦ ଓ ଲୋକ ଦିଅନ୍ତୁ । ଅମ ଗାଁର ସ୍ୱର୍ଗୀୟ ନଟବର ପଟ୍ଟନାୟକେ ଏ କାର୍ଯ୍ୟରେ ହେଲେ ମୋର ପ୍ରଧାନ ପୃଷ୍ଠପୋଷକ । ଅମ ଗାଁର ଗୃହପଟେ ଗୁଡ଼ିଏ ଲୋକାଲ ବୋର୍ଡ଼ ସଡ଼କ । ସର୍ବମୋଟ ୧୦ ମାଇଲ । ସେ ଘର ନେଇଗଲେ ଏ ଦଶମାଇଲ ପାଇଁ ଯାହା କରକରୁ (ଗୋଡ଼ି ମିଶା ମାଟି) ଦରକାର ସେତକ ସେ ଯୋଗାଇ ଦେବେ । ମୋର ସାହାଯ୍ୟରେ ଶଗଡ଼ ଥିବା ଲୋକଙ୍କଠାରୁ ଶଗଡ଼ ଦେବାକୁ ସମ୍ମତି ମିଳିଗଲା । ପରେ ଅବଶ୍ୟ କେତେକେ ନାନା ପ୍ରକାର କାରଣ ଦେଖାଇ ଖସିଗଲେ । କିନ୍ତୁ ପଟ୍ଟନାୟକେ ତାଙ୍କ ନିଜ ଶଗଡ଼ ବଳଦ ଦିନକ ଜାଗାରେ ୧୫ ଦିନ ଲଗାଇ ପ୍ରତ୍ୟେକ ସଡ଼କ କଡ଼ରେ କରକରୁ ଜମାଇ ଦେଲେ । ତାଙ୍କ ପରାମର୍ଶରେ ଯେଉଁ କଣ୍ଟ୍ରାକ୍ଟର ନିଯୁକ୍ତ ହେଲେ ସେ ସେତକ ସଡ଼କରେ ବିଛାଇ ଓ ପାଣି ପକାଇ ସଡ଼କଗୁଡ଼ିକୁ ଭାରି ସୁନ୍ଦର କରିଦେଲେ । ଏ ସଡ଼କଗୁଡ଼ିକ ଏପରି ମଜଭୁତ ହୋଇ ଗଲା ଯେ, ପ୍ରାୟ ଦଶର କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ନାମକୁ ମାତ୍ର ମରାମତି ହୋଇ ଯୁଆ ପକ୍କା ସଡ଼କ ପରି ରହିଲା । ଥାଙ୍କର ଜଣେ ସ୍ୱର୍ଗୀୟ ବେଣୁଧର ପଟ୍ଟନାୟକ, ଯିକୋର ଜଣେ ମୁସଲମାନ ଭଦ୍ରଲୋକ, ନାମ ମନେ ପଡ଼ୁନାହିଁ, ଆମ ଗାଁ ସଡ଼କଗୁଡ଼ିକ ଦେଖି ତାଙ୍କ ସଡ଼କକୁ ଏହିପରି କରିଦେବାକୁ ଜବାବ୍ ଦେଲେ ଓ ଜବାବ୍ ରଖିଲେ । ମୋ ଅମଳ ପାଞ୍ଚବର୍ଷ ଏ ସଡ଼କମାନଙ୍କ ବାର୍ଷିକ ମାଇଲ ପିଛା ୧୦/୧୫ ଟଙ୍କା ଲେଖାଏଁ ଦିଆ ହୋଇଥିଲା । ଏ ଭଦ୍ରଲୋକମାନଙ୍କ ସାହାଯ୍ୟରେ ପ୍ରତି ବର୍ଷ ଗାଁ ବାଲାଙ୍କଠାରୁ ସାହାଯ୍ୟ ମିଳିଥିଲା ।

'ପାଇଲେ ଗାଡ଼ିଆ ବୁହାନ୍ତି' ; ସ୍ଥାନୀୟ ଲୋକଙ୍କ ଉତ୍ସାହ ଦେଖି ମୋର ମନ ଲାଗିଲା ସଡ଼କମାନଙ୍କ ଦୁଇକଡ଼ରେ ସ୍ୱାସ୍ଥ୍ୟପ୍ରଦ ବୃକ୍ଷ ରୋପଣ କରିବାକୁ । ନଟବର ପଟ୍ଟନାୟକଙ୍କ ଯୋଗୁଁ ଆମ ଗାଁ ଗୃହପାଖ ସଡ଼କମାନେ ହେଲେ ଆଦର୍ଶ । ସେ ଦୂରକୁ ଶଗଡ଼ ପଠାଇ ବିଭିନ୍ନ ପ୍ରକାର ବରଡ଼ାଳ ଆଣି ଲଗାଇଲେ । ବରଗଛ ପାଞ୍ଚ ପ୍ରକାର ବୋଲି ସେ ମୋତେ ଶିଖାଇଥିଲେ । ସେଥିରୁ ତିନୋଟି ମାତ୍ର ମୋର ମନେ ଅଛି । ତେଙ୍ଗା ବର, ଚକା ବର ଓ ଓହଳ ବର । ବର୍ଷକ ଭିତରେ ଆମ ସଡ଼କଗୁଡ଼ିକ ଦର୍ଶନୀୟ ହୋଇଗଲା ; ୩/୪ ବର୍ଷରେ ପଦଯାତ୍ରୀମାନଙ୍କର ସୁଖ ମୂଳ ହୋଇଗଲା ଆଶ୍ରୟ ସ୍ଥଳ ।

ସେତେବେଳେ ପୁରୀ ଜିଲ୍ଲା ବୋର୍ଡ଼ରେ ଯେ ଇଞ୍ଜିନିୟର ଥିଲେ, ସେ ଗୋଦାବରୀଶ ବାବୁଙ୍କର ସାଙ୍ଗ । ତେଣୁ ଆମ୍ଭମାନଙ୍କ ଉପରେ ମାଷ୍ଟର ପରି ହୁଅନ୍ତି । ମନେ ମନେ ସେ ଭାରି ବିଶେଷଜ୍ଞ । ଥରେ ମୋ ଅନୁପସ୍ଥିତିରେ ସେ ଆମ ସଡ଼କ ସବୁ ଦେଖି ଭାରି ଚାଟିଗଲେ । ଲୋକାଲ୍ ବୋର୍ଡ଼ ଓଭରସିଅରଙ୍କ ଉପରେ ତମ୍ବି ତୋଫାନ କରି ସେ ହୁକୁମ କଲେ, ସେ ଆର ଥର ଆସିବା ପୂର୍ବରୁ ଏ ଗଛସବୁ ମୂଳରୁ ହାଣିଦେବାକୁ ହେବ । ତାଙ୍କର ଯୁକ୍ତି, ସଡ଼କରେ ବରଗଛ ରହିଲେ ତହିଁରୁ ପାଣି ପଡ଼ି ସଡ଼କ ନଷ୍ଟ ହୋଇଯିବ ଏବଂ ସଡ଼କ ଅନ୍ଧାରିଆ ହୋଇଥିବାରୁ ଦୁର୍ଘଟଣା ଘଟିବ । ମୁଁ ଓଭରସିଅରଙ୍କଠାରୁ ଏ କଥା ଶୁଣି

ଚାଟିଗଲି ଏବଂ କହିଲି, 'ମୁଁ ଥିବା ପର୍ଯ୍ୟନ୍ତ ଏ ଗଛମାନଙ୍କରେ କେହି ହାତ ଦେଇ ପାରିବେ ନାହିଁ ।' ସେ କହିଲେ, "ଆଜ୍ଞା, ମୋ ଗୁରୁଦଣ୍ଡ ଦିଅ ।" ମୁଁ କହିଲି, 'ଆପଣ ଗଛ ହାଣିବାକୁ ବସିଲେ ମୁଁ ଗାଁ ଲୋକଙ୍କୁ ମଡାଇ ଦେବି ଯେ, ପ୍ରାଣ ଯାଇପାରେ । ପ୍ରାଣ ଓ ଗୁରୁଦଣ୍ଡ କେଉଁଟା ବଡ଼ ଆପଣ ବିଚାର ଦେଖନ୍ତୁ ।' ମୁଁ ଏହା ରହସ୍ୟରେ କହିଥିଲି । କୃଷ୍ଣ ବାବୁ ଆମ ଗାଁର ଭଣଜା, ତେଣୁ ମୋର ଭାଇ । ଯଦିଓ ସେ ମୋଠାରୁ ଦଶବର୍ଷ ବଡ଼ । ମୁଁ ଚେୟାର-ମ୍ୟାନ ହୋଇଥିବାରୁ ମୋତେ ମାନ୍ୟ କରନ୍ତି । ମୋ ପିଲାଦିନେ ମୁଁ ପୋଖରୀରେ ବୁଡ଼ୁ-ଥିବାରୁ ସେ ଥରେ ମୋର କାନ ମୋଡ଼ିଥିଲେ । ଚେୟାରମ୍ୟାନଙ୍କୁ ଦେଖିଗୁଡ଼ାର ମାନ୍ୟ କଲେ ମୁଁ ଏ କଥା ମନେ ପକାଇ ଦିଏ । ଥରେ କହିଥିଲି, "କାନମୋଡ଼ାଟା ମୁଁ ପାସୋରି ଦେବି ବୋଲି ଆପଣ କରିଣିଆ ପେଞ୍ଚ୍ କରି ମୋତେ ମାନ୍ୟ କରୁଛନ୍ତି ଯେ, ମାନ୍ୟ କରି ଯେବେ କହିଲେ ମୋର ଯେ କାନମୋଡ଼ା ମନେ ପଡ଼ୁଛି ।"

ଇଞ୍ଜିନିୟର ସାହେବଙ୍କ ବୃକ୍ଷ-ବୈର ହେଲେ ଗଲା ନାହିଁ । ଜିଲା ବୋର୍ଡ଼ ଚେୟାରମ୍ୟାନଙ୍କ ଉପରେ ସେ ମାସ୍ତ୍ରୀମି ପ୍ରୟୋଗ କଲେ । ଚେୟାରମ୍ୟାନ ତାଙ୍କ ସଙ୍ଗେ ସନ୍ଧି କରିବାକୁ ମଙ୍ଗିଲେ ମଝିରୁ ଗୋଟେ ଗୋଟେ ଗଛ ହାଣି ଦିଆଯାଉ । ମୋ ପାଖକୁ କଥା ଆସିଲା । ମୁଁ କହିଲି, "ବରଂ ମଝିରେ ମଝିରେ ଆଉ ଗୋଟିଏ ଗଛ ଲଗାଯାଉ ।" ଇଞ୍ଜିନିୟର ସାହେବଙ୍କର ମୋ ଉପରେ କ୍ରୂର ଦୃଷ୍ଟି ପଡ଼ିଲା । ଗ୍ରାମବାସୀଙ୍କ ସାହାଯ୍ୟ ସଡ଼କ ମରାମତିରେ ନେବାର ମଧ୍ୟ ସେ ବିରୋଧ କଲେ । ମୁଁ ଧରି ବସିଲି; ସ୍ୱାକୁ ଷାଠିଏ ବର୍ଷ ହୋଇଯିବାରୁ ସ୍ୱାଙ୍କର ମସ୍ତିଷ୍କ ପାଣି ଫାଟି ଗଲାଣି । ସ୍ୱାଙ୍କର ଶାରୀରିକ ସାମର୍ଥ୍ୟ ନାହିଁ, ସମଗ୍ର ଜିଲ୍ଲା ବୁଲି ଅମ କାମ ତଦାରଖ କରିବାକୁ । ଆମର ସ୍ୱାଙ୍କଠାରୁ କମ୍ ବୟସର ଇଞ୍ଜିନିୟର ଦରକାର । ମୋ ଯୋଗୁଁ ହେଉ ବା ଖାଇସ୍ ଚେୟାରମ୍ୟାନଙ୍କ ସଙ୍ଗେ ନ ପଡ଼ିବାରୁ ହେଉ, ସେ ଗଲେ ଏବଂ ଆଉ ଜଣେ ଆମ ଜିଲ୍ଲାର ଲୋକ ଆସିଲେ । ତାଙ୍କର ସିନା ମସ୍ତିଷ୍କ ପାଣି ଫାଟି-ଯାଇଥିଲା, ସ୍ୱାଙ୍କର ସେ ସାମଗ୍ରୀ ଏକାବେଳକେ ନ ଥିଲା । ଯାହାହେଉ ସେ ଆମର ମତାମତ ପ୍ରତି ସର୍ବଦା ଅନୁକୂଳ ରହିଲେ ।

କୂଅ ଖୋଳିବା ଓ ନୂଆ ସଡ଼କ ତିଆରି କରିବାରେ ମଧ୍ୟ ନୂତନ ପଦ୍ଧତି ଚଳାଇଲି । ଲୋକାଲ ବୋର୍ଡ଼ର ହେଡ କିରାଣୀ ବହୁତ ଦିନର ପୁରୁଣା ଲୋକ । ମୋ ମାମୁଙ୍କର ସାଙ୍ଗ । ତେଣୁ ମୁଁ ତାଙ୍କୁ ମାନ୍ୟ କରୁଥାଏ । ସେ ମଧ୍ୟ ବାତ୍ସଲ୍ୟରେ ମୋତେ ସବୁ ଦିଗରେ ପରାମର୍ଶ ଦେଉଥାନ୍ତି ଓ ମୋ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରୁଥାନ୍ତି । ତାଙ୍କଠାରୁ ଶୁଣିଲି, କେତେଜଣ କଣ୍ଟ୍ରାକ୍ଟର ପୁରୁଣା କୂଅର କଡ଼ ଖୁଣ୍ଟି ଦେଇ ନୂଆ କୂଅ ବୋଲି ବିଲ୍ କରି ନିଅନ୍ତି । ମେମ୍ବରମାନଙ୍କର ମଧ୍ୟ ଏଥିରେ ସଲା ଥାଏ । ଆମ ମେମ୍ବରମାନଙ୍କ ଉପରେ ପୂର୍ଣ୍ଣ ପ୍ରତ୍ୟୟ ଥାଏ ଯେ ଏମାନେ କେହି ଏତେ ତଳକୁ ଯିବେ ନାହିଁ । ସେମାନଙ୍କୁ ପ୍ରଭାବିତ କରି କୂଅ ଖୋଳାରେ ମଧ୍ୟ ସ୍ଥାନୀୟ ଲୋକଙ୍କ ସହଯୋଗ ଅର୍ଜନ କଲି । ପୂର୍ବେ କୂଅ ଖୋଳିବାକୁ ଯେଉଁ

ରେଟ୍ ଦିଆଯାଉଥିଲା ତହିଁରୁ ଚଉଠେ ଲେଖାଏ କାଟି ଦେଲି । ଖୋର୍ଦ୍ଧା ସବ୍‌ଡିଭିଜନ୍‌ର ଅଧିକାଂଶ ଅଞ୍ଚଳ ପାହାଡ଼ିଆ । ସବୁଆଡ଼େ ମାଙ୍କଡ଼ା ପଥରର ଚଟାଣ । ସଡ଼କ କରିବାକୁ ଦୁଇ କଡ଼ରେ ନୟନ ଯୋଡ଼ି ଖୋଳିଦେଲେ ହେଲା । କଣ୍ଟ୍ରାକ୍ଟରମାନଙ୍କୁ ନିର୍ଦ୍ଦେଶ ଦିଆହେଲା, ନୟନ ଯୋଡ଼ିର ପଥର ସାଇଜ୍ କରି କାଟିବେ । ଏଇ ପଥର କୂଅ ଖୋଳୁଥିବା କଣ୍ଟ୍ରାକ୍ଟରମାନଙ୍କୁ ନାମମାତ୍ର ମୂଲ୍ୟରେ ଯୋଗାଉଥିବା ଫଳରେ ଅତି ଅଳ୍ପ ଖର୍ଚ୍ଚରେ କୂଅମାନଙ୍କର ଚଉତରା ହୋଇଗଲା, ଗ୍ରାମବାସୀଙ୍କ ଉଦ୍ୟମରେ ହେଉଥିବା ଶଙ୍ଖମାନଙ୍କପାଇଁ ଯୋଗାଇ ଦିଆହେଲା ଓ ସ୍କୁଲ ଘର ତୋଳିବାକୁ ବି ଦିଆଗଲା । କୋଉଠି କେମିତି ବୋର୍ଡ଼ର ବିନା ଖର୍ଚ୍ଚରେ ଆମ୍ବ ପଣସର ଛୋଟ ଛୋଟ ତୋଟାମାନ କରାଗଲା । ମୋଟ ଉପରେ, ଗ୍ରାମୋଦ୍ୟୋଗ ସବୁ ଦିଗରୁ ଆରମ୍ଭ ହେଲା । ବୋର୍ଡ଼ର ଟଙ୍କା ଦେଉଥିବା କାର୍ଯ୍ୟଠାରୁ ଏ କାର୍ଯ୍ୟଗୁଡ଼ିକ ହେଲା ବେଶୀ । ସବୁ ଅଞ୍ଚଳରେ ମୋର ଲୋକପ୍ରିୟତା ବଢ଼ିଲା ଓ ପ୍ରକୃତ କାମ ହେଉଛି ବୋଲି ମୋ ମନରେ ଖୁବ୍ ସନ୍ତୋଷ ହେଲା । ଜିଲ୍ଲା ବୋର୍ଡ଼ରେ ମଧ୍ୟ ମୋର ଖାତିର ବଢ଼ିଲା ।

ଏଣେ କିନ୍ତୁ ପ୍ରେସ୍‌ରେ ଅବସ୍ଥା ଖରାପ ହେବାକୁ ଲାଗିଲା । କାଗଜ ବାଲାର ଓ ଘର ବାଲାର ବହୁତ ଟଙ୍କା ବାକି ହୋଇଗଲା । ପ୍ରେସ୍‌କୁ ଅଧିକ ସମୟ ଦେଇ ନ ପାରିବାରୁ ଯେ ଏପରି ହେଲା ତାହା ନୁହେଁ । ଯେଉଁ ତିନିଦିନ କଟକରେ ରହୁଥିଲି ସେତିକିରେ ହସ୍ତାକର କାମ ହୋଇ ପାରିଥାନ୍ତା ; ନୀଳକଣ୍ଠ ବାବୁଙ୍କ ବ୍ୟବହାରରେ ମନ ଛୋଟ ହୋଇ ଯାଇଥାଏ । ଲୋକ ମତ ପାଇଁ ଯେଉଁ ୩ ହଜାର ଟଙ୍କା ନିର୍ବାଚନ ଫଣ୍ଡରୁ ଆସିଲା ବୋଲି ଦେଖାହୋଇଥିଲା, ସେଥିରୁ କପର୍ଦ୍ଦକ ମଧ୍ୟ ପ୍ରେସ୍‌କୁ ଆସିଲା ନାହିଁ । ଜୟପୁର ମହାରାଜାଙ୍କଠାରୁ ଯେଉଁ ତିନିହଜାର ଆସି ପ୍ରେସ୍ କିଣା ହୋଇଥିଲା, ସେ ୩ ହଜାର ସେ ଏକାବାଟରେ ପରିଶୋଧ କରିନେଲେ । ରାଗରେ ଲୋକମତ ବନ୍ଦ କରିଦେବା ପାଇଁ ସେ' ତିନିଥର ମଝିରେ ମଝିରେ ବାହାରିଲା । କିନ୍ତୁ ତା ପ୍ରତି ଗୋଟାଏ ମମତା ହୋଇ ଯାଇଥାଏ । ନିର୍ବାଚନ ବାବଦରେ ଯାହା କ୍ଷତି ହୋଇଥାଏ ସେତିକ ଅନ୍ତତଃ ସେ ଦେବା ଉଚିତ ବୋଲି ମନରେ ଭାବୁଥାଏ । କିନ୍ତୁ କହିପାରେ ନାହିଁ, ମନେ ମନେ କୁହୁଳିବା ହିଁ ସାର ହୁଏ । ମୁଁ ଯେଉଁ ତିନିଦିନ କଟକରେ ନ ରହେ ସେଇ ତିନିଦିନ ନୀଳକଣ୍ଠ ବାବୁ କଟକରେ ରହନ୍ତି । ବନ୍ଧୁମାନେ ବହୁ ସଂଖ୍ୟାରେ ଜୁଟନ୍ତି । ଖାଇବା ଖର୍ଚ୍ଚ ବେଗାଫେଲିଆ ଢଙ୍ଗରେ ହୁଏ । ପ୍ରେସ୍‌ର ପରିଚାଳକ ଟଙ୍କା ଯୋଗାଇ ନ ପାରିଲେ ତାଙ୍କୁ ମିଶାଇ ମୋତେ ଗାଳି ଦିଅନ୍ତି କର୍ମଚାରୀଙ୍କ ଆଗରେ । ଥରେ କହିଦେଲେ, "ବାବୁ ତ ନେତା ହେବାରେ ବ୍ୟସ୍ତ, ପ୍ରେସ୍‌କୁ ଟଙ୍କା ଆସିବ କୁଆଡ଼ୁ ?" ମୁଁ ଏହା ଶୁଣେ, କିନ୍ତୁ ଯେ କହନ୍ତି ତାଙ୍କୁ ଗାଳିଦିଏ । ବୁଢ଼ା ବାବୁଙ୍କ ନାମରେ କେହି ମୋତେ କିଛି କହିବ ନାହିଁ ବୋଲି ଫତୁଆ ଜାରିକଲେ ବି ମନର ଗ୍ଲାନି ନେବ କୁଆଡ଼େ ; ଯାହା ହେଉ, ପଣ୍ଡିତ ଆକୁଳ ମୈତ୍ରେ, ଉମା ଚରଣ ମହାନ୍ତି ଓ ଲକ୍ଷ୍ମୀଧର ଗରାବଡ଼ୁଙ୍କ ଯୋଗୁଁ ପ୍ରେସ୍ କୌଣସିମତେ ଚାଲୁଥାଏ । ସେମାନେ ସେତେବେଳେ

କଟକର ପ୍ରଧାନ ପୁସ୍ତକ ବ୍ୟବସାୟୀ । ନବ ଭାରତ ପ୍ରେସ୍‌ର ଛାପା ସୁନ୍ଦର ଓ ନିର୍ଭୁଲ ବୋଲି ସେମାନଙ୍କର ମୋ'ଠାରେ ଦସ୍ତା ଓ ତାଙ୍କ ଉପରେ ଆମର ପଇସା ନ ହେଉଥିଲେ ହେଁ ମାଗିଦେଲେ ପଚିଶ ଶହେ ମିଳିଯାଏ ।

ଯେବେ ତାଙ୍କମାନଙ୍କ ପାଖରେ ହାତୁଡ଼ି ଟଙ୍କା ଦୁଇ ତିନିଶହ ପକେଟରେ ପୂରାଇ ଆସି ବିଶ୍ରାମ କରୁଛି, ଲିଙ୍ଗରାଜ ପ୍ରାଣିଗ୍ରାହୀଙ୍କ ପାଖରୁ ଖଣ୍ଡେ ଚିଠି ଆସି ପହଞ୍ଚିଲା । ସେତେବେଳକୁ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିବେ ନାହିଁ ବୋଲି କଂଗ୍ରେସ ସିଦ୍ଧାନ୍ତ କରିଥାନ୍ତି । ଏବଂ ତା'ର ଉପରେ ପ୍ରାଦେଶିକ ମନ୍ତ୍ରୀମଣ୍ଡଳମାନେ ଇସ୍ତଫା ଦେଇପକାଇଥାନ୍ତି । ଲିଙ୍ଗରାଜ ବାବୁ ଲେଖିଥାନ୍ତି, ବିକଳ୍ପ ମନ୍ତ୍ରିମଣ୍ଡଳ ଗଢ଼ିବାପାଇଁ ଏଇ ଉପଯୁକ୍ତ ସମୟ । ଖଲିକୋଟ ରାଜା ବାହାଦୁର ପ୍ରାୟ କୋଡ଼ିଏ ଜଣ ବ୍ୟବସ୍ଥାପକଙ୍କୁ ହାତ କରି ସାରିଲେଣି, ଆମ ଗୋଷ୍ଠୀରୁ ୧୧/୧୨ ଜଣ ହେଲେ ଲାଟ ଶାସନ ଉଠେଇ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ଖଲିକୋଟ ରାଜା ବାହାଦୁର ଲାଟଙ୍କ ସଙ୍ଗେ ଦେଖା କରିବେ ।

ପକେଟରେ ଦୁଇ ତିନିଶହ ଟଙ୍କା ଥିଲେ ସେ କାଳେ ମୋର ରାଜାର ମନ । ଆକୁଳ ମିଶ୍ରେ ଓ ଲକ୍ଷ୍ମୀଧର ରାଉତରାୟ ସେ ଦିନ ଟଙ୍କା ଦେବାକୁ ନାହିଁ କରିଦେଇଥିଲେ କ'ଣ ହୋଇଥାନ୍ତା କେଜାଣି ? ପକେଟ ଗରମ ଥିବାରୁ ମୋର କଂଗ୍ରେସ ପ୍ରୀତିର ମାତ୍ରାଧିକ୍ୟ ହୋଇଥାଏ । ମୁଁ ଚିଠି ଖଣ୍ଡ ନେଇ ଗୋଦାବରୀଶ ବାବୁଙ୍କ ବସାକୁ ଚାଲିଗଲି । କଣ୍ଠାପାଳ ଜଗନ୍ନାଥ ଦାସଙ୍କୁ ବେଙ୍ଗ ବାବୁ (ସ୍ୱର୍ଗୀୟ ରାଜକିଶୋର ଦାସଙ୍କ ପୁଅ)ଙ୍କ ବସାରୁ ଡକାଇ ଆଣିଲି । ତିନିଜଣ ଯାକ ଏକ ମନରେ ସ୍ଥିର କଲୁଁ ଏ ଘଡ଼ି ସନ୍ଧି ସମୟରେ ଆମେ କଂଗ୍ରେସ ଛାଡ଼ି ମନ୍ତ୍ରିମଣ୍ଡଳ ଗଢ଼ିବୁଁ ନାହିଁ । ଲିଙ୍ଗରାଜ ବାବୁଙ୍କ ଚିଠିର ଉତ୍ତର ଗୋଦାବରୀଶ ବାବୁ ଚିଠା କଲେ । ଚିଠା ଖଣ୍ଡି ଧରି ପ୍ରେସ୍‌କୁ ଆସିଲି ଏବଂ ମୋ ହସ୍ତାକ୍ଷରରେ ଆମ ଚିଠି କାଗଜରେ ଉତାରି ଅପେକ୍ଷା କରୁଥିବା ପତ୍ର ବାହକ ହାତରେ ତାହା ଲିଙ୍ଗରାଜ ବାବୁଙ୍କ ପାଖକୁ ପଠାଇ ଦେଲି । କଂଗ୍ରେସର ଇଜ୍ଜତ ଓ ଆମ ନିଜ ଇଜ୍ଜତ ରଖିଲି ବୋଲି ମନରେ ଭାରି ଆନନ୍ଦ ହେଉଥାଏ । ସୁଖ ନିଦ୍ରା ହେଲା ।

ସକାଳୁ ଉଠି ନିତ୍ୟକର୍ମ ସାରି ମାରୁଆଡ଼ି ପଟିଠାରୁ ବକ୍‌ସି ବଜାର ପର୍ଯ୍ୟନ୍ତ ଯାଇ ଟଙ୍କା ଶହକର ଜବ୍‌କାମ ସଂଗ୍ରହ କରି ପ୍ରେସ୍‌କୁ ଆସିଲି । ଗତ ସପ୍ତାହର ହିସାବ ତନଖି କରି ଛାପା ହୋଇଥିବା ଫର୍ମାମାନଙ୍କରେ ଆଖି ବୁଲାଇ ଉପରକୁ ଗଲି ଖାଇବାକୁ । ମୁଁ ଖାଇବାକୁ ବସୁଛି ନୀଳକଣ୍ଠ ବାବୁ ତାଙ୍କ ଗାଁରୁ ଦି'ପହର ଗାଡ଼ିରେ ଆସିଲେ । ସେ ଆସିବେ ବୋଲି ଆଗରୁ ଜଣା ନଥିଲା । ପୂଜାଘର ଭାଗ ତାଙ୍କ ପାଇଁ ବଢ଼ାହେଲା । ଗୁଣ୍ଡେ ଦି'ଗୁଣ୍ଡା ଖାଇଛନ୍ତି କି ନାହିଁ ଲିଙ୍ଗରାଜ ବାବୁଙ୍କ ଚିଠି ଓ ମୋ ଉତ୍ତର କଥା ଶୁଣି ଯେ ଥକ୍‌କା ହୋଇ ବସିଗଲେ ଏବଂ ଶାନ୍ତିରେ ଗୁଣ୍ଡେ ଖାଇବାକୁ ଦେବୁ ନାହିଁ ବୋଲି କହି ଉଠି ପଡ଼ିଲେ । ମୁଁ ବି ଉଠିଲି । ମୋ ଠାରୁ ଲିଙ୍ଗରାଜ ବାବୁଙ୍କ ଚିଠି ଓ ଆମ ଉତ୍ତରର ଚିଠା ମାଗି ଦେଖିଲେ ଏବଂ ସଙ୍ଗେ ସଙ୍ଗେ ବାଇ ଲାଗିଲା ପରି ଉଠି ଚାଲିଗଲେ ।

ଗୋଦାବରୀଶ ବାବୁଙ୍କ ଘରକୁ ଗଲେ ବୋଲି ଅନୁମାନ କରି ମୁଁ ପ୍ରାୟ ଅଧଘଣ୍ଟେ ପରେ ଗଲାବେଳକୁ ସେ ତାଙ୍କ ପାଖେ ବସିଛନ୍ତି ଏବଂ କହୁଛନ୍ତି, 'ଜାଣିଲ, ଗୋଦାବରୀଶ ! ଏ ଚନ୍ଦ୍ରାମଣିଟା ବୈଦ୍ୟନାଥ ଦାସର ଗୁଇନ୍ଦା । ପ୍ରେସ୍‌ଟା ନଜର କରି ଦେଉଛି । ବର୍ତ୍ତମାନ ତା'ର ଉଦ୍ଦେଶ୍ୟ ଆମ ଦୁଇ ରାଜନୀତିକ ଜୀବନ ନଷ୍ଟ କରିବା ।' ଶେଷ ପଦକ ମୋ କାନରେ ବାଜି ଯିବାରୁ ମୁଁ ଟିକିଏ ଉତ୍ତେଜନାରେ କହିଲି, 'ମୁଁ ରାଜନୀତିକ ଜୀବନ ନଷ୍ଟକଲି କି ରକ୍ଷାକଲି ପରେ ବୁଝିବ । ଯେଉଁ ଉତ୍ତର ଦିଆଗଲା ତାହା ଗୋଦାବରୀଶ ବାବୁ କେତେ ଚଟା କରିଛନ୍ତି ଦେଖିଲେ ପରା !' ଅଳ୍ପ ସମୟ ଭିତରେ ଜଗନ୍ନାଥ ଦାସ ଓ ସ୍ୱର୍ଗୀୟ ପ୍ୟାରୀଶଙ୍କର ରାୟ ଆସି ପହଞ୍ଚିଲେ । ଗୁଡ଼ାଏ ଆଲୋଚନା ପରେ ଶ୍ରୀ ରାୟ କହିଦେଲେ, 'ପାରଲାଙ୍କ ଆଡୁ ଏପରି ଉଦ୍ୟମ ହେଲେ ଅଲଗା କଥା । ଖଲିକୋଟଙ୍କ ସଙ୍ଗେ ମିଶି ମନ୍ତ୍ରିମଣ୍ଡଳ ଗଢ଼ିବା ଆତ୍ମହତ୍ୟା କଲାପରି ହେବ ।' ଗୋଦାବରୀଶ ବାବୁ ବି ସେଇ ପଦ ଧରିଲେ । ଗୋଦାବରୀଶ ବାବୁଙ୍କ କଥାରେ ଜଗନ୍ନାଥ ଦାସେ ପାଳି ଧରିବା ବାଳି ।

ପ୍ୟାରୀ ବାବୁଙ୍କ ଯୋଗୁଁ ମାଡ଼ି ଆସୁଥିବା ଜୁଆରର ଭଟ୍ଟା ହେଲା । ଏଣୁ ତେଣୁ ଗୁଡ଼ାଏ କଥା ପଡ଼ିବା ପରେ ଜଗନ୍ନାଥ ବାବୁ ଓ ପ୍ୟାରୀ ବାବୁ ଗଲେଘରି । ଆମେ ଦି' ପହରେ ନ ଖାଇଥିବା କଥା ବୋଧ ହୁଏ ନୀଳକଣ୍ଠ ବାବୁ କହିଥିଲେ । ଗୋଦାବରୀଶ ବାବୁ ଆମ ପାଇଁ ଅମଲେଟ୍ ଓ କଦଳି ବରାଦ କଲେ । ଖାଇ ପିଇ ପ୍ରାୟ ଆଠଟା ବେଳକୁ ପ୍ରେସ କୁ ଫେରିଲୁ । ନୀଳକଣ୍ଠ ବାବୁ ଗୁଡ଼ାଏ ସମୟ ଗମ୍ଭୀର ହୋଇ ବସି ରହିଲେ ; ମୋ ପାଖେ ଗମ୍ଭୀର ହୋଇ ବସି ରହିବା ଏଇ ତାଙ୍କର ପ୍ରଥମ ।

ଘଡ଼ିଏ ଖଣ୍ଡେ ଗଲା । ସେ ଉପରକୁ ଯାଇ ଖଟରେ ପଡ଼ିଥାନ୍ତି । ମୁଁ ଟେବୁଲରେ ନବ ଭାରତ ପ୍ରୁଫ୍ ଦେଖୁଥାଏ । କାଲି ବା ପଅର ଦିନ ତାହା ଡାକରେ ଯିବ । ମଝିରେ ମଝିରେ ତାଙ୍କ ଆଡ଼କୁ ଚାହୁଁଥାଏ, କଣ ପଚାରିବେ ଅବା । ମୋର ପ୍ରତୀକ୍ଷା ସଫଳ ହେଲା । ସେ ପଚାରିଲେ, 'ଆରେ, ଲିଙ୍ଗରାଜ ବ୍ରହ୍ମପୁର ଗଲେଣି କି ନାହିଁ ବୁ ଝିଛୁ ?''

ମୁଁ କହିଲି, ''ଆଜି ପ୍ରାୟ ଏଗାରଟା ବେଳେ ମୁଁ ଖଲିକୋଟଙ୍କ କୋଠିରେ ଭଲିସି ଥିଲି । ବୋଧହୁଏ ଆଜି ସକାଳେ ଯାଇଛନ୍ତିଘରି ।''

ପୁଣି ଟିକିଏ ତୁନି ରହି କହିଲେ, 'ଜାଣିଲୁ, ମୋର ବହୁତ ଉଦ୍ୟମ ତୁ ଭଣ୍ଡୁର କରି ଦେଉଛୁ । ମୁଁ ପଅରଦିନ ବ୍ରହ୍ମପୁରରୁ ଆସିଲି । ଲିଙ୍ଗରାଜଙ୍କ ସଙ୍ଗେ ବହୁ ସମୟ କଥା ବାର୍ତ୍ତା ହେଲା । ମୁଁ ତାଙ୍କ ଘରେ ରହିଲି । ସେ ଛତ୍ରପୁରରେ ତାଙ୍କ କାମ ସାରି ଖଲିକୋଟ ଯାଇ ଫେରିଲେ, ସବୁ ଠିକ୍‌ଠାକ ହୋଇ ଯାଇଥିଲା । ତୋ'ରି ଯୋଗୁଁ ସବୁ ଭଣ୍ଡୁର ହୋଇଗଲା । ସୁଯୋଗ ସବୁବେଳେ ଆସେନାହିଁ ।'

ମୁଁ କହିଲି, 'ମୋର କ'ଣ ଦୋଷ ହେଲା ମୁଁ ଜାଣି ପାରୁ ନାହିଁ । ଆପଣଙ୍କ ସଙ୍ଗେ ଯଦି ସବୁ ଠିକଠାକ ହୋଇଥିଲା ସେ ମୋତେ ଚଠି ଦେଲେ କାହିଁକି ? ଯଦି ଚଠିଦେଲେ,

ସାଙ୍ଗେ ସାଙ୍ଗେ ଉତ୍ତର ମାଗିଲେ ଅବା କାହିଁକି ? ତାଙ୍କ ଲୋକ ଉତ୍ତର ପାଇଁ ଠିଆ ହୋଇ ନ ରହିଥିଲେ ମୁଁ ତ ଆପଣଙ୍କୁ ଅପେକ୍ଷା କରିଥାନ୍ତି । ସେ ତଡ଼ବଡ଼ ଲଗାଇବାରୁ ମୁଁ ସିନା ଗୋଦାବରୀଶ ବାବୁଙ୍କ ପାଖକୁ ଗଲି ! '

ନୀଳକଣ୍ଠ ବାବୁ—ଗୋଦାବରୀଶ କହିଲେ, ତୋ ଯୋଗୁଁ ସେ ଏପରି ଉତ୍ତର ଦେଲେ ।

ମୋର ଟିକିଏ ଧୈର୍ଯ୍ୟଚ୍ୟୁତି ହେଲା । ମୁଁ କହିଲି, ଆପଣଙ୍କ ବକଲ ଦେଖି ସେ ନିଜକୁ ରକ୍ଷା କରିବା ଲାଗି ଏପରି କହିଦେଲେ ।

ସେ ଚୁପ ମାରି ରହିଲେ । 'ବକଲ' ଶବ୍ଦଟା ବୋଧହୁଏ ତାଙ୍କୁ କାଟିଲା । ଅଧଘଣ୍ଟାକ ପରେ କହିଲେ, 'ଜାଣିଲୁ ! ମୋତେ ଦିଶୁଛି ତୋର ମୋର ଭିନ୍ନ ଭିନ୍ନ ରାସ୍ତା ଧରିବା ବେଳ ଆସିଲାଣି ।'

ମୁଁ ତ ଉତ୍ତେଜିତ ହୋଇ ଥାଏ । ମୁଁ ଉତ୍ତର ଦେଲି, ମୋତେ ତ ସେହିପରି ଦିଶୁଛି ।

ସେ ରାଗିଗଲେ, ସେ ରାତିରେ କିଛି କହିଲେ ନାହିଁ । ତହିଁ ଆରଦିନ ବି କିଛି କଥା ପଡ଼ିଲା ନାହିଁ । ତହିଁ ଆରଦିନ ମୁଁ ପ୍ରେସ୍‌ରେ ରହି କର୍ମଚାରୀଙ୍କୁ ଚର୍ମ୍ମି ଲଗାଇ ନବଭାରତ ବାହାର କଲି ଓ ତାଙ୍କୁ ଖଣ୍ଡିଏ ଦେଲି । ଡାକବେଳ ଚାଲିଯାଇଥିଲା । ପ୍ୟାକେଟ୍ ବନ୍ଧା ହୋଇ ଡାକରେ ଯିବାକୁ ତାହା ଆରଦିନକୁ ରହିଲା । ନୀଳକଣ୍ଠ ବାବୁ କାଗଜଟା ଓଲଟା ଓଲଟି କରି, ହୁଁ ବୋଲି କହି ଆଖି ବୁଜିଲେ । ଶୋଇ ନ ଥାନ୍ତି ବୋଲି ଜାଣୁଥାଏ । ତତ୍ପର ଦିନ ସେ ତାଙ୍କ ଗାଁକୁ ଗଲେ ଏବଂ ପ୍ରାୟ ୫ଟାରେ ମୁଁ ମଟର ସାଇକଲ୍‌ରେ ଗାଁକୁ ଗଲି ।

ଚାରିଦିନ ପରେ ଜିଲାବୋର୍ଡ଼ ମିଟିଂ । ମୁଁ ପୁରୀ ନ ଯାଇ କଟକ ଚାଲି ଆସିଲି । ମନ ଦକ୍ ଦକ୍ ହେଉଥାଏ । ନୀଳକଣ୍ଠ ବାବୁ ପ୍ରେସ୍‌ରେ ନ ରହି ତାଙ୍କ ସମ୍ବନ୍ଧୀଙ୍କ ବସାରେ ଥାନ୍ତି । ମୁଁ ଆସିବାର ଖବର ପାଇ ଗୋଦାବରୀଶ ବାବୁ ମୋତେ କହି ପଠାଇଲେ, ଜିଲା ବୋର୍ଡ଼ର ଶିକ୍ଷା କମିଟିରେ ଏଥର ଗୋଟାଏ ଗୁରୁତର ବିଷୟର ବିଚାର ଅଛି । ମୋତେ ତାଙ୍କ ସଙ୍ଗେ ସେଇଦିନ ୧୧ଟାରେ ପୁରୀ ଯିବାକୁ ହେବ । ମୁଁ ଯିବି ବୋଲି କହି ପଠାଇଲି । ଏଗାରଟା ବେଳେ ଆମେ ବାହାରିଲୁ ତାଙ୍କ ମଟରରେ ।

ସେପରି କିଛି ଗୁରୁତର ବିଷୟ ଶିକ୍ଷା କମିଟି ବା ଜିଲା ବୋର୍ଡ଼ ମିଟିଙ୍ଗରେ ନ ଥିଲା । ଖାଲି ପ୍ରେଜେଣ୍ଟ ପକାଇ ପ୍ରାୟ ୫ଟା ବେଳେ ଗୋଦାବରୀଶ ବାବୁଙ୍କ ସଙ୍ଗେ ଫେରିଲି । ସେ ମଟରରେ ବଡ଼ ଚିନ୍ତିତ ହୋଇ ବସିଥାନ୍ତି । ମୋତେ କିଛି କହୁ ନ ଥାନ୍ତି । ସତୀଚଉରା ଘାଟ ପାଖେ ନଈର ଖରିଦିନଆଁ ରାସ୍ତାରୁ ଉଠିଲା ବେଳକୁ ଦେଖିଲି ପ୍ରେସ୍‌ର ୩/୪ ଜଣ କର୍ମଚାରୀ ମୋତେ ଚାହିଁ ସେଠାରେ ଠିଆ ହୋଇଥାନ୍ତି । କିରେ, କଣ ? ବୋଲି ତାଙ୍କୁ ପଚାରିବାରେ ସେମାନଙ୍କ ଭିତରେ ଜଣେ କହିଲେ, "ବୁଢ଼ା ବାବୁ ଓ ଅଶୋକ ବାବୁ ଆସି ଆମ ସମସ୍ତଙ୍କୁ ବିଦା କରିଦେଇ ପ୍ରେସ୍‌ରେ ତାଲା ପକାଇ ଦେଇଛନ୍ତି, ଏବଂ ଆପଣଙ୍କୁ ବାହାର କରି

ଦିଆଗଲା ବୋଲି ଗୋଟାଏ ନୋଟିସ୍ ଫାଟକରେ ମାରି ଦେଇଛନ୍ତି । ଦୁଇଜଣ ମୁସଲମାନ ଗୁଣ୍ଡା ମଧ୍ୟ ପହରା ଅଛନ୍ତି ।"

ଏତିକି ଶୁଣି ମୁଁ ସେମାନଙ୍କୁ କିଛି ନ କହି ଗୋଦାବରୀଶ ବାବୁଙ୍କୁ କହିଲି, "ଆପଣ ଜାଣି କରି ଏସବୁ ହେଉଛି ତା' ହେଲେ, ନ ହେଲେ ବିନା କାରଣରେ ମୋତେ ଆପଣ ପୁରି ନେଇଥାନ୍ତେ କାହିଁକି ?" ସେ କିଛି ନ କହି ତଳକୁ ମୁହଁ ପୋତିଲେ । ମୁଁ ମୋ ବ୍ୟାଗ୍ଟି ତାଙ୍କ ମଟରରୁ କାଢ଼ି କର୍ମଚାରୀଙ୍କ ସଙ୍ଗେ ପ୍ରେସ୍ ଦୁଆରକୁ ଗଲି । ପ୍ରେସ୍ ନମିଚଉଡ଼ି ମସ୍ଜିଦ୍ ସାମନାରେ । ସବୁଯାକ କର୍ମଚାରୀ ମସ୍ଜିଦ୍ ତଳ ଦୋକାନମାନଙ୍କ ଆଗରେ ଠିଆ ହୋଇଥାନ୍ତି ।

କିଛି ସମୟ ମୁଁ ସ୍ତମ୍ଭୀଭୂତ ହୋଇ ରହିଲି । ତା' ପରେ କର୍ମଚାରୀମାନଙ୍କୁ କହିଲି, "ତୁମେ ସମସ୍ତେ ଏଠାରେ ଥାଅ, ମୁଁ ଅଧଘଣ୍ଟା ଭିତରେ ଆସୁଛି ।" ରିକ୍ସା ଖଣ୍ଡେ କରି ସିଧା ଗଲି ଗଙ୍ଗାମନ୍ଦିର ପାଖେ ରାୟ ବାହାଦୁର ଲକ୍ଷ୍ମୀଧର ମାହାନ୍ତିଙ୍କ ଘରକୁ । ସେ ନୀଳକଣ୍ଠ ବାବୁଙ୍କର ସହପାଠୀ । ଉତ୍କଳ ସାହିତ୍ୟ ସମାଜରେ ମୁଁ ତାଙ୍କୁ ଦି' ଚାରିଥର ଘୋର ଅପମାନ ଦେଇଥାଏ । ତାଙ୍କ ପାଖକୁ ଗଲେ ଠିକଣା ପରାମର୍ଶ ମିଳିବ ବୋଲି ମୋର ମନେ ହେଲା । ମୋତେ ଚାହିଁ ସେ ମୋତେ ଆଶ୍ୱାସନା ଦେବା ସ୍ୱରରେ ପଚାରିଲେ, "କଅଁ, ଚନ୍ଦ୍ରାମଣି ! ହୋଇଛି କ'ଣ ? ଏଡ଼େ ବିବ୍ରତ ଦିଶୁଛ କାହିଁକି ?" ମୁଁ ତାଙ୍କ ଢଙ୍ଗରେ ଟିକିଏ ପ୍ରକୃତିସ୍ଥ ହୋଇ ସବୁ କଥା କହିଲି । ପ୍ରେସ୍ ମୋ ନାମରେ ଓ ନୀଳକଣ୍ଠ ବାବୁଙ୍କର ସେଥିରେ କିଛି ନାହିଁ । ଏ ମର୍ମରେ ତାଙ୍କର ଲେଖା ମୋ ପାଖରେ ଅଛି ବୋଲି ଶୁଣି ସେ କହିଲେ, 'ତୁମେ ଯାଇ ତାଲା ଭାଙ୍ଗି ପ୍ରେସ୍ରେ ପଶ । ତା'ରି ଭିତରେ ତୁମେ ରହି ପଡ଼ ! ତାଙ୍କ ବିରୁଦ୍ଧରେ ପୁଲିସ୍ରେ ଇତଲା ଦିଆଯାଇପାରେ ।' ମୁଁ ବୀର ଦର୍ପରେ ଗଲି, ଗୋଟାଏ ହାତୁଡ଼ିରେ ତାଲା ଭାଙ୍ଗି ଗେଟ୍ ଭିତରେ ପଶିଲାବେଳକୁ ଗୁଣ୍ଡା ଦୁଇଟା ଯାକ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ଭିତରୁ ମୁଁ ଡାକଦେଲି, "ଆଜି ଘଡ଼ିରେ କାମ ହେବ, ଯେ ନ ଆସିବ ତାଙ୍କର ଆଜି ଆପ୍ସେଣ୍ଟ ପଡ଼ିବ ।" ସବୁ କର୍ମଚାରୀ ଧୁ କିନା ପଶିଗଲେ । କାମ ବି ହେଲା ।

ତହିଁଆରଦିନ ବହୁ ବନ୍ଧୁ, ବଡ଼ ଓ ସାନ ମୋତେ ଦେଖିବାକୁ ଆସିଲେ । ଆମ ପରିଚିତ ଭିତରେ ଏତେ ଲୋକ ଯେ ନୀଳକଣ୍ଠ ବାବୁଙ୍କୁ ସୁଖ ନ ପାନ୍ତି, ଏକଥା ସେଇଦିନ ଜାଣିଲି । ନୀଳକଣ୍ଠ ବାବୁଙ୍କୁ ସେଦିନ ଚନ୍ଦ୍ରାମଣି ଆଚାର୍ଯ୍ୟ କ'ଣ କହିଲେ । ହରିହର ମହାପାତ୍ରେ କ'ଣ କହିଲେ, ଚୌଧୁରୀ ରାଧାନାଥ ମିଶ୍ରେ କ'ଣ କହିଲେ, ଏ ଖବର ଆସି ପହଞ୍ଚୁଥାଏ । କେତେ ଜଣ କହୁଥାନ୍ତି, ପୁଲିସ୍ରେ ଇତଲା ଦେବାକୁ, କିଏ କହୁଥା । ଷତି ପୂରଣ ମକଦ୍ଦମା କରିବାକୁ । ମୋର ସମସ୍ତଙ୍କୁ ଗୋଟିଏ ଉତ୍ତର, ଇତଲା, ମକଦ୍ଦମା ଯାହା କରିବେ ସେ କରନ୍ତୁ, ମୁଁ ଜବାବ୍ ଦେବି, କାଠଗଡ଼ାରେ ଠିଆ ହେବାକୁ ବି ପ୍ରସ୍ତୁତ, କିନ୍ତୁ ନୀଳକଣ୍ଠ ବାବୁଙ୍କ ନାଁରେ ଫୌଜଦାରୀ ବା ଦେବାନି କୌଣସି ମକଦ୍ଦମା କରିପାରିବି ନାହିଁ ।

ସେ ମୋର ବାପ, ଅଶୋକ ମୋର ସାନ ଭାଇ । ବାସ୍ତବିକ ୧୯୨୪ରୁ ଆରମ୍ଭ କରି ୧୯୪୧ ପର୍ଯ୍ୟନ୍ତ ମୁଁ ତାଙ୍କ ଘରକୁ ମୋର ମନେ କରିଥାଏଁ । ଅନେକ ସମୟରେ ମୋର ନିଜ ଭାଇ ମାନଙ୍କଠାରୁ ତାଙ୍କୁ ତାଙ୍କ ସ୍ତ୍ରୀ ଓ ପୁଅ ଝିଅଙ୍କୁ ଅଧିକ ଆପଣାର କରେ । ସୁକୁଟ ଦେଖିବାକୁ ଯାହାଙ୍କର ମନ ସେମାନେ ମନ ଦୁଃଖରେ ଗଲେ । ବିଶ୍ୱନାଥ ବାବୁଙ୍କର ଜଣେ ଲୋକ ମଧ୍ୟ ତାଙ୍କ ପକ୍ଷରୁ ସହାନୁଭୂତି ଜଣାଇବାକୁ ଆସିଥିଲେ । ଶେଷରେ ଜଣଙ୍କୁ କହିଲି, 'ଏ ପ୍ରେସ୍ ନୀଳକଣ୍ଠ ବାବୁଙ୍କର । ସେ ପ୍ରେସ୍ ଦଖଲ କରିବାକୁ ଭୁଲ୍ ପନ୍ଥା ଅବଲମ୍ବନ କରିବାରୁ ମୋତେ ବିରୋଧ କରିବାକୁ ପଡ଼ିଲା ।' ସମସ୍ତେ ଯେ ମୂଆଡ଼େ ଗଲେ । କିଛି ନ ହୋଇଥିଲା ପରି ପ୍ରେସ୍ କାମ ଚାଲିଲା । ମୋ ମନରେ କିନ୍ତୁ ସୁଖ ନଥାଏ ।

ସେଇଦିନ ପ୍ରାୟ ଅପରାହ୍ଣ ୩ଟା । ତଳ ଅଫିସରେ ଭାରି ପାଟି ହେବାରେ ମୁଁ ତର ତର ହୋଇ ତଳକୁ ଯାଇ ଦେଖେ ତ ପଣ୍ଡିତ ନୀଳକଣ୍ଠ ଦୁଆର ବନ୍ଧ ଉପରେ ଠିଆହୋଇ ପାଟି କରୁଛନ୍ତି, 'ହଇରେ, କାଲି ସକାଳେ ଏତେ ମାନ୍ୟ କରୁଥିଲ, ଆଜି ମୋତେ ଧକ୍କା ଦେଉଛ ?' ଆମର ଜଣେ କର୍ମଚାରୀ କହୁଛି, 'ତୁମ ଘୁଣରୁ ଓପରକୁ ଖବର ଦିଆହେବ ଅନୁମତି ମିଳିଲେ ଉପରକୁ ଯିବ ।' 'ଚୁପ୍' ବୋଲି କହି ନୀଳକଣ୍ଠ ବାବୁଙ୍କ ପାଖକୁ ଗଲି ଏବଂ ବିନୀତ ଭାବେ ନମସ୍କାର ହୋଇ ଆସନ୍ତୁ ବୋଲି ଉପରକୁ ଡାକିନେଲି ।

ଉପରେ ଦୁହେଁ ଏକାଠି ହେବାରେ ମୋର କୋହ ଉଠିଲା । ଝର ଝର ଆଖିରୁ ଲୁହ ଗଡ଼ିଲା । ପଣ୍ଡିତ ନୀଳକଣ୍ଠଙ୍କର କୋମଳ ମନୋବୃତ୍ତିର ଘୋର ଅଭାବ । ଅପର ଲୋକଙ୍କ କଥା ଛାଡ଼, ନିଜ ପିଲାଙ୍କ ସୁଖ ଦୁଃଖ ବି ତାଙ୍କ ମନକୁ ଲାଗେନାହିଁ । ତଥାପି ତାଙ୍କ ମନ ବିଷଣ୍ଣ ହୋଇଗଲା । ମୁଁ ପଚାରିଲି, "କାଲିର ଏ ଘଟଣାଟି ହେଲା କାହିଁକି ? ଗତ ସାତ ବର୍ଷରେ ଆମେ କଟକରେ ଯେଉଁ ପ୍ରତିଷ୍ଠା ଅର୍ଜିଥିଲେ ତାହା ଏପରିଭାବେ ଧ୍ୱଂସ କଲେ କାହିଁକି ? ଆଉ କୋଉଠି ମୁହଁ ଦେଖାଇବା ?"

ସେ ନିଜ ମୁଣ୍ଡରୁ ଦୋଷ ଛାଡ଼େଇ କହିଲେ, "ଆରେ, ସେ ଅଶୋକଟା ଯୋଗୁଁ ସେ ସବୁ ହେଲା । ତାକୁ ପାସୋରି ଦେ ।" ମୁଁ କହିଲି, "ଯେତେ ଇଚ୍ଛା କଲେ ବି ସେ ପାସୋରି ଯିବାର ନୁହେଁ । ଏବେ ଆପଣଙ୍କର ଇଚ୍ଛା କ'ଣ କହନ୍ତୁ ।"

ସେ ଭିକ ମାଗିଲାପରି ଦୁଇ ହାତ ଅଞ୍ଜଳି କରି କହିଲେ, "ଜବରଦସ୍ତି ମୁଁ ପ୍ରେସ୍ ନେଇ ପାରିବି ନାହିଁ ବୁଝିଲିଣି । ମୁଁ ମାଗୁଛି ମୋତେ ପ୍ରେସ୍‌ଟା ଦେଇ ଦେ, ମୁଁ ତାଦ୍ୱାରା ମୋର ରାଜନୀତିକ ଜୀବନ ଗଢ଼ିବି ।"

ମୁଁ ହରିଶ୍ଚନ୍ଦ୍ର ଯେପରି ମୁହଁ କରିଥିବେ ସେପରି କରି କହିଲି, "ନିଅନ୍ତୁ, ମୋର ଏ କଳଙ୍କ ଦରକାର ନାହିଁ । କଥା ନ ରହୁ ଯେ ମୁଁ ଆପଣଙ୍କ ଠାରୁ ପ୍ରେସ୍‌ଟା ମାଡ଼ି ବସିଲି କିନ୍ତୁ ଆମର ଯାହା ପାଉଣା ଓ ଦେଣା ଅଛି ତା' ସହିତ ଏ ପ୍ରେସ୍ ନିଅନ୍ତୁ । ଯଦି ତାକୁ

ନେଇ ଗୁଜରାଣ କରିବାର ଇଚ୍ଛା, ତେବେ କାଲିର ଘଟଣାଟି ନ ହୋଇଥିଲେ ଭଲ ହୋଇଥାନ୍ତା । ଏ ପ୍ରେସ୍ ଅଭିଶପ୍ତ ହୋଇଗଲା, ଏହାକୁ ନେଇ ଆପଣଙ୍କର କିଛି ମଙ୍ଗଳ ହେବା ଅସମ୍ଭବ । ହଉ, ନଅନ୍ତୁ, ଦେବି, କିନ୍ତୁ ଆପଣଙ୍କୁ ଦେବିନାହିଁ । ସେଇ ଅଶୋକକୁ ଲେଖିଦେବି ।"

ସେ କହିଲେ, "ମୁଁ ତ ପଅର ଦିନ ଦିଲ୍ଲୀ ଯାଉଛି । ଦେଢ଼ମାସରେ ଫେରିବି । ଫେରିଲେ ଯାହା କରିବା ।" ଏତିକ କହି ସେ ଚାଲିଗଲେ, ମୁଁ ଦୁଆର ପର୍ଯ୍ୟନ୍ତ ତାଙ୍କୁ ନେଇ ଛାଡ଼ି ଆସିଲି ।

ସେ ଗିବା ପରେ ସବୁ କର୍ମଚାରୀଙ୍କୁ ଡାକିଲି ଏବଂ ଜଣାଇ ଦେଲି ଯେ ଟ୍ରେଡ଼ିଂ କମ୍ପାନୀ ପ୍ରଭୃତିର ଯାହା କାମ ଅଛି ତାହା ଏ ଦେଢ଼ମାସ ଭିତରେ ସମସ୍ତେ ଲାଗି ସାରିଦିଅ । ଦେଢ଼ମାସ ପରେ ଏ ପ୍ରେସ୍ ମୁଁ ନୀଳକଣ୍ଠ ବାବୁଙ୍କ ପୁଅ ଅଶୋକ ଦାସଙ୍କୁ ଦେଇଦେବି । ତା'ପରେ ସେ ହେବେ ତମର ମାଲିକ ।

ମୋର ପ୍ରଧାନ ସହକାରୀ ପ୍ରତିବାଦ କଲେ, "ସେ ଯଦି ମକଦ୍ଦମା କରି ନେଇ ପାରିବେ ନଅନ୍ତୁ । ଆପଣ କାହିଁକି ଛାଡ଼ିବେ ?ଆମେ ତାଙ୍କ ପାଖେ କାମ କରିବୁ ନାହିଁ ।"

ମୁଁ କହିଲି, "ମୁଁ ଛାଡ଼ିବାକୁ ଜବାବ ଦେଇ ସାରିଛି । ସେ ଅଧିକାର କରିନେଇ ପାରିବେ ନାହିଁ, କହି ପ୍ରେସ୍ ମୋତେ ମାଗିଲେ, ମୁଁ ଦେଇ ଦେଇଛି । ଏ ଦେଢ଼ ମାସ ଭିତରେ ବାକିଆ କାମ ସାରିବ । ଯେଉଁମାନେ ତାଙ୍କ ପାଖେ ନ ରହିବେ ସେମାନେ ସେତେବେଳେ ଯାଇ ପାରନ୍ତି, ଏହା ଭିତରେ ବି ଯାଇପାରନ୍ତି । ମୋଦ୍ୱାରା ଯଦି ତୁମମାନଙ୍କର କାହାରି ଅନ୍ୟ ପ୍ରେସ୍‌ରେ ବା ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ କାମ ହୋଇ ପାରିବ ମୁଁ ଚେଷ୍ଟା କରି ଦେଖିବି । ହଉ, ଯାଅ ସମସ୍ତେ ଯେଝା କାମକୁ । ଆଜି ରାତି ଦଶଟା ପର୍ଯ୍ୟନ୍ତ କାମ କରିବା ।" ସମସ୍ତେ ମନ ଦୁଃଖରେ ମୋ ପାଖରୁ ଗଲେ । ସହକାରୀଙ୍କୁ କହିଦେଲି, ଯେ ଯାହା ଆଡ୍‌ଭାନ୍‌ସ ମାଗିବେ ଦେଇଦେବ । ପଇସା ସରିଗଲେ ମୋତେ କହିବ । ମୋ ପାଖରେ ପଚାଶ ଟଙ୍କା ପର୍ଯ୍ୟନ୍ତ ଥାଏ ।

ମୋ ମନ ଉଦ୍‌ଭାସ ହୋଇଗଲା । ନବଭାରତ ସେଇଠାରେ ବନ୍ଦ ହେଲା । ମୁଁ ଗଲା ଦିନ ଯାଏଁ ଲୋକମତ ଚାଲିବ ବୋଲି ସ୍ଥିର କଲି । ଆସନ୍ତା ସଂଖ୍ୟା ଲୋକମତରେ ପ୍ରକାଶ କରିବାକୁ ଆଦେଶ ଦେଇ ଦେଲି ଯେ ଅନିବାର୍ଯ୍ୟ କାରଣରୁ ନବଭାରତ ଆପାତତଃ ବନ୍ଦ ରହିବ ।

ଦୁଇଦିନ ପରେ ଗାଁକୁ ଗଲି । ପରିବର୍ତ୍ତିତ ପରିସ୍ଥିତି ପ୍ରତି ମୋ ମନ ପ୍ରସ୍ତୁତ ହୋଇ ଯାଇଥାଏ । ଯେଉଁ ଦିନ ନୀଳକଣ୍ଠ ବାବୁ ପ୍ରେସ୍ ଜବର ଦଖଲ କରିଥିଲେ ସେଇ ରାତିରେ ମୋ ସାନ ଭାଇ ମୋ ...... ଗାଁକୁ ପ୍ରେସ୍‌ର ସତ୍ତ୍ୱ ବିଷୟରେ ସେ ମୋତେ ଦେଇଥିବା

ଲମ୍ବା ଚଠି ଖଣ୍ଡ ଆଣିବାକୁ ଯାଇଥିଲି । ମୁଁ ବିଶ୍ବାସ କରୁଥିଲି ବୋଧ ହୁଏ ସେ ଖଣ୍ଡ ପୁଲିସଙ୍କୁ ଦେଖାଇବାକୁ ପଡ଼ିବ । ମୋ ସ୍ତ୍ରୀ ବାହାରଠାରୁ ନୀଳକଣ୍ଠ ବାବୁଙ୍କ ଉତ୍ପାତ କଥା ଶୁଣି ନାନା ପ୍ରକାର ଭୟ କରୁଥିଲା । ତାଙ୍କ ଗୁଣ୍ଡାମାନେ ମୋତେ ଆକ୍ରମଣ କରିଥିବେ ବା ପୁଲିସ ମୋତେ ଗିରଫ କରିଥିବେ ବୋଲି ବିଶ୍ବାସ ସେ କାଠ ହୋଇ ଯାଇଥିଲା । ତା'ର ଅବସ୍ଥା ମଧ୍ୟ ଖରାପ । ୧୦ । ୧୫ଦିନ ପୂର୍ବରୁ ତାର ଗୋଟିଏ ପୁଅ ହୋଇଥିଲା । ୨୧ ଦିନ ପର୍ଯ୍ୟନ୍ତ ପ୍ରସୂତି ଆମଆଡ଼େ ଛୁଆଁ ଚ ମାନନ୍ତି । ମୁଁ ଗଲା ବେଳକୁ ସେ ତା ଶେଯରେ ପିଲାଟିକୁ ଧରି ପଡ଼ିଥିଲା । ମୋର ମଟର ସାଇକେଲ ଶବ୍ଦ ଦାଣ୍ଡରୁ ଶୁଣି ତା ଦେହରେ ଜୀବନ ପଶିଥାଏ । ମୁଁ ଯଦି ସୁସ୍ଥ ଓ ନିରାପଦ ହୋଇ ଫେରିଛୁ ତେବେ ତାକୁ ସବୁ ମିଳିଲା । ପ୍ରେସ୍ ରହିଲେ କେତେ ଗଲେ କେତେ ? ମୋଠାରୁ ସବୁ ବିଷୟ ଶୁଣି ସେ କହିଲା, ଭଲ ହେଲା କଣ୍ଟା ଗଲା । ଦାସଙ୍କଠାରେ ପୁଣି ଏତେ ଗୁଣ ଥିଲା ? ଅଶୋକ ପୁଅ ପରି ଚଳୁଥିଲା । ତୁମେ ନ ବିଗୃହି-ଥିଲେ ସେ ପଢ଼ିଥାନ୍ତା ନା ଏତେ ଯୋଗ୍ୟ ହୋଇଥାନ୍ତା ?

ମୁଁ ବି ଆଶ୍ବସ୍ତ ହେଲି । ମୋ ସାନଭାଇ ମୋର ପ୍ରେସ୍ ଛାଡ଼ି ଦେବା କଥାକୁ ଏକାବେଳକେ ପସନ୍ଦ କରୁନଥାଏ । ତା'ର ଇଚ୍ଛା, ଆମେ ଛାଡ଼ିବା ନାହିଁ ଲଢ଼ିବା । ନୀଳକଣ୍ଠ ବାବୁ ପ୍ରେସ୍ ମାଗିଲେ ଓ ମୁଁ ଦେବାକୁ ହଁ କରି ଦେଲି ଏ କଥା ମୋର ମୂର୍ଖତା ବୋଲି ତା'ର ମତ । ଖାଫୀ ଯଦି ହେଉଛିପରି କିଛି କହିବ ତେବେ କ'ଣ କରିବ ! ବୋଲି ମୋର ଭୟ ଥାଏ । ସାନଭାଇ କଥା ତାକୁ କହିଲି । ସେ ତାହା ନାପସନ୍ଦ କରି କହିଲା, "ଆମର ଯେତେ ଅଧିକାର ଥିଲେ ବି ପ୍ରେସ୍ ନୀଳକଣ୍ଠ ଦାସଙ୍କର ବୋଲି ସମସ୍ତେ ଜାଣନ୍ତି । ଆମେ ପ୍ରେସ୍ ଦଖଲ କରିଥିଲେ, ସମସ୍ତେ କହନ୍ତେ ତାଙ୍କ ସମ୍ପତ୍ତି ଆମେ ମାଡ଼ି ବସିଲେ ବୋଲି । ଭଲ କରିଛ । ପ୍ରେସ୍ ପାଇଁ କେତେ ଘାଣ୍ଟି ହେଉଥିଲ । ମା ଦୁର୍ଗା ହୁଏତ ଆମ ପାଇଁ ଆଉ କିଛି ଭଲ ଦଶା ଆଗକୁ ରଖିଛନ୍ତି ।"

ତନ୍ନ ତନ୍ନ କରି ଗୁଡ଼େଇ ତୁଡ଼େଇ ସବୁ କଥା ତା ପାଖେ ତା ଶେଯରୁ ଆଡ଼େଇ ହୋଇ ବସି କହୁଥାଏ । କିଛି ସମୟ ଶୁଣି ସେ କହିଲା, "ଖୋଲି ସେଇ କଥା ଏତେ ଗପୁଛ କାହିଁକି ? ତମ ମନରେ କୋଉଠି କେମିତି ଗୋଟାଏ ଦୁଃଖ ରହିଯାଇଛି ବୋଧ ହୁଏ । ସ୍ବାକୁ ଟିକିଏ ଗ୍ରହୁଁ ନାହଁ । ତୁମ ଡାକରେ ପରା ଠାକୁରାଣୀ ସ୍ବାକୁ ଦେଇଛନ୍ତି ।" ସତେ ଠାକୁରାଣୀ ମୋ ଡାକରେ ସ୍ବାକୁ ଦେଇ ଥାଆନ୍ତି । ଭାଇ ଦୁହିଁଙ୍କର ଗୋଟିଏ ଗୋଟିଏ ପୁଅ ହେବାରୁ ମୋ ମନରୁ ପୁଅ ନ ଥିବା ଦୁଃଖ ଦୂର ହୋଇ ଯାଇଥାଏ । ଭାଇବୋହୂ ଦୁହେଁ ମଧ୍ୟ ତାଙ୍କ ବି ପୁଅଙ୍କୁ ମୋତେ ଅର୍ପଣ କରି ଦେଇଥାନ୍ତି ।

ପ୍ରାୟ ସାତ ଆଠ ମାସ ପୂର୍ବେ ମୁଁ ବାପାଙ୍କ ପାଖରେ ବସି ଶ୍ରୀମଦ୍ ଭାଗବତ ପରାୟଣ କରୁଛି, ତଳ ସାହାଲାରୁ ମୋର ଜଣେ ଭାଇବୋହୂଙ୍କ ପଦେ କଥା ଶୁଭିଗଲା ଯେଉଁଥିରୁ ମୋର ଚଞ୍ଚଳ ମନରେ ହେଲା ଯେ, ମୋତେ ପୁଅ ଅର୍ପଣ କରିବା ଉଗ୍ର କଥା । ଆଖିରୁ ଦୁ'ଟୋପା ଲୁହ ଗଡ଼ିଗଲା । ଠାକୁରାଣୀଙ୍କ ମୁହଁକୁ ଚାହିଁ ଗୁହାରି କଲି, ମୋତେ ଗୋଟିଏ ପୁଅ ଦେବାକୁ । ସେଦିନ ରାତିରେ ସ୍ୱପ୍ନ ଦେଖିଲି ଠାକୁରାଣୀ କହୁଛନ୍ତି, "ତୋର କ'ଣ ପୁଅ ହେବ ନାହିଁ । ଏତେ ଅଧୀର କାହିଁକି ? ତୋ ମନଲାଖି ପୁଅ ତୋର ଆସୁଛି ।" ଭାର୍ଯ୍ୟାକୁ କହିଲି । ସେହି ଦିନଠାରୁ ଆମ ଦୁ'ଜଣ ଯାକର ପୂର୍ଣ୍ଣ ବିଶ୍ୱାସ ଥାଏ ଯେ ଏଥର ନିଶ୍ଚୟ ପୁଅ ହେବ ।

ପୁଅ ଆଡ଼େ ଟିକିଏ ଚାହିଁଲି । ଛୁଇଁଲେ ତ ଲୁଗା ଧୋଇବାକୁ ହେବ । ପୁଣି ଦୁ'ଟୋପା ଲୁହ ଗଡ଼ିଗଲା । ଠାକୁରାଣୀଙ୍କୁ ମୁଣ୍ଡି ଆଟିଏ ମାରି କହିଲି, "ଏଇ ପୁଅ କ'ଣ ଦେଲ ? ଜନ୍ମ ହେଉହେଉ ତ ପଥର ଭକାରୀ କଲଣି । ଆଉ ପଛକୁ କ'ଣ ଅଛି କେଜାଣି ? "ହଇରେ, ତୁ ଆସିଛୁ ପରା ନନାଙ୍କୁ ଘାଣ୍ଟି ବାକୁ " ବୋଲି କହି ତାକୁ ମୋ ଆଡ଼କୁ କନାରୁ ଗଡ଼େଇ ଦେଲି । କୋଳକୁ ନେଇଗଲି । ତା ବୋଉ କାନ୍ଦ ପକାଇ କହିଲା, "ଯାଅ ଲୁଗା ପାଲଟ" । ବଡ଼ ଝିଅକୁ ଡାକି କହିଲା, "ନନାଙ୍କୁ କ'ଣ ଖଣ୍ଡେ ଦେ ।" ତାକୁ ୯ବର୍ଷ, ୬ସ୍କୁ ଛଅ ଓ ତୃତୀୟକୁ ତିନି । ବାଡ଼ିଆଡେ ଖେଳୁଥିଲେ । ସନ୍ଧ୍ୟା ହୋଇସିବାରୁ ଓ ମୋ ଆସିବାର ଶୁଣି ତିନିହେଁ ଆସିଗଲେ ଓପର ଘରକୁ ଆମ ପାଖକୁ । ତୃତୀୟଟି ପ୍ୟାଣ୍ଟ ଅଡ଼ଙ୍ଗକୁ ଫୋପାଡ଼ି ଦେଇ ଚାଲିଗଲା ବୋଉ ଶେଯକୁ । ବଡ଼ ସାଙ୍ଗେ ମଝିଆଁ ଚାଲିଗଲା ମୋତେ ଖଣ୍ଡେ ରାତି ପିନ୍ଧା ଦେବାକୁ ଓ ଖୁଡ଼ୀକୁ ( ମୋର ପୁଅ ହୋଇ ଯାଇଥିବା ଭାଇର ସ୍ତ୍ରୀ, ଆହା ମରିଗଲାଣି ) ଡାକିବାକୁ ମୋ ପାଇଁ ପଖାଳ ପୁଟେଞ୍ଚ ବାଢ଼ିବାକୁ ।

ଦୁଇ ତିନି ଦିନ ଗାଁରେ ରହିଲି, କୁଆଡ଼େ ଗସ୍ତ କରି ଯାଇ ପାରିଲି ନାହିଁ । ଲୋକାଲ ବୋର୍ଡ଼ ଅଫିସରେ ଟିକିଏ ମୁହଁ ମାରି ଚଠି ଫିଟି କଣ ଆସିଛି ଦେଖିବାକୁ ଗଲାବେଳକୁ ପ୍ରୁଷ୍ଟି ବାବୁ କହିଲେ, "ସାହେବ ଦୁ'ଥର ସଲାମ ଦେଇ ପଠାଇଲେଣି " । ପ୍ରାୟ ପନ୍ଦର ଦିନ ତଳେ ଜଣେ ଆଇ. ସି. ଏସ. ସାହେବ ଆସିଥାନ୍ତି ସବ୍‌ଡିଭିଜନାଲ ଅଫିସର । ସେ ପୁଣି ଭାରି କଡ଼ା ହାକିମ ବୋଲି ନାମ କରି ସାରି ଥାନ୍ତି । ସେମାନଙ୍କର ଆମ ସଙ୍ଗେ କିଛି ସମ୍ପର୍କ ନାହିଁ ବୋଲି ମୁଁ ଦେଖା କରିନଥାଏ । କାହିଁକି ଡାକୁଛି ବୋଲି ସନ୍ତର୍ପଣରେ ଗଲି ଏବଂ ମୋର କାର୍ଡ଼ଟି ଚପରାସି ହାତରେ ପଠାଇଲି । ସାଙ୍ଗେ ସାଙ୍ଗେ ସାହେବ ଆସିଗଲେ ଏବଂ ମୋତେ ତାଙ୍କ ବୈଠକଖାନାରେ ନେଇ ବସାଇଲେ । ନନ୍ଦ ସଂଖ୍ୟା ଲୋକମତ ଖଣ୍ଡି ଟେବୁଲ ଉପରୁ ଉଠାଇ କହିଲେ, "ଏ କାଗଜ ଖଣ୍ଡି ଆପଣଙ୍କର ବୋଲି ଶୁଣିଛି । ମୁଁ ଦୁ' ଖଣ୍ଡି ପଢ଼ିଲଣି । ମୋର ଓଡ଼ିଆ ଜ୍ଞାନ ମାର୍ଜିତ କରିବାରେ ଏହା ସାହାଯ୍ୟ କରୁଛି । ଆପଣଙ୍କ ଲେଖା ବି ମୋତେ ଭାରି ସୁଖ ଲାଗୁଛି ।"

ମୁଁ ଜଣାଇ ଦେଲି ଯେ, ଆଉ ଗୁରେଟି ସଂଖ୍ୟା ପରେ ଏ କାଗଜଟି ବନ୍ଦ ହୋଇଯିବ । ସେ ଦୁଃଖ ପ୍ରକାଶ କଲେ ଏବଂ ପୁରୁଣା ସଂଖ୍ୟା କେତୋଟା ମିଳିଲେ ପଢ଼ିବେ ବୋଲି କହିଲେ । ମୁଁ କହିଲି, ମୁଁ ଆଜି କଟକ ଯାଉଛି, ତିନି ଚାରି ଦିନରେ ଫେରିବି ଓ ପୁରୁଣା ସଂଖ୍ୟା ୫ । ୬ଟା ଆଣି ଦେବି । ସେ ମୋତେ ଧନ୍ୟବାଦ ଦେଇ କହିଲେ, "ମୁଁ ଚା କପେ ଯାଚନ୍ତି ଯେ, ଆପଣଙ୍କ ମୁଣ୍ଡର ଚୁଟି ଦେଖି ଡରୁଛି ।" ମୁଁ କହିଲି, "ବରଂ ଏହାକୁ ଦେଖି ଆପଣଙ୍କର ବିଚାରିବା ଉଚିତ ଯେ ଆପଣଙ୍କ ଚା ପ୍ରତ୍ୟାଖ୍ୟାତ ହେବ ନାହିଁ ।" ସେ କେମିତି ବୋଲି ପଚାରିଲେ । ମୁଁ ଆତାପି ଓ ବାତାପିଙ୍କ ଗପ ( ମହାଭାରତରୁ ) କହି— ଉପସଂହାର କଲି "ମଣିଷ ମାଂସ ଯାଚିଲେ ଯେଉଁ ବ୍ରାହ୍ମଣ ଖାଆନ୍ତି ମୁଁ ସେଇ ଜାତି, ଏବେ ଆମର ଏତିକି ଧାରଣା ଯେ ଗୋରୁ ମାଂସ ଖାଇବି ନାହିଁ ଓ ମୁସଲମାନଙ୍କ ପ୍ରତି ସୌହାର୍ଦ୍ଦ୍ୟ ଯୋଗୁଁ ଘୁଷୁରି ମାଂସ ଖାଏ ନାହିଁ ।" ଠୋ' ଠୋ ହୋଇ ହସିଲେ ଏବଂ ସ୍ୟାଣ୍ଡଉଇଚ ଓ ଚା ବରାଦ କଲେ । ମୁଁ ଯିବାବେଳେ କହିଲେ, "ଆପଣଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ବିଶେଷ ଆନନ୍ଦିତ ହେଲି । ଆପଣଙ୍କୁ ଯେତେବେଳେ ସୁବିଧା ହେବ ଟିକିଏ ଟିକିଏ ଆସୁଥିବେ । ମୋର ପେଷ୍କାର ଆପଣଙ୍କ ବିଷୟ ଆଜି କହୁଥିଲେ ।" ଖୁସିରେ ମୋ ଅଫିସକୁ ଫେରିଲି । ସାଢ଼େ ୪ଟା ହୋଇଥିଲେ ମଧ୍ୟ ପୂର୍ଣ୍ଣ ବାବୁ ମୋତେ ଅପେକ୍ଷା କରିଥାନ୍ତି ସାହେବଙ୍କ ସଙ୍ଗେ ମୋର କ'ଣ କଥାବାର୍ତ୍ତା ହେଲା ଶୁଣିବାକୁ ।

ପ୍ରାୟ ୫ଟା ବେଳେ କଟକ ବାହାରିଲି । ମୁଣ୍ଡମୁହାଁଠାରୁ ଅନ୍ଧାର ହୋଇଗଲା । ସେଥର ରହିଲି କଟକରେ ଛଅ ଦିନ । କାମ ବେଶ୍ ଭଲ ଚାଲିଥାଏ । ୩ଜଣ କମ୍ପୋଜିଟରଙ୍କ ପାଇଁ ଗଭର୍ଣ୍ଣମେଣ୍ଟ ପ୍ରେସ ରେ ବ୍ୟବସ୍ଥା କଲି, ଆମ ପାଖର ପ୍ରେସ୍‌ରେ ( ଦଉପ୍ରେସ୍ ଆଉ ନାହିଁ ) ଦୁ'ଜଣଙ୍କ ପାଇଁ ବ୍ୟବସ୍ଥା କଲି । ଆମ ଗାଁର ଓ ଗାଁ ପାଖର ତିନିଜଣ ଆଉ କେଉଁଠି ରହିବେ ନାହିଁ ବୋଲି କହିଲେ । ସବୁ ସବୁ ହୋଇ ମାତ୍ର ସାତଜଣ ନବଭାରତ ପ୍ରେସ୍‌ରେ ରହିବାକୁ ରାଜି ହେଲେ । ବାକି ୮ଜଣଙ୍କ ପାଇଁ ବ୍ୟବସ୍ଥା କରିବି ବୋଲି ଜବାବ ଦେଲି । ସମସ୍ତେ ଖୁବ ଲାଗିପଡ଼ି କାମ ଉଠାଉଥାନ୍ତି । ମୋର ନିଜ କାମ ଖୁବ ହାଲୁକା । ଅଧିକାଂଶ ସମୟ ପଣ୍ଡିତ ଆକୁଳ ମିଶ୍ରଙ୍କ ଘରେ ପଶାଖେଳରେ କଟେ । ସେଠାରେ କେହି କେହି ପରାମର୍ଶ ଦେଉଥାନ୍ତି ପଣ୍ଡିତ ନୀଳକଣ୍ଠଙ୍କୁ ଦେଇଥିବା ଜବାବ ନ ରଖିବାକୁ । ପଣ୍ଡିତେ କହୁଥାନ୍ତି, ମୋପାଇଁ ଗୋଟେ ପ୍ରେସ ବସାଇବେ ବୋଲି । ମୁଁ କିନ୍ତୁ ସିଦ୍ଧାନ୍ତ କରିଥାଏ, କଟକକୁ ବିଦାୟ ଦେଇ କିଛି ଦିନ ଲୋକାଲ ବୋର୍ଡ ଓ ଗାଁ କାମରେ ସମସ୍ତ ସମୟ କଟାଇବି ।

ଦୁ' ତିନିଥର ଗାଁରୁ ଯିବା ଆସିବା କରିବା ପରେ ଶେଷଥର ଆସିଲି ପଣ୍ଡିତ ନୀଳକଣ୍ଠଙ୍କୁ ଦେଇଥିବା ସମୟର ଚାରିଦିନ ପୂର୍ବରୁ । କଟକରେ ଗାଧୋଇବି ଓ ଖାଇବି ବୋଲି ବିଚାରି ପ୍ରାୟ ୭ଟା ବେଳେ ଘରୁ ବାହାରିଲି । ଦାନ୍ତ ଘଷିବାକୁ ଟୁଥ୍‌ପେଷ୍ଟ ଖୋଜିଲି

ବେଳକୁ ତାକୁ ଚପାଚପି କରି ବଡ଼ଝିଅ କାନ୍ଥରେ ଗୋଟିଏ ଚିହ୍ନ କରିବାରେ ନିଃଶେଷ କରିଥାଏ । ଭ୍ରମ୍ପା ଉପରେ ଗୁଡ଼ାଏ ରଖି ଦାନ୍ତ ନ ଘଷି ବାହାରିଲି ବେଳକୁ ପାଟିରୁ ବାହାରି ପଡ଼ିଲା, ଚନ୍ଦକା ଜଙ୍ଗଲରେ ବାଘ ହାବୁଡ଼େ ପଡ଼ନ୍ତୁ କି ତୋତେ ଠିକ ହୁଅନ୍ତା । ଦରୁଣେଇ ମୁଣ୍ଡିଆ ଡେଇଁଲା ବେଳକୁ ରାଗ କୁଆଡ଼େ ଯାଇଥାଏ । ଉଭୟର ମନରେ କାହିଁକି ଦୁଃଖ ଦେଲି ବୋଲି ଅବଶୋଷ ହେଉଥାଏ । ଯାହା ରାଗ ଥିଲା ସେ ସବୁ ମୋର ବନ୍ଧୁ, ଲୋକାଲ ବୋର୍ଡ଼ ମେମ୍ବର ପିତାମ୍ବର ପଟ୍ଟନାୟକଙ୍କ ଘରେ ନିଃଶେଷ ହେଲା । ସେ ବ୍ରେଡ୍, ଜିଭଲେଲି ଓ ପେଷ୍ଟ ଆଣି ଦେଲେ ଓ ଅଧସେରେ ଖୀର ମୋହନ ଆଗରେ ଥୋଇଲେ । ସେତକ ସାରି ମହା ଆନନ୍ଦରେ ସାଇକେଲ୍ ଧରିଲି । ପିତାମ୍ବରଙ୍କୁ କହି ଆସିଥାଏ, ମୁଁ ଖାଇ ପିଇ ଭଲରେ ଗଲି ବୋଲି ଗାଁରେ ଖବର ଦେବାକୁ ମୋ ଚପରାସିକୁ ପଠାଇ ଦେବ ।

ମଟରସାଇକେଲ କ୍ଷିପ୍ର ଗତିରେ ଚାଲୁଥାଏ । ମୁଁ ମନେ ମନେ ବିଚାରୁଥାଏ, ଏଗାରଟା ବେଳେ କଟକରେ ପହଞ୍ଚିବି ଓ ସାଙ୍ଗେ ସାଙ୍ଗେ ଗାଧୋଇ ପଡ଼ି ଚାଉଳ, ଡାଲି, ପରିବା ଓ ମାଛ ଏକାଠି ମିଶାଇ ଅଜ୍ଞାନ ଘଣ୍ଟା କରାଇବି । ନଈକୂଳରୁ ମାଛ ନେଇଯିବି । ଅଜ୍ଞାନ ଘଣ୍ଟାର ସ୍ୱାଦ ମନେ ମନେ ଆସ୍ୱାଦନ କରୁଛି । ସାଇକେଲ ଗୀତ ଗାଇଲା ପରି ଚାଲି ଚାଲି ଚଣ୍ଡକା ପର ଉଠାଣିଟା ଉଠୁଛି ଏହି ସମୟରେ ଗୋଟିଏ ବାଘ ଜଙ୍ଗଲ ପରି ସଡ଼କର ଏପାଖରୁ ଡେଇଁ ଗଲା । ସାଇକେଲ କେମିତି ବନ୍ଦ ହେଲା କେଜାଣି, ମୁଁ ଭେଣ୍ଟେଣୋ ହୋଇ ତଳେ ଠିଆ ହୋଇ ପଡ଼ିଲି । ବାଁ ପଟେ ଖଣ୍ଡେ ମେଲ । ଜଣେ ଗଉଡ଼ ବସି ପାନ ଖାଉଥାଏ । ତା ଚାରିପଟେ ଗୁଡ଼ିଏ ମଇଁଷି ଚରୁଥାନ୍ତି । ମୁଁ ବେହୋସ ହୋଇ ପଡ଼ିଯିବା ପୂର୍ବରୁ ସେ ଡାକଦେଲା, "ବାବୁ କାହିଁକି ରହିଲ ? ଯାଅ ଚାଲି । ସେ ଏତେବେଳକୁ ଦି' କୋଶ ଚାଲି ଯିବଣି ।"

ମୋର ପ୍ରାଣ ଫେରିଲା । ମୁଁ ଉଠାଣି କଡ଼ରେ ସାଇକେଲ ଡେରିଦେଇ ତା' ପାଖକୁ ଗଲି । ଟିକିଏ ବସ ବୋଲି ସେ କହିଲା ଓ ନିଜ ବଟୁଆଟି ଆଣି ମୋ ଆଡ଼େ ବଢ଼ାଇ ଦେଇ କହିଲା, ପାନ ଟିକିଏ ଖାଅ । ଭଦ୍ରତାଖାତିରରେ ତାଠାରୁ ପାନ ଟିକିଏ ଖାଇଲି ଓ ମୋ ବଟାରୁ ତାକୁ ପାନ ଖଣ୍ଡେ ଦେଲି ; ରହସ୍ୟ କରି ତାକୁ କହିଲି, "ହଇରେ ବେହେରା ! ତୁ ମୋତେ ବାଘ ମୁହଁକୁ ପେଲି ଦେଉଥିଲୁ ?" ସେ ଜିଭ କାମୁଡ଼ି ଦେଇ କହିଲା, "ବାବୁ, ତାକୁ ମୁଁ ତିନିଦିନ ହେଲା ଦେଖୁଛି ପରା । ସେ ବାସ୍ତା ହୋଇ ଗଲାଣି । ତା ବାଘୁଣିଟାକୁ ଇନକମ ଟିକସ ସାହେବ ଚାରିଦିନ ତଳେ ମାରି ଦେଇଛି । ଆଉ ଚାରି ପାଞ୍ଚଦିନ ଏମିତି ହେବ । ତାପରେ ମଣିଷଖିଆ ହେବ । ମଣିଷଖିଆ ହେଲେ ତ ବଳେ ମାରିବ । ତମେ ଏଥର ଯାଅ, ଆଉ ଦି'ଘଡ଼ି ପରେ ପୁଣି ସେ ଏଠିକି ଆସିବ ।"

ମୁଁ ଗଲି । ସେଦିନ ସନ୍ଧ୍ୟାରେ ଗଲି ଇନକମ୍ ଟିକ୍ସ ଅଫିସରଙ୍କ ପାଖକୁ । ବାଘ

କଥା ଶୁଣି ସେ ଖୁବ ଖୁସି ହେଲେ । କହିଲେ, "ଆସନ୍ତୁ ଆଜ ଯିବା । ହନେ ଦୁଇଦିନ ସେଇଠି ଜଗିଲେ ଧରା ପଡ଼ିଯିବ ।" ମୁଁ କାମ ଅଛି ବୋଲି ମନା କଲି । ଶିକାରରୁ ମୋର ସେଦିନ ଯାଏଁ ମନ ହୋଇ ନ ଥାଏ ।

ଦୁଇଦିନ ପରେ ପଣ୍ଡିତ ନୀଳକଣ୍ଠ ଆସି ପହଞ୍ଚିଲେ । ସେ କେଉଁଠି ରହିଥାଇଛନ୍ତି ପଚାରିଲି ନାହିଁ । ତାଙ୍କ ପୁଅ ବି ସାଙ୍ଗରେ ଥାଏ । ତାକୁ ପ୍ରେସ୍ ଟା ଦେଇଦେଲି ବୋଲି ମୁଁ ଲେଖିଦେଲି । ମୁଁ କଲେକ୍ଟରଙ୍କ ପାଖକୁ ଯିବା ଦରକାର ବୋଲି ସେ କହିଲେ । ମୁଁ କହିଲି, 'ଯା ! ଏଇ ଲେଖା ଉପରେ ଯଦି ନ ହେବ ତେବେ ମୁଁ ଯିବି ।' ଘଣ୍ଟେ ଖଣ୍ଡେ ପରେ ସେ ପ୍ରେସ୍ ର ମାଲିକ ବୋଲି ନାମ ରେଜେଷ୍ଟ୍ରୀ କରାଇ ଫେରିଲେ । ଗଡ଼ ନମ୍ବ କଲାପରେ ମୁହଁ କରୁଥାଏ । ନୀଳକଣ୍ଠ ବାବୁ ତାକୁ କହିଲେ, "ହଉ ତୁ ଯା, ମୁଁ ଟିକିଏ କଥାବାର୍ତ୍ତା ହୋଇ ଯିବି ।"

ଅଶୋକ ଯିବା ପରେ ମୁଁ ନୀଳକଣ୍ଠ ବାବୁଙ୍କୁ ନେଇ ରଙ୍ଗଲାଲ ମୋହନ୍ତ ଦୋକାନକୁ ଗଲି । ସେଠାରେ ସେ କହିଲେ ଯେ, "ଚନ୍ଦ୍ରାମଣି ଉପରେ ଯାହା ପଇସା ଅଛି ତାହା ମୁଁ ଦେବି ।" ପଣ୍ଡିତ ଆକୁଳ ମିଶ୍ର, ଉମାଚରଣମହାନ୍ତି ଓ ଲକ୍ଷ୍ମୀଧର ଗଡ଼ବଡ଼୍ଙ୍କୁ ମୁଁ କହିଦେଲି ଯେ, ପ୍ରେସ୍ ର ଯାହା ପ୍ରାପ୍ୟ ତାହା ନୀଳକଣ୍ଠ ବାବୁ ପାଇବେ । ଆଜିଠାରୁ ପ୍ରେସ୍ ତାଙ୍କର । ଯେଉଁମାନଙ୍କଠାରୁ ଯାହା ପ୍ରାପ୍ୟ ତାହାର ଗୋଟିଏ ତାଲିକା କରି ମୁଁ ଦସ୍ତଖତ କରିଥାଏ ଏବଂ ଏ ଟଙ୍କା ନୀଳକଣ୍ଠ ବାବୁ ପାଇବେ ବୋଲି ଲେଖି ଦେଇଥାଏ । କାଗଜବାଲାଙ୍କୁ ଓ କର୍ମଚାରୀଙ୍କୁ ଦେୟ ଦୁଇହଜାର ଏବଂ ନୀଳକଣ୍ଠ ବାବୁ ପାଇବେ ପଚିଶ ଶହ ।

ବଜାରରୁ ଫେରିଲା ପରେ ପଣ୍ଡିତଜୀ ମୋତେ କହିଲେ, "ହଇରେ ଚନ୍ଦ୍ରାମଣି ! ଯାହା ତ ଯୋଗ ଥିଲା ହୋଇଗଲା । ମୋତେ ସୁଖ ଲାଗୁନାହିଁ । ମୁଁ ଗୋଟିଏ ପ୍ରସ୍ତାବ ଦେଉଛି, ରଖ । ପ୍ରେସ୍ ଅଶୋକ ଚଳାଇ ପାରିବ ନାହିଁ, କି ମୁଁ ଚଳାଇ ପାରିବି ନାହିଁ । ତୁ ଯାହାକୁ ଯେମିତି ଚଳାଉଥିଲୁ ଚଳା । ତୁ ହେବୁ ମେନେଜର । କେତେ ଦେବୁ କହ । ଲୋକାଲ ବୋର୍ଡ଼ କାମ ଚାରିଦିନ ଓ ପ୍ରେସ କାମ ତିନିଦିନ ଯେପରି କରୁଛୁ କର ଆମର ଆପତ୍ତି ନାହିଁ ।" କ'ଣ ଗୋଟାଏ ଟାଣ କଥା କହି ଦେବି ବୋଲି ମନ ହୋଇଗଲା । ମନକୁ ରୋକିଦେଲି, କହିଲି, "ଆଜି ଏହାର ଜବାବ ଦେଇ ପାରିବି ନାହିଁ । ଟିକିଏ ବିଚାର କରି କହିବି ।"

ସେ ପଚାରିଲେ, "କେବେ କହିବୁ କହ, ମୁଁ ଅନ୍ୟ ଲୋକ ନିଯୁକ୍ତ ନ କରି ତୋତେ ଅପେକ୍ଷା କରିବି ।" ମୁଁ କହିଲି, "ଆପଣ ଲୋକ ନିଯୁକ୍ତ କରନ୍ତୁ । ମୁଁ ଆସିଲେ ତାକୁ ବାହାର କରିଦେବେ ।" ସେ କହିଲେ, ସେଇଟା ସୁନ୍ଦର ହେବ ନାହିଁ । ମୁଁ ଆଉ ସମ୍ଭାଳି ନ ପାରି କହି ପକାଇଲି, "ମୋତେ ମାଲିକ ବୋଲି ସ୍ୱୀକାର କରିଥିଲେ ଏବଂ ଯାହା ପଇସା ଦେଇଥିଲେ ତା' ଗୋଟିକ ଯାଏଁ ଆଦାୟ କରି ପାରିଲା ପରେ ମଧ୍ୟ ହେଉଁଟି ବାହାର

କରିଦେଇ ପାରିଲେ, ସାମାନ୍ୟ ମେନେଜର ଜଣଙ୍କୁ ବାହାର କରିବା କାହିଁକି ଅସୁନ୍ଦର ହେବ ବୋଲି ଶଙ୍କୁଛନ୍ତି ? ମୁଁ ଯେତେବେଳେ ନବଭାରତ ପ୍ରେସ୍‌ର ମେନେଜର ହେବାକୁ ଆସିଥିଲି ସେତେବେଳକୁ ନବଭାରତ ପ୍ରେସ୍ ଥିବ କି ନାହିଁ କେଜାଣି ? ମୁଁ ୭/୮ ବର୍ଷ କାଳ ଖଟିଛି, ଟଙ୍କେବି ଦରମା ନେଇନାହିଁ, କେବଳ ଝୁଣ୍ଟିକି ଖାଇ ପ୍ରେସ୍‌କୁ ବଢ଼ାଇଛି । ରକ୍ତ ଦେଇ ତିନିହଜାର ଟଙ୍କାର ପ୍ରେସ୍ ବର୍ତ୍ତମାନ ୨୦ ହଜାରରୁ ବେଶୀ ହେବ । ସେଇତକ ଆପଣ ପାଇଲେ । ଆଉ ଯେଉଁ ଉନ୍ନତି କରିବେ ବୋଲି ବସ୍ତୁରିଛନ୍ତି ତାହାର ଡୋରି ଆଜିଠାରୁ ବନ୍ଧାହେବ ।', ମୋ ଆଖିରୁ ଲୁହ ଗଡ଼ୁଥାଏ, ଶେଷ ଗୋଟିଏ ଦୁଇଟି ବାକ୍ୟ ସ୍ପଷ୍ଟ ଉଚ୍ଚାରଣ ହୋଇ ପାରିଲି ନାହିଁ ।

ସେ କହିଲେ, "ଏହି କ'ଣ ଅଭିଶାପ ?" ମୁଁ କହିଲି, "ଆପଣଙ୍କୁ ଅଭିଶାପ ଦେବାର ପାତ୍ର ମୁଁ ନୁହେଁ । ୧୭ ବର୍ଷ କାଳ ଭିତରେ ଆପଣଙ୍କ ପଛରେ ଗୋଡ଼ାଉଥିବା ଗୋଟିଏ ଲୋକର ଅନୁଭୂତି ମାତ୍ର । ଚନ୍ଦ୍ରଶେଖର ମିଶ୍ରେ ଆପଣଙ୍କୁ ଡାକୁଥିଲେ; ମୁଁ ତଡ଼ା ଖାଇ ଯାଉଛି । ଆପଣ ଆପଣଙ୍କ ସମ୍ପତ୍ତି ମୁଣ୍ଡାଇ ବସନ୍ତୁ । ସେ ବଡ଼ ପାଟିରେ କହିଲେ, "ଚିନ୍ତାମଣି, ଥୟ ହୁଅ । ତୁ ତ ଖାଇ ନାହୁଁ ମୁଁ ବି ଖାଇନାହିଁ । ସାଙ୍ଗରେ ବସି ଖାଇବା ।" ମୁଁ ବି ବଡ଼ ପାଟିରେ କହିଲି, କୃପାସିନ୍ଧୁ ! ମୋର ଜିନିଷ ପତ୍ର ବାନ୍ଧି ସାରିଛି ? ଚାଲିଲି ନେ । ନୀଳକଣ୍ଠ ବାବୁଙ୍କୁ କହିଲି, "ମୋ ଜିନିଷ ତଲାସ କରିବେ ଯେବେ କରନ୍ତୁ । ପ୍ରେସ୍‌ର ଜିନିଷ କ'ଣ ସେଥିରେ ଥିବ ଅବା ।"

ଏତିକି କହି ମୁଁ ଚାଲିକି ଗଲି ମୁଁ ଘୋଡ଼ାଗାଡ଼ିରେ ବସିଲାବେଳକୁ ପ୍ରେସ୍‌ର ୨୫ଜଣଯାକ କର୍ମଚାରୀ ମୋତେ ବେଢ଼ି ଠିଆ ହେଲେ । ନୀଳକଣ୍ଠ ବାବୁ ମଧ୍ୟ ଚାଲିକି ଆସିଥାନ୍ତି । ମୁଁ ତାଙ୍କ ପାଦ ଛୁଇଁ ବିଦାୟ ନେଲାବେଳେ ମୋର ପ୍ରଧାନ ସହକାରୀ ତାଙ୍କ ହାତକୁ ଗୋଟାଏ ତାଲି ଚାବି ଦେଇ କହିଲେ, ଅଜ୍ଞା, ଗଲାବେଳେ ଚାବି ପକାଇ ଦିବେ । ନୀଳକଣ୍ଠ ବାବୁ କହିଲେ, ସମସ୍ତେ ରହ, କଥାବାର୍ତ୍ତା ଅଛି । ସେ କହିଲେ, "ଆଜ୍ଞା ! ଆଜି କେହି କାମ କରିବେ ନାହିଁ । କାଲିକୁ ଆସିବେ ୭ ଜଣ । ବାକୀ ୧୮ ଜଣ ଅନ୍ୟତ୍ର କାମ ଯୋଗାଡ଼ କରିଛନ୍ତି ।" ମୋର ଗାଡ଼ି ଚାଲିଗଲା । କର୍ମଚାରୀମାନେ ଆଖି ପୋଛୁ ପୋଛୁ ମୋ ପଛରେ ଗଲେ । ନୀଳକଣ୍ଠ ବାବୁ ତାଲିଟି ଧରି ଠିଆ ହୋଇଥାନ୍ତି । ରୋଷେଇ ଘରେ ଭାତ, ଡାଲି ଓ ମାଛ ତିଅଣ ରନ୍ଧାହୋଇ ଥୁଆ ହୋଇଥାଏ । ଜଣେ କେହି, ଯେଉଁ ସାତଜଣ କାଲିଠାରୁ କାମ କରିବେ ବୋଲି କହିଥିଲେ ସେମାନେ ମଧ୍ୟ ତାଙ୍କୁ ନମସ୍କାର ହେଲେ ନାହିଁ, ଲକ୍ଷ୍ୟ କଲି ।

ମୋ ଭାଇ ବସା ଚୌଧୁରୀବଜାରର ଛକ ଉପରେ । ଘୋଡ଼ା ଗାଡ଼ିରେ ସେଠାକୁ ଗଲାବେଳକୁ ପଡ଼ିଲା ପଣ୍ଡିତ ଆତ୍ମାରାମ ମିଶ୍ରଙ୍କ ଦୋକାନ । ସେଇଠାରେ ଓହ୍ଲାଇ ପଡ଼ିଲି ଏବଂ ମୋ ସଙ୍ଗେ ଥିବା ଦୁଇଜଣଙ୍କୁ ଘୋଡ଼ାଗାଡ଼ି ଧରି ଚୌଧୁରୀବଜାର ଚାଲିଯିବାକୁ ଆଦେଶ ଦେଲି । ପଣ୍ଡିତେ ପ୍ରାୟ ଗୋଟାଏବେଳେ ବସାକୁ ଯାନ୍ତି । ଗୋଟାଏ ବାଜିବାକୁ

ଆଉ ଅଳ୍ପ ସମୟ ଥାଏ । ମୋତେ ଦେଖି ସେ ଆସ ଆସ ବୋଲି ଆଗ୍ରହରେ ଡାକିଲେ ଏବଂ କହିଲେ, "ମୁଁ ବର୍ତ୍ତମାନ ଆପଣଙ୍କ ଆଡ଼ ହୋଇ ବସାକୁ ଯିବ ବୋଲି ବାହାରୁଥିଲି । କେଜାଣି ନୀଳକଣ୍ଠ ବାବୁ ଥିବେ ବୋଲି ମନ ହେଉ ନଥିଲା । ଆଜି କ'ଣ ହେଲା ?"

ମୁଁ ତାଙ୍କୁ ସବୁ କଥା କହିଲି । କାଲି ସନ୍ଧ୍ୟାରେ ତାଙ୍କ ସଙ୍ଗେ ଦେଖା ହୋଇଥିଲା । ପ୍ରେସ୍ ନ ଛାଡ଼ିବାକୁ ସେ ମୋତେ କହିଥିଲେ ; ମୁଁ ନାରାଜ ହୋଇ କହିଥିଲି, ପ୍ରେସ୍ ତାଙ୍କୁ ଦେଇଥିବା ପୂର୍ବରୁ ବ୍ୟଥା ସହିଛୁ । ମୋର ବ୍ୟବସାୟ ବୁଦ୍ଧି ନ ଥିବା ଯୋଗୁଁ ସେ ଦୁଃଖିତ ହୋଇଥିଲେ ଏବଂ ପ୍ରେସ୍ ଉପରେ ଯାହା ଯାହାର ଟଙ୍କା ଅଛି ତାଙ୍କ ପାଖକୁ ନୀଳକଣ୍ଠ ବାବୁଙ୍କର ଚିଠି ଅଦାୟ କରିବାକୁ କହିଥିଲେ । ସେ ବିଷୟ ପଚାରିବାରୁ ମୁଁ କହିଲି, ଅଜି ସକାଳେ ମୋ ସଙ୍ଗେ ସେ ଯାଇ ତା' ଟଙ୍କା ପାଇଁ ସେ ଦାୟୀ ବୋଲି କହି ଆସିଛନ୍ତି । ଟାଇପବାଲା ଓ କର୍ମଚାରୀମାନଙ୍କ ପାଉଣା ଦେଇଦେବେ ବୋଲି ମୋତେ ଜବାବ ଦେଇଛନ୍ତି ।

ଲେଖା ରଖିବା ଉଚିତ ଥିଲା ବୋଲି କହି ସେ ମୋତେ କହିଲେ, "ମୁଁ ବାରମ୍ବାର ଆପଣଙ୍କୁ କହେ, ଅସଲ ନୀଳକଣ୍ଠ ବାବୁଙ୍କୁ ଆପଣ ଚିହ୍ନି ନାହାନ୍ତି । ସେ କାହାକୁ ପଇସା-ଟିଏ ଦେବେ ନାହିଁ ବୋଲି ମୋର ଦୃଢ଼ ଧାରଣା । ଆପଣଙ୍କଠାରୁ ମୁଁ ତାଙ୍କୁ ବେଶି ଅଧିକ ଜାଣେ ।"

ମୁଁ ଚୁପ ହେଲି । ପଣ୍ଡିତେ ରାଧାନାଥ ବାବୁଙ୍କର ଅନ୍ତରଙ୍ଗ, ଓ ରାଧାନାଥବାବୁଙ୍କର ନୀଳକଣ୍ଠ ବାବୁଙ୍କ ବିଷୟରେ ଖୁବ ନୀଚ ଧାରଣା । ତାଙ୍କଠାରୁ ସେ ବହୁତ ଶୁଣିଥିବେ । ନୀଳକଣ୍ଠ ବାବୁଙ୍କୁ ଗୋଟିଏ ବ୍ୟାକରଣ ପାଣ୍ଡୁଲିପି ସେ ଦେଖିବାକୁ ଦେଇଥିଲେ, ତାହା ସ୍ୱେ ନିଜ ନାମରେ ଛପାଇବେ ବୋଲି ମାଡ଼ି ବସିଛନ୍ତି ବୋଲି ପଣ୍ଡିତେ ମୋତେ ବ କହିଥାନ୍ତି ।

ପଣ୍ଡିତେ କହିଲେ, "ଅପଣଙ୍କର ଚିଠିଏ ଚିଠି ମୁଁ ଆଜି ପାଇଛୁ । ଆମ ଉପରେ ହେଉଥିବା ଟଙ୍କା ନୀଳକଣ୍ଠ ବାବୁଙ୍କୁ ଦେଇ ଦେବାକୁ ଆପଣ ଲେଖିଛନ୍ତି । ଆପଣଙ୍କଠାରେ ଥିବା ଆମର ବହିସବୁ କ'ଣ ହେଲା ?" ମୁଁ ଜଣାଇ ଦେଲି ଯେ, ସବୁ ମୁଁ ହିସାବ ସହିତ ସେଇ ସକାଳେ ପଠେଇ ଦେଇଛୁ ।"

ମୋଠାରେ କେତେ ପଇସା ଅଛି ବୋଲି ସେ ମୋତେ ପଚାରିଲେ । ମୁଁ ସବୁ ପକେଟରେ ହାତ ମାରି ବାହାର କଲି ସମୁଦାୟ ବାଇଶି ଟଙ୍କା । ସେ କହିଲେ, ଘରେ ତ କିଛି ନ ଥିବ ? ମୁଁ କହିଲି ମୋର ତ ସବୁ ସଂପତ୍ତି ପକେଟରେ ଥାଏ । ସେ ତାଙ୍କ ଡ୍ରଅରରୁ ଶହେଟି ଟଙ୍କା କାଢ଼ି ମୋ ହାତକୁ ବଢ଼ାଇଦେଲେ ଓ କହିଲେ, "ଏତକ ଆପଣଙ୍କୁ ଦେବାକୁ ମୁଁ ଯାଇଥାନ୍ତି ।" ମୁଁ ଟଙ୍କା ଗ୍ରହଣ କରିବାକୁ ଆପତ୍ତି କରି କହିଲି, "ମୁଁ ଆପଣଙ୍କ ଉପରେ

ଯାହା ଅଛୁ ବୋଲି ତାଲିକା ଦେଇଛୁ ସେଥିରୁ କମିଗଲେ ଗୋଲମାଲ ହେବ । ପ୍ରେସ୍ ଦେଇ ଦେବା ପରଠାରୁ ମୁଁ କାହାଠାରୁ କିଛି ଆଦାୟ କରିବି ନାହିଁ ବୋଲି ଲେଖି ଦେଇଛୁ । ସେ କହିଲେ, "ସେ ଆପଣଙ୍କଠାରୁ ସବୁ ଲେଖାଇ ନେଇଛନ୍ତି । ଆପଣ କିଛି ରଖିଲେ ନାହିଁ । ଗୁରୁଭକ୍ତ ନା ? ସ୍ୱା ପାଇଁ ଆପଣଙ୍କୁ ବହୁତ ହଇରାଣ ହେବାକୁ ହେବ । ହଉ, ଏ ଟଙ୍କା ରଖନ୍ତୁ । ରସିଦ ଦେବା ଦରକାର ନାହିଁ । ମୁଁ ଏ କଥା ବୁଝିବି ।" ଟଙ୍କା ରଖିଲି । ସେ ମୋତେ ଖାଇବାକୁ ଡାକିଲେ । ମୁଁ ଭାଇ ବସାରେ ଖାଇବି ବୋଲି କହି ଚୌଧୁରୀ ବଜାର ଗଲି ।

ଭାଇ ପାଖରେ ଯାଇ ବସିଲି । ଖାଇବା କଥା ସେ ପଚାରିଲେ ନାହିଁ । ତାଙ୍କର ୧୦ଟା ବେଳେ ଖିଆ ପିଆ ସରିଥାଏ । ଭାଗବତ ବହି ଖଣ୍ଡିକ ମୋ ସାଇକେଲ୍ କ୍ୟାରିଅରରେ ବାନ୍ଧି ସାଙ୍ଗରେ ଆସିଥିବା ଦୁଇଜଣଙ୍କୁ ହୋଟେଲ ଖର୍ଚ୍ଚ ଓ ଗାଡ଼ି ଭଡ଼ା ଦେଇ ମୁଁ ବାହାରିଲି ଗାଁକୁ । ଭାରି ଭୋକ ହେଉଥାଏ । ହାଇକୋର୍ଟ ସାମନା ଗୋବିନ୍ଦା ଗୁଡ଼ିଆ ଦୋକାନରୁ ଟଙ୍କାଟିକର ଛୀରମୋହନ ଖାଇଲି । ଗୋଟିକ ଚାରି ପଇସା, ଆଜିକାଲି ଯାହା ଷାଠିଏ ପଇସା ଲେଖାଏଁ ହୋଇଛି । ସେଇ ଖରାରେ ଗାଁକୁ ଗଲି । ଚଣ୍ଡିକାଠାରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ଏକାବେଳକେ ଗଛ ଛାଇ ।

ଘରେ ପୁଣି ଖାଇଲି । ଭାର୍ଯ୍ୟାକୁ ସବୁ ବିଷୟର ବିବରଣୀ ଦେଇ ପିଲାଙ୍କ ସାଙ୍ଗେ ଟିକିଏ ଖେଳି ଶୋଇଲି ଯେ ଉଠିଲି ବେଳକୁ ରାତି ୭ଟା । ମୋର ଜିନିଷ ପତ୍ର ଚୌଧୁରୀ ବଜାରରୁ ଆସିଥାଏ—ଶବ୍ଦ କଳ୍ପ ଦ୍ରୁମ, ଭାଗବତ ସେଟ୍‌ଟା ଓ ମହାଭାରତ ସେଟ୍ ( ୨ ଖଣ୍ଡ ) । ଆଉ ସବୁ ପୁରାଣ ସେଇଠି ରହିଲା । ମୋ ଶେଯ, ମାଣ୍ଡି, ଚାଦର ଓ ଲୁଗା କାମିଜ ମଧ୍ୟ ଆସିଥାଏ । ସେ ରାତିରେ ଗୁଡ଼ାଏ ଖେଳ ହେଲା ପ୍ରାୟ ରାତି ଦୁଇଟା ପର୍ଯ୍ୟନ୍ତ । ତହିଁ ଆର ଦିନ ଦିନ ୯ଟା ବେଳେ ଉଠି ନିତ୍ୟକର୍ମ ସାରିଲା ବେଳକୁ ପ୍ରେସ୍ କଥା ମନରୁ ପୂରା ପାସୋର ହୋଇ ଯାଇଥାଏ ବୋଲି କହିଲେ ଚଳେ । ଠାକୁରାଣୀଙ୍କୁ ମୁଣ୍ଡିଆ ମାରିଲା ବେଳେ ମୋର ଭବିଷ୍ୟତ ତାଙ୍କର ପାଦରେ ସମର୍ପି ଦେଲି । ମୁଁ ବଉଙ୍କ ଘରୁ ବାହାରକୁ ଆସିଲା ବେଳକୁ ପାଖ ଘର ଦୁଆର ଆଢ଼ୁଆଳରୁ ମୋ ଶାଶୁ କହିଲେ, "ଝିଅ, ମିଶ୍ରଙ୍କୁ କହିବୁ ମନ ଦୁଃଖ କରିବେ ନାହିଁ । ଠାକୁରାଣୀ ତାଙ୍କୁ ଓ ତୁମ୍ଭମାନଙ୍କୁ ସମ୍ଭାଳିବେ । ମୁଁ ସିନା ଦେଖିବି ନାହିଁ ।"

ମୋ ଶାଶୁ ତାଙ୍କ ଝିଅ ଗାଧୋଇବା ପରେ ଗାଁକୁ ଯାଇ ଦିନେ ଦୁଇଦିନ ହେଲା ଆସି ଥାଆନ୍ତି । ତାଙ୍କ ଆଖିକୁ ଦିଶୁନଥାଏ ପ୍ରାୟ ୪ବର୍ଷ ହେଲା, କିନ୍ତୁ ମୋର ବିଭାଘର ଦିନୁ ସେ ଯାଏଁ ସେ ମୋତେ ଲୁଚନ୍ତି ।

ମୁଁ ବେଳେ ବେଳେ ତାଙ୍କ ଆଗକୁ ଯାଏ ଖାଇ । ମୁଁ ପାଖରେ ଆସି ପହଞ୍ଚି ଯିବାର ଜାଣିଗଲେ ସେ ଅନ୍ଧୁଣୀ ବୁଢ଼ୀ ଲୁଚବାକୁ ଯେଉଁ ଚେଷ୍ଟା କରନ୍ତି, ତାହା ମନେ ପଡ଼ିଗଲେ ହସ ମାଡ଼େ ସେତକ କାନ୍ଦ ମାଡ଼େ ସେତକ । ଥରେ ମୁଁ ହାଅଙ୍କ ଘରୁ ଭିତର ଅଡ଼ିଙ୍ଗକୁ ବାହାର ଗଲା ବେଳକୁ ମୋତେ ଲୁଚବାକୁ ଯାଉ ଯାଉ ଅଡ଼ିଙ୍ଗ ତଳକୁ ଗଡ଼ି ପଡ଼ିଲେ । ତାଙ୍କ ଝିଅ ଆସି ଉଠାଇପକାଇଲା । ମୁଁ ତାଙ୍କୁ ଛୁଇଁ ଦେଇଥିଲେ ତାଙ୍କୁ ଭାରି କଷ୍ଟ ହୋଇଥାନ୍ତା ।

ବୁଢ଼ୀ ଅତି ଦୁଃଖିନୀ । ସେ ବିଧବା ହେବାର ତିନି ମାସ ପରେ ମୋ ସ୍ତ୍ରୀ ଜନ୍ମ । ମୋ ଶ୍ୱଶୁରଙ୍କର ବିଶେଷ କିଛି ଭୂସମ୍ପତ୍ତି ନ ଥିଲା । ସେ ଥିଲେ ଜଣେ ନାମଜାଦା ବୈଦ୍ୟ । ବୈଦ୍ୟବୃତ୍ତିରେ ଭଲ ଚଳୁଥିଲେ । ଅକାଳରେ ସେ ମରିଯିବାରୁ ପରିବାରଟିର ଦାରିଦ୍ର୍ୟ ଅତିମାତ୍ରାରେ ବଢ଼ିଗଲା । ଘରକୁ ଦୁଃଖ ଆଣିଲା ବୋଲି ମୋ ସ୍ତ୍ରୀର ଡାକ ନାମ ହେଲା ଦୁଃଖୀ । ତା ଉପରେ ତିନୋଟି ଭାଇ । ବଡ଼ଭାଇ ମୋ ବିବାହ ବେଳକୁ ମ୍ୟାଟ୍ରିକୁଲେସନ ଓ ସଂସ୍କୃତ ପ୍ରଥମା ବହୁ ଦୁଃଖ ଭିତରେ ପାସ କରି ଗଞ୍ଜାମ ପୁରୁଷୋତ୍ତମପୁରରେ ତିରିଶ ଟଙ୍କାରେ ଶିକ୍ଷକ ହୋଇ ଥାଆନ୍ତି । ସେତିକରେ ଘରଟି ବେଶ ଚଳିଥାନ୍ତା । ଦୁର୍ଭାଗ୍ୟକୁ ସେ ଯାହାକୁ ବିଭା ହେଲେ ସେ ଅତି ଉଗ୍ରା ଓ ହାଅର ନଣନ୍ଦ ଓ ଶାଶୁଙ୍କୁ ସେ ଆଦୌ ସୁଖ ପାଇଲେ ନାହିଁ କି ସହଜରେ ତାଙ୍କୁ ପଇସାଟିଏ ହାଥାଇ ଦେଲେ ନାହିଁ । ସେତେବେଳେ ଦୁର୍ଭିକ୍ଷ ବେଳ । ବୁଢ଼ୀ ପିଲାଙ୍କୁ ଓପାସ ଭୋକରେ ଚଳାଇଲେ । ମୋ ବିଭା ବର୍ଷ ସ୍ତ୍ରୀର ମଝିଆ ଭାଇନା ଗାଁରେ ନଅଟଙ୍କାକୁ ମାଷ୍ଟ୍ର ହୋଇ ଘର ଚଳାଇଲେ । ମୋତେ ଝିଅ ଦେଲାବେଳେ ମୁଁ ସତ୍ୟବାଦୀରେ ପଢ଼ୁଥାଏ ଏବଂ ସମାଜ ବିକ ଲୁଗା ବୁଣି ହାତରେ ରୋଷାଇ କରି ନିଜକୁ ଓ ମୋର ଭାଇ ଦୁଇଟିଙ୍କୁ ଚଳାଉଥାଏ । ତା'ର ବର୍ଷକ ପରେ ମୁଁ ସତ୍ୟବାଦୀ ଛାଡ଼ିଲି ଏବଂ ୧୯୨୬ରେ ମ୍ୟାଟ୍ରିକ ପାସ କରି କଟକରେ ପଢ଼ିଲି । ମୋର ସାନଭାଇ ସ୍କୁଲରେ ପଢ଼ିଲା । ସବା ସାନଭାଇ ଅସ୍ୱାସ୍ଥ୍ୟ ଯୋଗୁଁ ଗାଁରେ ଆସି ରହିଲା । ମୋ ଭାର୍ଯ୍ୟା ୧୧ ବର୍ଷରେ ଆମ ଘରକୁ ଆସିଲା ସାନଭାଇକୁ ରାନ୍ଧିକରି ଦେବାକୁ ; ଶାଶୁ ତା ସଙ୍ଗେ ଆସିଲେ ସେ ପ୍ରାୟ ଏକାଦିକ୍ରମେ ରହିଲେ ମୋ ସ୍ତ୍ରୀ ଗୃହଯୋଗ୍ୟା ହେବା ପର୍ଯ୍ୟନ୍ତ । ବଢ଼ିଲା କନ୍ୟା ଦ୍ୱିବାକ୍ଷତ ପୂର୍ବରୁ ସ୍ୱାମୀଘରେ ରହିବାର ନୁହେଁ । ପୁଣି ଝିଅର ଗଣ୍ଡ ଦୋଷ ପଡ଼ିଲା ୭ମାସ କି ଆଠ ମାସ । ଝିଅକୁ ନେଇ ସେ ଘରକୁ ଗଲେ । ଦ୍ୱିବାକ୍ଷତ ପରେ ପୁଣି ଆସିଲେ ଆମ ଘରକୁ । ନିଜ ପୁଅମାନଙ୍କ ଭଲ ମନ୍ଦ ଦେଖିବାକୁ ଗାଁକୁ ଯାନ୍ତି ମଝିରେ ମଝିରେ । କିନ୍ତୁ ଘର ହୋଇଥାଏ ଆମ ଘର । ମୋର ଗୋଟି ଗୋଟି କରି ଘ୍ରେଟି ଝିଅ ହେବାରେ ବୁଢ଼ୀଙ୍କର ଆମଠାରୁ ହେଉଥାଏ ଅଧିକ ମନସ୍ତାପ । ମୋର ଚତୁର୍ଥ ଝିଅ ଜନ୍ମ ହେବାରେ ବୁଢ଼ୀ ତାକୁ ଧରି ଗେଲ କରୁ କରୁ କହନ୍ତି ପୁଅ ହେବ ଯେ, ମୁଁ ଦେଖିବି ନାହିଁ । ସତରେ ଦେଖିଲେ ନାହିଁ । ମୋର ପୁଅ ହେଲା ବେଳକୁ ସେ ଅନ୍ଧୁଣୀ । ଘ୍ରରବର୍ଷ ପରେ ତାର ତଳ ଝିଅ ଜନ୍ମ ହେବା ବେଳକୁ ସେ ମରିଗଲେ

ମୁଁ ନବଭାରତ ପ୍ରେସ ଛାଡ଼ି ଯେଉଁ ତିନିବର୍ଷ ଲୋକାଲ ବୋର୍ଡ଼ ଧରି ରହିଲି ତାରି ଭିତରେ ।

ଠାକୁରାଣୀଙ୍କ ଅନୁଗ୍ରହରୁ, ମୋ ଶାଶୁଙ୍କ ଆଶୀର୍ବାଦରୁ ଓ ଭାର୍ଯ୍ୟାର ପାତିବ୍ରତ୍ୟ ଯୋଗୁଁ ନବଭାରତ ପ୍ରେସ ଛାଡ଼ିବାର ମନସ୍ତାପ ମୋର ଗୋଟିଏ ହପ୍ତା ମଧ୍ୟ ରହିଲା ନାହିଁ । ମୋର ଯେଉଁ ଭାଇଟି ପୁଅ ହୋଇ ଯାଇଛି ସେ ମୋର ତଳ । ତା'ର ମୋର ବୟସରେ ଚଉଦମାସ ତାରତମ୍ୟ । ତାର ହେତୁ ପାଇଲା ଦିନୁ ସେ ମୋର ଶତ୍ରୁ । ସେ ଯେଉଁଠିକୁ ପୁଅ ହୋଇ ଯାଇଥିଲା ସେ ଗାଁର ଲୋକଙ୍କ ସଙ୍ଗେ ଭଲରେ ନ ଚଳିବାରୁ ସେମାନେ ସ୍ୱୀ ଜମି ମାଡ଼ି ବସିବାକୁ ବାହାରିଲେ । ମୁଁ ଯାଇ ସେମାନଙ୍କୁ ବୋଧ ଶୋଧ କରି ଜମିତକ ବିକେଇଲି । ଆମ ଗାଁରେ ଜମି କିଣାହେଲା । ଘର ଖଣ୍ଡେ ମିଳିବା ଯାଏଁ ଆମ ଘରରୁ ଖଣ୍ଡେ ଦେଇ ରଖାଇଲି । ତା'ର ପୁଅର ପାଠପଢ଼ାରେ ସାହାଯ୍ୟ କଲି । ତା'ର ଗୋଟିଏ ଝିଅକୁ ସମସ୍ତ ଖର୍ଚ୍ଚ ଦେଇ ଗୋଟିଏ ଭଲ ଜାଗାରେ ବିଭା କରାଇଲି । ଏହାର ଫଳରେ ତାର ବିଷ ବଢ଼ିବା ହିଁ ସାର ହେଲା ମାତ୍ର । ଏବେ ମୋର ସବା ସାନ ଭାଇକୁ ହାତ କରି ମୋତେ ଶେଷକାଳକୁ ହଲବଲ କରିବାକୁ ଉଦ୍ୟମ ଲଗାଇଛି । ମୁଁ ନବଭାରତ ପ୍ରେସ ଛାଡ଼ିବାରେ ସ୍ୱାର ଆନନ୍ଦ କହିଲେ ନସରେ । ଆମେ ଯେଉଁ ତିନିଜଣ, ତାଙ୍କ ଭିତରେ ମୋ ତଳ ଯେ କି ସେତେବେଳକୁ ବାରିପଦା ( ମୟୂରଭଞ୍ଜ ) ହାଇସ୍କୁଲରେ ମାଷ୍ଟର ଥାଏ, ସେ ଉଦାସୀନ । ଭାଇନା ଯାହା କରିଛନ୍ତି ତାହା ବୁଝି ବିଚାରି କରିଥିବେ ବୋଲି ତାର ମତ । ସେ ଆସିଲା, ମୋଠାରୁ ସବୁ କଥା ବୁଝି ତୁନି ହୋଇ ତା କାମରେ ଗଲା । ଯେ ସାନ, ଯାହାକୁ ୬ବର୍ଷଠାରୁ ଆଜି-ଯାଏଁ ସବୁ ମତ୍ନେ ପାଳିଥିଲି ତା'ର କଣ ହେଲା କେଜାଣି, ମୁଁ ନବଭାରତ ପ୍ରେସ ଛାଡ଼ିବା ଦିନୁ ମୋ ସଙ୍ଗେ ପୂର୍ଣ୍ଣ ଅସହଯୋଗ କଲା । ସେ ବିଗିଡ଼ିଲା, ସତେ ଯେମିତି ତା ସମ୍ପତ୍ତି ମୁଁ ନୀଳକଣ୍ଠ ବାବୁଙ୍କୁ ଦେଇଦେଲି । ସେଦିନଠାରୁ ସେ ମୋ ସଙ୍ଗେ ସମ୍ପର୍କ ଏକାବେଳକେ ତୁଟାଇ ଦେଲା କହିଲେ ଚଳେ । ମୁଁ ମୁଆଡ଼େ ଯେମିତି ରହି ଯାହା ପାଉଥିଲି ସେଥିରୁ ସେ ଅଂଶ ପାଉଥିଲା, ତୁନି ହୋଇ ରହିଥିଲା । ମୋର ଅବସ୍ଥା ଖରାପ ହେବାରେ ସେ ଏକା-ବେଳକେ ମୋତେ ଦୁଆର କଳା ଦେଲା ବୋଲି କହିଲେ ଚଳେ । ମଝିରେ କେତେବେଳେ କଟକ ଗଲେ ତା ବସାରେ ରହେ । ସେଇଟା ବି ତାକୁ ଯେ ସୁଖ ଲାଗୁନାହିଁ, ଏହା ଆକାର ଇଙ୍ଗିତରେ ଦେଖାଇବାକୁ ହେଳା କଲା ନାହିଁ । ମୋ ଭାର୍ଯ୍ୟା ଯୋଗୁଁ ତା ପାଖକୁ ଯିବା ବନ୍ଦ କରି ପାରେ ନାହିଁ । ତାରି ଯୋଗୁଁ କୁଳର ଦୁର୍ବ୍ୟବହାର ଦିହକୁ ନିଏ ନାହିଁ ।

ସ୍ମୃତି ଯୋଗୁଁ ଏ ସମୟର ସବୁ ବିପର୍ଯ୍ୟୟ ଦୃଢ଼ ମନରେ ସହିଗଲି, ଏ ପର୍ଯ୍ୟନ୍ତ ମଧ୍ୟ ସହୁଛି । ଯେଉଁଦିନ ନୀଳକଣ୍ଠ ବାବୁ ପ୍ରେସରେ ତାଲା ପକାଇଥିଲେ, ସେଇ ରାତିରେ ମୋର ବାତ ଜର ଆରମ୍ଭ ହେଲା । ପ୍ରତି ପନ୍ଦର ଦିନରେ ହଠାତ୍ ଆରମ୍ଭ ହୋଇଯାଏ । ବାଣପୁର,

ବୋଲଗଡ଼ ବା ଚଣ୍ଡକାରୁ ସଂଧ୍ୟାବେଳେ ଗାଁକୁ ଆସିବାକୁ ମଟର ସାଇକେଲ ଷ୍ଟାର୍ଟ କରି ମାଇଲଏ ଖଣ୍ଡେ ଆସିବା ପରେ ହଠାତ୍ ବାତଜର ଆସିଯାଏ । ସେହି ଅବସ୍ଥାରେ ୩୫ । ୪୦ ମାଇଲ ଆସି ଦାଣ୍ଡ ଦୁଆରେ ସାଇକେଲ ଫୋପାଡ଼ି ଦେଇ ଘରେ ଯାଇ ଏକାଥରକେ ଦୁଇ ଦିନ, ତିନି ଦିନ ଶୁଏ । ଘରେ ପଇସାଟିଏ ନଥାଏ । ଭାର୍ଯ୍ୟା ଯାଇ ପଡ଼ିଆରୁ ଧାର ଉଧାର କରି ଘର ଚଳାଏ । ମୁଁ ଉଠିଲେ ପୁଣି ଘର ଚଳାଇବାର ଭାର ନିଏ ।

ସେତେବେଳେ ଆୟର ଏକମାତ୍ର ପନ୍ଥା ଲୋକାଲ୍ ବୋର୍ଡ଼ରୁ ମିଳୁଥିବା ଗସ୍ତଖର୍ଚ୍ଚ । ମାସକୁ ଗସ୍ତ ଖର୍ଚ୍ଚା ପ୍ରାୟ ୮୦ ଟଙ୍କା ମିଳୁଥିଲା । ସେଇଥିରୁ ପେଟ୍ରୋଲ, ମୋବିଲ ଖର୍ଚ୍ଚ ଓ ମଟର ସାଇକେଲ ମରାମତି ଖର୍ଚ୍ଚ ଯାଇ ଯାହା ବଳେ ତାହା ମୋ ପାଇଁ ଯଥେଷ୍ଟ ହୁଏନାହିଁ । ତିନୋଟି ଭଲ ଗାଈ ଥାନ୍ତି, ପିଲାଙ୍କର ଅଭାବ ହେଲେ ପଛେ ହେଉ, ଗାଈଙ୍କର ଅଭାବ ମୁଁ ସହିପାରେ ନାହିଁ । ପ୍ରତ୍ୟହ ତାଙ୍କ ପିଛା ସେ ଶସ୍ତା କାଳରେ ପାଞ୍ଚ ମୁଣ୍ଡିକା ଦରକାର କୁଣ୍ଡା ନଡ଼ା ଗୁଡ଼ । ଏ ସବୁ ଖର୍ଚ୍ଚ ଯାଇ ଆମ ପାଇଁ ରହେ ମାତ୍ର କୋଡ଼ିଏ ଟଙ୍କା । ମୋ ବେଖାଫେଲିଆ ଖର୍ଚ୍ଚ ସମୁଦ୍ରକୁ ଯେମିତି ଶଂଖ ପଣା ମାତ୍ର । ଅଭାବ ପୂରଣ ହୁଏ ହ୍ୟାଣ୍ଡ-ନୋଟ୍ ସାହାଯ୍ୟରେ ! ହ୍ୟାଣ୍ଡନୋଟ୍ର ଫର୍ମ ମନେଥାଏ, ପାଖରେ ରସିଦ ଟିକଟ ଥାଏ । ସଚ୍ଛଳ ସୁହୃଦ୍ ଜଣେ ଜୁଟିଲେ ଯାଙ୍ଗେ ଯାଙ୍ଗେ ହ୍ୟାଣ୍ଡନୋଟ୍ ଲେଖି ତାଙ୍କ ହାତକୁ ବଢ଼ାଇ ଦିଏ । ମୋର ସୌଭାଗ୍ୟକୁ କେହି ନାହିଁ କରନ୍ତି ନାହିଁ । ଯାହାଙ୍କର ଟଙ୍କା ଫେରସ୍ତ ପାଇବା ଜରୁର୍ ଦରକାର, ତାଙ୍କପାଇଁ ଆଉ କାହାକୁ ହ୍ୟାଣ୍ଡନୋଟ୍ ଦେଇ ଯଥାସମୟରେ ଟଙ୍କା ଆଣି ଶୁଝେ । ବେଳେ ବେଳେ ବନ୍ଧୁମାନେ ମୋ ଯୋଗୁ ଭାରି ହଇରାଣ ହୁଅନ୍ତି । ହେତୁତ ମନେ ପଡ଼ୁଛି, ସବୁଠାରୁ ବେଶୀ ହଇରାଣ ହୋଇଥିଲେ ଜାମୁଝାରି ଲୋକନାଥ ଚୌଧୁରୀ । ଦିନେ ଘରେ ଆସି ପହଞ୍ଚି ଯାଇ ଶୁଣିଲି ଘରେ କିଛି ନାହିଁ । ତିନିଦିନ ହେଲା ଗୋରୁଙ୍କ ଖାଦ୍ୟ ମଧ୍ୟ ଦୋକାନରୁ ଉଧାର ଆସୁଛି । ୩।୪ ଦିନରେ ଜଣଙ୍କୁ ପଚାଶ ଟଙ୍କା ଶୁଝିବାକୁ ହେବ ।

ମୋ ଅର୍ଦ୍ଦଳି ମୋ ସାଙ୍ଗେ ବାଣପୁରରୁ ଆସିଥାଏ । ମୁଁ କେ. ଏଲ୍. ଚଢ଼େ ଆସିଥାଏ, ସେ ମୋ ପଛେ ପଛେ ଆସିଥାଏ ସାଇକେଲରେ । ଦିନେ ଦିନେ ତାକୁ ମୁଁ କହେ ମୋ କାନ୍ଧରେ ହାତ ପକାଇବାକୁ । ସ୍ୟା’କୁ ଅପସନ୍ଦ କରି ସେ ସବୁଥର ନାହିଁ କରେ ଓ ପ୍ରାଣ ପ୍ରଯୁକ୍ତି କରି ପ୍ୟାଡ଼ଲ୍ ମାରି ମୋ ପିଛା ଧରିବାକୁ ଚେଷ୍ଟାକରେ । ସେ ଦିନ ସେହିପରି କରି ସେ ସଁ ସଁ ହୋଇଥାଏ । ତାକୁ ପଖାଳ ପଂକେ ଖାଇବାକୁ ଦେଲି । ବିଶ୍ରାମ କରିବାକୁ ଘଣ୍ଟେ ଖଣ୍ଡେ ଦେଲି । ସେ ଟିକିଏ ସାଷ୍ଟମ ହେବାରୁ ଶହେଟଙ୍କାର ହ୍ୟାଣ୍ଡ-ନୋଟ ଖଣ୍ଡେ ଦେଲି ଜାମୁଝାରି ଲୋକନାଥ ସୁବୁଦ୍ଧିଙ୍କୁ ଦେବାକୁ । ଖୋର୍ଦ୍ଧା ଆମ ଗାଁରୁ ୫ ମାଇଲ, ଜାମୁଝାରି ଖୋର୍ଦ୍ଧାରୁ ଆଠମାଇଲ କଟକ ସଡ଼କରେ । ସେ ବିଜୁଳିପରି

ଚାଲିଗଲା । ସେ ରାତିରେ ନ ଆସିବାରୁ କିଛି ଚିନ୍ତା କଲି ନାହିଁ । ବିଚାରିଦେଲି ବୋଧହୁଏ ତା ଗାଁରେ ରହିଗଲା । ତା'ଗାଁ ଆମ ଗାଁରୁ ଖୋର୍ଦ୍ଧା ସଡ଼କରେ, ଖୋର୍ଦ୍ଧା ଆଡ଼ ମାଇଲିଏ । କିନ୍ତୁ ଅଡ଼ରଲି ତା' ଆରଦିନ ବି ଆସିଲା ନାହିଁ । ତୃତୀୟଦିନ ଦି ପହରରେ ସେ ସାଁ ସାଁ ଦୌଡ଼ି ଆସିଲା ଏବଂ କୈଫିୟତ ଦେଲାପରି କହିଲା, 'ସୁବୁଦ୍ଧି ମୋତେ ଛାଡ଼ିଲେ ନାହିଁ । ଆଜ୍ଞା ! ତାଙ୍କ ପାଖରେ ପଇସା ନ ଥିଲା, ଗଣିଲେ ଶହେ ହେଲା ନାହିଁ । ମୋତେ ପଚାଶ ଦେଉଥିଲେ । ଆପଣ ରାଗିବେ ବୋଲି ମୁଁ ଆଣିଲିନାହିଁ । ମତେ ରଖିଲେ ଧାନ ବିକି ଆଉ ପଚାଶଟଙ୍କା ଭରଣା କରିବାକୁ । ପଅର ଦିନ ରାତି ଓ କାଲି ଦି'ଓଳି ରୋଷେଇ କରିବାକୁ ସବୁ ସରଞ୍ଜାମ ଯୋଗେଇଲେ । କାଲି ଥିଲା ଗୁରୁବାର । କାଲି ଯାହାକୁ କହିଥିଲେ ଯେ ଆଜି ଧାନ ନେଇ ଟଙ୍କା ଦେବାମାନେ ମୋତେ ବିଦାକଲେ, ବେଳ ପହରକୁ । ଖୋର୍ଦ୍ଧାରେ ଜଳଖିଆ କରିବାକୁ ମୋତେ ଟଙ୍କାଟିଏ ହେଇଟି ଦେଇଛନ୍ତି ।' ମୁଁ ଟଙ୍କା ନ ଗଣି ସେଥିରୁ ଯୋଡ଼ିଏ ତାକୁ ଦେଲି ବକ୍‌ସିସ୍‌ ଏବଂ ବରାଦ କଲି ତହିଁ ଆରଦିନ ସକାଳୁ ଆସିଲେ ଯିବା ଓଲସିଂ ଓ ରାତିରେ ସେଠାରେ ରହିବା ।

ଏହିପରି ଚାଲିଥାଏ । ତେଣୁ ନୀଳକଣ୍ଠ ବାବୁଙ୍କ ପରାମର୍ଶରେ ଜଗନ୍ନାଥ ରଥେ ମୋତେ ଘାଣ୍ଟିବାକୁ ଯେଉଁ ଉପାୟ କଲେ ତାହା ମୋତେ ବାଧିଲା ନାହିଁ । ହ୍ୟାଣ୍ଡନୋଟ୍‌ର ସଂଖ୍ୟା କିଛି ବଢିଲା ମାତ୍ର । ମୁଁ ନବଭାରତ ଛାଡ଼ିବା ପ୍ରାୟ ୬ମାସ ପରେ ଡିଷ୍ଟ୍ରିକ୍‌ଟ ବୋର୍ଡ଼୍‌ରୁ ଖଣ୍ଡେ ଚିଠି ଆସିଲା ଯୁଦ୍ଧ ପରିସ୍ଥିତି ଯୋଗୁଁ ସବୁଦିଗରୁ ଖର୍ଚ୍ଚ କାଟ କରିବାକୁ ସରକାର ନିର୍ଦ୍ଦେଶ ଦେଇଛନ୍ତି । ୪ ବର୍ଷ ଗସ୍ତଖର୍ଚ୍ଚ ବାବଦରେ ଯାହା ଟଙ୍କା ମଞ୍ଜୁର ହୋଇଛି ତାହା କୌଣସି ମତେ ବଢାଇବ ନାହିଁ । ଆମର ଗସ୍ତଖର୍ଚ୍ଚ ବାବଦରେ ବଜେଟରେ ଥାଏ, ୧୫ଶହ । ଏଇଥିରେ ମୋର, ଭାଇସ୍‌-ଚେୟାରମ୍ୟାନଙ୍କର ଗସ୍ତଖର୍ଚ୍ଚ ଏବଂ ମେମ୍ବର-ମାନଙ୍କର ମିଟିଂରେ ଯୋଗଦେବା ଖର୍ଚ୍ଚ ତୁଲିଆ ହେବାର କଥା । ଲୋକାଲ୍‌ ବୋର୍ଡ଼୍‌ର ମିଟିଂ ବର୍ଷକେ ୭।୮ଟା ହୁଏ । ମେମ୍ବର ସଂଖ୍ୟା ଅଳ୍ପ ଏବଂ ଅଳ୍ପ ବାଟରୁ ଆସନ୍ତି । ଏମାନଙ୍କ ପିଛା ଖର୍ଚ୍ଚ ହୁଏ ପ୍ରାୟ ୫ଶହ । ଭାଇସ୍‌-ଚେୟାର୍‌ମ୍ୟାନ ଜଟଣୀର ଜଣେ ଖ୍ୟାତନାମା ଡାକ୍ତର । ଦିନକରେ ଯାହା ସେ ଆଦାୟ କରନ୍ତି ଶହେମାଇଲ ଗସ୍ତ କଲେ ତାହାର ଅଧା ମିଳନ୍ତା ନାହିଁ । ସେ ତେଣୁ ଗସ୍ତକରିବାକୁ ପରାଙ୍ମୁଖ । ତାଙ୍କର ବର୍ଷକୁ ଶହେ ଦୁଇଶହ ବି ଗସ୍ତ ଖର୍ଚ୍ଚା ହୁଏନାହିଁ । ବାକି ମୋପାଇଁ ରହିଛି ୬ଶହ ବା ୭ଶହ । ମାସକୁ ବଡ଼ହୋଇ ଷାଠିଏଟଙ୍କା ମାତ୍ର । ଏଥିରୁ ପେଟ୍ରୋଲ କିଣିବ କେତେ ଓ ସାଇକେଲ ମରାମତି କରିବ କେତେ ? ଆମ କିରାଣୀ ପୂର୍ଣ୍ଣବାବୁ ପରାମର୍ଶ ଦେଲେ ଆମର ଗସ୍ତ ଖର୍ଚ୍ଚ ବାବଦରେ ଅନ୍ତତଃ ୧୮ଶହ ଟଙ୍କା ରଖାଯିବାକୁ ଲେଖାଯାଉ । ପୂର୍ବ ବର୍ଷମାନଙ୍କରେ ୧୮ଶହ ହେଉଥିଲା ; ବାର୍ଷିକ ବଜେଟରେ ୧୫ଶହ ଓ ସପ୍ଲିମେଣ୍ଟାରି ବଜେଟ୍‌ରେ ୩ଶହ । ମୁଁ ଏ ବିଷୟରେ କିଛି ପ୍ରତିବାଦ କରିବା ନାହିଁ ବୋଲି କହିଲି ।

ଏ ଚିଠି ଖଣ୍ଡ ମୋତେ ଟିକିଏ ଅଡ଼ୁଆ ଅଡ଼ୁଆ ଲାଗିଲା । ଯୁଦ୍ଧ ପରିସ୍ଥିତି ଯୋଗୁଁ ସବୁ ବାବଦ୍‌ରେ ଖର୍ଚ୍ଚ କାଟିବାକୁ ଲେଖା ଥାଇ ଖାଲି ଗସ୍ତଖର୍ଚ୍ଚ ବାବଦ୍ ଖର୍ଚ୍ଚ ବଢ଼ା ନ ଯାଉ ବୋଲି ନିର୍ଦ୍ଦେଶ ଆସିଛି । କାହିଁକି ? ଏଥିରେ କ'ଣ ରହସ୍ୟ ଥିବ ପରା ! ପୂର୍ଣ୍ଣ ବାବୁଙ୍କୁ କହିଲି, ମୁଁ ଜିଲ୍ଲା ବୋର୍ଡ଼ ମିଟିଂକୁ ଗଲାବେଳେ ଚେୟାର୍‌ମ୍ୟାନଙ୍କ ସାଙ୍ଗେ କଥାବାର୍ତ୍ତା ହୁଏ, ତା'ପରେ ଯାହା କରିବା । ମନେ ମନେ ସ୍ଥିର କଲି ୬୦ ଟଙ୍କାରୁ ବେଶୀ ନେବି ନାହିଁ କିନ୍ତୁ ଯେତିକି ଚୁଲୁଛି ଚୁଲିବ । ବେଶୀ ଯା' ଆସ ନ କରି ଘଡ଼ରେ ଘରକୁ ନ ଫେରି ବାହାରେ ରହିବ ଏବଂ କିଛି କିଛି ଗସ୍ତଖର୍ଚ୍ଚ । ପ୍ରଥମାସରେ ଗୁଡ଼ଗୁଡ଼ ଦେବ । ହ୍ୟାଣ୍ଡ୍‌ନୋଟ୍ ଦ୍ୱାରା ମୋର ତ ନିଅଣ୍ଟ ଭରଣା ହେଉଛି, ତାର ସଂଖ୍ୟା ଟିକିଏ ବଢ଼ିବ ମାତ୍ର ।

ସ୍ତ୍ରୀ ପରାମର୍ଶ ଦେଲା ବହି ଲେଖି କଟକରେ ପୁସ୍ତକ ବ୍ୟବସାୟୀଙ୍କୁ ଦେଲେ କିଛି ପଇସା ମିଳନ୍ତା । ହୁଁ ବୋଲି କହିଦେଲି । କିନ୍ତୁ ମନରେ ଭାବିଲି ହ୍ୟାଣ୍ଡନୋଟ ଦ୍ୱାରା କାମ ଚଳିବାର ବାଟ ବନ୍ଦ ହେଲେ ସେ ପନ୍ଥା ଧରିବା । ବହି ଲେଖାରେ ଲାଗିଲେ ଗସ୍ତ କମିଯିବ ଏବଂ ଯେଉଁ କାମ ହାତକୁ ନେଇଛି ତାହା ହୋଇ ପାରିବ ନାହିଁ । ଏ ଚିଠି ଆସିବା ପରେ ଯେଉଁ ଜିଲ୍ଲା ବୋର୍ଡ଼ ମିଟିଂ ପଡ଼ିଲା ସେଥର ଚେୟାର୍‌ମ୍ୟାନ ଜଗନ୍ନାଥ ବାବୁଙ୍କ ଘରକୁ ଯାଇ ବସିବା ମାତ୍ରେ ସେ ଆରମ୍ଭ କଲେ, "ମିତ୍ରେ ! ପଣ୍ଡିତ ନୀଳକଣ୍ଠଙ୍କର ଇଚ୍ଛା ତୁମେ ତାଙ୍କ ପାଖକୁ ଯା'ନ୍ତ, ତୁମ ମନୋମାଳିନ୍ୟ ଦୂର ହୁଅନ୍ତା ।" ମୁଁ ନାହିଁ କହିଲି, ତାଙ୍କୁ ଶୁଣାଇ ଦେଲି, "ଜୀବନରେ ଆଉ ତାଙ୍କ ସଙ୍ଗେ ଦେଖା ହେବାକୁ ଯିବି ନାହିଁ ବୋଲି ସିଦ୍ଧାନ୍ତ କରିଛି । ତାଙ୍କର ଯଦି କିଛି ଦରକାର ସେ ମୋ ପାଖକୁ ଆସି ପାରନ୍ତି । ମୋ'ଆଡ଼ୁ ଯାଇ ତାଙ୍କୁ ଖୁସାମତ କରିବାର ପ୍ରୟୋଜନ କଣ ? ତୁମେ ତ ସବୁ ଜାଣ, କହୁନାହଁ ?" "ନୀଳକଣ୍ଠ ବାବୁ ଖୁବ୍ ଦୁଃଖିତ । ଅନ୍ୟର କଥାରେ ପଡ଼ି ସେ ଗୋଟାଏ ଭୁଲ୍ କରି ଦେଇଛନ୍ତି ବୋଲି ମାନୁଛନ୍ତି । ତାଙ୍କୁ ତୁମ ଗାଁର ଜଣେ କହିଲା ଯେ, ତୁମେ ପ୍ରେସ୍‌ରୁ ଗୁଡ଼ାଏ ଟଙ୍କା ନେଇ ଗୋଟେ ପ୍ରକାଣ୍ଡ କୋଠା କରିଛ । ମୁଁ ତ ତୁମ କୋଠା ଦେଖିଛି, ଏବଂ ସେଥିପାଇଁ କେତେ ଧାର ଉଧାର କରିଛ ମୁଁ ଜାଣେ । ତାଙ୍କୁ ସବୁ କହିଲି । ତୁମଆଡ଼େ ପଥର ଇଟାଠାରୁ ଶସ୍ତା ବୋଲି ତାଙ୍କୁ ବୁଝାଇଲି । ସାମାନ୍ୟ ତନୋଟି ବଖରା ଶୁଣି ସେ ଭାରି ଦୁଃଖିତ ହେଲେ । ଘରପୋଡ଼ି ପରେ ଚାଳଘର କରିଥିଲେ ଯାହା ଖର୍ଚ୍ଚ ହୋଇଥାନ୍ତା, ତାର ଖୁବ୍ ହେଲେ ଦୁଇଗୁଣ ଖର୍ଚ୍ଚ ହୋଇଥିବ ଶୁଣି ସେ ଖାଲି ବ୍ୟସ୍ତ । ହେଲେ, ତୁମର ତ ଲୋକାଲ ବୋର୍ଡ଼ ଗସ୍ତ ଖର୍ଚ୍ଚରେ କୃତ୍ୟ ଚଳିବ ନାହିଁ । ସେ ଯାହା ପ୍ରସ୍ତାବ କରୁଛନ୍ତି, ତଦନୁସାରେ କାମ କଲେ ଭଲ ହୁଅନ୍ତା ।"

ମୁଁ ଟିକିଏ ଉତ୍ତେଜିତ ହୋଇ କହିଲି, "ବୋଧହୁଏ ତାଙ୍କର ପରାମର୍ଶରେ ଲୋକାଲ ବୋର୍ଡ଼ର ଗସ୍ତଖର୍ଚ୍ଚ କମ୍ କରିବାକୁ ଚିଠି ଦେଇଛ । ସେ ଚିଠି ତ ପୁରୀ ସଦରର ଲୋକାଲ ବୋର୍ଡ଼କୁ ଯାଇ ନାହିଁ ବୋଲି ଆଜି ବୁଝିଛି ।" ତାଙ୍କର ମୁହଁ କେମିତି ହୋଇଗଲା । ସେ

କୈଫିୟତ ଦେଲାପରେ କହିଲେ, "ଅଫିସ ଯେପରି ଚିଠି ଡ୍ରାଫଟ୍ କରି ଦେଲେ ମୁଁ ସେଥିରେ ଦସ୍ତଖତ କରି ଦେଇଛି । ପୁଣି ଲୋକାଲ ବୋର୍ଡ଼କୁ ତ ସେହି ପରି ଚିଠି ଯିବାର କଥା ମୁଁ ବୁଝିବି । ଆଜି ହେଡ୍ କ୍ଲର୍କଙ୍କୁ ପଚାରିବି ।"

ମୁଁ ସେହିପରି ଉତ୍ତେଜିତ ହୋଇ କହିଲି, "ତୁମ ପଚାରିବା ଦରକାର ନାହିଁ । ମୁଁ ସବୁ ବୁଝିଛି । ତୁମେ କହିବାରୁ ବୈରାଗୀ ବାବୁ ସେ ଚିଠିଟା ଡ୍ରାଫଟ କରିଛନ୍ତି । ପୁଣି ଲୋକାଲ ବୋର୍ଡ଼କୁ ଚିଠି ଦେବାକୁ କହିନାହଁ । ମୋତେ ଏପରି ଘାଣ୍ଟିଲେ ମୁଁ ନୀଳକଣ୍ଠ ବାବୁଙ୍କ ଗୋଡ଼ତଳେ ଯାଇ ପଡ଼ିବି ବୋଲି ବୋଧ ହୁଏ ତୁମ୍ଭଙ୍କ ସଙ୍ଗେ ମସୁଧା ହୋଇଛି ।" ଏତକ କହି ମୁଁ ତମତମ ହୋଇ ଚାଲିଗଲି । ଗଲାବେଳେ କହିକରି ଗଲି, "ଏ ବିଷୟ ମୁଁ ଜିଲା ବୋର୍ଡ଼ ମିଟିଙ୍ଗରେ ପକାଇବି ।" ଜିଲା ବୋର୍ଡ଼ରେ ମୋ ପକ୍ଷର ଲୋକ ଅଧିକ ବୋଲି ତାଙ୍କୁ ବେଶ ଜଣା ।

ମୁଁ ସେଠାରୁ ଯାଇ ଜିଲା ବୋର୍ଡ଼ର ଭାଇସ ଚେୟାରମ୍ୟାନଙ୍କ ବସାରେ ରହିଲି । ନୀଳକଣ୍ଠ ବାବୁ ପୁରୀରେ ଥିଲେ, ବୋଧହୁଏ ଆମର ଏ କଥାବାର୍ତ୍ତା ବିଷୟ ଜଗନ୍ନାଥ ରଥଙ୍କ-ଠାରୁ ଶୁଣି ସନ୍ଧ୍ୟାବେଳେ ସେ ଯାଇଁ ଦୁଃଖିଶ୍ୟାମ ଦାସଙ୍କ ଦୁଆରେ ଠିଆ ହୋଇ ଡାକିଲେ, "ହଇରେ ଦୁଃଖିଶ୍ୟାମ ! ଚନ୍ଦ୍ରାମଣି ଅଛି ?" ଦୁଃଖିଶ୍ୟାମ ଦାସଙ୍କୁ ମୁଁ ସବୁକଥା କହିଥିଲି । ସେ ଫଟ୍କିନା ଉତ୍ତର ଦେଲେ, ମନ୍ଦିରକୁ ଯାଇଛନ୍ତି । ନୀଳକଣ୍ଠ ବାବୁ ଚାଲିଗଲେ । ମୁଁ ପାଇଖାନାରୁ ଆସି ହାତମାଟି କରୁଛି, କହିଲେ, "ମୁଁ ମିଛ କହିନାହିଁ, ଚନ୍ଦ୍ରାମଣି ବାବୁ ! ତୁମେ ତ ନିଜେ କହିଥିଲ ତୁମ ଗାଁର ବୈଷ୍ଣବ ସାଧୁ ପକ୍କା ପାଇଖାନା ଭିତରକୁ ଯାଇ ପିଣ୍ଡି ଦେଖି ବାହାରେ ବେ.ଲ ମୁଣ୍ଡିଆ ମାରି ଆସିଥିଲା ।" ଦୁହେଁ ଯାକ ଖୁବ୍ ହସିଲୁ ।

ତହିଁ ଆର ଦିନ ଜିଲା ବୋର୍ଡ଼ ମିଟିଂ । ଖୋର୍ଦ୍ଧାର ଏସ୍. ଡ଼ି.ଓ. ଜିଲା ବୋର୍ଡ଼ର ଜଣେ ମନୋନୀତ ମେମ୍ବର । ତାଙ୍କର ମୋର ଏକାଠି ବସୁ । ମୋର ଗସ୍ତ ଖର୍ଚ୍ଚା ବିଷୟରେ ଆସିଥିବା ଚିଠି ବିଷୟରେ ମୁଁ ତାଙ୍କୁ କହିଥିଲି । ମୁଁ ପରିସ୍ଥିତିରେ ଗସ୍ତଖର୍ଚ୍ଚା କମାଇବା ପରିବର୍ତ୍ତେ ବଢ଼ାଇବା ଉଚିତ ବୋଲି ତାଙ୍କର ମତ । ସେ କଥା ଉଠାଇବି କି ବୋଲି ସେ ମୋତେ ପଚାରିଲେ । ମୁଁ କହିଲି "ଆପଣ ତ ତାହା ଜାଣି ନାହାନ୍ତି ସରକାରୀ ଭାବରେ । ଏଥର ଥାଉ ମୁଁ କାଲି ଚେୟାରମ୍ୟାନଙ୍କୁ ଦ'ପଦ ଶୁଣାଇଛି । କଣ ହେଉଛି ଦେଖାଯାଉ । ଆଉ ଦୁଇମାସରେ ସପ୍ଲିମେଣ୍ଟାରୀ ବଜେଟ୍ ମିଟିଙ୍ଗକୁ ଆସିବ, ସେତିକିବେଳେ ଦେଖିବା ।" ଚେୟାରମ୍ୟାନ ମିଟିଂ ଆରମ୍ଭ କରିବା ପୂର୍ବରୁ ସେଇ କଥା ପକାଇଲେ ; ସେ କହିଲେ, ମୁଁ ଜିଲା ମାଜିଷ୍ଟ୍ରେଟଙ୍କ ସଙ୍ଗେ କଥାବାର୍ତ୍ତା ହୋଇଛି । ଆମେ ଦୁହେଁ ଏକମତ ହୋଇଛୁ ଯେ, ମୁଁ ପରିସ୍ଥିତିରେ ଆମର ନିମ୍ନତମ ଖର୍ଚ୍ଚ ବଢ଼ିବା ଉଚିତ । କୂଅ ପୋଖରୀ ଖୋଳିବା ବାବଦରେ, ଗ୍ରାମ୍ୟ ରାସ୍ତା ବନାଇବା ବାବଦରେ ଆମର ଏ ବର୍ଷ ଅଧିକ କିଛି ଖର୍ଚ୍ଚ କରିବା ।

ଏ ଖର୍ଚ୍ଚର ତଦାରଖ କରିବାକୁ ଚେୟାରମ୍ୟାନ ଓ ଭାଇସ ଚେୟାରମ୍ୟାନଙ୍କର ଗସ୍ତଖର୍ଚ୍ଚା ମଧ୍ୟ ବଢ଼ିବା ଉଚିତ । ସ୍କୁଲ ବୃଦ୍ଧି ଲୋକାଲ ବୋର୍ଡ଼ମାନେ ସପ୍ଲିମେଣ୍ଟାରୀ ପ୍ରସ୍ତାବ ଦେବେ । ତା'ପରେ ଯେଉଁଦିନର କାର୍ଯ୍ୟସୂଚୀ ଗ୍ଭଲଲ । ନୀଳକଣ୍ଠ ବାବୁଙ୍କ ପ୍ରଭାବରେ ଖୋର୍ଦ୍ଧା ଲୋକାଲ ବୋର୍ଡ଼କୁ ଚଳି ଯାଇଥିଲା ବୋଲି ସ୍ପଷ୍ଟ ଜଣା ପଡ଼ିଗଲା ।

ପଣ୍ଡିତ ନୀଳକଣ୍ଠ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ଉପରେ ଯେଉଁ ଦିନର ଘଟଣା ଲେଖିଲି ତାର ପନ୍ଦର ଦିନ ପରେ ମୁଁ ଆମ ଘର ପାଖ ପୋଖରୀ କୂଳରେ ଗୋଟିଏ କ୍ୟାନ୍ ଭାସ୍ ଚେୟାର ପକାଇ ଉପନ୍ୟାସ ଖଣ୍ଡେ ପଢ଼ୁଛି ଏବଂ ମଝିରେ ମଝିରେ ଗୋଟାଏ ଆଙ୍ଗୁଠିରେ ଅଣ୍ଡୁଆ ଘାସ ଭିଡ଼ି ଗାଈଙ୍କୁ ଦେଉଛି, ତାନୋଟିଯାକ ଗାଈ ଘାସ ଖାଉଛନ୍ତି, ଏହି ସମୟରେ ରଙ୍ଗଲାଲ ମୋଦିଙ୍କର ଗୋଟିଏ ଲୋକ ରେଳରୁ ଓହ୍ଲାଇ ମୋ ପାଖରେ ଆସି ପହଞ୍ଚିଲା । ତା ଠାରୁ ଶୁଣିଲି, ପଣ୍ଡିତଜୀ ରଙ୍ଗଲାଲ ମୋଦିଙ୍କର ଟଙ୍କା ଦେବାକୁ ନାହିଁ କରି ଦେଇଛନ୍ତି । ମୁଁ ପ୍ରେସ ଛାଡ଼ିବାର ପ୍ରାୟ ୨ମାସ ପୂର୍ବରୁ ରଙ୍ଗଲାଲ ବାବୁ ପ୍ରେସ ଉପରେ ଥିବା ଟଙ୍କାକୁ ଚଳନ୍ତି ହିସାବରେ ନ ରଖି ହ୍ୟାଣ୍ଡନୋଟ କରିଦେବାକୁ କହିଥିଲେ । ଆପତ୍ତି କରିବାର କାରଣ ନଥିଲା । ମୁଁ ହ୍ୟାଣ୍ଡନୋଟ କରିଦେଲି ଓ ଆମ ଖାତାର ମାର୍ଜିନରେ ସେ କଥା ଲେଖି ଦେଇଥିଲି । ନୀଳକଣ୍ଠ ବାବୁ କହିଲେ ଯେ ଏ ହ୍ୟାଣ୍ଡନୋଟ ଟଙ୍କା ମୁଁ ବ୍ୟକ୍ତିଗତ ଭାବରେ ନେଇଛି । ତାପରେ ଯେଉଁ ଆଠଶହ ଟଙ୍କାର କାଗଜ ଆସିଛି ମୁଁ ତାକୁ ଆଣି ଅନ୍ୟ କାହାକୁ ଦେଇଛି । ସେ କାଗଜ ପ୍ରେସରେ ଖର୍ଚ୍ଚ ହୋଇ ନାହିଁ । ପଣ୍ଡିତ ଆକୁଳ ମିଶ୍ରେ ଯେଉଁ ଆଶଙ୍କା କରିଥିଲେ ତାହା ସତ ହେଲା । ଭାରି ଖରାପ ଲାଗିଲା । ମୋର ବଚଲତ ଭାବ ଯଥା-ସାଧ୍ୟ ଲୁଚାଇ ତାଙ୍କୁ କହିଦେଲି ରଙ୍ଗଲାଲ ବାବୁଙ୍କୁ ନୀଳକଣ୍ଠ ବାବୁ ମୋ ଆଗରେ କହିଛନ୍ତି ସବୁ ଟଙ୍କା ସେ ଦେବେ ବୋଲି । ରଙ୍ଗଲାଲ ବାବୁ ଏ ପରିସ୍ଥିତିରେ ଯାହା କରିବା କଥା ଠିକ ବିଚାରୁଛନ୍ତି ତାହା କରନ୍ତୁ । ମୋର ଆଉ କିଛି କହିବାର ବା କରିବାର ନାହିଁ । ସେ ଭଦ୍ର ଲୋକଟି ରଙ୍ଗଲାଲ ବାବୁଙ୍କ ଗୁମାସ୍ତା, ମୋ ପାଖରେ କିଛିଦିନ କାମ କରିଥିଲେ, ଏବଂ ମୁଁ ତାଙ୍କୁ ନେଇ ରଙ୍ଗଲାଲ ବାବୁଙ୍କ ପାଖେ ରଖାଇଥିଲି । ତାଙ୍କୁ ଦି ଘଡ଼ିରେ ମୋ ସାଙ୍ଗେ ଖୁଆଇ ସନ୍ଧ୍ୟା ଗାଡ଼ିରେ ପଠାଇଦେଲି । ସେ ମୋ ସଙ୍ଗେ କଥାବାର୍ତ୍ତା ପ୍ରସଙ୍ଗରେ କହିଲେ, ନୀଳକଣ୍ଠ ବାବୁ କହିଛନ୍ତି, ମୋତେ କଟକ ଡାକି ଆଣିଲେ ସେ ଏ କଥା ତୁଟାଇ ଦେବେ । ସେ କଥା ହେବ ନାହିଁ ବୋଲି ତାଙ୍କୁ ଶୁଣାଇ ଦେଲି ।

ତାର ପ୍ରାୟ ହପ୍ତାକ ପରେ ଜଣେ ଟାଇପବାଲା (କପିଲ) ଓ ଦୁଇଜଣ କମ୍ପୋ-ଜଟର ଆସି ସେଇ କଥା କହିଲେ । ସେମାନଙ୍କର କିଛି ପ୍ରାପ୍ୟ ଥିବା ସେ ଜାଣନ୍ତି ନାହିଁ । ମୁଁ ଯାଇଁ ତାଙ୍କୁ ବୁଝାଇ ଦେଇ ଆସିଲେ ଯାହା କରିବେ । ତାଙ୍କୁ କହିଲି, ତାଙ୍କର ଯାହା ଅଛି ମୁଁ ଦେଇ ପାରେ କଟକ ଯାଇ ପାରିବି ନାହିଁ । ପ୍ରତ୍ୟେକଙ୍କୁ ପାଞ୍ଚଟଙ୍କା ଦଶଟଙ୍କା ଦେଇ ବିଦା କରି ଦେଲି । ଦୈବାତ ସେଦିନ ମୋ ପାଖରେ କିଛି ପଇସା ଥିଲା । ସେମାନଙ୍କୁ

କହୁଥିଲ ୪ । ୬ ମାସ ପରେ ଆଉ ଥରେ ଆସିଲେ ଆଉ କିଛି ଦେବ । କିନ୍ତୁ ଆଉ କେହି ଆସିଲେ ନାହିଁ । ଦୁଇ ବର୍ଷ ପରେ ଏଥିରୁ କେତେ ଜଣଙ୍କ ସଙ୍ଗେ ଦେଖା ହେଲା । ଶୁଣିଲି ତାଙ୍କ ପ୍ରାପ୍ୟର ଅଧା ଅଧି ନୀଳକଣ୍ଠ ବାବୁ ଦେଇଦେଲେ ।

## ଖୋର୍ଦ୍ଧା ଅଞ୍ଚଳରେ ସ୍କୁଲ ସ୍ଥାପନା :

ଏଣେ ମୋର ଲୋକାଲ ବୋର୍ଡ଼ କାମ ଧମାଧମ ଚାଲିଥାଏ । ରାତିରେ ଯେଉଁ ଡାକ-ବଙ୍ଗଳାମାନଙ୍କରେ ରହେ ସେଠାରେ ସ୍ଥାନୀୟ ଭଦ୍ରଲୋକଙ୍କର ବୈଠକ ହୁଏ ; ଖାନାପିନା ମଧ୍ୟ ହୁଏ , ହ୍ୟାଣ୍ଡନୋଟ ଦେଇ ଟଙ୍କା ଆଦାୟ ହୁଏ ଏବଂ ସ୍ଥାନୀୟ ଲୋକଙ୍କର ଗଣ୍ଡଗୋଳର ସମାଧାନ ହୁଏ ; ସବୁ ଶେଷରେ ଧମାଧମ ଖେଳ ବି ହୁଏ । ତିନୋଟି ସ୍ଥାନରେ ୮ ନୋଟି ମାଇନର ସ୍କୁଲ ପ୍ରତିଷ୍ଠା କରିବାର ଯୋଗାଡ଼ ଚାଲିଥାଏ, ଏବଂ ଗୋଟିଏ ହାଇସ୍କୁଲର ।

ହାଇସ୍କୁଲଟିର ଶୁଭ ହିଆଗମ ସବୁ ପ୍ରଥମେ । ତାହା ଟାଙ୍ଗୀରେ, ଆମ ଗାଁଠାରୁ ପ୍ରାୟ କୋଡ଼ିଏ ମାଇଲ ଦୂରରେ ଗଞ୍ଜାମ ଟ୍ରଙ୍କ ରୋଡ଼ରେ । ପ୍ରାଇମେରୀ ସ୍କୁଲ ଏବଂ ଗ୍ରାମ୍ୟ ସଡ଼କ ପରିଦର୍ଶନରେ ଯିବା ଅବସରରେ ଦିନେ ଟାଙ୍ଗୀ ମାଇନର ସ୍କୁଲରେ ଯାଇଁ ପଶିଲି । ସେଠାରେ ହେଡ଼ ମାଷ୍ଟର ଓ ଆସିଷ୍ଟାଣ୍ଟ ହେଡ଼ମାଷ୍ଟର ଦୁଇଜଣଯାକ ଯୁବକ ; ମୋଠାରୁ କିଛି କିଛି ସାନ ହେବେ । ତାଙ୍କ ଦୁଇଜଣଙ୍କୁ ଦେଖି ମନରେ ସ୍ୱତଃ ତାଙ୍କ ପ୍ରତି ଗୋଟିଏ ଆକର୍ଷଣ ହୋଇଗଲା । ତାଙ୍କ ସଙ୍ଗେ କଥାବାର୍ତ୍ତାରେ ଦେଖିଲି, ମୋ କଥାର ପ୍ରଭାବ ତାଙ୍କ ଉପରେ ପଡ଼ୁଛି । ତାଙ୍କ ସଙ୍ଗେ ଆସି ମିଶିଗଲେ । ପାଖର ଗୋଟିଏ ଗାଁ ବଡ଼ପାଡ଼ାର ବ୍ରଜ ବନ୍ଧୁ ଦାସେ । ସେ ମୋର ପୂର୍ବ ପରିଚିତ । ୧୯୨୧ଠାରୁ ସେଙ୍କ ସଙ୍ଗେ କଂଗ୍ରେସ ପ୍ରଚାର କରିଥିଲି । ଖଦୀ ଦୋକାନଟିଏ ତାଙ୍କଦ୍ୱାରା ଜଟଣୀରେ କରାଇଥିଲି । ଦିନେ ଏ ତିନିଜଣଙ୍କ ସଙ୍ଗେ ବସି ଗପ୍ପ ଗପ୍ପ ମନରେ ଗୋଟାଏ ଖିଆଲ ଆସିଲା, ଏଠାରେ ଗୋଟାଏ ହାଇସ୍କୁଲ ହୁଅନ୍ତା । ବ୍ରଜବନ୍ଧୁ ମୋ କଥାରେ ଆନ୍ତରିକ ଭାବେ ଅନୁମୋଦନ କଲେ । ହେଡ଼ମାଷ୍ଟର ରାମ ଓ ସହକାରୀ ନରସିଂହ ତିନିଏ ଦୋହୋ ପାଞ୍ଚ ହେଉଥାନ୍ତି । ରାମ ଆଇ.ଏ . ପାସ କରି ଥାନ୍ତି । ନରସିଂହ ମାଟ୍ରିକ । ହାଇସ୍କୁଲ ହେଲେ ସେଙ୍କର କି ଲାଭ ! ଏମାନଙ୍କୁ ଭଲଆ ମାଷ୍ଟର ଚାକିରି ଗୋଟେ ଲେଖାଏଁ ମିଳିଲେ ମିଳନ୍ତା ପର । ବ୍ରଜ ତ ମ୍ୟାଟ୍ରିକ ପାସ କରିବା ପର୍ଯ୍ୟନ୍ତ ପାଠ ଛାଡ଼ି କଂଗ୍ରେସ ବାଲା ; ତେଣୁ ସେ ସେକ୍ରେଟାରୀ ହୋଇ ପାରିବେ । ପରେ ତ ଏତେ ଯୋଗ୍ୟତା ଥିବା ଲୋକ ଦେଶର ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ହୋଇ ପାରିଲେ । କିନ୍ତୁ ଯେ ଚାକିରି କରିବେ ତାଙ୍କର ପାଠ ଯୋଗ୍ୟତା ଥିବା ଦରକାର । ଏ ଦୁହିଁଙ୍କ ମନରେ ଗୋଟାଏ ଉଚ୍ଚାକାଂକ୍ଷା ଜାଗ୍ରତ କରାଇଲି । ପ୍ରାଇଭେଟ୍ ପରୀକ୍ଷା ଦେଇ ବି.ଏ. ପାସ କରିଦେଲେ ଏବଂ ଟ୍ରେନିଂ ନେଇ ଗଲେ ହେଡ଼ମାଷ୍ଟର ଚାକିରି ତ ନିଶ୍ଚୟ ମିଳିବ । ଦୁହେଁଯାକ ଏଥିରେ ପ୍ରଭାବିତ ହୋଇଗଲେ । ଏକମାତ୍ର ପ୍ରତିବନ୍ଧକ ବେଶ୍ୟାଧର ପଟ୍ଟନାୟକେ । ସେ ମାଇନର

ସ୍କୁଲର ସେକ୍ରେଟାରୀ ; ହାଇସ୍କୁଲର ସେ ସେକ୍ରେଟାରୀ ହେବେ ତ ! ବ୍ରଜବାବୁ ସେ ପଦ ନେଇ ଯାଇ ପାରନ୍ତି । ବ୍ରଜଙ୍କ ସଙ୍ଗେ ତାଙ୍କର ମନ ମିଳେ ନାହିଁ । ପଣ୍ଡନାୟକେ ମୋ ପ୍ରସ୍ତାବରେ ଆଗରୁ ପଡ଼ିଥାନ୍ତି । ତାଙ୍କୁ ମଙ୍ଗାଇବା ଭାର ମୁଁ ନେଲି । ସେଇଦିନ ରାତରେ ଟାଙ୍ଗୀ ଡାକ-ବଙ୍ଗଳାରେ ଆମେ ସଂକଳ୍ପ କରି ଦେଲୁ, ଆସନ୍ତା ବର୍ଷାରମ୍ଭରୁ ହାଇସ୍କୁଲ କ୍ଲାସ ଖୋଲା ହେବ । ଇନ୍‌ସ୍ପେକ୍ଟର ଓ ଡିରେକ୍‌ଟରଙ୍କୁ ମଙ୍ଗାଇବା ଭାର ମୁଁ ନେଲି । ଆଉ ରହିଲା ଘର କଥା । ଦେଖିବା ବୋଲି ସେମାନଙ୍କୁ ବିଦାୟ ଦେଲି । ହାଇସ୍କୁଲ କରିବାକୁ ଯଦି ମନ ଦୃଢ ହେଲା, ତେବେ ଘର କିବା କଥା ବୋଲି ମୁଁ ଉଡ଼ାଇ ଦେଇଥାଏ ।

ସେ ରାତରେ ଡାକବଙ୍ଗଳାର ପାଖ ଘରେ ଥାନ୍ତି ଏକଜିକ୍ୟୁଟିଭ୍ ଇଞ୍ଜିନିୟର ବିଜୟରାମ ମିଶ୍ରେ । ସେ ମୋ ୨ କଲେଜ ଦେଖିବୁ ଚାହାନ୍ତି । ମୋର ଦୁଇ ବର୍ଷ ତଳେ ପଢୁଥିଲେ, ମହେନ୍ଦ୍ର ମିଶ୍ରେ ଓ ବାଞ୍ଛାନିଧି ସାହୁଙ୍କ ସଙ୍ଗେ । ଏହି ଦୁଇଜଣଙ୍କ ସଙ୍ଗେ ସେ ମଧ୍ୟ ଆସି ବସନ୍ତି ମୋଠାରୁ ହାଇକୋଟିଆ କଥା ଶୁଣିବାକୁ । ମୋ ପାଖରୁ ଡାକବଙ୍ଗଳାକୁ ବ୍ରଜ, ରାମ ଓ ନରସିଂହ ହେରିକା ଯିବା ପରେ ସେ ଆସିଲେ ଏବଂ କହିଲେ, "ଆଜ୍ଞା, ଆପଣଙ୍କର ତ କଲେଜ ବେଳର ଢଙ୍ଗ ଯାଇନାହିଁ ।" ସ୍ୱା ପୂର୍ବରୁ ସେ ମୋତେ ଦେଖିଥିଲେ ୧୯୨୮ରେ ୧୮ ବର୍ଷ ପୂର୍ବେ । ସ୍ୱା ଭିତରେ ସେ ପାଟଣାରୁ ଇଞ୍ଜିନିୟରିଂ ପାସ କରି ଆସିଷ୍ଟାଣ୍ଟ ଇଞ୍ଜିନିୟର ଭାବେ କେତେ ବର୍ଷ ରହି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଯାଏ ଯାଇ ପାରିଥାନ୍ତି । ସ୍ୱାଙ୍କର ୪/୫ ବର୍ଷ ପୂର୍ବ ପର୍ଯ୍ୟନ୍ତ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅର ଚାକିରି ଥିଲା ସାହେବମାନଙ୍କର ଇଜାରମହାଲ । ମୁଁ କହିଲି, "ବିଜୟରାମ ! ତୁମେ ସିନା ଏତେବେଳକୁ ସାହେବ ହୋଇଗଲଣି, ମୁଁ ୧୯୨୮ରେ ଯୋଉଥା ଏବେଳେ ବି ସେଇଆ । ଢଙ୍ଗ ବଦଳିବ କୁଆଡ଼ୁ ? ଖରବାହି ଗଧ ଓ ବଳଦ ତିନବର୍ଷରେ ଯାହା ୧୩ ବର୍ଷରେ ବି ସେଇଆ ।" ଏଇ ଢଙ୍ଗରେ କଥାବାର୍ତ୍ତା ଆରମ୍ଭ ହୋଇ ରାତ ୧୨ଟାରେ ସଭବା ପୂର୍ବରୁ ସ୍ଥିର ହୋଇଗଲା, ମୋ ଉଦ୍ୟୋଗରେ ଯଦି କାନ୍ଥ ପାଇଁ ପଥର ସଂଗ୍ରହ ହୋଇଯିବ ତେବେ ଘରର ଯାହା ସିମେଣ୍ଟ୍ ଓ କାଠ କାମ ଦରକାର ହେବ ସେ ତାହା ଯୋଗାଇ ଦେବେ । ସେ ତାଙ୍କ କଥା ରଖିଲେ । ସେଇ ବର୍ଷ ରାମ ବି.ଏ. ପରୀକ୍ଷା ଓ ନରସିଂହ ଆଇ.ଏ. ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଲେ । ସ୍ୱା ପରେ ପାଠ୍ୟ ବର୍ଷ ଆରମ୍ଭ ହେଲା ବେଳକୁ ହାଇସ୍କୁଲର ପ୍ରଥମ କ୍ଲାସ ଆରମ୍ଭ ହୋଇଗଲା । ବେଣୁଧର ବାବୁ ସକ୍ରିୟ ସହଯୋଗ ନ କଲେ ହେଁ କୌଣସି ପ୍ରତିରୋଧ କଲେନାହିଁ । ସେ ପର୍ଯ୍ୟନ୍ତ ଯେତେ ହାଇସ୍କୁଲ ହୋଇଥିଲା ତା' ମୂଳରେ ଥିଲେ ସ୍ଥାନୀୟ ପ୍ରଧାନ ପ୍ରଧାନ ଲୋକେ । ଲଫଙ୍ଗା ଟୋକାଙ୍କ ଦ୍ୱାରା ହାଇସ୍କୁଲ ସ୍ଥାପନା ଟାଙ୍ଗିରେ ସର୍ବପ୍ରଥମ ; ଆମ ଜିଲ୍ଲାରେ ଖାଲି ନୁହେଁ ସମଗ୍ର ଓଡ଼ିଶାରେ । ମୁଁ ହେଲି ତା'ର ପ୍ରେସିଡ଼େଣ୍ଟ ଓ ବ୍ରଜବନ୍ଧୁ ସେକ୍ରେଟାରୀ । ଏବେ ସେ ସ୍କୁଲଟି ଆମ ଜିଲ୍ଲାର ଭଲ ସ୍କୁଲମାନଙ୍କ ଭିତରୁ ଗୋଟିଏ । ୪/୫ ବର୍ଷ ପରେ ସ୍ଥାନୀୟ ଇଷ୍ଟ ଦେବତା 'ବଳରାମ'ଙ୍କ ନାମରେ ତାକୁ କଲୁଁ, "ବଳରାମ ବିଦ୍ୟାପୀଠ" । ଶିକ୍ଷା ପ୍ରସାର ଓ

ହାଇସ୍କୁଲ ପ୍ରତିଷ୍ଠା ବିଷୟରେ ରାମଚନ୍ଦ୍ର ଶ୍ରୀଚନ୍ଦନ ଓ ନରସିଂହ ଦାସଙ୍କର ଉତ୍ସାହ ଅବ୍ୟାହତ ରହିଲା । ସେ ଦୁଇଜଣଯାକ ପ୍ରାଇଭେଟ୍ ପରୀକ୍ଷା ଦେଇ ବି.ଏ.,ଡ଼ି.ଇଡ଼ି. ହୋଇଛନ୍ତି ; ଏବଂ ନିକଟବର୍ତ୍ତୀ ଅଞ୍ଚଳରେ ନିଜ ଉଦ୍ୟମରେ ତିନୋଟି ହାଇସ୍କୁଲ ସ୍ଥାପନ କରି ବର୍ତ୍ତମାନ ସେ ଦୁହେଁ ସେଥିରୁ ଦୁଇଟିର ହେଡ଼ମାଷ୍ଟର ଭାବରେ ପ୍ରତିଷ୍ଠା ଅର୍ଜିଛନ୍ତି । ( ୧୯୭୭ )

ପ୍ରସ୍ତାବିତ ତିନୋଟି ମାଇନର ସ୍କୁଲରୁ ଗୋଟିକର ଭାର ନେଇଥିଲେ ମୋର ଜଣେ ଆତ୍ମୀୟ । ଟିକିଏ ବିଳମ୍ବରେ ହେଲେ ମଧ୍ୟ ସେ ସେଠାରେ ମାଇନର ସ୍କୁଲ ପ୍ରତିଷ୍ଠା କଲେ ଏବଂ ଐକାନ୍ତିକ ଚେଷ୍ଟାରେ ନିଜର ସର୍ବସ୍ୱ ଅର୍ପଣ କରି ସେଠାରେ ଏବେ ଗୋଟିଏ ହାଇସ୍କୁଲ ସ୍ଥାପନା କଲେଣି । ହାଇସ୍କୁଲ ପାଇଁ ତ୍ୟାଗ ସ୍ୱୀକାର କରିବାରେ ସେ ସମସ୍ତଙ୍କର ନମସ୍ୟ । ହାଇସ୍କୁଲଟି ହୋଇଛି ନାଚୁଣୀଠାରେ ; ତା'ର ପ୍ରତିଷ୍ଠାତା ଶ୍ରୀ ଗୋଦାବରୀଶ ମହାପାତ୍ର, ମୋର ମାମୁଁ ପୁଅ ଭାଇ ।

ଆଉ ଦୁଇଟି ମାଇନର ସ୍କୁଲର ଭାର ପଡ଼ିଗଲା ଖୋଦ୍ ମୋ ଉପରେ । ମୋର ସମସ୍ତ ନ ଥାଏ କି ସମ୍ବଳ ନାହିଁ । ଭଗବାନ୍ ବିଚିତ୍ର ଭାବରେ ଏ ଦୁଇଟି ଅନୁଷ୍ଠାନ ବସାଇ ଦେଲେ । ପ୍ରଥମଟି ଆମ ନିଜ ଗ୍ରାମରେ । ଏଠାରେ ପ୍ରାଇମେରୀ ସ୍କୁଲଟି ଅତି ପୁରୁଣା । ମୁଁ ସେଠାରେ ପ୍ରାଇମେରୀ ଶେଷ ଶ୍ରେଣୀରେ ପଢ଼ୁଥିଲା ବେଳେ ମୋର ନନା (ପିତା) ପାର୍ଶ୍ୱି ଦେଖାଦେଖି କରି ଭଲପାଦନ ବାଛି ଗ୍ରାମବାସୀଙ୍କର ଦସ୍ତଖତ ସଂଗ୍ରହ କରି କର୍ତ୍ତୃପକ୍ଷଙ୍କ ପାଖକୁ ଖଣ୍ଡିଏ ଦରଖାସ୍ତ ସାଫିକରି (ପ୍ରାୟ ୩ ଶହ ଲୋକଙ୍କର ଦସ୍ତଖତ ଥାଏ) ଲଫାପାରେ ମୁଦ ଠିକଣା ଲେଖି ସ୍କୁଲକୁ ଆସିଲେ ଏବଂ ହେଡ଼ ପଣ୍ଡିତଙ୍କୁ କହିଲେ, "ଆଜି ଏ ଦରଖାସ୍ତଟି ଡାକରେ ପଡ଼ିଲେ ଆମ ଏଠାରେ ମାଇନର ସ୍କୁଲ ନିଶ୍ଚୟ ହେବ ।" ଆମ ଗାଁରେ ଡାକଘର ନ ଥାଏ ; ନିକଟବର୍ତ୍ତୀ ଡାକଘର ଖୋର୍ଦ୍ଧାରେ । ଗାଁରେ ସାଇକଲ୍ ବି ଖଣ୍ଡିଏ ନ ଥାଏ । କିଏ ଏ ଦରଖାସ୍ତ ନେଇ ଆଜି ଡାକରେ ପକାଇବ ! ଆମ କ୍ଲାସରୁ ସ୍ୱେଚ୍ଛାସେବକ ଖୋଜାଗଲା । "କିଏ ଧାଇଁ ଧାଇଁ ଯାଇ ଏହାକୁ ଡାକଘରେ ପକାଇ ଫେରି ଆସିବ ଠିଆହୁଅ" ବୋଲି ହେଡ଼୍ ପଣ୍ଡିତ ଆହ୍ୱାନ କଲେ । ମୁଁ ଓ ମୋର ସାଥି ଗୌର କିଶୋର ବଳୀୟାରସିଂହ ଠିଆ ହେଲୁଁ । ଗୌର ମରିଗଲାଣି । ତାକୁ ୧୨ ବର୍ଷ । ମୋତେ ଦଶ ପୂରି ଏଗାର ମାସେ ହେଲା ପଶୁଥାଏ । ଦୁହେଁ ଯାକ ଧାଇଁଲୁ । ଚିଠି ପକାଇ ଦେଇ ଫେରିଲା ବେଳକୁ ମୋ ମାମୁଁ ହାବୁଡ଼େ ପଡ଼ିଲେ । ସେ ଖାସ୍‌ମାହାଲ ଅଫିସରେ ହେଡ଼୍ କିରାଣୀ ଚାକିରି କରୁଥିଲେ ; ସମସ୍ତେ ଯିବା ପରେ ଅଫିସରେ ତାଲା ଦେଇ ସଡ଼କକୁ ଓହ୍ଲାଇଥାନ୍ତି । ଆମ କାମ କଥା ଶୁଣି ନନାଙ୍କୁ ଗୁଡ଼ାଏ ଗାଳିଦେଲେ ଏବଂ ଏତେ ବେଳେ ଗାଁକୁ ନ ଯାଇ କାଲି ସକାଳେ ଯିବ ବୋଲି ତାଙ୍କ ବସାକୁ ଡାକିଲେ । ନନା ଓ ମାଷ୍ଟ୍ରେ ନିଶ୍ଚୟ ବାଟକୁ ଆସିଥିବେ, ଆମେ ନ ଗଲେ ଭାରି ଖରାପ ହେବ ବୋଲି ଆମେ ଆପତ୍ତି କରିବାରେ ସେ ଆମକୁ ବସାକୁ ନେଲେ କ'ଣ ଟିକିଏ ଖାଇ ଯିବ ବୋଲି । ଜଳଖିଆ କରୁ କରୁ ରାତି

ହୋଇଗଲା । ତାଙ୍କ ପାଖକୁ ଆସିଥିବା ଜଣେ ଶଅରକୁ କହିଲେ, "ପିଲାଙ୍କୁ ବରୁଣେଇ ଜଙ୍ଗଲ ପାର କରାଇ ଦେଇ ଘରକୁ ଯିବୁ ।" ତା'ର ସାଙ୍ଗେ ଦେଢ଼ ମାଇଲ୍ ଆସିଲୁଁ । ଆଗରେ ବରୁଣେଇ ମୁଣ୍ଡିଆ, ସେତେବେଳେ ଦୁଇପଟେ ଖୁବ୍ ଜଙ୍ଗଲ ; ସ୍ୱାଧୀନତା ତ ହୋଇ ନଥାଏ ତେଣୁ ଜଙ୍ଗଲ ଥାଏ ଏବଂ ବାଘ ଠାରୁ ଆରମ୍ଭ କରି ସବୁ ପ୍ରକାର ବନ୍ୟଜନ୍ତୁ ଥାନ୍ତି । ଅଧମାଇଲ୍ ଆଗରୁ ଶଅରର ନିଜ ଗାଁ ହୋଇ ଯାଇଥିଲା । ସେଠିକି ଦେଖୁ ସେ ବାପୁଡ଼ା ଅନବରତ ଗୁଁ ଗୁଁ ହେଉଥାଏ, "ପିଲାଙ୍କୁ ଟିକିଏ ଅବଧରିଛୁ ବୋଲି କ'ଣ ନା ଏ ପିଲା ଦୁଇଟାଙ୍କୁ ବାଜପୁରରେ ଛାଡ଼ିଦେଇ ଆ । ହଁ ! ବଡ଼ ଲୋକଙ୍କୁ ତ ଉତ୍ତର ନାହିଁ ! ଆମେ ମଳମୁଣ୍ଡିଆ, ଆମ ସୁଖ ଦୁଃଖ କିଏ ବୁଝୁଛୁ !" ମୋତେ ତା କଥା ଅସହ୍ୟ ହେଲା । ମୁଁ ରାସ୍ତା ଉପରେ ବସିପଡ଼ି ଧରି ବସିଲି, ସେ ନ ଫେରିଲେ ଆମେ ଅଗକୁ ପାଦେ ହେଲେ ଯିବୁନାହିଁ । ବିଚରା ବହୁତ କାକୁତି ମିନତି ହେଲା । ଶେଷକୁ ଗୌର ଯୋଡ଼ାଏ ଟେକା ଦୁଇ ହାତରେ ଧରି ତାକୁ ଧମକାଇଲା, ତୁ ଯଦି ନ ଫେରିବୁ, ଗୋଟା ଗୋଟା କରି ଏ ଯୋଡ଼ାକ ତୋ ମୁଣ୍ଡକୁ ଲକ୍ଷ କରିବ । ଆମେ ମାମୁଁଙ୍କୁ ତା' କଥା କହିବୁ ନାହିଁ ବୋଲି ନିର୍ଭର ଦେବାରୁ ସେ ଗଲା । ପାଞ୍ଚ ମିନିଟ୍ ପରେ ଆମେ ପଶ୍ଚାତ୍-ତାପ କଲୁଁ । ଘୋର ଜଙ୍ଗଲ, ଅନ୍ଧାର ରାତି । ସତରେ କି ମିଛରେ କେଜାଣି, ଆମ ଦୁହିଁଙ୍କୁ ଆଗରେ ଗୋଟେ ବାର୍‌ହା ଦିଶିଲା । ଗୌର ସେଇ ଆଡ଼କୁ ଧରିଥିବା ଦୁଇଟାଯାକ ଟୋଲୁଅ ଫୋପାଡ଼ି ଦେଇ ଧାଇଁଲା । ମୁଁ ପଛରେ ଧାଇଁଲି । ଆଖି ମୁଜିଦେଲେ ଡର ମାଡ଼େ ନାହିଁ ବୋଲି ମୁଁ ଶିଖିଥାଏ । ସେହିପରି ଧାଇଁ ଧାଇଁ ଦୁହେଁଯାକ ଏକ ସଙ୍ଗେ ନୟନଯୋଡ଼ରେ ପଡ଼ିଲୁଁ । ସେଠାରୁ ଉଠି ଲସର ପସର ହୋଇ ଆଗେଇଲା ବେଳେ ନନାଙ୍କ ସ୍ୱର ଶୁଭିଲା । ସେ ବିଦଗ୍‌ଧ ଚନ୍ଦ୍ରାମଣିରୁ ଗୋଟାଏ ଛାନ୍ଦ ଗାଉଥାନ୍ତି । ଭୟ କୁଆଡ଼େ ଗଲା, ଅଣ୍ଟୁର ଝଣ୍ଡିଆ ମଧ୍ୟ । ପ୍ରାୟ ୧୪/୧୫ ମିନିଟ୍ ପରେ ତାଙ୍କ ପାଖେ ଯାଇ ପହଞ୍ଚିଲା ବେଳକୁ ସେ, ସ୍କୁଲର ଦୁଇଜଣଯାକ ମାଷ୍ଟ୍ରେ ଓ ଗାଁର ଆଉ ଦୁଇଜଣ ଗୋଟାଏ ବରଗଛ ମୂଳେ ବସିଛନ୍ତି, ଟିକିକ ପରେ ଆଗେଇବେ ବୋଲି ! ତାଙ୍କଠାରୁ ଶୁଣିଲୁ ସେ ବରୁଣେଇ ମୁଣ୍ଡିଆ ଆରପଟ ଯାଏଁ ଯାଇଥାନ୍ତେ ଓ ଆମେ ମାମୁଁଙ୍କ ବସାରେ ରହିଗଲୁଁ ବୋଲି ଦେଖି ସେଇଠାରୁ ଫେରିଥାନ୍ତେ । ନନା ଆମ ଦୁହିଙ୍କ ଯାକୁ ଜାକି ପକାଇ କହିଲେ, "ଆଜି ଚଠି ଡାକରେ ଗଲାଗଲା । ଆମ ଗାଁରେ ନିଶ୍ଚୟ ମାଇନର ଇସ୍କୁଲ ହେବ ।" ସେ୍ ୧୯୧୫ର କଥା, ନନା ୧୯୧୮ରେ ମଲେ । ଶେଷ ପର୍ଯ୍ୟନ୍ତ ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ଦରଖାସ୍ତ ନିଶ୍ଚୟ ଫଳ ହେବ ।

୧୯୪୧ ଶେଷ ସୁଦ୍ଧା କିଛି ହୋଇନଥାଏ । ଆମ ଗାଁରେ ସ୍ତୁରଜଣ ଖୁବ୍ ବଡ଼ ଲୋକ । ଟିକିଏ ଉଦ୍ୟମ କରିବାକୁ ଜଣକ ପାଖକୁ ଗଲେ ବାକି ତିନିଜଣ ଯାକ ପ୍ରତିବନ୍ଧକ ସୃଷ୍ଟି କରୁଥାନ୍ତି । ମୋର ତ ନିଜ ରକ୍ଷଣ ଅସମ୍ଭବ, ନନାଙ୍କ ଦରଖାସ୍ତ ସଫଳ କରିବାକୁ ମନରେ ବେଳେ ବେଳେ କାମନା ଆସିଲେ ବି କିଛି କରିପାରିନଥାଏ । ୧୯୩୯ରେ ଦିନେ

ଏ କଥା ଉଠାଇ ଥିଲି ଯେ, ଜଣେ କହିଲେ, ତାଙ୍କ ନାମରେ ସ୍କୁଲ ହେଲେ ସେ ଘରଖଣ୍ଡ କରାଇ ଦେବେ; ଆଉ ଜଣେ କହିଲେ, ତାଙ୍କ ନାମରେ ହେଲେ ସେ ୧୦ମାଣ (ପ୍ରାୟ ୪ ଏକର) ଜମି ଦେବେ। ମୋର ଦୃଢ଼ ବିଶ୍ୱାସ ଥାଏ, ତାତ୍କାଳିକ କୌଣସି ବଡ଼ ଲୋକଙ୍କ ନାମରେ ସ୍କୁଲ କଲେ ଭବିଷ୍ୟତରେ ନିଶ୍ଚୟ କୁଫଳ ଫଳିବ। ମୋ କଥାର ସତ୍ୟତା ପ୍ରମାଣ କରିବାକୁ ମୁଁ ୩/୪ଟା ସ୍କୁଲର ନାମ କହେ, ସ୍ଥିତାବସ୍ଥା ଲାଗି ରହିଥାଏ।

୧୯୪୨ ଖ୍ରୀଷ୍ଟାବ୍ଦ; ଖରାଦିନ। ମୁଁ ଆମ ଦାଣ୍ଡ ଦୁଆରେ ଖଟିଆ ଖଣ୍ଡେ ପକାଇ ତା ଉପରେ ମଶାରି ଟାଣି ଶୋଇଛି। ନିଦ ହୋଇ ଯାଇଥାଏ। ହଠାତ୍ ଅନୁଭବ କଲି ମୋ ଗୋଡ଼ରେ କିଏ ହାତ ମାରୁଛି। ଚମକି କରି ଉଠି ପଡ଼ିଲି, ଦେଖିଲି ଦେବାଙ୍କ ବାଦା ଆନନ୍ଦିଆ ବୋଲି ଗୋଟିଏ ଦରିଦ୍ର ଶ୍ରମଜୀବୀ। ସେତେବେଳକୁ ଏଗାରଟା ବାଜି ଯାଇଥାଏ। ଗାଁ ନମ୍ବର ହୁଏ ୧୦ଟା ପୂର୍ବରୁ। ଏତେ ରାତିରେ କାହିଁକି ଆସିଛୁ ବୋଲି ପଚାରିବାରେ ସେ କହିଲା, "ବାବୁ! ଆପଣ ପିନା ଖାଇଛନ୍ତି ବୋଲି ଆପଣଙ୍କ ନିଦ ହେଉଛି. ମୁଁ ତ ଆଜି ସକାଳୁ କିଛି ଖାଇନାହିଁ, ନିଦ ଆସିବ କୁଆଡ଼ୁ, ଚାଲି ଆସିଲି ବାବୁଙ୍କ ଗୋଡ଼ରେ ଟିକିଏ ହାତ ମାରିବାକୁ।" ମୁଁ ଶେଯରୁ ଉଠି ପଡ଼ିଲି ଏବଂ ଆମ ଦୁଆରେ ଡାକିଲି। ଦୁଆର ଫିଟିଲା। ଅଧଘେରେ ଚୁଲ୍ଲାରେ ଦିଆ ହୋଇ ପଡ଼ିଥିବା ଦୁଧରୁ ଗିନେ ଓ ଗୁଡ଼ ଟିକିଏ ପକାଇ ଆଣି ଖା ବୋଲି କହିଲି। ସେ କହିଲା, "ମୁଁ ଖାଇଲେ କଣ ମୋ ପିଲାଙ୍କ ପେଟ ପୂରିଯିବ ନା ଆମ ଗାଁର ଲୋକଙ୍କର ପେଟ ପୂରିଯିବ?" ମୁଁ କହିଲି, "ନ ଖାଇଲେ କଣ ସମସ୍ତଙ୍କ ପେଟ ପୂରିବ? ଆଗ ଖା; ତା ପରେ କଥାବାର୍ତ୍ତା ହେବା କ'ଣ କରିବା।" ଘରକୁ ଯାଇ ପାଣି ଗିଲାସେ ଆଣି ତାକୁ ଦେଲି, ବହୁତ କହିବାରୁ ସେ ଖାଇଲା।

ଆମ ଗାଁରେ ଚାରି ପାଞ୍ଚ ଜଣଙ୍କ ଘରେ କୋଡିଏ ତିରିଶ ଲେଖାଏଁ ଧାନ ଥାଏ; ଆଉ ଦଶ ବାର ଜଣଙ୍କ ପାଖେ ବର୍ଷକର ଖାଇବା ବାଦ୍ ୫/୭ ଭରଣ ଲେଖାଏଁ ଧାନ ଥାଏ। ସରକାର ଗାଁରୁ ପାଞ୍ଚ ସାତ ଭରଣ ଧାନ ଜବତ କରି ତାଲା ପକାଇଥାନ୍ତି। ସରକାରଙ୍କର ଦର ଘୋଷଣା ହୋଇଥାଏ, ଟଙ୍କାକୁ ୧୦ସେର ଧାନ। ସ୍ୱାକୁ ଖୋଳା ବା ଜଟଣୀ ନେଇ କମା କରନ୍ତି, ଏବଂ ଗାଁରେ, ବହୁତ ଲେଖାଲେଖି କଲେ, ଆଣି ବିକନ୍ତି ପାଞ୍ଚସେର ଦରରେ। ସୁତରାଂ ସରକାରଙ୍କ ଖରଦ ଦର ଟଙ୍କାକୁ ୧୦ସେର ହେଲେ କଣ ହେଲା, ଖାଉଟିଙ୍କ ପାଇଁ ଦର ହୋଇଥାଏ ପାଞ୍ଚସେର। ଆହୁରି ଦର କମିବ ବୋଲି ଆଶା କରି ମହାଜନମାନେ ଖାଉଟିଙ୍କୁ ଦେବା ପାଇଁ ଧାନ ବାହାର କରୁନଥାନ୍ତି। ମୋର ମନରେ ଗୋଟାଏ କଳ୍ପନା ଆସିଲା, ଲୋକଙ୍କୁ ଏକାଠି କରି ମହାଜନମାନଙ୍କୁ ବାଧ୍ୟ କରି ସରକାରୀ ରେଟରେ ଧାନ ବିକାଇବି। ଆନନ୍ଦିଆକୁ କହିଲି, "ଯଦି ଭୋକରେ ଲୋକଙ୍କୁ ନିଦ ନ [illegible] ତେବେ ଯା, ସମସ୍ତଙ୍କୁ ସ୍କୁଲ ପଡ଼ିଆରେ ଏକାଠି କର।" ବିଶ୍ୱାସ ଥିଲା ସେ କାଲି ସଭା କରିବ ବୋଲି କହିବ, ତା ନ କହି ସେ ସାଙ୍ଗେ ସାଙ୍ଗେ ହଉ ବୋଲି କହି

ଗୁଲିଗଲି ଏବଂ ଘଣ୍ଟେ ଦେଢ଼ଘଣ୍ଟା ପରେ ଆସି ମୋତେ ଖବର ଦେଲା, "ଆସନ୍ତୁ, କଣି- ଖିଆ ସମସ୍ତେ ଆସି ଜମିଗଲେଣି ।" ମୁଁ ଯାଇ ଦେଖିଲି, ପ୍ରାୟ ପାଞ୍ଚଶହ ଲୋକ ବସିଛନ୍ତି । ତାଙ୍କ ଭିତରେ ଧାନ ଥିବାବାଲା କେତେଜଣ ବି ଆନ୍ତି । ଆଉ ଯେଉଁମାନେ ଆସିନଥାନ୍ତି ତାଙ୍କ ପାଖକୁ ଲୋକ ପଠାଇ ଅଣାଇବା କଷ୍ଟ ହେଲାନାହିଁ ।

ତା ପରେ କଥା ପଡ଼ିଲା । ଗାଁର ବଶିଷ୍ଟ ଲୋକ ବୃନ୍ଦ ନଟବର ପଟ୍ଟନାୟକ ମଧ୍ୟ ଆସିଥାନ୍ତି । ବହୁତ କଥା କଟାକଟି ପରେ ଗୋଟାଏ ଚାଲିନା ହେଲା । କିଏ କେତେ ଧାନ ଖାଉଟିଙ୍କ ପାଇଁ ୧୦ସେର ଭାଉରେ ଦେବେ । ବହୁତ ଭଡ଼ାଭିଡ଼ି ପରେ, କିଏ ଶହେ ବସ୍ତା, କିଏ ପଚିଶ ବସ୍ତା, କିଏ ୨୫ବସ୍ତା, ୩୦ବସ୍ତା ଦେବାକୁ ରାଜି ହେଲେ । କଣେ ତେଲି ମହାଜନଙ୍କ ଉପରେ ପଡ଼ିଲା ୩୫୦ବସ୍ତା । ତାଙ୍କ ପାଖରେ ୪କୋଠି ଧାନ ଥାଏ । ଯୁଦ୍ଧ ଘୋଷଣା ହେବାଦିନୁଁ ସେ ଧାନ ସାଇତି ରଖିଥାନ୍ତି, ଯେତେବେଳେ ହବୁଠାରୁ ମହରଗ ହେବ ବିକବେ । ଏଇବର୍ଷ ସେ ତାଙ୍କ ଘରେ ଦୁଇଟା ନୂଆ କୋଠି କରିଥାନ୍ତି । ସେ ଏକାବେଳକେ କିଛି ଦେବାକୁ ନାହିଁ କଲେ । ମୁଁ ଟିକିଏ କ'ଣ ଟାଣେଇ କହିବାରୁ ଠିଆ ହୋଇପଡ଼ି କହିଲେ, "ବାବୁ ! ମୁଁ ତୁମକୁ ଧୋଇକରି ଗୋଟିଏ ଧାନ ଦେବି ନାହିଁ ।" ମୁଁ କହିଲି, "ଧୂଆଧାନ ଆମର କ'ଣ ଦର୍କାର ? ଆମକୁ କୋଠିରୁ କାଢ଼ି ଦଗାଶୁଖିଲା ଧାନ ଦେବା ଦରକାର ।" ଦେବନାହିଁ ବୋଲି କହି ସେ ଭମଡମ ହୋଇ ଗୁଲିଗଲେ । ସେତେବେଳକୁ ସଭାରେ ପ୍ରାୟ ହଜାରେ ଲୋକ । ସମସ୍ତଙ୍କ ଆଖି ମୋ ଉପରେ ।

ମୋର ଜଣେ ଗୁରୁଜନ, ଜନୁ ଧାନବାଲା ନୁହନ୍ତି, କହିଲେ "ମହାଜନ ଯାହା କହିଲେ ଶୁଣିଲ ତ ? ଏଥର କଣ ହେବ କହ ।" ମୁଁ କହିଲି, "କଣ ହେବ ? ମୋତେ ଦିଶୁଛି ଯେ, ସମସ୍ତଙ୍କ ମନକୁ ପାଇଲେ ସିନା !" ଏକାଥରକେ ବହୁତ ଲୋକ ଏକସ୍ୱରରେ କାହି ଉଠିଲେ, "ଆପଣ କହନ୍ତୁ, ଯାହା କହିବେ ତାହା ସମସ୍ତେ ନିଶ୍ଚୟ ମାନିବେ ।" ମୁଁ କହିଲି, "କାଲି ସକାଳୁ ଏକାଳୁ ମହାଜନଙ୍କର କେହି ପାଇଟି କରିବେ ନାହିଁ ।" ସଭାରୁ ଗୋଟିଏ ମେଘଗର୍ଜନ ପରି ହରଧ୍ୱନି ଉଠିଲା । ସେଥିକରେ ସଭା ଭାଙ୍ଗିଗଲା । ସେତେବେଳକୁ ରାତି ପାଇ ଆସୁଥାଏ । ତହିଁ ଆରଦିନ ସନ୍ଧ୍ୟାରେ ସଭା ହେବ ବୋଲି ସ୍ଥିର ହେଲା ।

ମହାଜନଙ୍କର ଘୁହାଲ ପୋଗୁଠାରୁ ଆରମ୍ଭକରି ହଳିଆ ଶଗଡ଼ିଆ ପର୍ଯ୍ୟନ୍ତ ୧୭ଜଣ ଲୋକେ ଦୈନିକ ମୂଲ ଲାଗନ୍ତି । ସକାଳ ହେଲା । କେହି ଗୋଟିଏ ଆସିଲେ ନାହିଁ । ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଦାଣ୍ଡଦୁଆରେ ବସିରହି ଗତିବିଧି ଲକ୍ଷ୍ୟ କରି ଆତ୍ମସନ୍ତୋଷରେ ବେଲ ଦୁଇଘଡ଼ି ଯାଏ ମୁଁ ଶୋଇବାକୁ ଗଲି । ସାଢ଼େ ୯ଟା ବେଳେ ଉଠି ଭିତର ବରଣ୍ଡାରେ ଦାନ୍ତ ଘସୁଛି, ଅନନ୍ଦିଆ ଓ ଆଉ ଜଣେ ପଠାଣ ଟୋକା ଦୁଧିଆ ଧାଇଁଆସି ମୋତେ କହିଲେ, "ବାବୁ ! ଆମର ବସ୍ତିର ସବୁ ଭଣ୍ଡୁର ହୋଇଗଲା । ମହାଜନେ ଶଗଡ଼ରେ ଯାଉଛନ୍ତି ଖୋର୍ଦ୍ଧା ଆପଣଙ୍କ ନାଁରେ ମକଦ୍ଦମା କରିବାକୁ, ତାଙ୍କ ହଳିଆ ଲୋକା ଶଗଡ ନେଉଛି,

ଆମେ କହିବାରୁ କହିଲ, "ତାଙ୍କଠାରୁ ମୁଁ ଶହେଟଙ୍କା ଧାରେ, ମକଦମା କରିବେ ବୋଲି ଡରେଇଲେ ! ମୁଁ କରନ୍ତି କ'ଣ ?" ମୁଁ କହିଲି, 'ତାକୁ ପାଞ୍ଚଫଳରୁ ଟେକିଆଣିଲ ନାହିଁ ; ଭେଣ୍ଡା ଘୋଡ଼ାଏ ହୋଇଛ ?'

ମୋର ଦାନ୍ତଘଷା ସରିନାହିଁ । ଲୋକା ଧସ୍ତହୋଇ ଆସିଲା । ମୁଁ ପଚାରିଲି, "ହଇରେ, ଗାଁଟାଯାକୁ ହୁଡ଼ୁହୁଛୁ ?" ସେ ସେଇ ଟଙ୍କା କଥା କହିଲା । ମୁଁ ଘରୁ ମୋ ବାକ୍‌ସ ଅଣାଇଲି । ଯେଉଁଥିରେ ଖୋପରେ ଛଅଖଣ୍ଡି ପାଞ୍ଚଟଙ୍କିଆ ନୋଟ୍ କାଲି ଗୁଡରେ ପକେଟରୁ କାଢ଼ି ରଖିଥିଲି । ତା ବାହାରକର ଦେଖାଇଦେଇ କହିଲି, "ହେଉଛି ଏ ଶହକ ତୋର ହୋଇ ରହିଲା । ମହାଜନର ଟଙ୍କା ଡାଗ୍ରା ହେଲେ ସ୍କାକୁଲ ନେଇ ଦେଇଦେବୁ ।" ମୋର ଆଉ କ ଚନ୍ତା ବୋଲି କହି ସେ ତାକୁ ଧରି ଆଣିଥିବା ଦୁହିଁଙ୍କ ସଙ୍ଗେ ଖୁସିହୋଇ ଚାଲିଗଲା । ସେଉଁମାନେ କାମ ନ ପାଇ ପଡ଼ିଆ ହେବେ ତାଙ୍କ ପାଇଁ କାମ ଯୋଗାଇ ଦେବାକୁ ଦୁଇଜଣ ଧନୀଲୋକ ରାଜି ହେଇଥାନ୍ତି ।

ମହାଜନଙ୍କର ଦୁଇଟି ପୁଅ କଟକରେ ବି. ଏ. ପଢୁଥାନ୍ତି । ମୋଠାରୁ କୌଣସି ଗୁଣରେ ସେ କମ୍ ନୁହନ୍ତି ବୋଲି ପଟାଟୋପ କରନ୍ତି । ଶଗଡ଼ିଆ ଚାଲି ଆସିବାରୁ ସେଥିରୁ ଜଣେ ଶଗଡ଼ ଅଡ଼େଇ ଖୋର୍ଦ୍ଧା ଗଲେ । କ'ଣ ହେବ ବୋଲି ସମସ୍ତେ ଉତ୍କଣ୍ଠିତ ଥାନ୍ତି । ଗାଧୋଇ ଖାଇସାରି ମୁଁ ଦାଣ୍ଡଦୁଆରେ ଟେବଲର ଆସର ମେଲେଇଛୁ, ଆମ ଆଗ ଦୁଆରୀ ଭଉଣୀ ପାଲଟା ଉଠେଇ ଫୋପାଡ଼ିଦେଇ କହିଲେ, "ଖୋର୍ଦ୍ଧାରେ କ'ଣ ହେଉଛି ଯା' ବୁଝିକରି ଆସେ, ଟେବଲରେ ବସିଗଲୁ କ'ଣ ?"

ମୁଁ ଯାଇ ପହଞ୍ଚିଲି ବେଳକୁ ୩ଟା । ମହାଜନଙ୍କୁ ଡକରା ହୋଇଛି କଲମି ଇଜା-ହାରକୁ । ମିଣକ ତଳକୁ ଗୋଟାଏ ଗାରୁଆ ହୋଇ ଜାଗା ଓକିଲଙ୍କ ପାଇଁ । ଦରଖାସ୍ତର ବିଷୟ ଜଣା ପଡ଼ିଯିବାରୁ ବହୁତ ମୁକ୍ତାର ଜମା ହୋଇଥାନ୍ତି । ମୁଁ ତା'ରି ଭିତରେ ଯାଇ ଷ୍ଟାନ୍ଦହୋଇ ବସିଗଲି । ସାହେବ ଦେଖି ନାହାନ୍ତି । ମହାଜନଙ୍କୁ ତ ସେତେଦୂର ଦିଶେ ନାହିଁ । ମହାଜନେ କହୁଥାନ୍ତି, 'ହଜୁର୍ ! ଇଂରେଜ ସରକାରଙ୍କ ଆଇନ୍ ଆମ ଗାଁରେ ଚାଲୁନାହିଁ । ଚନ୍ଦ୍ରମଣି ମିଶ୍ରେ ଆମ ଗାଁରେ ସରକାର ।' ସାହେବ ଗମ୍ଭୀର ଭାବେ ପଚାରିଲେ, "ତୁମ୍ଭ ପକ୍ଷଡ଼ ସାକ୍ଷୀ କିଏ ?" ମୁକ୍ତାର ମହାଜନଙ୍କୁ ବୁଝାଇଦେଲେ । ମହାଜନ କହିଲେ, "ହଜୁର, ତାଙ୍କ ବିରୁଦ୍ଧରେ ସାକ୍ଷୀ ମୁଁ କାହୁଁ ପାଇବି ? ହଜୁର ଯାଇ ଦେଖନ୍ତୁ ।" ଏକଥା ସାହେବଙ୍କୁ ବୁଝାଇବାରେ ସେ କହିଲେ, "ସାକ୍ଷୀଗୁହା ନମିଳିଲେ ଆମ୍ଭେ କିଛି କରିଡ଼-ପାରିବୁ ନାହିଁ । ଗୁହା ଆଣ ।" ଏ ସାହେବ, ମିଷ୍ଟର ସ୍ଲାନ୍ ; ମ୍ୟାକ୍‌ଡୋନାଲ୍‌ଡ୍‌ଙ୍କ ପରେ ଆସିଥାନ୍ତି । ମୋ ସଙ୍ଗେ ମାତ୍ର ଥରେ ଦେଖା ହୋଇଥାଏ । ସେ ମୁକ୍ତାରଙ୍କୁ ପଚାରିଲେ, "ଚନ୍ଦ୍ରମଣି ବାବୁ ତ ଜଣେ ଭଦ୍ରଲୋକ ବୋଲି ମୁଁ ମନେକରେଁ । ( I presume

Chintamani Babu is a gentleman )" ମୁକ୍ତାର କହିଲେ, 'ହଁ ହଜୁର' ( Yes your honour ) । ସାହେବ ମହାଜନଙ୍କୁ କହିଲେ, "ତାଙ୍କ ସହିତ ସାଲିସ-କର ।" ସେତିକରେ ଅନ୍ୟ ଦରଖାସ୍ତକାରୀଙ୍କୁ ଡକରା-ହେଲା । ମୁଁ ସ୍କୁଲ୍‌କୁ ଫେରି ଆସିଲି ।

ଗାଁରେ ଯାଇ ଆମ ଦୁଆରେ ଟିକିଏ ଖେଳ ହେଲା । ସନ୍ଧ୍ୟା ଲାଗିଯିବାରୁ ସେ ଯୁଆଡ଼େ ଗଲେ । ମୁଁ ଘରଭିତରେ ଅଛୁ । ମହାଜନେ ଛକମୁଣ୍ଡେ ଶଗଡ଼ରୁ ଓହ୍ଲାଇ ଆମ ଦୁଆରକୁ ଯାଇ, 'ବାବୁ ଅଛନ୍ତି !' ବୋଲି ଡାକିଲେ । ମୁଁ କିଛି ନ ଜାଣିଲା ପରି ଆସି ପଚାରିଲି "କଣ ମହାଜନେ ?" ସେ କହିଲେ, "ବାବୁ ! ସଂସାର ଓଲଟି ଗଲାଣି । ମୁଁ ତମନାଁରେ ମକଦ୍ଦମା କରିବାକୁ ଯାଇଥିଲି । ସାହେବ ଝମ୍ପୁଆକୁ ବୁଝାମଣା କରି କହିଲେ, ତାଙ୍କ ସଙ୍ଗେ ସାଲିସ କର ! ଏବେ ତମେ କଣ କହୁଛ ?"

ମୁଁ କହିଲି, "ତୁମ ସଙ୍ଗେ ମୋର ତ କଳି ଲାଗିନାହିଁ । ଗାଁ ସଭାରେ ଯାହା ନିଷ୍ପତ୍ତି ହେଲା ସେଇକଥା ତୁମକୁ କହିବାରୁ ତୁମେ ରାଗିଗଲ । ତୁମର ଏବେ ଯାହା କହିବାର କଥା ସେଇ ସଭାରେ କହିବ । ଆଜି ନ ଗୁରୁପହରକୁ ସଭା ହେବ ।"

ସେ କହିଲେ, "ମୁଁ ସଭାଫଭା ଜାଣେନାହିଁ । ତୁମେ କହ, ସେଇ ୩୬୦ ବସ୍ତା ମୋତେ ଦେବାକୁ ହେବ, ନା କିଛି କମିବ ?" ମୁଁ କହିଲି, "ସେଥିରୁ କମିପାରିବ ନାହିଁ । ୧୫ ଜଣଙ୍କ କଥା ପରା !"

ସେ ଟିକିଏ ତୁନି ହେଲେ । ଗଲାବେଳକୁ କହିଲେ, "ହଉ ଆସ, ମୁଁ ୩୬୦ ବସ୍ତା ଧାନ ଦେବି । କିନ୍ତୁ ଅଗ ଟଙ୍କାଟି ଥୋଇଲେ ଧାନ ବାହାରିବ ।"

ମୁଁ କହିଲି "ଆଜି ବୁଧବାର, କାଲି ଗୁରୁବାର । ଶୁକ୍ରବାର ଦିନ ଦେବି ।"

"ଆଉ ବୁଧବାର କ'ଣ ? ମୁଁ ଆଜି ଦେବି," ବୋଲି କହି ସେ ଚାଲିଗଲେ । ମୋ ମୁଣ୍ଡରେ ଟେଙ୍ଗୁଲିଆ ବିଛା କାମୁଡ଼ିଲା । ୩୬୦ ବସ୍ତାର ଦାମ ପ୍ରାୟ ୧୫ଶହ ଟଙ୍କା । ମୋତେ ବିକାଇଲେ ତ ଏତେ ଟଙ୍କା ହେବନାହିଁ ! ମହାଜନେ ବୋଧହୁଏ ଏଇକଥା ଜାଣି ଆଗ ଟଙ୍କାଟା ମାଗିଛନ୍ତି । କ'ଣ କରିବ ବସିରୁଛୁ ; ଆମ ପ୍ରାଇମେରି ସ୍କୁଲ ମାଷ୍ଟ୍ରେ ଗୋଟାଏ ବାଟ ବତାଇଲେ । ସେ କହିଲେ, "ଦୁଇଶହ ଖଣ୍ଡେ ଫୁଲ୍‌ସ୍‌କ୍ୟାପ୍ ଚଉଠ କାଗଜରେ ଦସ୍ତଖତଟାଏ ଲେଖେଁ କରେଇ ଦେବ । ଯେ ଧାନ କିଣିବେ ସେ ଟଙ୍କା ଜମା ଦିଅନ୍ତୁ । ସେଇ କାଗଜ ଖଣ୍ଡେ ଖଣ୍ଡେ ତାଙ୍କୁ ଧରେଇଦେବା । ଘଣ୍ଟାକରେ ଟଙ୍କା ହୋଇଯିବ ।'

ସେଇଆ ହେଲା । ସେତେବେଳେ ଆମ ରଙ୍ଗଣୀ ସାଇ ଓ ପାଟସ୍ତ ସାଇରେ ଖ୍ଦ୍ଦର୍ ପଇସା । ମିଲ୍ ଲୁଗା ବେଶୀ ଆସୁନଥିଲା । ସୂତା ସରକାର ଆଣି ଯୋଗାଉଥିବାରୁ ସେମାନେ ଖଦ୍ଦର୍ ଲୁଗା ବୁଣୁଥାନ୍ତି, ପଇସା ପାଉଥାନ୍ତି । କନ୍ତୁ ଘରେ ଧାନ ନାହିଁ । ମାଷ୍ଟ୍ରେ ସେମାନଙ୍କୁ ବୁଝାଇ ଦେଲେ ଯେ, ଯେ ଯେତେ ଟଙ୍କା ଦେଇଥିବ ତାକୁ ଆଜି ମହାଜନ ଘରୁ ବା ଗାଁର ଆଉ କାହା ଘରୁ ଏଇ ମାସେଖଣ୍ଡେ ଭିତରେ ନିଶ୍ଚୟ ଧାନ ମିଳିବ । ସେମାନେ ଜଣକୁ ୧୦ । ୨୦ ଲେଖାଏଁ ଟଙ୍କା ପକାଇଲେ । ଘଣ୍ଟାକ ଭିତରେ ୨୬ଶହ ଟଙ୍କା ହୋଇଗଲା । ପ୍ରାୟ ୮ଟା ବେଳେ ମହାଜନ ଦୁଆରକୁ ଆମେ ଅଭିଯାନ କରି ଗଲୁଁ । ଗୋଟାଏ ଖଣ୍ଡିଆ ବାକ୍ସରେ ଟଙ୍କା ନେଇ ମାଷ୍ଟ୍ରେ ମହାଜନ ଦୁଆରେ ଥୋଇଦେଲେ । ତାଙ୍କ କୋଠିରୁ ଧାନ ବାହାର ପ୍ରାୟ ୧୦ଟା ବଡ଼ବଡ଼ ହେଁସ ଦାଣ୍ଡରେ ପଡ଼ି ତାର ଉପରେ ଧାନ ଗଦାଆ ହୋଇଗଲା । ଧାନ ନେବାବାଲା ଓ ଦେଖଣାହାରୀରେ ସାଇ ପୂରିଗଲା । ଖବର କିମିତି ଗଲା କେଜାଣି ଦୁଇମାଇଲ ଦୂରରେ ଥିବା ଗାଁ ମାନଙ୍କରୁ ଲୋକ ବୋହ୍ଟ ଓ ବସ୍ତା ଧରି ଆସିଗଲେ । କଣାଲୀଙ୍କ ସଂଖ୍ୟା ଦେଖି ମୁଁ ଆଦେଶ ଦେଲି ଯେ, କେହି ତିନିଟଙ୍କାରୁ ବେଶୀ ଧାନ ନେଇପାରିବେ ନାହିଁ । ଯେଉଁମାନେ ଆଗରୁ ଟଙ୍କା ଦେଇ ରସିଦ ନେଇଥାନ୍ତି, ସେମାନଙ୍କ ରସିଦରେ ସେଦିନ ନେବା ପରିମାଣ ଦରଜ ହେଉଥାଏ, ଯେଉଁମାନେ ରସିଦ ନ ପାଇଥାନ୍ତି, ସେମାନେ ଟଙ୍କା ଦେଉଥାନ୍ତି । ଗୋଟେ ଖାତାରେ ପ୍ରତ୍ୟେକଙ୍କ ନାମ ଓ ଧାନର ପରିମାଣ ତାଲିକା ହେଉଥାଏ ।

ଦୁଇଜଣ ନେବା ପରେ ଗୋଟିଏ ବୁଢ଼ୀ ଟଙ୍କାଟିକର ଧାନ ନେଲା, ମୋ ପାଖକୁ ଆସି କହିଲା, "ବାପା ! ଟଙ୍କାକୁ ପାଞ୍ଚସେର ଧାନ ମିଳୁନଥିଲା । ତୁ ଦଶସେର କରାଇ ଦେଲୁ । ମୁଁ ଏ ଅଞ୍ଜୁଳାଟି ଧାନ ଦେଉଛି ରଖ ।" ମୋ ଆଗରେ ଗୋଟାଏ ହେଁସ ପଡ଼ି ସେ ଅଞ୍ଜୁଳାଟି ଧାନ ସେଥିରେ ରହିଲା । ତାପରେ ଯେ ନେଲେ ସେ ଟଙ୍କାକୁ ଅଞ୍ଜୁଳାଟିଏ ଲେଖାଏଁ ଦେଲେ ; କିଏ କେମିତି ଦୁ ଅଞ୍ଜୁଳା ଲେଖାଏଁ ବି ଦେଇଦେଲେ । ମହାଜନଙ୍କ ଧାନ ସରିବା ପରେ ଏହି ଅଞ୍ଜୁଳିଧାନ ବିକାହୋଇ ପ୍ରାୟ ୭୦ଟଙ୍କାର ହେଲା । ଏହି ହେଲା ସାଧାରଣ ପାଣ୍ଠି ; ଜଣକ ଜିମା ରଖାହେଲା । ୨।୩ମାସ ପରେ ଦେଖାଗଲା, ଏହି ସାଧାରଣ ପାଣ୍ଠିରେ ହୋଇଗଲା ପ୍ରାୟ ଅଢ଼େଇଶହ ଟଙ୍କା ।

ଲବ୍ଧଧାନ ଆଦାୟ ହେବା ପରେ ଆମର ଧାନ କଣାବିକା କିଛିଦିନ ବନ୍ଦ ହୋଇ-ଗଲା । ଗୋଟିଏ ସଭା ହୋଇ ଏ ଟଙ୍କା କ'ଣ ହେବ ପଚାରିଲା, କିଏ କହିଲା, ଏତକ ନେଇ ବରୁଣେଇଠାରେ ଭୋଜି କରିଦେବା, ଗାଁ ବାଲା ସମସ୍ତେ ଯିବେ ; ଆଉ କିଏ କହିଲା ଏ ଦୁଅଁଙ୍କୁ ଏତେ, ସେ ଦୁଅଁଙ୍କୁ ସେତେ ଦିଅ । ମୁଁ ତୁନିହୋଇ ବସିଥାଏ । ସଭା ଶେଷରେ କଣେ କିଏ ମୁଁ କାହିଁକି କିଛି କହୁନାହିଁ ବୋଲି ପ୍ରଶ୍ନ କଲେ । ମୁଁ କହିଲି, "ମୁଁ ଯାହା କହିବି ସମସ୍ତେ କ'ଣ ମାନିବ ?" ଦୁ' ତିନିଜଣ ବାହାରି ପଡ଼ିଲେ , "ନ୍ୟାୟରେ ତ

ଏ ଟଙ୍କା ଆପଣଙ୍କର ରୋଜଗାର । ଆପଣ ଯାହା କହିବେ ନିଶ୍ଚୟ ହେବ ।” ମୁଁ କହିଲି, “ଏହି ମୂଲପାଣ୍ଡିରେ ଚାଲ ଗୋଟିଏ ମାଇନର ସ୍କୁଲ କରିବା ।” ଧନୀ ଲୋକମାନେ ଏ ଟଙ୍କାରେ ତ ଗୋଟାଏ ବଢ଼ିଆ ମାଇନର ସ୍କୁଲ ହୋଇଯିବ ବୋଲି ଉପହାସ କଲେ । କିନ୍ତୁ ଶେଷରେ ଦରିଦ୍ରଙ୍କ ସଂଖ୍ୟାଧିକ ଭୋଟରେ ସେଇଆ ହେଲା । ସେତେବେଳକୁ ରାତି ପ୍ରାୟ ବାରଟା ।

ସେଇ ଦରିଦ୍ରଲୋକଙ୍କ ପ୍ରସ୍ତାବରେ ସ୍ଥିର ହେଲା, ସାଙ୍ଗେ ସାଙ୍ଗେ ଶୁଭଦିଆଯିବ । ଜଣେ କର୍ମିଣିଆ ଶୁଭକର୍ମ କଲେ । ନଡ଼ିଆ ବାଡ଼ିଆ ହେଲା, ହୋମ ହେଲା । ନିକଟବର୍ତ୍ତୀ ଗୋଟାଏ ଗୋଟାଏ ସଡ଼କର ଦୁଇ କଡ଼ରେ ଖୋଲାହୋଇ ପଡ଼ିଥିବା ନୟନଯୋଡ଼ି ୨୧୯ ଶଗଡ଼ ଟଙ୍କାରେ ଭଡ଼ା ଲେଖାଏଁ ଆସିଲା । ସକାଳ ହେଲାବେଳକୁ ପ୍ରାୟ ୧୫ହାତ କାନ୍ଥ ଗଢ଼ା ହୋଇଗଲା, ପଥରରେ ମାଟି ଗାନ୍ଥେଣି ଦେଇ । ପରବର୍ତ୍ତୀ ଧାନ-ବିକାରୁ କିଛିକିଛି ଟଙ୍କା ମିଳିଲା । ଆଉ କୁଆଡୁ କ’ଣ ମିଳିଲା କେଜାଣି ? ଶିକ୍ଷାବର୍ଷ ଆରମ୍ଭ ହେଲା ବେଳକୁ ମାଇନରର ପ୍ରଥମ କ୍ଲାସ ଆରମ୍ଭ ହୋଇଗଲା । ସରକାରଙ୍କ ମଞ୍ଜୁରି ମିଳିବାରେ କିଛି ଅସୁବିଧା ହେଲାନାହିଁ । ସେଇ ସ୍କୁଲ ବଢ଼ିବଢ଼ି ହାଇସ୍କୁଲ ହେଲାଣି ୧୯୬୨ ରୁ । ପୁରୀଜିଲ୍ଲାର ୮ଟି ଶ୍ରେଷ୍ଠ ସ୍କୁଲରୁ ସେ ଗୋଟିଏ ।

ଆମ ଗାଁରେ ଧାନର ଅଭାବ ଦୂରକରିବା ପାଇଁ ଯେଉଁ ଉପାୟ ଆରମ୍ଭ ହେଲା, ତାହା ଆମ ଗାଁର ଚାରିପଟେ ବ୍ୟାପିଲା । ସବୁଠାରେ ଏଇ ଉପାୟରେ ଧାନ ବିକାଇଲା । ସାଧାରଣ ପାଣ୍ଠି ମଧ ଗଢ଼ାଗଲା । ୧୯୪୪ରେ ମୁଁ ସରକାରୀ ଚାକିରି କରିବା ପରେ ଯୋଗାଣ ବିଭାଗର ସେକ୍ରେଟାରୀ ମିଷ୍ଟର ଚନ୍ଦ୍ରଶେଖର ଝା (ଯେ କି ପରେ ୟୁ. ଏନ୍. ଓ.ର ସେକ୍ରେଟାରୀ ହୋଇଥିଲେ . ମୋର ଏ ଯୋଜନାରେ ଏତେ ପ୍ରୀତ ହୋଇଥିଲେ ଯେ ସ୍ମାଲ୍ ପରଚେଜ୍ ସ୍କିମ୍ ( Small Purchase Scheme ) ନାମ ଦେଇ ସମଗ୍ର ରାଜ୍ୟରେ ଚଳାଇବାକୁ ଉଦ୍ୟମ କରିଥିଲେ । ଯୋଗାଣ ବିଭାଗର ତତ୍‌କାଳୀନ ଅଣ୍ଡର୍ ସେକ୍ରେଟାରୀ ଶ୍ରୀ ପ୍ରାଣନାଥ ମହାନ୍ତି ଓ ମୁଁ ସ୍ୱାକୁ ପୁରୀ ଓ କଟକଜିଲ୍ଲାର କେତୋଟି ସ୍ଥାନରେ ଚାଲୁ କରିଥିଲୁଁ । ସ୍ୱାପାଇଁ ସରକାରୀ କର୍ମଚାରୀଙ୍କର ଯେତିକ ନିଷ୍ଠା ଓ ଅଧ୍ୟବସାୟ ଦରକାର ତାହା ଅନ୍ୟତ୍ର ନମିଳିବାରୁ ଏ ଯୋଜନା କଥାର କଥା ହୋଇ ରହିଗଲା । ସେ ତ ପରର କଥା ; ମୁଁ ଲୋକାଲ ବୋର୍ଡ଼ରେ ଥିବାପର୍ଯ୍ୟନ୍ତ ଖୋର୍ଦ୍ଧାର ସବୁ ଅଞ୍ଚଳରେ ଏ ଯୋଜନା ଚାଲୁରହିଲା । ଖୋର୍ଦ୍ଧାର ବହୁ କଂଗ୍ରେସ କର୍ମୀ ଏ କାର୍ଯ୍ୟରେ ମନପ୍ରାଣ ଦେଇ ଜନତାର କୃତଜ୍ଞତାର ପାତ୍ର ହୋଇଥିଲେ ।

ମୋର ଦ୍ୱିତୀୟ ମାଇନର ସ୍କୁଲଟି, ଆମ ଗାଁର ପରବର୍ତ୍ତୀ ରେଳୋଷ୍ଟେସନ ନିକଟ ରାମଚଣ୍ଡିରେ ଏହି ଧାନ ବିକା ଯୋଜନା ମୋହୁଁ ଢ଼ିଙ୍ଗରେ ହୋଇପାରିଥିଲା । ଏଥିରେ

ବିଶେଷ ସହାୟ ହୋଇଥିଲେ, ସେ ଗାଁର ଜଣେ ହାଡ଼ି (ହରିଜନ) । ବହୁତ ଧାନ ସେ ଦେଇଥିଲେ ; ଏବଂ ସ୍ବାବାଦ୍ ସ୍କୁଲପାଇଁ ଅର୍ଥ ସାହାଯ୍ୟ ମଧ୍ୟ କରିଥିଲେ । ବିଭିନ୍ନ ଅଞ୍ଚଳରେ ଏହି ଯୋଜନା ଦ୍ୱାରା ଉତ୍ସାହିତ କର୍ମୀମାନେ ସେହି ସେହି ସ୍ଥାନରେ ମାଇନର୍ ଓ ହାଇସ୍କୁଲ କରିବାର ପ୍ରଯତ୍ନ କଲେ । ୧୯୪୧ ଠାରୁ ୧୯୪୭ ଭିତରେ ଖୋର୍ଦ୍ଧାରେ ଯେତେ ନୂଆ ମାଇନର୍ ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା, ପୂର୍ବ ୫୦ବର୍ଷରେ ଯେତେ ହୋଇ ନ ଥିଲା ଓ ପରବର୍ତ୍ତୀ ୩୦ ବର୍ଷରେ ହୋଇନାହିଁ ।

## ଆମ ହାକମ ଓ ତାଙ୍କ ହାକମ

ଯେ କୌଣସି ଗୋଟିଏ ବିଷୟରେ ଲୋକ ଜାଗରଣ ଆରମ୍ଭ ହୋଇଗଲେ ତାହା ଜନଜୀବନର ପ୍ରତ୍ୟେକ ବିଭାଗକୁ ପ୍ରଭାବିତ କରେ । ଆମ ଧାନ ଯୋଗାଣ ଯୋଜନା ଯେଉଁ ଯେଉଁ ସ୍ଥାନରେ ଚେର ଧରିଲା ସେଠାର ମାଲି ମକଦ୍ଦମା ଆପୋଷରେ ନିଷ୍ପତ୍ତି ହେଲା । ଏଥିରେ ଖୋର୍ଦ୍ଧାର ଦୁଇଜଣ ଯାକ ଇଂରେଜ ଏସ୍. ଡି. ଓ. ମିଷ୍ଟର ମ୍ୟାକ୍‌ଡୋନାଲ୍ଡ୍ ଓ ମିଷ୍ଟର ସ୍ପାନ ଆମକୁ ସହାନୁଭୂତ ଦେଖାଇଥିଲେ । ତୃତୀୟରେ ଆସିଲେ ଆମର ଜଣେ ଓଡ଼ିଆ ଏସ୍. ଡି. ଓ. । ଏ ମହାଶୟ ଆମ କାର୍ଯ୍ୟରେ ବାଧାଦେବାକୁ ବାଟ ଖୋଜୁଥାନ୍ତି । ଯଦିଓ ଲୋକସଙ୍ଗଠନ ଦୃଢ଼ ଥିବାରୁ ପ୍ରତ୍ୟେକ କ୍ଷେତ୍ରରେ ସେ ବିଫଳ ହୋଇଥିଲେ । ସେହି ଦିନଠାରୁ ମୋର ଧାରଣା ହୋଇଆସିଛି ଯେ, ଇଂରେଜ ଅମଳର ଶେଷ ଭାଗରେ ଯେଉଁ ଇଂରେଜ ଅଫିସରମାନେ ଆସିଥିଲେ, ସେମାନେ ସେକାଳର କାହିଁକି ସ୍ୱାଧୀନ ଭାରତର ଦେଶୀ ଅଫିସରମାନଙ୍କଠାରୁ ଅଧିକ ମାତ୍ରାରେ ଜନତାର ସେବକ ଥିଲେ । ଦେଶୀ ଅଫିସର୍‌ଙ୍କର ସବୁଠାରୁ ଅଧିକ ଧ୍ୟାନ ନିଜର ସ୍ୱାର୍ଥ ଉପରେ । ସରକାରଙ୍କୁ ପ୍ରୀତ କରିବା ଚେଷ୍ଟାରେ ଏମାନେ ଲୋକ ସ୍ୱାର୍ଥକୁ ବଳିଦେବାକୁ ମଧ୍ୟ ପରାଙ୍ମୁଖ ନୁହନ୍ତି । ଏହାର ଦୁଇଟି ଦୃଷ୍ଟାନ୍ତ ମୋ ମନରେ ଗାରପରି ରହିଯାଇଛି ।

ମ୍ୟାକ୍‌ଡୋନାଲ୍ଡ୍ ସାହେବଙ୍କ ଅମଳ । ମୁଁ ଦିନେ ଖୁବ୍ ଉଲ୍ଲସିତ ହୋଇ ବାଣପୁରରୁ ଆସି ପ୍ରାୟ ଏଗାରଟା ବେଳେ (ସକାଳ) ଗାଁରେ ଶୁଣିଲି ଯେ, ଆମ ଗାଁର ଜଣେ ଅପରିଣାମଦର୍ଶୀ ଯୁବକ ତା'ସପକ୍ଷ କେତେ ଜଣଙ୍କୁ ମେଲାଇ ଆମ ଗାଁର କେତେଜଣ ମୁସଲମାନଙ୍କ ନାମରେ ଗୋଟାଏ ଗୋରୁ-କଟା ମକଦ୍ଦମା ତହିଁ ପୂର୍ବଦିନ ଖୋର୍ଦ୍ଧା କୋର୍ଟରେ ଦାଏର୍ କରାଇ ଦେଇଛନ୍ତି । ତହିଁ ପୂର୍ବଦିନ ରାତିରେ ମୁଁ ବାଣପୁରରେ ଗୋଦାବରୀଶ ବାବୁଙ୍କ ଘରେ ଥିଲି । ତାଙ୍କର ଜଣେ ସହକାରୀ ସେ ରାତିରେ ଜଙ୍ଗଲକୁ ଯାଇ ଦୁଇଟା ହରିଣ ମାରି ଆଣିଥିଲେ । ଗୋଟିଏ ସେଠାରେ ରହିଲା, ଆଉଟି ମୁଁ ଆଣିଥାଏ ଗାଁରେ ଗୋଟିଏ ଭୋଜି କରିବାକୁ । ହରିଣଟା ଆଣି ଟ୍ରାଇମେରି ସ୍କୁଲ ହେଡ଼ ପଣ୍ଡିତଙ୍କ ଜିମାରେ ଦେଇ ଭୋଜିର ଆୟୋଜନ କଲାବେଳେ ଏ ଗୋରୁକଟା ମକଦ୍ଦମା କଥା ଶୁଣିଲି । ଗାଁରେ କୌଣସି ପ୍ରକାର ବିଭେଦ, ବିଶେଷକରି ସାମ୍ପ୍ରଦାୟିକ

ବିଭେଦ ସୃଷ୍ଟି କରିବାର ମୁଁ ଘୋର ବିରୋଧୀ । ଶ୍ରେଜନ୍‌ଥା ଅନ୍ୟମାନଙ୍କ ଉପରେ ଛାଡ଼ି-ଦେଇ ମୁଁ ଧାଇଁଲି ଖୋର୍ଦ୍ଧା, ସାହେବଙ୍କ ପାଖକୁ । ତାଙ୍କୁ ବୁଝାଇଲି ଯେ, ଏ ମକଦ୍ଦମାର ଘାଲିସ୍ ସମାଧାନ କରିଦେବା ବର୍ତ୍ତମାନ ପରିସ୍ଥିତିରେ ଉଚିତ । ସେଥିପାଇଁ ସେ ମୋତେ ଅନୁମତ ଦିଅନ୍ତୁ । ହିନ୍ଦୁ-ମୁସଲମାନଙ୍କ ସଂଘର୍ଷକୁ ତାଙ୍କର ଖୁବ ଭୟ । "ଏ ମକଦ୍ଦମା ଚାଲୁ ରହୁ । ବଳେ ବିଚାରରେ ବିଳମ୍ବ ହେବ । ସେତେବେଳକୁ ଉତ୍ତେଜନା ଲଭ ଯାଇଥିବ, ବିଚାରରେ ଦୁଇ ଚାରିଜଣ ଦଣ୍ଡ ପାଇଲେ ପାଇବେ, ଛାଡ଼ ବି ପାଇପାରନ୍ତି ।" ଏହା ବୁଝାଇ ସେ ମୋତେ ନିବର୍ତ୍ତାଇବାକୁ କହିଲେ । ମୁଁ ଜିଦ୍ ଧରିଲି ଯେ, ମକଦ୍ଦମା ଚାଲୁ ରହିବା ସମୟରେ ଉଭୟ ସଂପ୍ରଦାୟ ଭିତରେ ମନୋମାଳିନ୍ୟ ଲାଗି ରହିବ ଏବଂ ଏ ମକଦ୍ଦମାର ଶାଖା, ଉପଶାଖା ଭାବେ ଆହୁରି ଗଣ୍ଡଗୋଳ ଓ ମାଲିମକଦ୍ଦମାର ସୃଷ୍ଟି ହୋଇପାରେ । ଶେଷକୁ ସେ ମୋ କଥାରେ ମଙ୍ଗିଲେ ଓ ପୁଲିସ୍‌କୁ ଡକାଇଲେ । ପୁଲିସ୍ ବୁଝାଇ ଦେଲେ ଯେ, ଜିଲ୍ଲା କଲେକ୍ଟର ଅନୁମତି ନ ଦେଲେ ଏ ମକଦ୍ଦମା ଉଠାଯାଇ ପାରିବ ନାହିଁ । ସେତେବେଳକୁ ୩ଟା ବେଳ । ମୁଁ ଚାଲିଲି, କଲେକ୍ଟରଙ୍କ ପାଖକୁ । କଲେକ୍ଟର ଜଣେ ବଙ୍ଗାଳୀ ଲୋକ । ନୂଆହୋଇ ଆଇ. ସି. ଏସ୍. (Listed Post) ପାଇଥାନ୍ତି । ବର୍ତ୍ତମାନ ପରିସ୍ଥିତିରେ ହିନ୍ଦୁ-ମୁସଲମାନ ଗୋଳମାଳରେ ସେ ହସ୍ତକ୍ଷେପ କରି ପାରିବେ ନାହିଁ । ବଳେ ତାଙ୍କର କ୍ଷତି ହେବ । ନିଜର କ୍ଷତି ଅପେକ୍ଷା ଗାଁର କ୍ଷତିକୁ ଗୁରୁତ୍ୱ ଦେବାକୁ ଯେତେ କାକୁତି ମିନତି କଲି ବିଶେଷ ଫଳ ହେଲନାହିଁ । ଶେଷରେ ତାଙ୍କ ପେସ୍କାରଙ୍କ ପରାମର୍ଶରେ ସେ ମଙ୍ଗିଲେ—ଗ୍ରାମର ହିନ୍ଦୁ-ମୁସଲମାନଙ୍କ ପକ୍ଷରୁ ଗୋଟିଏ ଦରଖାସ୍ତ ହେବ । ଏସ୍. ଡ଼ି. ଓ. ସୁପାରିସ୍ କରିବେ । ତେବେ ଯାଇ ସେ ମକଦ୍ଦମା ଉଠାଇ ଦେବାକୁ ସେ ଅନୁମତ ଦେବେ । ସେଇ ରାତିରେ ଗାଁକୁ ଗଲି ; ସଭା ହେଲା, ଦରଖାସ୍ତ ଲେଖା ହେଲା । ତହିଁଆରଦିନ ସେଥିରେ ଏସ୍. ଡ଼ି. ଓଙ୍କ ସୁପାରିସ୍ କରାଇ କଲେକ୍ଟରଙ୍କ ପାଖକୁ ପଠାହେଲା । ସେ କୁନ୍ଥୁ କୁନ୍ଥୁ ହୋଇ ଦୁଇଦିନରେ ଅର୍ଡ଼ର ଦେଲେ, ମୁଁ ଓ ଉଭୟ ସଂପ୍ରଦାୟରୁ ଜଣେ ଜଣେ ଏପରି ତିନିଜଣ ଘାଲିସ କରାଇ ଏସ୍. ଡ଼ି. ଓଙ୍କୁ ଦରଖାସ୍ତ କଲେ ମକଦ୍ଦମା ଉଠିବ । ସେଇପରି ହେଲା । ଗାଁର ଯେଉଁ ସଭାରେ ଏ ବିଷୟ ପଡ଼ିଲା ସେଥିରେ ସାବ୍ୟସ୍ତ ହେଲା ଯେ ମୁସଲମାନଙ୍କଦ୍ୱାରା କିଛି ଅନ୍ୟାୟ କାର୍ଯ୍ୟ ହୋଇନାହିଁ । ଗୋ ମାଂସ ଖାଇବାକୁ ସେମାନଙ୍କର ଅଧିକାର ଅଛି ; ସେମାନେ ହିନ୍ଦୁଙ୍କ ମନରେ ଆଘାତ ଦେଲଭଳି କୌଣସି ସର୍ବସାଧାରଣ ବା ଖୋଲା ଜାଗାରେ ଗୋରୁ ମାରୁ ନଥିଲେ । ସେମାନେ ମାରୁଥିଲେ ତାଙ୍କ ଘର ଭିତରେ । ଯେଉଁ ଯୁବକ ଗୋଟାଏ କାନ୍ଥରେ ଚଢ଼ି ଗୋରୁ କଟା ହେବାର ଦେଖି ହୋ ମଚାଇ ଦେଲେ ତାଙ୍କର ଅନ୍ୟାୟ । ସର୍ବୋପରି ଯେଉଁ ବୁଢ଼ା ବଳଦଟା କଟା ହେଉଥିଲା ତାହା ଗ୍ରାମର ଜଣେ ବ୍ରାହ୍ମଣଙ୍କଠାରୁ ୭ ଟଙ୍କାରେ କଣା ହୋଇଥିଲା ବଳଦର ଯେଉଁ ଅବସ୍ଥା ସେଥିରେ ତାକୁ ଏମାନେ ହଳ ଶଗଡ଼ରେ ଲଗାଇବାକୁ ନେଉଥିଲେ

ବୋଲି କୁହାଯାଇ ନ ପାରେ । ଅଭାବରେ ପଡ଼ି ବ୍ରାହ୍ମଣ ଯେପରି ହୁଡ଼ା ବିକୁଥିଲେ, ମୁସଲମାନମାନେ ସେହିପରି ଆଉ ଭଲ ଜିନିଷ ଖାଇବାକୁ ନ ପାଇ 'ମୋଟା ଗୋସ୍'ରେ କୌଣସିମତେ ପେଟ ପୁରାଇବାକୁ ଏହା ନେଇଥିଲେ । ଏ ପରିସ୍ଥିତିରେ ଏ ମକଦ୍ଦମାର କୌଣସି ଯଥାର୍ଥତା ନାହିଁ ବୋଲି ଆମେ ରିପୋର୍ଟ ଦେଲୁଁ ଏବଂ ଏଥିରେ ଉଭୟ ସମ୍ପ୍ରଦାୟର ପୂର୍ଣ୍ଣସମ୍ମତି ଅଛି ବୋଲି ସମସ୍ତ ଲୋକଙ୍କର ଦସ୍ତଖତ ନେଇ ପଠାଇଥିଲୁଁ । ମକଦ୍ଦମା ଉଠିଗଲା ଏବଂ ମ୍ୟାକ୍‌ଡୋନାଲ୍‌ଡ ସାହେବ ଆମର ଦୃଷ୍ଟିକୋଣକୁ ଖୁବ୍ ପସନ୍ଦ କରି ଜିଲ୍ଲା ଅଫିସରଙ୍କୁ ଲେଖିଥିଲେ ।

ଆଉ ଆମ ଦେଶୀ ଅଫିସରଙ୍କ ଢଙ୍ଗ ! ଆମ ଗାଁର ଜଣେ ବିଶିଷ୍ଟ ଲୋକ ୧୭ ଶଗଡ଼ ଧାନ କଟଣୀର ଜଣେ ମହାଜନଙ୍କୁ ବିକିବେ ବୋଲି ଗାଁକୁ ଶଗଡ଼ ୧୭ଟା ଅଣାଇଥିଲେ । ତାଙ୍କ ଉପରେ ଆମେ ଯେତେ ଧାନ ଚାଲିକା କରିଥିଲୁଁ ସେ ଅବଶ୍ୟ ତାହା ଦେଇ ସାରିଥିଲେ । ତାଙ୍କର ମୁକ୍ତି ଥିଲା, ବଳକା ଏ ଧାନତକ ସେ ବନ୍ଦୀ କରିବାଦ୍ୱାରା ଗାଁ ଲୋକଙ୍କର କିଛି ଅନିଷ୍ଟ କରୁନାହାନ୍ତି । ଏ ଧାନ ମଞ୍ଜି ଧାନ । ଗାଁ ଲୋକଙ୍କର ଏଥି ପ୍ରତି ରୁହିଦା ନାହିଁ । ମୋଟା ଧାନ ଟଙ୍କାକୁ ୧୦ସେର ହେଲେ, ଏହାର ଭାଉ ଆଉରି ଅଧିକ ହେବ । ଏହାକୁ ସେ ୭ସେର ଭାଉରେ ବିକିବାକୁ ଟଙ୍କା ଆଗତୁରା ନେଇ ସାଇଥିଲେ । ଶଗଡ଼ରେ ଧାନ ଲଦା ସରିବା ପରେ ଗ୍ରାମବାସୀ ଆପତ୍ତି କଲେ ଧାନ ଛାଡ଼ିବାକୁ । ସେତେବେଳେ ଧାନ ଫସଲର ଅଧା ବେଳ । ମୋଟା ଧାନ, ନୂଆ ଧାନ ଆଦାୟ ହେବା ପର୍ଯ୍ୟନ୍ତ ଅଣ୍ଟିବ ନାହିଁ ଅଭାବ ବେଳେ ଏ ଧାନ ଲୋକେ କିଣିବାକୁ ବାଧ ହେବେ । ଆଜି ଗାଁରୁ ଧାନ ଛାଡ଼ିଦେଲେ ଅଭାବ ବେଳେ ଲୋକେ କୁଆଡ଼ୁ ପାଇବେ ? ଧାନ ବିକ୍ରେତା ଓ ଖରିଦଦାର ଉଭୟେ ଦାବୀ କଲେ ୭ ସେର ଭାଉରେ ଯଦି ଲୋକେ କିଣି ନେବେ ନିଅନ୍ତୁ । ଏ କଥା ମୋ ଆଗରେ ପଡ଼ିଲା । ମୁଁ ଫଇସଲା କଲି ୧୦ସେର ଜାଗାରେ ୮ସେରରେ ଏ ଧାନ ବନ୍ଦୀ ହୋଇଯାଉ; ଯେ ପାରୁଛନ୍ତି ସେମାନେ କିଣି ନେଇ ରଖନ୍ତୁ । ଉଭୟ ପକ୍ଷ ଏଥିରେ ନାରାଜ । ବିକ୍ରେତା ବା କ୍ରେତା ୨ସେର କ୍ଷତି ସହିବାକୁ ରାଜି ହେଲେ ନାହିଁ । କଣିଷିଆ କହିଲେ ସେମାନେ ୧୦ ସେରରେ ନେବେ, ଦରିଦ୍ରମାନେ କହିଲେ, ଆଜି ତାଙ୍କଠାରେ ପଇସା ନାହିଁ, ତାଙ୍କ ପାଖେ ପଇସା ହେଲେ ସେ କିଣିବେ । ଏହିପରି ହୋ ହାରେ ସଭା ଭାଙ୍ଗିଲା । କାଲି ବୁଝିବି ବୋଲି କହି ମୁଁ ଚାଲିଗଲି ।

ରାତି ପ୍ରାୟ ୧୨ଟା ବେଳେ କେତେଜଣ ଆସି ମୋତେ ଖବର ଦେଲେ, ଆଜି ରାତାରାତି ଶଗଡ଼ ଛାଡ଼ି ଦେବାକୁ ଶଗଡ଼ିଆଙ୍କୁ ଧାନ ବିକୁଥିବା ଲୋକ ପରାମର୍ଶ ଦେଇଛନ୍ତି । ଶଗଡ଼ମାନଙ୍କୁ ଘେରି ଶୁଅ ବୋଲି ତାଙ୍କୁ କହିଲି ; ତୁମ୍ଭେ କରି ଦୁଇ ଚାରି ଜଣଙ୍କୁ ପରାମର୍ଶ ଦେଲି, ଖୋର୍ଦ୍ଧା ଯିବାକୁ ଯେଉଁ ଦୁଇଟି ସଡ଼କ, ସେଥିରେ ଗସ୍ତର ବିଲ ଭିତରେ ଥିବା ଦୁଇଟି ଶଙ୍ଖ (ପୋଲ) ହାଣିଦିଅ । ସେଇଆ ହୋଇଗଲା । ଜଗୁଆଳିଙ୍କୁ ରାତିରେ ଚେତା ଚାରିପାଞ୍ଚ ଖଣ୍ଡ ଶଗଡ଼ ଯାଇ ସେହି ପୋଲ ପାଖରେ ଅଟକିଲେ । ବହୁତ କଷ୍ଟରେ ଶଗଡ଼ ଫେରାଇ ଧାନ

ବୁଢ଼ିଥିବା ଲୋକଙ୍କ ଖଲାରେ ଶଗଡ଼ ଫିଟାଇ ସେମାନେ ଓ ଅନ୍ୟ ସବୁ ଶଗଡ଼ିଆ ବଳଦ ନେଇ ଘରକୁ ଗ୍ରୁଲିଗଲେ । ଧାନ ବୁଢ଼ିବା ଓ କଣିବାବାଲାଙ୍କ ହଟହଟାରେ ଗାଁର ଟୋକା ଟାକଶାଆମାନେ ଖୁବ ଖୁସିରେ ଗୁଡ଼ାଏ ପାଟିତୁଣ୍ଡ କଲେ । ସେତେବେଳେ ତ ବଲବାଡ଼ିରେ କାମ ନ ଥାଏ । ଗ୍ରୁରଆଡ଼େ ଏ ମାନେ ଭେଲା ଭେଲା ହୋଇ ତାଳି ମାରି ଝାଞ୍ଜ ମୃଦଙ୍ଗ ବଜାଇ ଗ୍ରୁଲି କଲେ ।

ମୁଁ ସକାଳୁ ଆମ ଓଭର୍‌ସିଅରଙ୍କୁ ଡାକି ଏ ପୋଲ ଦୁଇଟା ଫାଟି ଯାଇଛୁ ବୋଲି ଖଣ୍ଡେ ଚଠି ତାଙ୍କଠାରୁ ଲେଖାଇ ନେଲି, ୧୦/୧୫ ଦିନ ପୂର୍ବର ତାରଖ ଦେଇ । ତା' ଉପରେ ମୁଁ ଅର୍ଡ଼ର ଲେଖିଦେଲି ଯେ, 'ଏ ପୋଲ ଯୋଗୁଁ ଯାନବାହନ ଯିବା ଆସିବା ବନ୍ଦ ହୋଇଯିବ । ତେଣୁ କଣ୍ଟ୍ରାକ୍ଟର ନ ଲଗାଇ ଆମର ସ୍ୱାଫ୍ ତିଆର କରିଦିଅ । ଅତି ଶ୍ରେଟିଆ ପୋଲ ହୋଇଥିବାରୁ ଖର୍ଚ୍ଚ ବେଶୀ ହେବ ନାହିଁ ବୋଲି ମୋର ବିଶ୍ୱାସ । ଓଭରସିଅର ନିଜେ ରହି ଏହା କରାଇ ଦେବେ । ଅଭାବ ଏତିକି ରହିଲା ଯେ, ଓଭରସିଅରଙ୍କ ଏ ଚଠିର ନମ୍ବର ବୋର୍ଡ଼ର ଖାତାରେ ରହିଲା ନାହିଁ ଓ ମୋର ଆଦେଶ ଚଠିରେ ନମ୍ବର ପଡ଼ି ତାଙ୍କ ପାଖକୁ ଗଲା ନାହିଁ । ଓଭରସିଅର କହିଲେ, ସେଥିରେ କିଛି ଅସୁବିଧା ହେବନାହିଁ । କୌଣସି ଲେଖା ନ ରହି ତୁଣ୍ଡର ଆଦେଶରେ ବି ଏଭଳି କାମ ହୋଇପାରେ । ମୁଁ କହିଲି, 'ହଉ, ଏ ପ୍ରଶ୍ନ କେହି ଉଠାଇବାର ତ ଆଶଙ୍କା ନାହିଁ । ଅତି ତର ତର ନ ହୋଇ ହପ୍ତେ ଖଣ୍ଡେ ପରେ ଏ କାମ ହାତକୁ ନେଲେ ହେବ । ପଇସା ଯାହା ପଡ଼ିବ ତାହା ଆମେ ଗାଁ ବାଲା ଦେବୁ ।'

ତହିଁ ଆରଦିନ ସକାଳେ ପ୍ରାୟ ସାଢ଼େ ୯ଟା ବେଳେ ଏସ୍. ଡ଼ି. ଓ. ସାହେବ ଆସି ମୋ ଦୁଆରେ ହାଜର । ସେ ଆସିବା ମାତ୍ରେ ମୁଁ ଗ୍ରନ୍ଦୋନାରେ ଖଣ୍ଡିଏ ଭଲ ସତ୍ରପ ମଶିଣା ଆଣି ପକାଇ ଦେଇ ଆସନ୍ତୁ ବସନ୍ତୁ ବୋଲି ଡାକିଲି । ଚଉକି ନାହିଁ ବୋଲି ଖୁଣିଦେଲେ । ମୋ' ଘରେ ସେତେବେଳେ ଚଉକି ନ ଥିଲା କି ଏବେ ନାହିଁ । ମୁଁ ଦୁଃଖ କରି କହିଲି, "ଘରେ ଚଉକି ନାହିଁ, ଏଇ ମଶିଣାରେ ଏସ୍. ଡ଼ି. ଓ.ମାନେ ବସନ୍ତି ବୋଲି ଆପଣଙ୍କୁ କହିଦେଲି, କ୍ଷମା କରିବେ । ଆସନ୍ତୁ ସ୍କୁଲକୁ ଯିବା ସେଠାରେ ଚଉକି ଅଛି ।" କଣ ବିଚ୍ଛରି ମଶିଣାରେ ପାଣ୍ଡିଆ ପକାଇ ବସିଲେ । ମୁଁ ତାଙ୍କ ପାଖେ ଅଧା ମଶିଣାରେ ଓ ଅଧା ତଳେ ବସିବା ପରେ କହିଲେ, "ଚନ୍ଦ୍ରାମଣି ! ମୁଁ ତୁମର ଭଲ ପାଇଁ ଆସିଛି । ତୁମେ ଗାଁ ବାଲାଙ୍କ ମେଳରେ ନେତୃତ୍ୱ ନେଇ ସଡ଼କର ପୋଲ ଭାଙ୍ଗିଛ, ଜଣେ ଲୋକ ଏଠାରୁ ଧାନ କିଣି ନେଉଥିଲେ, ତାହା ଲୁଟି କରିବାକୁ ରୋକିଛ । ଏସବୁ ଭାରି ଗୁରୁତର କଥା । ଏହାର ସମାଧାନ ଶୀଘ୍ର କରି ନ ଦେଲେ ବାଧ୍ୟ ହୋଇ ତୁମ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବ । ଯୁଦ୍ଧବେଳେ ଖୁବ୍ ବିପଦରେ ପଡ଼ିବ ।" ସେ ଏ କଥା ବଡ଼ ପାଟିରେ କହୁଥାନ୍ତି । ଗୁଡ଼ାଏ ଲୋକ ଏକାଠି ହୋଇ ଗଲେଣି । ଆମ ଘରୁ ଚା ଆସିଲା । 'ମୁଁ ଅପରାଧୀ ଠାରୁ ଚା ଖାଏନାହିଁ' ବୋଲି ସେ ବଡ଼ ପାଟିରେ ମହତ୍ତ୍ୱ ଦେଖାଇଲେ ।

ସେତେବେଳ ଯାଏଁ ମୁଁ କିଛୁ କହି ନ ଥିଲି । ସେ କଲେଜରେ ମୋର ଗୃଣକ୍ଲାସ ଉପରେ ଥିଲେ, ବୟସରେ ୬/୭ ବର୍ଷ ବଡ଼ । ମୋର ମଧ୍ୟ ଦୂର ସଂପର୍କୀୟ ବନ୍ଧୁ । ମୁଁ ଆଉ ସମ୍ଭାଳି ନପାରି ଉତ୍ତର ଦେଲି, 'ଆଜ୍ଞା, ସାହେବ ଅପରାଧୀଙ୍କୁ ଓ୍ୱାରେଣ୍ଟ ନ କରି ଏପରି ଆସିବା ତ ନୂଆ କଥା । ଆପଣ କାହାଠାରୁ କ'ଣ ଶୁଣି ମୋତେ ଅପରାଧୀ ବୋଲି କହି ସାରିଲେଣି । ଏଥି ପାଇଁ ତ ମୁଁ ଆପଣଙ୍କ ନାମରେ ଅଭିଯୋଗ କରିପାରେ ।'

ସାହେବ ଟିକିଏ ଦବିଗଲେ । ଏହା ଦେଖଣାହାରିଙ୍କୁ ବି ଜଣାଗଲି ବୋଲି ସେମାନଙ୍କ ମୁହଁରୁ ଲକ୍ଷ୍ୟ କଲି । ମୋଟା ଲୋକ, ବୁଦ୍ଧି ମଧ୍ୟ ଟିକିଏ ମୋଟା ବୋଲି ଆଗରୁ ଜାଣେ । ସେ ପୁଣି କହିଲେ, 'ନାହିଁ ଯେ, ବନ୍ଧୁ ଭାବରେ ପରାମର୍ଶ ଦେବାକୁ ଆସିଛୁ' । ମୁଁ କହିଲି, 'ତେବେ ବନ୍ଧୁ ଭାବେ ଗୃ' ଟିକିଏ ମୋ ଦୁଆରେ ଖାଇ ମୋତେ ଅନୁଗୃହୀତ କରନ୍ତୁ ।'

ଗୃ ଖାଉ ଖାଉ କହିଲେ, 'ତୁମେ ପୋଲ ଭାଙ୍ଗିଛ ବୋଲି ମୁଁ ପ୍ରମାଣ ପାଇଛୁ ।' ମୁଁ କହିଲି, 'ହୁଏତ ମୋ ଆଦେଶରେ ଭଙ୍ଗା ହୋଇଥିବ । ମୁଁ ଲୋକାଲ ବୋର୍ଡ଼ ଚେୟାରମ୍ୟାନ ବୋଲି ବୋଧ ହୁଏ ଆପଣ ଜାଣନ୍ତି, ସଡ଼କ ମୋ ଅଧୀନରେ । ପୋଲ ଖରାପ ହୋଇଛୁ ବୋଲି ହୁଏତ ଭଙ୍ଗା ହୋଇଛୁ ଗଢ଼ାହେବାକୁ ।' ସେ ମୋର ମାମଲତକାରି କଥାରେ ଚିଡ଼ିଯାଇ ଟାଣ ସ୍ୱରରେ କହିଲେ, 'ପଥରଦାନ ରାତି ଅଧରେ ଭଙ୍ଗା ହୋଇଛୁ ?' ମୁଁ ନିର୍ବିକାର ଭାବରେ କହିଲି, 'ଓଭରସିଅର କହିପାରିବେ କେବେ ଭଙ୍ଗା ହୋଇଛୁ । ମୁଁ ତ କହୁତ ଦିନ ହେଲା ଅର୍ଡ଼ର ଦେଲେଣି ।' ସେ କହିଲେ, 'ମୁଁ ଆଜି ତୁମ ଅଫିସ ଦେଖିବି ଓଭରସିଅର କେବେ ରିପୋର୍ଟ ଦେଇଛନ୍ତି, ତୁମେ କେବେ ଅର୍ଡ଼ର ଦେଇଛ ।' ମୁଁ ବେପରୁଆ ଭାବେ ଜବାବ ଦେଲି, 'ଆପଣଙ୍କର ତ ଆମ ଅଫିସ୍ ଖାନତଲାସ କରିବାର ଅଧିକାର ନାହିଁ । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନଙ୍କର ଅନୁମତି ଦରକାର ।'

ସେ ଠିଆ ହୋଇପଡ଼ି ଜମା ହୋଇଥିବା ଲୋକଙ୍କ ଆଡ଼କୁ ଚାହିଁ ପଚାରିଲେ, 'କହରେ, ସେ ଶଙ୍ଖ ପଥରଦାନ ରାତିରେ ଭଙ୍ଗା ହୋଇନାହିଁ ?' ଜଣେ ଫିସାଦିଆ ଉତ୍ତର ଦେଲା, 'ହଜୁର ହେଇଥିବ, ଆମେ ତ କାଲି ଦେଖିଛୁ ୧୦/୧୫ ଦିନ ହେଲା ସେଇମିତି ଅଛି । ଆମେ ବାବୁଙ୍କୁ କେତେଥର କହିଲୁଣି ଯେ ଖଣ୍ଡ ବେଗେ ମରାମତି କରି ଦେବାକୁ । ହଜୁର କ'ଣ ଏଇ ଗୋଟାକ ? ବଡ଼ ସଡ଼କକୁ ଯେଉଁ ସଡ଼କ ଯାଇଛୁ ସେଥିରେ ବି ଗମ୍ଭୀର ମନ୍ଦିରେ ଏପରି ଗୋଟେ ଭଙ୍ଗା ଶଙ୍ଖ ହଜୁର ! ଏ ଦୁଇଟାରୁ ଗୋଟିଏ ହେଲେ ମରାମତି କରାଇ ଦିଅନ୍ତୁ । ଖୋର୍ଦ୍ଧାକୁ ଶଗଡ଼ ଯିବାକୁ ବଡ଼ ଅସୁବିଧା ହେଉଛୁ ।'

ସାହେବ ମୋ ଆଡ଼କୁ ଚାହିଁ କହିଲେ, 'କାଲି ଯେ କୌଣସି ମତେ ଏ ଶଙ୍ଖ ମରାମତି କରିଦିଅ । ଲୋକଙ୍କର ଅସୁବିଧା ହେଉଛୁ ।' ମୁଁ କହିଲି, 'ମୁଁ ଆଜି ଓଭରସିଅରଙ୍କୁ ଜାଡ଼ା ଚିଠି ଦେବି । ଆପଣଙ୍କୁ ତା'ର କପି ପଠାଇବି ।' ସେ କହିଲେ, 'ଖାଲି ଚିଠି ଦେଲେ କ'ଣ ହେବ ? ତାଙ୍କୁ ଲଗାଇ କରାଇ ଦିଅ ।'

ସେ ଚଲକୁ ଓହ୍ଲାଇବା ବେଳକୁ ଦଳେ ଲୋକ ବେଢ଼ି ଯାଇ କହିଲେ, 'ହଜୁର ! ଆମ ଭାଗ୍ୟକୁ ହଜୁର ଆସି ପହଞ୍ଚିଛନ୍ତି । ଆମ ପାଇଁ କିଛି ଧାନ କରାଇ ଦିଅନ୍ତୁ । ଆମେ ଦି'ଦିନ ହେଲା ଖାଇନାହୁଁ । ଆମ ଗାଁରେ ବହୁତ ଲୋକ ଧାନ ଜମେଇ ରଖିଛନ୍ତି । ହଜୁର ଯେଉଁ ଧାନ ସବୁ ଜବତ୍ କରିଛନ୍ତି ସେଥିରୁ ଗୋଟାଏ ଆଜ୍ଞା ଫିଟେଇ ଦିଅନ୍ତୁ ।' ସାହେବ କହିଲେ, 'ତା ହୋଇ ପାରିବ ନାହିଁ । ତୁମେମାନେ ଦରଖାସ୍ତ କଲେ ମୁଁ କଟଣୀ ଡିପୋରୁ ଚାଉଳ ବା ଧାନ ମଗାଇ ଦେବି ।'

ପୁଣି ଆପତ୍ତି ହେଲା, 'ହଜୁର ! ଯେଉଁ ସତର ଭରଣ ଧାନ ସେ ବାବୁଙ୍କ ଖଳାରେ ଜମା ହୋଇଛି ସେଇତକ ବିକାଇ ଦିଅନ୍ତୁ ।' ସାହେବ କହିଲେ, 'ତା କରିବାର ଅଧିକାର ମୋର ନାହିଁ ।' ଏତିକ କହି ସେ ଟଙ୍ଗ ଟଙ୍ଗ ହୋଇ ଗଲାବେଳକୁ ପଛରୁ ଜଣେ କିଏ କହିଲା, 'ଆଉ ସ୍ୱାଙ୍କର ଖାଲି ଅଧିକାର ଅଛି ସେ ସତର ଶଗଡ଼ ଧାନ ରାତ୍ରି ତୋଫାନ କରି ମହାଜନକୁ ଦିଆଇ ଦେବାକୁ । କ'ଣ ବୋଧହୁଏ ମିଳି ଯାଇଛି ।' ସାହେବ ହଠାତ୍ ଲେଉଟି ପଡ଼ି ପାଟି କଲେ 'ସେ ଲୋକ କିଏ ? କିଏ ସ୍ୱା କହିଲା ?' ହଜୁର, ଯେ କହିଥିଲା ସେଇ ଖୁବ୍ ସମ୍ଭବ ଉତ୍ତର ଦେଲା, 'ସେ କୁଆଡ଼େ ଗଲାଣି । ବାଇଆଟେ ହେ, କ'ଣ କହିଦେଲା ହଜୁର କାହିଁକି ଶୁଣୁଛନ୍ତି ?'

ସାହେବଙ୍କ ସଙ୍ଗେ ସମସ୍ତେ ଭଙ୍ଗା ଶଙ୍ଖ ପାଖକୁ ଚାଲୁ । ତାଙ୍କ ସଙ୍ଗରେ ଆସିଥିବା ପୋଲିସ୍ କନଷ୍ଟେବଲ୍ ଓ ଡ୍ରାଇଭର ତରତର ହୋଇ ଆମ ଆଡ଼କୁ ଆସୁଥାନ୍ତି । ମଟର ପାଖରେ ଯାଇ ପହଞ୍ଚିଲା ବେଳକୁ ମଟର ଦୁଇଟାଯାକର ପଛ ଚକ ସିଲା ଫଟ । ସାହେବ ଚିଡ଼ିଯାଇ ଡ୍ରାଇଭରକୁ ଚାହିଁବାରେ ସେ କହିଲା, "ଅଜ୍ଞା, ଆମେ କ'ଣ କରିବୁ ? ପଂଚେ ଟୋକା ଆସି ଆମକୁ କହିଲେ, 'ସାହେବ ଡାକୁଛନ୍ତି ବେଗେ ଯାଅ ।' ଆମେ ତ ଧାଇଁ କରି ଚାଲୁଥିଲୁ ।" ସେ ଲୋକ କିଏ ବୋଲି ସାହେବ ଚଢ଼ା ମରକଟି ହେଲା ବେଳକୁ, ମୁଁ ଆମ ଘରୁ ପମ୍ପ ଓ ପ୍ୟାଚଂ ସେଟ୍ ଆଣିବାକୁ ଲୋକ ଦଉଡ଼ାଇଲି । କୋଟିଏ ଗଛ ମୂଳେ ସାହେବ ବସିଲେ । ମୁଁ ପାଖରେ ବସିଲି । ମୋତେ କହିଲେ, 'ଏ ଲୋକଗୁଡ଼ାକ ଭାରି ଖରାପ । କିଏ ଏ କାଣ୍ଡ କରିଛି ଅନୁସନ୍ଧାନ କରି ଜଣାଇବ ।' ମୁଁ କହିଲି, 'ଏ ପୁଲିସ କନଷ୍ଟେବଲକୁ ଛାଡ଼ି ଯାଆନ୍ତୁ । ସେ ଖୋଜା ଖୋଜି କରି ଦୋଷୀକୁ ଧରି ଚାଲାନ୍ କରିବ ।'

ଗୋଟିଏ ଚକ ସଜଡ଼ା ହେଲା । ଷ୍ଟେପ୍‌ନୀଟା ଆଉ ପଟେ ଲଗିଲା । ମୁଁ ଖାଇ ପିଇ ସାରି ତର ତର ହୋଇ ଖୋର୍ଦ୍ଧା ଗଲି । ଓଭରସିଅରଙ୍କୁ ଖଣ୍ଡେ ଚିଠି ଦେଇ ତାର କପି ନିଜେ ଯାଇ ଏସ୍. ଡି. ଓ. ଙ୍କ ଘରେ ଦେଇ ଆସିଲି । ତାଙ୍କ ସ୍ତ୍ରୀ ମୋତେ ଜାଣନ୍ତି । ଭଲ ଜଳଖିଆ ଦେଲେ । ଏପରି ମହାତ୍ମା ସେତେବେଳେ କଦବା କେମିତ ଥିଲେ । ଏବେ ସ୍ୱୁରିଆଡ଼େ ।

କଲେଜର ସ୍ତ୍ରୀଜଣ ଇଂରେଜ ପ୍ରଫେସରଙ୍କୁ ଦେଖିଥିଲି ; ସେମାନଙ୍କ ସଙ୍ଗେ ଘନିଷ୍ଠତା ମଧ୍ୟ ଆସିଥିଲା ; କିନ୍ତୁ ସେମାନେ ଥିଲେ ଗୁରୁ ; ତେଣୁ ସେମାନଙ୍କ ସଙ୍ଗେ ଅନ୍ତରଙ୍ଗ ଭାବ ଆସିବା ସମ୍ଭବ ନ ଥିଲା ; ପୁଣି ସବୁ ବିଷୟରେ ସେମାନେ ଥିଲେ ମୋଠାରୁ ବହୁଜ୍ଞ ; କିନ୍ତୁ ବର୍ଷ ଆମ ଦେଶରେ କଟାଇ ଥିବାରୁ ମୋଠାରୁ କିଛି ଜାଣିବାକୁ ତାଙ୍କର ନ ଥିଲା । କିନ୍ତୁ ଝୋର୍ଦ୍ଧାର ଏ ଦୁଇଜଣ ଯୁବକ ଏସ. ଡି. ଓ. ଆମ ଦେଶରେ ନୂଆ ହୋଇଥିବାରୁ ଓ ମୁଁ ସେମାନଙ୍କଠାରୁ ବୟସରେ ବଡ଼ ହୋଇଥିବାରୁ ସେମାନେ ମୋଠାରୁ ଆମ ବିଷୟରେ ସବୁ ଜାଣିବାକୁ ଆକାଂକ୍ଷୀ ଥିଲେ ଏବଂ ଠିକଏ ସୁବିଧା ପାଇଲେ ପଢ଼ିଥିବା ପାଠ ସଙ୍ଗେ ମୋର କଥାକୁ ମିଶାଇ ଯତ୍ନରେ ପଢ଼ୁଥିବାକୁ ଚେଷ୍ଟା କରୁଥିଲେ । ଶେଷ ବେଳର ଏହି ଯୁବକ ସିଭିଲିଆନ୍‌ମାନେ ତାଙ୍କ ପୂର୍ବବର୍ତ୍ତୀଙ୍କ ପରି ସବ୍‌ଜାନ୍ତା ଢଙ୍ଗ ନ ଧରି ଶିଖିବାକୁ ଆଗ୍ରହୀ ଥିଲେ । ପରେ ସେକ୍ରେଟାରିଏଟର ଯେଉଁମାନଙ୍କ ସଙ୍ଗେ ପରିଚୟ ହେଲା, ସେମାନଙ୍କୁ ମଧ୍ୟ ଦେଖି ମୋର ଧାରଣା ହୋଇଥିଲା ଯେ ଶେଷ ଆଡ଼କୁ ଇଂରେଜ ଅଫିସରମାନେ ତତ୍‌କାଳୀନ ଭାରତୀୟମାନଙ୍କଠାରୁ ଭାରତର ଯାଶା ଆକାଂକ୍ଷା ଜାଣିବାକୁ ଇଚ୍ଛା କରୁଥିଲେ ।

ଏହି ଜିଜ୍ଞାସୁ ଭାବ ସବୁଠାରୁ ଅଧିକ ମାତ୍ରାରେ ମ୍ୟାକ୍‌ଡୋନାଲଡ୍‌ଙ୍କଠାରେ ଲକ୍ଷ୍ୟ କରିଛି । ବିଶ୍ୱ ତ ହୋଇ ନ ଥାନ୍ତି । ଆମ ଅଫିସରମାନଙ୍କ ପରି ସେ ଆତ୍ମସର୍ବସ୍ୱ ନ ହୋଇ ସବୁବେଳେ ଅନ୍ୟ ସଙ୍ଗେ ନାନା ବିଷୟରେ କଥାବାର୍ତ୍ତା ହୋଇ ନିଜର ଜ୍ଞାନ ବଢ଼ାଇବାକୁ ଉଦ୍ୟମ କରୁଥିଲେ । ତାଙ୍କଠାରୁ ମାତ୍ରାରେ କମ୍ ହେଲେ ହେଁ, ପ୍ରାୟ ପ୍ରତ୍ୟେକ ଇଂରେଜ ଅଫିସରଙ୍କର ଧନ ପିପାସା ଅପେକ୍ଷା ଜ୍ଞାନ ଓ ଅଭିଜ୍ଞତା ପିପାସା ଅଧିକ ଥିବାର ମୁଁ ଲକ୍ଷ୍ୟ କରିଛି । ମୁଁ ପ୍ରାୟ ସଂଧ୍ୟାବେଳେ ମ୍ୟାକ୍‌ଡୋନାଲଡ୍ ଓ ସ୍ତ୍ରୀଙ୍କ ସଙ୍ଗେ ଦେଖା କରିବାକୁ ଯାଏ । ସେତେବେଳେ ସେମାନେ ସରକାରୀ କାର୍ଯ୍ୟରୁ ମନକୁ ମୁକ୍ତ ରଖି ଓ ବୋଧହୁଏ ମଦ ଠିକଏ ଠିକଏ ପିଇ ଭଲ ମେଜାଜରେ ଥାନ୍ତି । ମ୍ୟାକ୍‌ଡୋନାଲଡ୍ ଥରେ ମାତ୍ର ମୋତେ ଠିକଏ ହୁଇସ୍କି ଯାଚିଥିଲେ ; ମୋଠାରୁ ନାସ୍ତିବାଣୀ ଶୁଣି ଆଉ କେବେ ଯାଚି ନାହାନ୍ତି । ମୁଁ କିନ୍ତୁ ମଦ ନ ଖାଇଲେ ବି ତାଙ୍କ ସଙ୍ଗେ ଆଲୋଚନା ବେଳେ ମଦୁଆଙ୍କ ପରି ବେପରୁଆ ଥାଏ ।

ଥରେ କଥା ପ୍ରସଙ୍ଗରେ ସେ ମୋତେ କହିଲେ, 'ମିଷ୍ଟର ମିଶ୍ର ! ମୁଁ ଗୋଟିଏ କଥା କହିବି, ଆପଣ କିଛି ଭାବିବେ ନାହିଁ । ମୋର ଧାରଣା, ଆପଣଙ୍କ ଲୋକେ ଆମ ଲୋକଙ୍କ ତୁଳନାରେ ଅଧିକ ମିଥ୍ୟାବାଦୀ ଓ ଅସାଧୁ ।' ମୁଁ ପଚାରିଲି, 'ଆପଣ କଳା ସ୍ନାତକ ନା ବିଜ୍ଞାନ ସ୍ନାତକ ?' ସେ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ବୋଲି କହିବାରେ ମୁଁ କହିଲି, 'ଆପଣ ତ ତର୍କ ଶାସ୍ତ୍ର ( logic ) ପଢ଼ିଥିବେ । ଦୁଇ ବ୍ୟକ୍ତି ବା ଗୋଷ୍ଠୀର ତୁଳନା କଲାବେଳେ ସମସ୍ତରର ଲୋକଙ୍କୁ ତୁଳାଯାଏ । ଆପଣ ଏ କ୍ଷେତ୍ରରେ ତା' କରୁ ନାହାନ୍ତି ବୋଲି ମୁଁ ବିଚାରୁଛି ।

ଆପଣ ପ୍ରଥମ ଯୌବନରେ ଏଠାକୁ ଆସିଛନ୍ତି । ଇଂଲଣ୍ଡରେ ନିଜ ପିତା ମାତା ଓ ଶିକ୍ଷକଙ୍କ ସଙ୍ଗେ ଆପଣଙ୍କର ପରିଚୟ, ଏଠାରେ କିନ୍ତୁ ଆସି ଦେଖୁଛନ୍ତି, ଚପରାସି, ସ୍ତ୍ରୀକିରାଣି, ମିଛ-ସାକ୍ଷୀ ଓ ଓକିଲ ମୁକ୍ତାର । ଏ ଦୁଇ ଗୋଷ୍ଠୀ ତ ସମକକ୍ଷ ନୁହନ୍ତି ।

ସେ ଟିକିଏ ଚମକିତ ହେଲା ପରି ହୋଇ ପଚାରିଲେ, 'ଆମେ ଯାହାଙ୍କୁ ଦେଖୁଛୁ ସେମାନେ କ'ଣ ଆପଣଙ୍କ ଦେଶର ପ୍ରତିନିଧି ନୁହନ୍ତି ?' ମୁଁ କହିଲି, 'ଗୋଟିଏ ଦେଶର ଧାରଣା କରିବାକୁ ହେଲେ ଅନ୍ତତଃ ଶହକେ ୧୦ । ୧୫ ଜଣଙ୍କୁ ଜାଣିବା ଦରକାର । ଆପଣମାନେ ସମଗ୍ର ସ୍ତ୍ରୀକିରି ଜୀବନରେ ଶହକେ ଜଣେ ଦୁଇ ଜଣଙ୍କୁ ଦେଖିବେ କି ନାହିଁ ସନ୍ଦେହ । ଆପଣ କଚେରୀକୁ କେତୋଟା ମକଦ୍ଦମା ଆସୁଛି ଆଗ ବୁଝନ୍ତୁ ।' ସେ ସାଙ୍ଗେ ସାଙ୍ଗେ ପେସକାରଙ୍କୁ ଡକାଇ ପଚାରି ବୁଝିଲେ ଯେ, ବର୍ଷକୁ ପ୍ରାୟ ୪୫୦ ମକଦ୍ଦମା ହେଉଛି ।'

ମୁଁ କହିଲି, 'ଧରାଯାଉ ଗୋଟିଏ ମକଦ୍ଦମାରେ ୧୦ ଜଣ ଲୋକ ଠିଆ ହେଉଛନ୍ତି । ମୋଟରେ ହେଲେ ଚାରି ହଜାର ପାଞ୍ଚଶହ । ସବ୍‌ଡିଭିଜନର ଲୋକ ସଂଖ୍ୟା ସାବାଳକ ସ୍ତ୍ରୀ ପୁରୁଷ ମିଶି ଥିବେ ତିନି ଲକ୍ଷ । ସେଥିରୁ ଶତକଡା କେତେ ଜଣଙ୍କୁ ଆପଣ ଜାଣୁଛନ୍ତି ? ପୁଣି, ଟିକିଏ ଲକ୍ଷ୍ୟ କଲେ ଦେଖିବେ, ଏ ମକଦ୍ଦମାରେ ଯେ ଠିଆ ହେଉଛି, ଆର ମକଦ୍ଦମାରେ ସେଇ । ଓକିଲ ମୁକ୍ତାର ଯେପରି ସବୁ ମକଦ୍ଦମାରେ ସମାନ, ସାକ୍ଷୀ ମଧ୍ୟ ସେହିପରି । ମିଛ ସାକ୍ଷୀ ଦେବାକୁ ଦଳେ ଲୋକ ଅଛନ୍ତି । ସେ ପ୍ରାୟ ପାଞ୍ଚଟା ମକଦ୍ଦମାରୁ ଗୋଟିକରେ ଠିଆ ହୁଅନ୍ତି, ପଇସା ପାଇଁ । ପୁଣି ତିନିଲକ୍ଷ ସାବାଳକଙ୍କ ଭିତରେ ଦେଢ଼ଲକ୍ଷ ସ୍ତ୍ରୀ ଲୋକଙ୍କ ମୁହଁ ଆପଣ ଦେଖନ୍ତି ନାହିଁ । ସେମାନେ ମକଦ୍ଦମାରେ ହାଜର ହୁଅନ୍ତି ନାହିଁ କି ପୂର୍ବର ମୁସଲମାନ, ମୋଗଲ ଶାସକଙ୍କ ଭଳି ଆପଣ ହ୍ୟାରେମ୍ କରି ନାହାନ୍ତି । ତେଣୁ ଆପଙ୍କ ପରିଚୟ ଖଟୁଆ, ମିଛୁଆଙ୍କ ଭିତରେ ଆବଦ୍ଧ । ସେଇମାନଙ୍କୁ ଦେଖି ଆପଙ୍କର ଭାରତ । ସେଇମାନଙ୍କ ମଙ୍ଗଳ ଅମଙ୍ଗଳରେ ଆପଣଙ୍କ ଧ୍ୟାନ । ପ୍ରକୃତ ଭାରତ ଆପଣଙ୍କଠାରୁ ଖୁବ୍ ଦୂରରେ ଅଛି ଓ ରହିବ ।'

ସେ ଚମକୃତ ହେଲା ପରି ମୋ ଆଡ଼କୁ ଚାହିଁ ରହିଲେ ଏବଂ ଟିକିଏ ପରେ ପଚାରିଲେ, 'ଆଚ୍ଛା, ଭାରତ ସ୍ୱାଧୀନ ହେଲେ ଏ ଅବସ୍ଥା ବଦଳିବ ନା ନାହିଁ ?' ମୁଁ ବି ଟିକିଏ ଚମକୃତ ହୋଇ ରହିଲି ; ପରେ କହିଲି, 'ମୁଁ ତ ଗୋଟିଏ ଦଳର ଲୋକ । କିନ୍ତୁ ଆମେ ଦୁହେଁ ତ ଯେ କୌଣସି ଦଳଠାରୁ ଉପରେ ରହି କଥାବାର୍ତ୍ତା ହେଉ ଥାଇଁ । ତେଣୁ ମୋର ବ୍ୟକ୍ତିଗତ ମତ ଆପଙ୍କୁ କହୁଛି । ମୋର ବିଶ୍ୱାସ ଇଂରେଜମାନେ ଯେପରି ନିଜ ସ୍ୱାର୍ଥରେ ଭାରତ ଶାସନ କରୁଛନ୍ତି, ସ୍ୱାଧୀନତା ସଂଗ୍ରାମୀମାନେ ସେହିପରି ତାଙ୍କ ସ୍ୱାର୍ଥରେ ଏ ଦେଶର ମାଲିକ ହେବେ । ଶାସନ କ୍ଷମତା ଆପଣଙ୍କଠାରୁ ତାଙ୍କ ହାତକୁ ଯିବ । ସାଧାରଣ ଲୋକେ ମୁସଲମାନ, ମୋଗଲ, ମରହଟ୍ଟାଙ୍କ ଅମଳରେ ଯେପରି ଭୂଇଁ କାମୁଡ଼ି ପଡ଼ିଥିଲେ ସେହିପରି

ରହିବେ । ଆପଣଙ୍କ ଅମଳରେ ଏମାନଙ୍କ ମଧ୍ୟରୁ ମୁଷ୍ଟିମେୟ ଯେପରି ଆପଣଙ୍କ ପଛରେ ଗୋଡ଼ାଇ ସ୍ୱାର୍ଥ ସାଧନ କରୁଛନ୍ତି ସେହିପରି ଭବିଷ୍ୟତ ଶାସକଙ୍କ ଅମଳରେ ମୁଠିଏ ବା ଦି'ମୁଠି ଲୋକେ ସେମାନଙ୍କ ଗୋଡ଼ାଣିଆ ହୋଇ ରହିବେ । ଭାରତୀୟ ଜନତା ଆଡ଼କୁ ଆପଣଙ୍କର ଯେମିତି ଦୃଷ୍ଟି ସେମାନଙ୍କର ତହିଁରୁ ଅଧିକ ରହିବ ନାହିଁ ; କେହି କେହି ତ ମନେ-କରୁଛନ୍ତି ସେମାନଙ୍କର କମ ରହିବ ।'

ତାଙ୍କର ମୋ ପ୍ରତି ମାନନା ବଢ଼ିଗଲା ବୋଲି ମନେ କଲି । ସେତେବେଳକୁ ଆଠଟା ବାଜି ସାରି ଥାଏ । ସେ କହିଲେ, 'ଆପଣଙ୍କ ଘରକୁ ଯିବାକୁ ବିଳମ୍ବ ହେଉଛି ?' ମୁଁ କହିଲି, 'ଓଲଟି ଆପଣଙ୍କର ଖାଇବା ବେଳ ହୋଇ ଯାଉଛି ବୋଲି ମୁଁ ବିଗୁଡ଼ୁଛି । ମୋର ବିଳମ୍ବ ହେଉ ନାହିଁ । ବେଳେବେଳେ କାହା ଦୋକାନରେ ବସି ଗପ ଗପ ଦଶଟା ଏଗାରଟା ହୋଇ ଯାଏ ।' ସେ କହିଲେ, 'ଆପଣଙ୍କର ଖାଇବା ବେଳ କେତେ ?' ମୁଁ କହିଲି, 'ଶୋଇବା ପୂର୍ବରୁ ମୋର ଖାଇବା ବେଳ । ଶୋଇବାର ସମୟ ଠିକ୍ ନାହିଁ । କେତେବେଳେ ଗୋଟାଏ ତ କେତେବେଳେ ଦୁଇଟା । କଥା ବା ଖେଳରେ ମନ ଲାଗିଗଲେ, ସମୟର ବିଗ୍ରର ନ ଥାଏ ।' ସେ ହସି ହସି କହିଲେ, 'ମୁଁ ଏଭଳି ସମୟାନୁବର୍ତ୍ତିତା ଅଭ୍ୟାସ କରିନାହିଁ । କିନ୍ତୁ ଆଉ ଗୋଟିଏ କଥା ପଚାରିବାକୁ ମୋର ମନ । ଖାଇବାକୁ ବିଳମ୍ବ ହେଲେ ଚଳିବ । ଆଉ କପେ କପେ ଚା ପିଆଯାଉ ।'

ଚା ଆସିଲା, ତା ସଙ୍ଗେ ଯାହା ସ୍ୟାଣ୍ଡୱିଚ୍ ଆସିଲା ସେତିକରେ ମୁଁ ଏକୁଟିଆ ସତ୍କାର କରି ଅନ୍ୟ ରାତ୍ରି ଭୋଜନର ବାଟ ବନ୍ଦ କରି ଦେଲି । ସେ ପଚାରିଲେ, ଆଚ୍ଛା, ଜିନ୍ନାଙ୍କ ହିନ୍ଦୁ ମୁସଲମାନ ସମସ୍ୟା ଓ ଅମ୍ବେଦକରଙ୍କ ଅସ୍ପୃଶ୍ୟତା ସମସ୍ୟା ବିଷୟରେ ଆପଣଙ୍କ ମତ କ'ଣ ?

ମୁଁ କହିଲି, 'ଏହା ରାଜନୈତିକ ସମସ୍ୟା ; ସାମାଜିକ ନୁହେଁ । ଆପଣ ତ ଜାଣନ୍ତି ଆମ ଗାଁରେ ହିନ୍ଦୁ ମୁସଲମାନ ପ୍ରାୟ ୨।୩ ଶହ ବର୍ଷ ହେଲା ଘରି ଘରି ହୋଇ ଅଛନ୍ତି । ଜଣେ ମୁସଲମାନ ଭଦ୍ରଲୋକ ମୋର ମଉସା ; ମୋ ବାପାଙ୍କର ସଙ୍ଗାତ । ହରିଜନ ଆମକୁ ନ ଛୁଇଁଲେ ଆମର ବ୍ରତଘର ହୁଏ ନାହିଁ । କାହା ସଙ୍ଗେ ବୈବାହିକ ସମ୍ପର୍କ ହେବ କାହା ସଙ୍ଗେ ନ ହେବ, କାହା ଘରେ ଖାଇବା, କାହା ଘରେ ନ ଖାଇବା ତାହା ବ୍ୟକ୍ତିଗତ ବା ଗୋଷ୍ଠୀଗତ ରୁଚି ଉପରେ ନିର୍ଭର କରେ । ଛୁଆଁଛୁଇଁ ହରିଜନ ଓ ଉଚ୍ଚ ଜାତିର ହିନ୍ଦୁଙ୍କ ଭିତରେ ନାହିଁ । ହିନ୍ଦୁ ହିନ୍ଦୁଙ୍କ ଭିତରେ ଅଛି ; ବ୍ରାହ୍ମଣ ବି ବ୍ରାହ୍ମଣଙ୍କ ଘରେ ଖାଆନ୍ତି ନାହିଁ । ଏଇ କଥା ବୁଝାଇବାକୁ ଯାଇ ବଶିଷ୍ଠ ଅରୁନ୍ଧତୀ କଥା ପଡ଼ିଲା । ସଙ୍ଗାତ ମଉସା କଥା ବୁଝାଇଲି । ମୁସଲମାନ ଘରୁ ଦୁଧ ଆଣି ଆମେ ଦିଅଁଙ୍କୁ ପୂଜା କରୁ ଓ ଖାଉ ବୋଲି କହିଲି । ଦୁଧ ବିକିବାବାଲା ଦୁଧରେ ପାଣି ଟିକିଏ ନ ମିଶାଇଲେ ଗାଈର ଦୁଧ ଶୁଖିଯାଏ

ବୋଲି ଗାଁରେ ବିଶ୍ୱାସ ଥିବା କହିଲି । କୁସୁମି ଗାଉଁତପଡ଼ାରେ ବ୍ରାହ୍ମଣ ଓ ମୁସଲମାନ ଗୁଲକୁ ଗୁଲ ବାନ୍ଧି ରହିବା କଥା ପଡ଼ିଲା । ସେତେବେଳକୁ ସାଢ଼େଦଶ । ଏ ବିଷୟ ଆଉ ଥରକୁ ରହିଲା ବୋଲି କହି ମୋ ସାଙ୍ଗେ ମୋ ସାଇକେଲ ପାଖକୁ ଆସୁ ଆସୁ କହିଲେ, 'ମୁଁ ଦିନେ ଆପଣଙ୍କ ସଙ୍ଗେ ଗାଉଁତପଡ଼ା ଯାଇ ବ୍ରାହ୍ମଣ ଓ ମୁସଲମାନ ପ୍ରତିବେଶୀ ଥିବାର ଦେଖିବି । ଆପଣଙ୍କ କଥାରେ ମୁଁ ଅବିଶ୍ୱାସ କରିବା ଯୋଗୁଁ ନୁହେଁ, ଏହା ଦେଖିବାକୁ ମୋର କୌତୂହଳ ହେଉଛି ।' ମୁଁ ବାହାରିଲା ବେଳକୁ କହିଲେ, 'ଜଙ୍ଗଲରେ ଯିବେ । ଭୟ ହେବ ନାହିଁ ତ ?' ମୁଁ କହିଲି, 'ଭୟ ହୁଅନ୍ତା ଯେ ମଟର ସାଇକେଲ ଓ ମଟର କି ଜନ୍ତୁ ତାହା ବାଘ କି ବାରହା ଅଦ୍ୟାପି ଜାଣି ନାହାନ୍ତି ।'

ଆଉ ଥରେ ଦେଖା ହେଲା ବେଳେ ସେ ଗାଉଁତପଡ଼ା ଯିବା କଥା କହିଲେ । ତାଙ୍କର ମଟର ନ ଥାଏ । ମୋ ପ୍ରସ୍ତାବରେ ସେ ଖୋର୍ଦ୍ଧା ପାର ହେବାର ମାଇଲକ ଠାରୁ ଓ କୁସୁମିକୁ ମାଇଲିଏ ଥିବା ପର୍ଯ୍ୟନ୍ତ ମୋ କାନ୍ଧରେ ହାତ ପକାଇ ଗଲେ । କୁସୁମିର ବ୍ରାହ୍ମଣ ସାହିରେ ପଶିଯାଇ ଯେଉଁଠାର ଓହ୍ଲାଇଲୁଁ ସେଠାରେ ଗୁଲିଥାଏ ଗଞ୍ଜପା ଖେଳ । ପ୍ରାୟ ୧୫ ମିନଟ୍ ପର୍ଯ୍ୟନ୍ତ ଆମ ଆଡ଼କୁ କେହି ଗୁହିଁଲେ ନାହିଁ । ତା'ପରେ ଜଣେ ବୟସ୍କ ବ୍ରାହ୍ମଣ ତଳକୁ ଓହ୍ଲାଇ ଆସି ମୋର ନମସ୍କାର ଗ୍ରହଣ କଲେ ଏବଂ ସାହେବଙ୍କର ପରିଚୟ ପାଇ ତାଙ୍କୁ ସମ୍ବର୍ଦ୍ଧନା କଲେ । ସେତେ-ବେଳକୁ ଖେଳାବାଳା ସମସ୍ତେ ତଳକୁ ଓହ୍ଲାଇ ଥାନ୍ତି । ସମସ୍ତେ ଗୁଲି ଗୁଲି ଆର ସାହି (ମସଜିଦ୍ ସାହି) କୁ ଗଲୁଁ । ବ୍ରାହ୍ମଣ ଓ ମୁସଲମାନ ପଡ଼ିଶାରେ ଥିବା ଲୋକେ ଦେଖାଇ ଦେଲେ । ସାହେବ ବିସ୍ମିତ ଓ ଆନନ୍ଦିତ ହୋଇ ଆମ ସଙ୍ଗେ ଗୁଲିଥାନ୍ତି ଏବଂ ଖଣ୍ଡିଆ ଖଣ୍ଡିଆ ଓଡ଼ିଆରେ ଲୋକଙ୍କୁ ପଦେ ପଦେ ପଗୁରୁଥାନ୍ତି । ବିନୀତ ଭାବରେ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ କହିଲେ, 'ମୋ ଓଡ଼ିଆ ଶୁଣି ଆପଣଙ୍କୁ ହସ ମାଡ଼ୁଥିବ ।' ମୁଁ ଉତ୍ତର ଦେଲି, 'ଆମ ଇଂରେଜୀ ଶୁଣି ଆପଣ ତ ହସୁ ନାହାନ୍ତି !' ସମସ୍ତେ ହସିଲେ । ତାଙ୍କର ମୋର ଇସ୍କୁଲ ଯାଏ ଗଲୁଁ । ସାହେବ ଇସ୍କୁଲ ପରିଦର୍ଶନ ଖାତାରେ ଓଡ଼ିଆ ଅକ୍ଷରରେ ଗୋଟାଏ ପୃଷ୍ଠା ପରିଦର୍ଶନ ମନ୍ତବ୍ୟ ଲେଖିଲେ । ମାଷ୍ଟ୍ରଙ୍କୁ କହିଲି, 'ଏ ଖାତାଟା ସାଇତିବ । ଭବିଷ୍ୟତରେ ଦରକାର ହେବ ।' ମାଷ୍ଟ୍ରେ ରଖିଛନ୍ତି କି ନାହିଁ ବୁଝିନାହିଁ । ବାଟରେ ମ୍ୟାକ୍‌ଡୋନାଲ୍‌ଡ୍ ମୋତେ କହିଲେ, 'ମୋତେ ଏ ଗାଁକୁ ଆଣିବା ହେତୁ ମୁଁ କୃତଜ୍ଞ । ସେଦିନ ଯାହାସବୁ କଥାବାର୍ତ୍ତା ହୋଇଥିଲେ ତାହାର ପ୍ରତ୍ୟକ୍ଷ ପ୍ରମାଣ ପାଇଲି । ବାସ୍ତବିକ ଆମେ ଯେଉଁମାନଙ୍କ ସଙ୍ଗେ ଚଳୁ ସେମାନେ ଏ ଦେଶ ଲୋକଙ୍କର ପ୍ରତିନିଧି ନୁହନ୍ତି ।'

ତାଙ୍କ ସଙ୍ଗେ ମୁଁ ଯେତେ ଯେତେ ବିଷୟରେ ଆଲୋଚନା କରିଛି ତାକୁ ଲେଖି ବସିଲେ ବହୁତ କାଗଜ ଯିବ । ସ୍ଥାନ ଯାହେବ ସେଇ ଧରଣର ଲୋକ ହେଲେବି ସେତେ ପାଠୁଆ ନୁହନ୍ତି । ତାଙ୍କ ସଙ୍ଗେ ସୌହାର୍ଦ୍ଦ୍ୟ ସ୍ଥାଙ୍କଠାରୁ ବି ଅଧିକ ହେଲା । ସେ ମୋଠାରୁ ପ୍ରାୟ ଦଶବର୍ଷ ସାନ, ଓ ବଡ଼ଭାଇ ପରି ମୋତେ ମାନ୍ୟ କରନ୍ତି । ତାଙ୍କ କଥା ଆଉରି ବିସ୍ତାର ଭାବେ କହିବାର ଅବସର ଆଗରେ ମିଳିବ । ଏଠାରେ ଗୋଟିଏ ଯୋଡ଼ିଏ କଥା ମାତ୍ର ଲେଖୁଛି । ମିଷ୍ଟର ସ୍ଥାନ ମିଷ୍ଟର ମ୍ୟାକଡୋନାଲ୍ଡଙ୍କଠାରୁ ଢେର୍ ଅଧିକ ଦେଶପ୍ରେମୀ ଥିଲେ ଏବଂ ଠିକଏ ସମୟ ପାଇଲେ ଯୁଦ୍ଧରେ ତାଙ୍କ ପକ୍ଷ ଜର୍ମାନୀକୁ କପରି ହରାଉଛି, ସେ ବିଷୟରେ ଗପୁଥିଲେ । କୋର୍ଟରେ ଯୁଦ୍ଧ ଋଣ କପରି ଅଧିକ ସଂଗୃହୀତ ହୋଇ ପାରିବ ସେଥିରେ ତାଙ୍କର ଭରି ଆଗ୍ରହ । ମୁଁ କପରି ଯୁଦ୍ଧ ଋଣ ସଂଗ୍ରହ କରିବାରେ ତାଙ୍କୁ ସାହାଯ୍ୟ କରନ୍ତି ବୋଲି ତାଙ୍କର ଭାରି ଇଚ୍ଛା କିନ୍ତୁ ମୁଁ କହେ ଯେ, ମିତ୍ର ପକ୍ଷକୁ ସାହାଯ୍ୟ କରିବାରେ ମୋର ବ୍ୟକ୍ତିଗତ ମତ ଯାହା ହେଉ ପଛେ ମୁଁ କଂଗ୍ରେସରୁ ଅନ୍ତର ନ ହେବା ପର୍ଯ୍ୟନ୍ତ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିପାରିବି ନାହିଁ । କିନ୍ତୁ ତାଙ୍କ ଉଦ୍ୟମରେ କେବେହେଲେ ବାଧା ଦେବି ନାହିଁ । ଥରେ ଗୋଟିଏ ଗାଁରେ ଆମେ ଦୁହେଁ ଅଗ୍ରନକ ଭାବେ ଭେଟ ହୋଇଗଲୁଁ । ସେ ସରକାରୀ କର୍ମଚାରୀମାନଙ୍କର ଗୋଟିଏ ସଭା ଡକାଇ ଥାନ୍ତି । ମୁଁ ସେ ଗାଁରେ ଅଛି ବୋଲି ଶୁଣି ସେ ମୋତେ ଡାକି ପଠାଇଲେ ଏବଂ ଆମ ସଭାରେ ବସିବେ କି ବୋଲି ପଚାରିଲେ । ମୁଁ ହଁ କଲି କିନ୍ତୁ ବକ୍ତୃତା ଦେବାକୁ ନାହିଁ କଲି । ଜଣେ ଦୁଇଜଣ ବକ୍ତୃତା ଦେବା ପରେ ଜଣେ ସରକାରୀ କାର ଠିଆ ହୋଇ କହିଲେ, ଚନ୍ଦ୍ରାମଣି ବାବୁ ଏ ବିଷୟରେ କିଛି କହନ୍ତୁ । ଆଉ ଦୁ' ଚାରିଜଣ ଏଥିରେ ତାଳି ମାରିବାରୁ ମୁଁ ଠିଆ ହେଲି ଏବଂ ଯୁଦ୍ଧ ବିଷୟରେ ମୋର ମତ ଦେଇ କହିଲି, କୌଣସି ପ୍ରକାରେ ଯୁଦ୍ଧରେ ଭାଗ ନେବା ବା ଯୁଦ୍ଧକୁ ସମର୍ଥନ କରିବା ଆମ୍ଭ ଦଳର ମତ ନୁହେଁ । କିନ୍ତୁ ଯୁଦ୍ଧ ଘନ ଘନ ହୋଇ ଲାଗିଯାଇଥିବା ସ୍ଥଳେ କେଉଁ ପକ୍ଷରେ ନ୍ୟାୟ ଓ କେଉଁ ପକ୍ଷରେ ଅନ୍ୟାୟ ସେ ବିଷୟରେ ନିଜର ମତ ପୋଷଣ କରିବା ଓ ନିଜର ସ୍ପଷ୍ଟ ମତ ଦେବା ପ୍ରତ୍ୟେକ ଜାଣିବା ଲୋକର ଧର୍ମ ।' ଏହିପରି ଆରମ୍ଭ କରି କେତୋଟି ଦୃଷ୍ଟାନ୍ତ ଦେଇ ମୁଁ ପ୍ରମାଣ କଲି ଯେ ଦୁଇପକ୍ଷ ମନ୍ଦ କାର୍ଯ୍ୟରେ ଲଗିଥିଲେ ହେଁ ମିତ୍ରପକ୍ଷଙ୍କର ଜୟ ହେଲେ ଭଲ ବୋଲି ମୋର ମତ । ମୋତେ ଦିଶୁଛି, ମିତ୍ର ପକ୍ଷ ଜୟ କଲେ ଆମେ ଶୀଘ୍ର ସ୍ୱାଧୀନତା ପାଇବା ଏବଂ ହିଟଲର ମୁସୋଲିନ ଜିଣିଲେ ଆମେ ନିକୁଛ ପକ୍ଷେ ଆଉ ଶହେବର୍ଷ ପରାଧୀନ ହୋଇ ରହିବା । ମିତ୍ର ପକ୍ଷର ଜୟ ହେଉ ବୋଲି ମୁଁ ଭଗବାନଙ୍କୁ ଡାକିବି, କିନ୍ତୁ ପ୍ରତ୍ୟକ୍ଷ ଭାବରେ ଯୁଦ୍ଧରେ ଯୋଗ ଦିଅ ବା ଯୁଦ୍ଧ ଋଣ ଦିଅ ବୋଲି ମୁଁ କାହାକୁ କହିବି ନାହିଁ । ଯାହାର ମନ ହେଉଛି ସେ ଯୁଦ୍ଧରେ ମିଶିଲେ ବା ଯୁଦ୍ଧ ଋଣ ଦେଲେ ମୁଁ ବାଧା ଦେବି ନାହିଁ । ଏ ବିଷୟରେ ଆମର ଅସ୍ତି ନାହିଁ କି ନାସ୍ତି ନାହିଁ । ମୋର ବକ୍ତୃତାର ବିଷୟବସ୍ତୁ ଅପେକ୍ଷା କହିବାର ଢଙ୍ଗ ସମସ୍ତଙ୍କୁ ଖୁବ୍ ସୁଖ ଲଗିଲା । ଯୁଦ୍ଧ ଚାନ୍ଦା ଓ ଋଣ ମଧ୍ୟ କିଛି ଆଦାୟ ହେଲା । ମୁଁ ନ କହିଥିଲେ ମଧ୍ୟ ଏଇ ଫଳ ହୋଇଥାନ୍ତା, କାରଣ,

ସରବରାକାରମାନେ ସରକାରଙ୍କ ବନ୍ଧା ବନ୍ଦୀ ଏବଂ ଏସ୍. ଡି. ଓ.ଙ୍କ ହାତରେ କଣ୍ଟୁଆ । ଏ ସବୁର ଫଳାଫଳରେ ସ୍ମାନ ସାହେବଙ୍କର ସନ୍ତୋଷ ହେଲା ଏବଂ ମୁଁ ତାଙ୍କ ଅନୁରୋଧ ଶହେକେ ଦଶ ରକ୍ଷା କଲେ ବି ମୋର ତାଙ୍କର ବନ୍ଧୁତା ବଢ଼ିଲା । ସେ ମଝିରେ ମଝିରେ ଆମ ଦୁଆରକୁ ଆସନ୍ତି ଏବଂ ମସିଣାରେ ପାଣ୍ଡିଆ ପକାଇ ଘଣ୍ଟେ ଖଣ୍ଡେ ବସି ଓଡ଼ିଆ ଭାଷା ଅଭ୍ୟାସ କରନ୍ତି ।

ଏ କଥା ସରବରାକାର ମହଲରେ ମଧ୍ୟ ଜଣା ପଡ଼ିଗଲା । ବେଳେ ବେଳେ କଣେ ଅଧେ ସରବରାକାର ନିଜ ନିଜର ଓଜର ଆପତ୍ତି ଘେନି ମୋ ପାଖକୁ ଆସନ୍ତି । ଏବଂ ତାଙ୍କ କଥାରେ ନ୍ୟାଯ୍ୟ ଥିଲେ ମୁଁ ସାହେବଙ୍କୁ କହିବାକୁ ରାଜି ହୁଏ । ମୋ କଥା ରହେ ବୋଲି ବାଣ୍ଡରେ ମଧ୍ୟ ପ୍ରଚରିତ ହୁଏ ।

ଥରେ ମୁଁ ଟଙ୍ଗୀ ପାଖର ଗୋଟିଏ ସ୍କୁଲକୁ ଯାଇଛି, ସ୍ଥାନୀୟ ଜଣେ ଲୋକ ମୋ ପାଖକୁ ଆସିଲେ, ଏବଂ ଆମ ଘରେ ପାଦ ଟିକିଏ ପଡ଼ୁ ବୋଲି ଅନୁରୋଧ କଲେ । ମୁଁ ରାଜି ହେଲି, ଖାଇବା ପିଇବା ବିଷୟରେ ମୋର ସେ କାଳରେ ବି ଛୁଆଁ ଛୁଇଁ ନ ଥାଏ । ସେ ଜାଣନ୍ତି କୁଆଡ଼ୁ ? ତାଙ୍କଠାରୁ କେଜାଣି ମୁଁ ଜଳ ଗ୍ରହଣ କରିବି ନାହିଁ ବୋଲି ଆଶଙ୍କା କରି ସେ ଭଣ୍ଡାରୀ ଡକାଇ ମୋପାଇଁ ଚୂଡ଼ା ଓ ଦହିରେ ଗୋଟାଏ ଭୁଗ ଭୋଜନ ଯୋଗାଡ଼ କରାଇଲେ । ମଝିରେ ମଝିରେ କହୁଥାନ୍ତି, 'ସବୁ ଭଣ୍ଡାରୀ କରୁଛି, ଆମର କେହି ଛୁଇଁ ନାହାନ୍ତି । ମୁଁ ବି ଥରେ ଶୁଣାଇ ଦେଲି, ଆପଣଙ୍କ ଘରେ ଭାତ ରାନ୍ଧିଦେଲେ ବି ମୁଁ ଖାଇବି ।' ଖାଇ ସାରିଲା ପରେ ନିଜ ହାତରେ ପାନ ଭଙ୍ଗି ମୋତେ ଦେଇ ସେ କହିଲେ, ଆଜ୍ଞା ମୋର ଗୋଟାଏ କାମ ଅଛି । ଆପଣ ବିଚାରିଲେ ହୋଇଯାନ୍ତା ।' ମୁଁ କହିଲି, ମୋ ହାତରେ ହେବା କଥା ହେଲେ ମୁଁ ନିଶ୍ଚୟ କରିବି । ଅନ୍ୟ ସାଧାରଣ ଲୋକଙ୍କର ତ ବୋଲି ମୁଁ କରେ, ଆପଣଙ୍କର କରିବି ନାହିଁ !

କୁହ୍ନି କୁହ୍ନି କ'ଣ ନା, ତାଙ୍କ ପାଖରେ କେତେକୋଟି ବେଶୀ ଟଙ୍କା ଓ ମହାରାଣୀ ଭିକ୍ଟୋରିଆ ଟଙ୍କା ଅଛି, ଏସ୍. ଡି. ଓ ସାହେବଙ୍କୁ କହିଲେ, ସେତକ ବଦଳାଇ ଦିଅନ୍ତେ । ସେତେବେଳେ ଏ ଟଙ୍କା ଅଚଳ ହୋଇଥାଏ; ବ୍ୟାଙ୍କ ଓ ଟ୍ରେଜେରୀରେ ଦାଖଲ କଲେ ଚଳନ୍ତି ଟଙ୍କା ଓ ନୋଟ ମିଳେ । ଅଚଳ ହେବାର ପ୍ରଧାନ କାରଣ ହେଉଛି, ଏ ଟଙ୍କାମାନଙ୍କରେ ବେଶୀ ରୁପା । ସେ ରୁପାତକ ହସ୍ତଗତ କରି କାଗଜ ଟଙ୍କା ବା ଅଳ୍ପ ରୁପା ଥିବା ପଞ୍ଚମ ଜର୍ଜ ଷଷ୍ଠଜର୍ଜ ଟଙ୍କା ଦେଇ ସରକାର ଲାଭବାନ ହେବେ । ଏଥିରେ ସାହେବଙ୍କୁ କହିବା କ'ଣ ଦରକାର ବୋଲି ବିସ୍ମିତ ହେବାରେ ସେ କହିଲେ, ଆଜ୍ଞା, ଆଗରୁ କହିଥିଲେ ଏସ୍. ଡି. ଓ. ପୁଲିସରୁ ବା କଟକରୁ ଟଙ୍କା ମଗାଇ ରଖିବେ । ମୁଁ ଟଙ୍କା ନେଇ ଗଲା ବେଳକୁ ଯଦି ଏତେ ଟଙ୍କା ଖୋଳାରେ ନ ଥିବ ? ମୁଁ ଆଚମ୍ବିତ ହୋଇ ପଚାରିଲି, କେତେ ଟଙ୍କା ହେବ ? ସେ କହିଲେ, 'ତା ମୁଁ କିମିତି ଜାଣିବି ? ସବୁ ଟଙ୍କା ତ ଏକାଠି ଅଛି, ଦୁଇ ତିନି ଦିନ ଲାଗି ବାଛିଲେ ଯିନା ହେବ ।'

ମୁଁ ଭାବିଲି ଓ ମନେ ମନେ ଧରି ନେଲି ବୋଧହୁଏ ପଚିଶ ହଜାର ହେବ ! ନ ହେଲେ ବାଛିବାକୁ ଦୁଇ ତିନି ଦିନ କାହିଁକି ଲାଗନ୍ତା । ପନ୍ଦର ଦିନ ପରେ ଆସିବାକୁ ସମୟ ଦେଇ ମୁଁ ସାହେବଙ୍କୁ କହିଲି, ୫୦ ହଜାର ଟଙ୍କା ରଖିବାକୁ । ଏତେଗୁଡ଼ାଏ ଟଙ୍କା ତାଙ୍କୁ ନଷ୍ଟ ପାଇଲା ପରି ଲାଗିଲା ।

ଯଥାସମୟରେ ସାହେବ ଯାଇ ପହଞ୍ଚିଲେ । ସିମେଣ୍ଟ ବସ୍ତାରେ ଟଙ୍କା ଆସିଥାଏ, ତିନି ଖଣ୍ଡ ଶଗଡ଼ରେ । ମୁଁ ଖୋର୍ଦ୍ଧାରେ ଥାଏ । ସାହେବ ବି ୫୦ ହଜାର ଟଙ୍କା ମଗାଇ ଟ୍ରେଜେରୀରେ ରଖାଇ ଥାନ୍ତି । ଟଙ୍କା ଗଣା ସରିଲା ବେଳକୁ ୪୫ କି ୪୬ ହଜାର । ଟ୍ରେଜେରୀ ଓଲେଇଲା ବେଳକୁ ବି ଅବଶିଷ୍ଟ ୪।୬ ହଜାର ନାହିଁ । ସାହେବ ମୋତେ ପଚାରିଲେ, ଆପଣ ଟିକିଏ ତାଙ୍କୁ ଚେତେଇ ଦେଲେ ସେ ୩।୪ ହଜାରର ମୁଦ୍ରା ବଣ୍ଡ କିଣନ୍ତେ । ମୁଁ କହିଲି, 'ମୁଁ ତ ଏକଥା କହିବି ନାହିଁ ଆପଣ ଜାଣନ୍ତି, ଆପଣ କହିଦେଲେ ହେବ ।' ସେଇଆ ହେଲା ; ସାହେବ ୫୦ ହଜାରର କାଗଜ ନୋଟ ଓ ପାଞ୍ଚ କି ଛ' ହଜାରର ମୁଦ୍ରା ବଣ୍ଡ ନେଇ ଘରକୁ ଗଲେ । ସାହେବ ମୋତେ କହିଲେ, 'ଏ ସରବରାକାରଗୁଡ଼ାକ ତ ଟଙ୍କା ଖଣି ଦେଖୁଛି । ଅଚଳନ୍ତି ଟଙ୍କା ଯଦି ଏତିକି, ଚଳନ୍ତି ଟଙ୍କା କେତେ ନ ଥିବ ?' ସେଇଦିନଠାରୁ ତାଙ୍କର ଆରମ୍ଭ ହେଲା ସରବରାକାରଙ୍କ ଚପୁଡ଼ା । ତାଙ୍କରି ଅମଳରେ ଖୋର୍ଦ୍ଧାରୁ ସବୁଠାରୁ ଅଧିକ ମୁଦ୍ରା ଓ ଋଣ ସଂଗୃହୀତ ହୋଇଥିଲା ।

ନିଜ କାର୍ଯ୍ୟରେ ଏତେ ଖାଟିବା ଅଫିସର ମୁଁ ଆଉ କାହାକୁ ଦେଖିନାହିଁ । ମ୍ୟାକ୍‌ଡୋନାଲ୍‌ଡ଼୍ ଓ ଅନ୍ୟ ଯେଉଁ ସାହେବଙ୍କୁ ଦେଖିଛି ସେମାନେ ତ ସରକାରୀ କାର୍ଯ୍ୟ ୮।୧୦ ଘଣ୍ଟା କଲେ ୩।୪ ଘଣ୍ଟା ମଉଜ କରନ୍ତି । ସେମାନଙ୍କର ଖାଲି କାମ । ମୁଁ ବେଳେ ବେଳେ ଏଭଳି ସବୁବେଳେ କାହିଁକି କାମରେ ଲାଗିଛ ବୋଲି ଖୁଣେ ; କହେ, ସବୁବେଳେ କାମ କଲେ ମଣିଷର ବୁଦ୍ଧି ମାନ୍ଦା ହୋଇଯାଏ । ସେ ଗୋଟିଏ ଇଂରେଜୀ ଢଗ ବୋଲି ଏ କଥାର ସତ୍ୟତା ସ୍ୱୀକାର କରନ୍ତି । All work and no plav makes Jack a dull boy. କିନ୍ତୁ କହନ୍ତି ଆମର ଯେଉଁ କାମ ସେଥିରେ ବୁଦ୍ଧିର ବିଶେଷ ପ୍ରୟୋଜନ ନାହିଁ । ତୁମ ଜମି ହଳ କରୁଥିବା ବଳଦର ଯେତିକି ବୁଦ୍ଧି ଦରକାର ଆମର ସେତିକି । ମାଲିକ ହିସାବ କରିବ, କେତେ ଏକର ହଳ କଲା, ବେଶ୍ ସେତିକି ।

ମୁଁ ଯାଇ ହାବୁଡ଼ିଗଲେ ତାଙ୍କୁ ଘଣ୍ଟେ ଅଧଘଣ୍ଟେ କାମରୁ ଛଡ଼ାଇ ଦିଏ । ସେ ଅବିବାହିତ । ଦିନେ ତାଙ୍କୁ କହିଲି, 'ଆପଣ ବିଭାହେବାକୁ ଛୁଟି ନେଇ ଯାଉ ନାହାନ୍ତି ? ସେ କହିଲେ, 'ଆମ ବିଲାତଘରଟା ଯେତେ ସହଜ ବୋଲି ଆପଣ ଭାବୁଛନ୍ତି ସେତେ ନୁହେଁ । ଯାହାଜରେ ଯିବା ଆସିବାରେ କୋଡ଼ିଏ ଦିନ କଟିଯିବ । ଆଜିକାଲିର ଅବସ୍ଥାରେ ଯିବା ବି ନିରାପଦ ନୁହେଁ । ଆଉ ଦୁଇ ତିନି ମାସରେ କୌଣସି ଝିଅଙ୍କୁ ମଗେଇବାକୁ ହେବ ଆମ ସଙ୍ଗେ ଏଠାକୁ ଆସିବାକୁ । ନିଃସଙ୍ଗ ଜୀବନ ଯାପନ କରିବାକୁ କାହାର ମନ ସହଜେ ହେବ ! ଏତେଟା ବୁଙ୍ଗଲା ରହିବେ, ନିଜପାଇଁ ଗୋଟାଏ ଅଲଗା ପାଇଖାନା ଓ ଗାଧୁଆ

ଘର ରହିବ, ଏହିପରି ପ୍ରଲୋଭନରେ ଯିଏ ପଡ଼ିବ ସେ ଭାରତୀୟ ଇଂରେଜର ପତ୍ନୀ ହୋଇ ଆସିବ । ମୋ ମା' ଗୃହେଷ୍ଟି ପାତ୍ରୀଙ୍କର ସୂଚକ ନେଇ ପ୍ରଥମାପରେ ଆସିବାକୁ ଚିଠି ଲେଖୁଛୁ । ଯୁଦ୍ଧ ସରିଲେ ଯାଇ ସେ କଥା ଉଠିବ ।'

ମୁଁ କହୁ କହୁ କହି ପକାଇଲି, 'ଆପଣ ତ ଏତେ ଥର ଜର୍ମାଣୀ ଯାଉଛନ୍ତି, ସେଠାରୁ ଗୋଟିଏ ଆଣୁ ନାହାନ୍ତି ?'

ସେ କହିଲେ, 'ଭଗବାନ ରକ୍ଷା କରନ୍ତୁ । ଦିନେ ଓଲିଏ ଭେଟିବା ଏକ କଥା । ଦେଖିରୁ ଗୋଟାଏ ଆଣି ଗିର୍ଜାରେ ହଲପ୍ କରି ଜୀବନସଙ୍ଗିନୀ କରିବ ! ବାପ୍‌ରେ, ଆପଣ କାହୁଁ ଜାଣିବେ ୩୦/୩୫ ପାର ହେବା ପରେ ଏ ମାଇକିନିଆଁଗୁଡ଼ାକର ଚେହେରା କି କୁତ୍ସିତ ହୁଏ । ପୁଣି, ଏମାନେ ଆପଣମାନଙ୍କର ଓ ଆମ୍ଭମାନଙ୍କର ଯେତେକଯାକ ଦୁର୍ଗୁଣ ସେ ସବୁର ଅଧିକାରୀ । ଆପଣଙ୍କ ସମାଜରୁ ଉପର ସ୍ତରର ଗୋଟିଏ ସଙ୍ଗିନୀ ମୁଁ ନେଇପାରେ, କିନ୍ତୁ ଆମକୁ ଝିଅଟିଏ ଦେବ କିଏ ? ଏମାନଙ୍କର ଆଭିଜାତ୍ୟ ଆପଣ ଜାଣନ୍ତି ? ଏମାନଙ୍କର ପୂର୍ବପୁରୁଷ ରେଲବାଇ କୁଲି ବା କୁଲିଆଣୀ !' ମୁଁ ଏକଥା ଜାଣିଥିଲି ଯେ, ଏତେ ସ୍ପଷ୍ଟ ଭାବେ କୌଣସି ଅନୁଭବୀଙ୍କଠାରୁ ଶୁଣିନଥିଲି ।

ବ୍ରହ୍ମପୁରର ସବ୍‌କଲେକ୍ଟର ହୋଇ ସ୍ମିଥଙ୍କର ବଦଳି ଆଦେଶ ଆସିଲା । ଦୁଇ ଦିନ ପରେ ମୁଁ ସ୍ମିଥଙ୍କ ପାଖକୁ ଗଲି ବସି କିଛିଏ ବେଶୀ ଟିକିଏ ଖୁବ୍ ଗପ କରିବାକୁ । ପାଞ୍ଚ ମିନିଟ କଥାବାର୍ତ୍ତା ହେବା ପରେ ସେ ବ୍ୟସ୍ତ ହୋଇ କହିଲେ, 'ଆଜି ମୁଁ ଭାରି କାର୍ଯ୍ୟବ୍ୟସ୍ତ । ଗଞ୍ଜାମ ଡିଷ୍ଟ୍ରିକ୍ଟ ଗେଜେଟିଅର୍‌ଟା ପଢ଼ି ଆୟତ୍ତ କରିବାକୁ ହେବ । ଆଉ ତିନିଦିନ ନିଶ୍ଚୟ ପ୍ରକ୍ଷେ ଲାଗିବ । ଚତୁର୍ଥ ଦିନ ଯିବି ଓ ପଞ୍ଚମ ଦିନ ସେଠାରେ ଜଏନ୍ କରିବେ ।' ପାଞ୍ଚମିନିଟ ରହି ବିଦାୟ ନେଲି । ବଦଳି ହୋଇ ନୂଆ ଜାଗାରେ ଜଏନ୍ କରିବାକୁ ଯେଉଁ ସାତଦିନ ମିଳେ ସେଥିରେ ଆମ ଅଫିସରମାନେ ଗାଁକୁ ଯାଇ ଫୁର୍ତ୍ତି କରନ୍ତି । ନୂଆ ଜାଗାକୁ ଗଲେ କିରାଣି ଓ ତଳିଆ ଅଫିସରଙ୍କଠାରୁ ସନ୍ଧାନ ନେଇ ନେଇ ଆଉ ଠାଏ ବଦଳି ହୁଅନ୍ତି । ମୋ ଜୀବନରେ ମୁଁ ଏଇ ଲୋକଟିଠାରୁ ସନ୍ଧାନ ନେଇ ସ୍ମିଥ ପରି ଦିନଯାକ ମୋ କାମରେ ଲାଗେ, ଖେଳିବା ବେଳେ ବି ମୋ କାମ ବିଷୟରେ ଭାବେ ଏବଂ ଶୋଇଲା ବେଳେ ସେଇ କାମ ବିଷୟରେ ସ୍ୱପ୍ନ ଦେଖେ ।

ସ୍ମିଥଙ୍କ ପରେ ଆସିଲେ ମଜୁମ୍‌ଦାର ବୋଲି ଜଣେ ଦସ୍ତୁର ମତ ସାହେବ । ପାଠ ଘର ଶନ, ଖୋଠଘର ଏକାବେଳକେ ଶୂନ । ବଡ଼ପଣ ଦେଖାଇ ହେବାରେ ସମସ୍ତ ସମସ୍ୟ ଯାଏ । ଥରେ ଦୁ'ଥର ଦେଖା ହେବା ପରେ ମନ ଏକାବେଳକେ ଭାଙ୍ଗିଗଲା । ସେକ୍ରେଟାରିଏଟରେ ମଧ୍ୟ ସ୍ମିଥଙ୍କ ସଙ୍ଗେ ଏକ ସ୍ଥଳ ତଳେ ବର୍ଷେ ଖଣ୍ଡେ କଟିଲା । ସେଠାରେ କିରାଣିମାନଙ୍କର ସ୍ନେହ ଥିଲେ ଉପଦ୍ରବର ପାତ୍ର ; ଡ. ମୁଖର୍ଜି ବେଶୀ କି ସ୍ନେହ ବେଶୀ କହି ହେଉ ନାହିଁ । ଅଯୋଗ୍ୟତାରେ ସ୍ମିଥଙ୍କୁ ମୁଁ ଏକ ବନ୍ଧନୀ ଭିତରେ ରଖେ ।

ଦୁହେଁଯାକ ଆଇ. ସି. ଏସ୍. । ସ୍ମାନ୍ ସାହେବଙ୍କ ପରେ ଆଙ୍ଗ୍ଲୋଇଣ୍ଡିଆନ୍ ମାଇକନାଥାଁଙ୍କୁ ଚାହିଁଥିଲେ ସ୍ୱାଙ୍କ ସେଇ ପର୍ଯ୍ୟାୟରେ ରଖନ୍ତୁ । ଏ ଦୁହେଁ ଯାକ ନିଜକୁ ଭାରତୀୟ ବୋଲି ମନେ କରନ୍ତି ନାହିଁ, ଇଂରେଜଙ୍କ ଦକ୍ଷତାର ଖୁବ୍ ଭକ୍ତ ।

## ଜୀବନର ପୁଣି ଏକ ମୋଡ଼

୧୯୪୪ ଆରମ୍ଭ ପର୍ଯ୍ୟନ୍ତ ମୁଁ ଲେବାର ବୋର୍ଡ଼ର ଚେୟାରମ୍ୟାନ ରହିଲି । ୧୯୪୩ର ସେପ୍ଟେମ୍ବର ମାସ । ବୋଲଗାଡ଼ ବେଗୁନିଆଁ ରେ ଦୁଇଦିନ ରହି ସ୍କୁଲ୍ ଦେଖି, ଦୁଇ ଦିନ ଜାଗାରେ ଭଦ୍ରଲୋକ କରି ସନ୍ଧ୍ୟାବେଳେ ଆସି ଘରେ ପହଞ୍ଚିଲି । ମୋ'ର ଭଲ ଭାଇ ଦଶହରା ଛୁଟିରେ ଆସିଥାଏ । ମୋ ସ୍ତ୍ରୀ, ସେ ଓ ମୁଁ ପଲ୍କା ଉପରେ ବସି କଥାବାର୍ତ୍ତା ହେଉଛୁ । ସେ ପଚାରିଲା, 'ଭାଇନା, ଆମର ବର୍ତ୍ତମାନ କେତେ କରଜ ହେଲାଣି ?' କରଜର ପରିମାଣ ତ ମୋର ଜିଭ ଅଗରେ ଥାଏ । ମୁଁ କହିଲି, 'ତେଇଶି ଶହ ।' ସେ କହିଲା, 'ଆମର ସମସ୍ତ ସମ୍ପତ୍ତିର ମୂଲ୍ୟ ତ ଏତେ ହେବନାହିଁ !' ମୁଁ କହିଲି, 'ଏଥିରୁ ତିନି ଭାଗରୁ ଭାଗେ ସିନା ମୋର୍ !' ସେ କହିଲା, 'ଏ କରଜ କିମିତି ଶୁଝା ହେବ ବୋଲି ଭାବିଛ ?' ମୁଁ କହିଲି, 'ମୁଁ କିଛି ଭାବି ନାହିଁ । ଦରକାର ହେବାରୁ କରଜ ହୋଇଛି । ଏହା କିପରି ଶୁଝା ହେବ ସେ କଥା ଦୁର୍ଗା ବୁଝିବେ ।'

ମୋ ସ୍ତ୍ରୀ ବିଷଣ୍ଣ ଭାବେ ଉତ୍ତର ଦେଲା, 'ଆଉ କ'ଣ, ତମେ କରଜ କରିବ, ଶୁଝିଲା ବେଳକୁ ଶୁଝିବେ ଦୁର୍ଗା ?' ଭାଇ କହିଲା, 'ଖର୍ଚ୍ଚ ଟିକିଏ ଆଉ କମାଇଲେ ହୁଅନ୍ତା । ଗାଈଙ୍କ ପିଣ୍ଡ ବହୁତ ଖର୍ଚ୍ଚ ହେଉଛି । ଏତେ ଦୁଧ କ'ଣ ହେଉଛି ?' ଭାର୍ଯ୍ୟା ଉତ୍ତର ଦେଲା, 'ସାଇରେ ଯେତେ ସାନ ପିଲା ସେ ସମସ୍ତଙ୍କ ପାଇଁ ସବୁଦିନ ଲୁଗା ହୋଇ ଦିଆ ହେଉଛି ।' ମୁଁ ଟିକିଏ ତେଜ କରି କହିଲି, 'ହଁ, ସାଇ ଯାକର ତ ପିଲା ଆଉ ତୋର କେହି ନାହାନ୍ତି, କି ଦୁଧ ଆଦୌ ଖର୍ଚ୍ଚ ହେଉ ନାହିଁ ।' ମୁଁ ଟିକିଏ ତେଜିଗଲେ ଭାଇ କି ଭାର୍ଯ୍ୟା ଆଦୌ କିଛି କହନ୍ତି ନାହିଁ ।

ସମସ୍ତେ ତୁନି ହୋଇ ବସିଛୁ, ବଡ଼ ଝିଅ ଦୁଇଟି ମଧ୍ୟ, ଭାର୍ଯ୍ୟା ତଳକୁ ଗଲାଣି ଭାତ, ରୋଷେଇ ଘରକୁ ଓ ଶୋଇଥିବା ସାନ ପିଲା ଦୁଇଟିଙ୍କ ପାଖକୁ, ଏଇ ସମୟରେ ଆମର ଗୋଟେ ହଳିଆ କହିଲା, 'ମଟରରେ ଜଣେ କିଏ ବାବୁ ଆସିଛନ୍ତି, ଆପଣଙ୍କୁ ଡାକୁଛନ୍ତି ।' ତରତର ହୋଇ ଯାଇ ଦେଖିଲି ବେଳକୁ ଖାଲି ଅଗଣାରେ ବସିଛନ୍ତି, ରାୟ ବାହାଦୁର ଦୁର୍ଗାଚରଣ ଦାସ । ସେ ମୋତେ ଚାହାନ୍ତି, ମୋ ପିଲାଦିନୁ, ଆମ ଖୋର୍ଦ୍ଧାରେ ଏସ୍. ଡ଼ି. ଓ. ଥିବା ବେଳୁଁ । ତାଙ୍କୁ ନମସ୍କାର ହୋଇ ମସିଣା ପକାଇ ଦେଲି ବସିବାକୁ । ନ ବସି କହିଲେ "ଡେରି ହୋଇ ଗଲାଣି, ଯାଉଛି ଭାରି ଖୋର୍ଦ୍ଧା । କାଲି ରହିବ, ଦି ପହରେ ଆସିବ । କଥାବାର୍ତ୍ତା ଅଛି ।" ମୁଁ ଉତ୍କଣ୍ଠିତ ହୋଇ ପଚାରିଲି, "ଆଜ୍ଞା ! କୋଉ ବିଷୟରେ ?" ସେ କହିଲେ, "ପଣ୍ଡିତ ଗୋଦାବରୀଶ ମିଶ୍ର ପଠାଇଛନ୍ତି । ତୁମକୁ ଗୋଟାଏ

ଶ୍ଚିକାର କରିବାକୁ ହେବ ।" ଆଉ ସବୁକଥା ତାଙ୍କକୁ ରଖି ସେ ଚାଲିଗଲେ । କି ଶ୍ଚିକାର ?, ଗୋଦାବରୀଶ ବାବୁ ଚିଠିକାହିଁକି ପଠାଇଛନ୍ତି ଏତେ · ବଡ଼ ଲୋକଙ୍କୁ ? କିଛି ଜାଣିପାରିଲି ନାହିଁ ।

ଯେଉଁ ଦିନ ପଣ୍ଡିତ ନୀଳକଣ୍ଠ .ନବଭାରତ ପ୍ରେସ୍‌ରେ ତାଲା ପକାଇଥିଲେ ସେହି ସନ୍ଧ୍ୟାରୁ ଗୋଦାବରୀଶ ବାବୁଙ୍କ ମନରୁ ମୁଁ ଓହ୍ଲାଇ ତମତମ ହୋଇ ଆସିଲି ଦିନୁଁ ତାଙ୍କ ସଙ୍ଗେ ମୋର ସାକ୍ଷାତ୍ ନାହିଁ କହିଲେ ଚଳେ । ଏବେ ପ୍ରାୟ ଦେଢ଼ବର୍ଷ ହେଲା ସେ ପାରଳାଖେମୁଣ୍ଡି ମନ୍ତ୍ରୀ ମଣ୍ଡଳର ଅର୍ଥମନ୍ତ୍ରୀ । ମୁଁ ନବଭାରତ ପ୍ରେସ ଛାଡ଼ି ଆସିବାର ପ୍ରାୟ ଛ'ମାସ ପରେ ସେ ମୋତେ ଖଣ୍ଡେ ଚିଠି ଦେଇଥିଲେ । ସେଥିରେ ୨।୩ ଜାଗାରେ ଆଖିରୁ ଲୁହ ପଡ଼ି ଯାଇଥିଲା ବୋଲି ଅନୁମାନ କରିଥିଲି । ମୋତେ ସେ ଖୁବ୍ ସହାନୁଭୂତି ଦେଖାଇ ଲେଖିଥିଲେ । ଏବଂ ଅଜାଣତରେ ପଣ୍ଡିତ ନୀଳକଣ୍ଠଙ୍କ ପ୍ରତି ଅନ୍ଧବିଶ୍ୱାସରେ ସେ ମୋ ପ୍ରତି ଖୁବ୍ ଅନ୍ୟାୟ କରିଛନ୍ତି ବୋଲି ଲେଖିଥିଲେ । ମୋପାଇଁ ଚାକିରିଟିଏ ଯୋଗାଡ଼ କରି ସେ ତାଙ୍କ ଅନ୍ୟାୟର ପ୍ରାୟଶ୍ଚିତ୍ତ କରୁଛନ୍ତି ବୋଲି ମୋର ଧାରଣା ହେଲା । ସେ ରାତିଟା ଯାକ ଭଲମନ୍ଦ ଉଭୟ ଚିନ୍ତାରେ ଗୁଡ଼ାଏ ଅନିଦ୍ରା ହୋଇ ରହିଲି ।

ସକାଳ ହେଲା ବେଳକୁ ମନକୁ ବୁଝାଇ ଥାଏ ଯେ, ଭଗବାନ ଗୋଦାବରୀଶ ବାବୁଙ୍କ ଦ୍ୱାରା ଯେଉଁ କର୍ତ୍ତବ୍ୟ ପଠାଉଛନ୍ତି ତାହା ନିର୍ମଳ ମନରେ ସ୍ୱୀକାର କରି ଯାହା କରିବା କଥା କରିବି । ସେତେବେଳେ ମୁଁ ଯାହା ଯାହା କରୁ ଥାଏ ସେଥିରେ ଆତ୍ମସନ୍ତୋଷ ପାଉଥିଲି । ମୋ ଅମଳରେ ଲୋକାଲ ବୋର୍ଡ଼ର କାମ ଯେପରି ଚାଲିଛି ସେପରି ଆଉ କେବେ ଚାଲି ନ ଥିଲା ବୋଲି ଆମ କିରାଣୀ ପୂର୍ଣ୍ଣବାବୁ ଓ ଖୋର୍ଦ୍ଧାର ଅଧିକାଂଶ ଓକିଲ ମୁକ୍ତାର ଓ ସାଧାରଣ ଲୋକ କହୁଥାନ୍ତି । ଶିକ୍ଷା ବିଭାଗର ଜିଲ୍ଲା ଇନ୍‌ସପେକ୍ଟର ତ ଚାରିଆଡ଼େ ଡିବଡିବ ବଜାଉ ଥାନ୍ତି ଯେ ମଫସଲର ଉଚ୍ଚ ପ୍ରାଇମେରୀ ଓ ନିମ୍ନ ପ୍ରାଇମେରୀ ସ୍କୁଲମାନ ପ୍ରତିଦିନ ଫିଟୁଛି କେବଳ ମୋ ଯୋଗୁଁ । ସରକାରୀ ଟଙ୍କାରେ ଓ ଲୋକଙ୍କ ଶ୍ରମଦାନରେ ମୁଁ ଯେପରି ସଡ଼କ ଗୁଡ଼ିକର ଅବସ୍ଥା ବଦଳାଇଛି, ନୂଆ ସଡ଼କ କରିଛି ତାହା ସମସ୍ତଙ୍କ ଆଖିକୁ ଦିଶୁଥାଏ । ମୋ ଆଖିକୁ ସବୁଠାରୁ ବଡ଼ ଦେଖାଯାଉଥାଏ ସମଗ୍ର ସବଡିଭିଜନରେ ଶିକ୍ଷାଲାଭର ଅଭାବ ଦୂର କରିବାକୁ ମୁଁ ଯେଉଁ କାର୍ଯ୍ୟ କରୁଛି । ତିନୋଟି ମାଇନର ସ୍କୁଲର—ବାଣପୁର, ରାମଚଣ୍ଡୀ ଓ ରାମେଶ୍ୱର—ମୁଁ ଥାଏଁ ସେକ୍ରେଟାରୀ ଓ ଦୁଇଟି ହାଇସ୍କୁଲର—ଖୋର୍ଦ୍ଧା ଓ ଟାଙ୍ଗୀର ଥାଏ ମେମ୍ବର ।

ସରକାରୀ ଚାକିରି କଲେ ତ ଏସବୁ କାମ ଛାଡ଼ିଦେବାକୁ ହେବ ! ହୃଦକୁ କାଟୁଥାଏ । ନିଜର ଆର୍ଥିକ ଅନଟନ ହୁଏତ କିଛିଟା ସୁଧୁରିଯିବ, କିନ୍ତୁ ଲୋକସେବା ପାଇଁ ଏତେ ସୁଯୋଗ ପାଇବି କେଉଁଠାରୁ ? କାଲି ରାତିରେ ଘଣ୍ଟେ ଖଣ୍ଡେ ମୋ ସ୍ତ୍ରୀକୁ ଏକୁଟିଆ ପାଇ ଏସବୁ କହିଲି, ସେ ଏକା ପଦକେ ଉତ୍ତର ଦେଲା, 'ଭଲକରି ଭାବ । ଯାହା ଭଲ

ବଶୁଛୁ କର । ମୁଁ କହିବ କଣ ?' 'ମୁଁ କହିଲି, ତୋତେ କ'ଣ ଭଲ କହ । ସ୍ତ୍ରୀଙ୍କ ବ ଠୋକନ୍ଦ ଗୋଟାଏ ଉତ୍ତର, 'ତମକୁ ଯାହା ଭଲ ମୋତେ ସେ ଭଲ ।'

ସକାଳୁ ସକାଳୁ ଭାତ ପୁଞ୍ଜେ ଡାଲମା ଟିକେଏ ହୋଇଗଲା । ସାଙ୍ଗମାନଙ୍କ ସହଯୋଗରେ ପୋଖରୀରୁ କେବଣ୍ଡି ପୁଞ୍ଜେ ମିଳିଥାଏ । ଖାଇବା ସାଙ୍ଗେ ସାଙ୍ଗେ ଖୋର୍ଦ୍ଧା ଗଲି ଏବଂ ଦୁର୍ଗା-ଚରଣ ବାବୁଙ୍କ ସଙ୍ଗେ ଦେଖାକଲି । ତାଙ୍କଠାରୁ ଶୁଣିଲି, ଆଜ ୩ଟା ବେଳେ ଖୋର୍ଦ୍ଧା ସ୍କୁଲ ହଲରେ ଗୋଟାଏ ସଭା ହେବ, ବର୍ତ୍ତମାନ ପରିସ୍ଥିତିରେ ଆମର କର୍ତ୍ତବ୍ୟ ବିଷୟରେ ମୁଁ ଗୋଟିଏ ବକ୍ତୃତା ଦେବି । ତାପରେ କଥାବାର୍ତ୍ତା ।

ଅଫିସକୁ ଗଲି । ମୋର ମଧ ଘଣ୍ଟାକର କାମ ଥିଲା ସାରିଲି । ଓକିଲଖାନାକୁ ଗଲି । ସ୍କୁଲକୁ ଯାଇ ହେଡ୍‌ମାଷ୍ଟର ଓ ଶିକ୍ଷକ କେତେଜଣଙ୍କ ସଙ୍ଗେ ଦେଖାକଲି । ସମସ୍ତେ ସଭାକଥା ଜାଣିଥାନ୍ତି ଓ ମୁଁ ଯୁଦ୍ଧୋଦ୍ୟମ ବିଷୟରେ କ'ଣ କହିବି ଶୁଣିବାକୁ ଆକାଂକ୍ଷୀ ଥାନ୍ତି । ମୁଁ କ'ଣ କ'ଣ କହିବି ଓ ମୁହିଁ କମିତି ରକ୍ଷା କରିବି ଭାବୁଥାଏ । ମୋର ଏତିକି ମାତ୍ର ଆତ୍ମ ବିଶ୍ୱାସ ଥାଏ ଯେ, ଯେଉଁ ଆଭିମୁଖ୍ୟ ଧରି ମୁଁ ମ୍ୟାକ୍‌ଡୋନାଲଡ୍ ଓ ସ୍ୱାନ୍‌ଙ୍କ ସମର୍ଥନ ପାଇଛି ସେହି ଆଭିମୁଖ୍ୟ ହିଁ ଠିକ୍ ।

ଯଥାସମୟରେ ସଭା ହେଲା । ବଡ଼ ସଭା । ଶିକ୍ଷକ ତ ସମସ୍ତେ ଥିଲେ, ଓକିଲଖାନାରୁ ସମସ୍ତେ ଆସିଥିଲେ । ଏସ୍. ଡ଼ି. ଓ. ମୋପ୍ରତି କିଛିତ୍ ବିମୁଖ ହେଲେହେଁ ଦୁର୍ଗାଚରଣ ବାବୁଙ୍କ ଖାତିରରେ ଅଫିସ୍ ଛୁଟି କରିଦେଇ ସମସ୍ତେ ସଭାରେ ଯୋଗଦିଅନ୍ତୁ ବୋଲି ଅନୁରୋଧ କରିଥାନ୍ତି । ସାଧାରଣ ଲୋକଙ୍କ ଭିତରୁ ଅନେକ ବି ଯାଇଥାନ୍ତି । ଜାଗା ଅଭାବରୁ ଉପରକ୍ଲାସ ବ୍ୟତୀତ ଅଉସବୁ ପିଲାଙ୍କୁ ଘରକୁ ଚାଲିଯିବାକୁ ପ୍ରଧାନ ଶିକ୍ଷକ ଆଦେଶ ଦେଲେ ।

ମୁଁ ଘଣ୍ଟାକରୁ ବେଶୀ ବକ୍ତୃତା ଦେଲି । ଦୁର୍ଗାଚରଣ ବାବୁଙ୍କୁ ନୂଆ କିନ୍ତୁ ମୋର ଗତାନୁଗତିକ । ପ୍ରଥମେ ବୁଝାଇ ଦେଲି ଯେ ମିତ୍ରପକ୍ଷ ଜିଣିଲେ ଯାଇ ଆମର ସ୍ୱାଧୀନତା ଶୀଘ୍ର ମିଳିବ । ଏମାନେ ଭାରତକୁ ବହୁକାଳ ଅଧୀନସ୍ଥ କରି ରଖିଗଲେଣି । ଏବେ ତ ବାରମ୍ବାର କହୁଛନ୍ତି ଭାରତ ଶାସନ ଦାୟିତ୍ୱରୁ ମୁକ୍ତ ହେବେ । କିନ୍ତୁ ଜର୍ମାନୀ ଯଦି ଜିଣେ ତେବେ ଭାରତକୁ ଆହୁରି ଚପୁଡ଼ିବାକୁ ଗୁଡ଼ାଏ ଦିନ ପୁଣି ଅଧୀନରେ ରଖିବେ । ବ୍ରିଟିଶ୍ ପେଟ ଭିତରେ ଯାହା ଭାବୁଥାନ୍ତୁ ପଛେ ଆମକୁ ନୀଚ ଜାତି ବୋଲି ମନେ କରନ୍ତି ନାହିଁ । କିନ୍ତୁ ହିଟଲର୍ ବାଇ ବଜେଇ କହୁଛନ୍ତି, ତାଙ୍କ ଜାତି ବ୍ୟତୀତ ଅଉ ସମସ୍ତେ ଅନାର୍ଯ୍ୟ, ତାଙ୍କର ସମାନସ୍କନ୍ଧ ହୋଇ ନ ପାରନ୍ତି ।

ଏତକ କହି ଯୁଦ୍ଧର ଗତି ଆଲୋଚନା କରି ବୁଝାଇଲି ଯେ, ମିତ୍ରପକ୍ଷ ଜିଣିବା ନିଶ୍ଚିତ ଏବଂ ଆମର ସ୍ୱାଧୀନତା ପ୍ରାପ୍ତି ଅବଶ୍ୟମ୍ଭାବୀ । ସ୍ୱାଧୀନ ହେଲେ ତ ଶାସନ ଓ ଦେଶର ସୁରକ୍ଷା ଆମ ଉପରେ ପଡ଼ିବ । ସେଥିପାଇଁ ତାଲିମ ହେବାର ସୁଯୋଗ ଏଇଲେ ତା' ମନକୁ ପହଞ୍ଚୁଛି । ଏତେବେଳେ ଆମେ ବହୁ ସଂଖ୍ୟାରେ ସେନା ବିଭାଗ, ନୌବିଭାଗ

ଓ ଉତ୍ତାକାହାଜ ବାହୁନୀରେ ପଶିଲେ ଭବିଷ୍ୟତ ପାଇଁ ଯୋଗ୍ୟତା ଅର୍ଜନ କରିବା ଏବଂ ଆମକୁ ବିନା ରକ୍ତପାତରେ ସ୍ୱାଧୀନତା ଦେଇ ଯାଉଥିବା ଇଂରେଜମାନଙ୍କୁ ସେମାନଙ୍କ ବିପଦ ବେଳେ ସାହାଯ୍ୟ କରି ମନୁଷ୍ୟତା ଦେଖାଇ ପାରିବା ।

ମୋର ବକ୍ତୃତାର ବିଷୟବସ୍ତୁ ଓ କହିବାର ଢଙ୍ଗ ସମସ୍ତଙ୍କ ମନକୁ ପାଇଲା । ସବୁଠାରୁ ବେଶୀ ମନକୁ ପାଇଲା ଦୁର୍ଗାଚରଣ ବାବୁଙ୍କର । ସେ କେବଳ ଏତକ ପ୍ରତିକୂଳ ମନ୍ତବ୍ୟ ଦେଲେ ଯେ, ମୋ ଦେହରୁ କଂଗ୍ରେସର ବାସନା ଦୂର ହୋଇଗଲେ ପ୍ରଚ୍ଚର ବିଭାଗକୁ ମୁଁ ଉପଯୁକ୍ତ ହେବି । ମୁଁ କିଛି ଉତ୍ତର ନ ଦେଇ ତୁନି ରହିଲି । ସେ ବିଶ୍ୱାସ କରିଥିବେ ଯେ, ତାଙ୍କର ଉପଦେଶ ମୁଁ ଗ୍ରହଣ କଲି ।

ତା'ପରେ ସେ ମୋପାଇଁ ଗେଦାବରଣ ବାବୁ ଯୋଗାଡ଼ କରିଥିବା ଚାକିରି ବିଷୟ ବଖାଣିଲେ । ମିଳିବ ମାସକୁ ୨ଶହ ; ବର୍ଷକୁ ୫ଟଙ୍କା ଲେଖାଏଁ ବଢ଼ି ୭ବର୍ଷ ପରେ ଯୋଗ୍ୟ ବିବେଚିତ ହେଲେ ୫୩୫୦ଙ୍କା ରେ ମୁଁ ପ୍ରମୋଶନ ପାଇବି ସହକାରୀ ପ୍ରଚ୍ଚର ଅଫିସରରୁ ପ୍ରଚ୍ଚର ଅଫିସର ପଦବୀକୁ । ସେଥିର ସିଆଡ଼କୁ ବର୍ଷକୁ କୋଡ଼ିଏ ଟଙ୍କା ଲେଖାଏଁ ବଢ଼ି ୫୬୫୦ଙ୍କା ପର୍ଯ୍ୟନ୍ତ ଯିବ । ସେତକ ପାଇବାକୁ ୨୦ବର୍ଷ ଦରକାର । ମୋର ଆଜିଠାରୁ ଚାକିରି କାଳ ପୂରା ୨୦ବର୍ଷ ନୁହେଁ । ମନେ ମନେ ହିସାବ କରିଦେଲି ମୋ ଦରମା ଛ ଶହ ଯାଏଁ ଗଲାବେଳକୁ ଚାକିରି ସରିଯାଇଥିବ । ଦୁର୍ଗାଚରଣ ବାବୁ ଯେପରି ଭାବରେ ବର୍ଣ୍ଣନା କଲେ ସେଥିରୁ ଜଣାପଡ଼ିଲା ଗୋଦାବରୀଶ ବାବୁଙ୍କ ଅନୁଗ୍ରହରୁ ମୋତେ ଏ ସୁଯୋଗ ମିଳୁଛି । ଆଉ ଗୋଟିଏ ପ୍ରଲୋଭନ ସେ ମୋତେ ଦେଖାଇଲେ । ଜାତୀୟ ମୁକ୍ତ ସାମ୍ମୁଖ୍ୟ ( National War Front ) ବୋଲି ଗୋଟିଏ ସଂସ୍ଥା ପ୍ରଚ୍ଚର ବିଭାଗ ସଙ୍ଗେ ଅଛି । ସେଥିରେ ଯଦି ମୁଁ ସହକାରୀ ସମ୍ପାଦକ ବୋଲି ଗୃହୀତ ହୁଏ ତେବେ ମୋତେ ଆଉ ପଚିଶଟଙ୍କା ଆଲାଉଏନ୍ସ ମିଳିବ । ତା ବାଦ୍ ୨ୟ ଶ୍ରେଣୀର ଗସ୍ତଭତ୍ତା ମଧ୍ୟ ମିଳିବ । ଜଣ ଯାନରେ ଗଲେ ମାଇଲକୁ ଚାରିଅଣା ; ସରକାରଙ୍କ ଯାନରେ ଯାଇ ବାହାରେ ରହିଲେ କେବଳ ଚାରିଟଙ୍କା ହାଲଟିଂ । ଏଥିରୁ ତ ମାସକୁ କିଛି ମିଳିବ । ସେ ଆହୁରି ମଧ୍ୟ କହିଥିଲେ, ବାହାରେ ପ୍ରାପ୍ୟ ଉପରୁ ଖାଇବାକୁ ମିଳିଯାଏ । ଏ କଥା ମୋ ହାତେ ହେଲି ନାହିଁ । ଶେଷରେ ଦେଖିଲି ନିଜ ମଟରରେ ଯାଇ ମାଇଲକୁ ଆଠ'ଣା ଲେଖାଏଁ ଅର୍ଜିଲେ ବି ଦରମାରୁ ଯିନା କମିଲା, ତା' ସାଙ୍ଗେ କିଛି ମିଶିଲା ନାହିଁ ।

ସେ ଯାହାହେଉ, ସେତେବେଳେ ୧୯୪୩ ମସିହାର ଶେଷ ଭାଗରେ, ମୋର ଯେଉଁ ଅବସ୍ଥା ମାସକୁ ୨ ଶହ ଟଙ୍କା, ବାକି ସବୁ କଥା ଛାଡ଼, ମିଳିବାର ଆଶା ମୋ ପକ୍ଷରେ ଲୋଭନୀୟ ହେଲା । ସେତେବେଳେ ମୋର ପ୍ରାପ୍ୟ ମାସକୁ ଦେଢ଼ଶହ ଟଙ୍କା ଖର୍ଚ୍ଚ । ପ୍ରତି ମାସରେ ପଚିଶ ଟଙ୍କା ମୋର କରଜ ଆଡ଼କୁ ଯିବ । ଏହା ତ କମ୍ ଆଶାର କଥା ନୁହେଁ ।

ମୋ ଜୀବନରେ ମୂଳରୁ, କରଜ ମୋର ଭୂଷଣ ହୋଇ ଆସିଛି । ମୁଁ ମନେକରେ ମୁଣ୍ଡରେ କରଜ ନ ଥିଲେ ମଣିଷର କର୍ମ ପ୍ରେରଣା ଆସେ ନାହିଁ । କିନ୍ତୁ ଠିକ୍ ଏଇ ସମୟରେ କରଜ ହୋଇ ଯାଇଥାଏ ମୋ ଉପରେ ବୋଝ ପରି । ଗୁଡ଼ାଏ ବି ହୋଇ ଯାଇଥାଏ । ସେତେବେଳର ତେଇଶି ଶହ ଟଙ୍କା ! ସ୍ତ୍ରୀକୁ ମୁଁ ମୁଣ୍ଡାଇ ପାରିବ ନାହିଁ ବୋଲି ଡରି ଯାଇ-ଥାଏ, ବିଶେଷ କରି ମୋ ସାନଭାଇ ଯୋଗୁଁ । ମଝିଅଁ କରଜର ପରିମାଣ ପର୍ଯ୍ୟନ୍ତ ଟିକିଏ ଡରାଇ ଦେଇଥିଲି ; ସାନଭାଇ ତା'ର ଆକାର, ଇଙ୍ଗିତ, ଗତିଦ୍ୱାରା ଜଣାଇ ଦେଇଥାଏ ଯେ କରଜ ଶୁଝିବା ମୋର ସାଧ୍ୟାତୀତ । ଆଦାୟ ପାଇଁ ମହାଜନମାନେ ଉଦ୍ୟମ କରିବା ପୂର୍ବରୁ ସେ କୌଣସି ମତେ ତା' ଭାଗଟା ନେଇଯାଇ ନିରାପଦ ରହିବାକୁ ଇଚ୍ଛା କରୁଥାଏ । ଥରେ ମୋତେ ଖଣ୍ଡେ ଏଇ ମର୍ମରେ ଚିଠି ବି ଦେଇଥିଲା । ମୁଁ ଏ ଚିଠିକୁ ବିଶେଷ ଖାତିର କଲି ନାହିଁ । ମୋର ସେ ପର୍ଯ୍ୟନ୍ତ ସାହସ ଥାଏ ଯେ, ତାକୁ ବୁଝାଇଦେବି । ଆମର ସ୍ୱଳ୍ପ ସମ୍ପତ୍ତିକୁ ଭିନଭାଗ କରି ଦେଲେ ଦାଣ୍ଡରେ ଲୋକେ ହସିବେ ; ପେଟ ତ ପୂରିବ ନାହିଁ । ମୋ କଥା ଶୁଣି ସେ ତୁନି ହୋଇଯାଏ ସିନା ତା ଢଙ୍ଗ ରଙ୍ଗରୁ ମୁଁ ବାରୁଥାଏ ମୋ କଥା ତା ମନକୁ ଘେନୁ ନାହିଁ ।

ତାକୁ ମୋ ବିରୁଦ୍ଧରେ ମତାଉଥାଏ, ସବୁବେଳେ, ମୋର ତଳଭାଇ, ଯେ ଆମ ଘରୁ ପୁଅ ହୋଇ ବର୍ଗଡ଼ିକୁ ଯାଉଥିଲା । ହେତୁ ପାଇଲା ଦିନୁ ସେ ମୋ ପ୍ରତି ପ୍ରତିକୂଳ । ସେ ବର୍ଗଡ଼ି ଜମି ବିକ ଆମ ଗାଁରେ ଜମି କିଣି ବର୍ଷକୁ ଯେତିକ ଧାନ ପାଇଲା, ତାହା ଆମ ଭିନଭାଇଙ୍କର ଜମିର ଆୟ ସଙ୍ଗେ ପ୍ରାୟ ସମାନ । ଆମ ସଙ୍ଗେ ରହିଲେ ତା'ର କ୍ଷତି ବୋଲି ବୁଝି ସେ ଆମଠାରୁ ଅଲଗା ହୋଇଗଲା । ବର୍ଗଡ଼ିରେ ସେ ଯେଉଁ କାଣ୍ଡ କରିଥିଲା ସେଥିରେ ସେ ଗାଁବାଲା ସହଜରେ ସ୍ତ୍ରୀକୁ ଜମି ବିକୋଇ ଦେଉ ନ ଥାନ୍ତି । ମୁଁ ଯାଇ ସେ ଗାଁ ଲୋକଙ୍କ ପାଖେ ହାତ ଯୋଡ଼ି ସ୍ତ୍ରୀକୁ ଖଲାଇ ଆଣିଥିଲି । ଆମ ଘରରୁ ଖଣ୍ଡେ ତାକୁ ଛାଡ଼ି ଦେଇଥିଲି । ସେ କଥା ତା'ର ମନେ ରହିଲା ନାହିଁ । ଯେଉଁ ସାନଭାଇ ଏତେବେଳକୁ ତାର ଗୋଟାକଯାକ ସେତେବେଳେ ତାର ସ୍ତ୍ରୀର ଅନ୍ଧ ନକ୍ଲଲ ସମର୍ଥ । ଦୁହିଁଙ୍କଯାକୁ ଅଣ୍ଟିରେ ପୁରାଇ କୌଣସିମତେ ସ୍ତ୍ରୀଙ୍କୁ ଚଳାଇଲି । ଦୁହିଁଙ୍କୁ ବୋଧ ଶୋଧ କରି ରଖିବା ସକାଶେ ସବୁବେଳେ ସବୁ ସହିଯାଏ । ମୋ ଭାର୍ଯ୍ୟା ଆସିଲା, ଗୃହଯୋଗ୍ୟା ହେବା ପୂର୍ବରୁ । ମୋ ସଙ୍ଗେ ତ ଦେଖା ହେବାର ନୁହେଁ । ଭାଇମାନଙ୍କୁ ସେ ଭାତ ରାନ୍ଧି ଚଳାଉଥାଏ । ତନହେଁ ଯାକ ସ୍ତ୍ରୀ ଉପରେ ହାକମତି କରନ୍ତି । ପୁଅ ହୋଇ ଯାଇ ଅଲଗା ହୋଇଯାଇଥିବା ଭାଇ ତା ଉପରେ ହାତ ଉଠାଇବାକୁ ବି ସଙ୍କୋଚ କରେ ନାହିଁ, ମୋ ଭାର୍ଯ୍ୟାଠାରୁ ବୟସରେ ସେ ସାତ ଆଠ ବର୍ଷ ବଡ଼ ହେଲେ ମଧ୍ୟ । ଏ ସତ୍ତ୍ୱେ ମୁଁ ତାର ଦୋଷ ଧରେ ନାହିଁ । ମୋ ମୁଣ୍ଡକୁ ହାତ ପାଇବାରେ, ତା' ପୁଅର ପାଠପଢ଼ା ଭାର ମୁଁ ନେଲି, ଦୁଇପୁଅଙ୍କୁ ବ୍ରତ କରାଇଲି ମୁଁ । ବଡ଼ ପୁଅ ଓ ବଡ଼ ଝିଅର ବାହାଘର ଖର୍ଚ୍ଚ ମୁଁ ତୁଲାଇଲି । ତଥାପି ସେ ମୋ ମନରେ ଅଶାନ୍ତି ଦେବାରେ କେବେ ହେଲା କରିନାହିଁ ।

ଯେଉଁ ସମୟର କଥା କହୁଛୁ ସେତେବେଳେ ସବୁ ସବୁ କାରଣରେ ମୋର ମନରୁ ଭବିଷ୍ୟତର ସମସ୍ତ ଆଶା ଆକାଙ୍‌କ୍ଷା ବିଦାୟ ନେଇଥାଏ । ବଡ଼ ଚିନ୍ତା ହୋଇ ଥାଏ, କମିଟି ସଙ୍ଗେ ଖାଲି ପିଲାଙ୍କୁ ଚଳାଇ ଋଣ ଭାରର ଲାଘବ କରିବି । ଫଳରେ ଦୁର୍ଗାଚରଣ ବାବୁଙ୍କ ଉଜ୍ଜ୍ୱଳ ଚିତ୍ର ଦେଖି ଭଲଗଲା ଏବଂ ସ୍କୁଲର ଖଣ୍ଡି କମିଟି ପାଇବା ଲାଳସା ହେଲା । ତାଙ୍କଠାରୁ ଶୁଣିଲି ଗେଜେଟେଡ଼ ସ୍କୁଲର ହୋଇଥିବାରୁ ପବ୍ଲିକ ସର୍ଭିସ କମିଶନ ଆଗରେ ଠିଆ ହେବାକୁ ପଡ଼ିବ । ମହା ଭୟ କଥା । ଯଦି ପବ୍ଲିକ ସର୍ଭିସ କମିଶନ ମୋତେ ଅଯୋଗ୍ୟ ମନେକରେ ତେବେ ସାଜମାଟିକ ଜୀବନକୁ କୋଉ ମୁହଁରେ ଫେରିବି ? ପବ୍ଲିକ ସର୍ଭିସ କମିଶନଙ୍କ ସରକାରଙ୍କ ପକ୍ଷରୁ ଯେଉଁ ବିଜ୍ଞାପନ ପଠା ହୋଇଥିଲା ସେ ଖଣ୍ଡ ମୋତେ ଦୁର୍ଗାଚରଣ ବାବୁ ଦେଖାଇ ମୋର ସଂଶୟ ଦୂର କଲେ ।

ବିଜ୍ଞାପନରେ ଥାଏ, ପ୍ରାର୍ଥୀ ୩୫ରୁ ୪୦ ବର୍ଷର ହୋଇଥିବେ । ମୋତେ ସେତେବେଳକୁ ୩୧ । ଇଂରେଜୀରେ ବା ଅର୍ଥନୀତିରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ପାଇ ବି. ଏ. ପାସ୍ କରିଥିବେ, ମୋର ଇକନମିକ୍ସ ଅନର୍ସ ; ଅନ୍ତତଃ ୫।୭ ବର୍ଷ ଖବରକାଗଜ ଅଫିସରେ କାମ କରିଥିବେ, ମୋର ସମାଜ ପ୍ରେସ୍ ଦୈନିକ ଆଶା ପ୍ରେସ୍ ଓ ନବଭାରତ ପ୍ରେସ୍‌ରେ ଅଭିଜ୍ଞତା ପ୍ରାୟ ୧୦ ବର୍ଷର ; ଇଂରେଜୀ ଓ ଓଡ଼ିଆରେ ଭଲ ଲେଖି ପାରୁଥିବେ ଓ କହି ପାରୁଥିବେ । ସେ ଯୋଗ୍ୟତା ମୋ ଗ୍ରୁପ ଜୀବନରୁ ଥାଏ । ବିଜ୍ଞାପନଟା ପଢ଼ି ମନରେ ଆନନ୍ଦ ହୋଇଗଲା । ଦୁର୍ଗାଚରଣ ବାବୁ କହିଲେ ଏ ଯୋଗ୍ୟତା ତୁମ ବ୍ୟତୀତ ଆଉ କାହାର ନାହିଁ । ମୁଁ ମୁହଁକୁ ଟିକିଏ ଆମ୍ବିଳେଇ ଉତ୍ତର ଦେଲି, 'ଆଉ ଦୁଇଟି ଯୋଗ୍ୟତା ରହିଗଲା । ଡାହାଣ ଗୋଡ଼ରେ କଣି ଗୋଟିଏ ଥିବ ଏବଂ ଉପରୁ ଦାନ୍ତ ଦୁଇଟି ପଡ଼ିଯାଇଥିବ ।' ସେ ସହଜେ ହସନ୍ତି ନାହିଁ ; ଖୁବ୍ ହସିଲେ ; ଗୋଦାବରୀଶ ବାବୁଙ୍କୁ ଯାଇ କହିଲେ ଯେ, ତାଙ୍କଠାରୁ ଏ କଥା ବହୁ ଲୋକଙ୍କ କାନ ହୋଇଗଲା ।

ମୋର ସେତେବେଳକୁ ଉପରୁ ଦାନ୍ତ ଦୁଇଟି ବାଦେ ଆଉ ସ୍ୱରଟା ଦାନ୍ତ ପଡ଼ି ଯାଇଥାଏ, ଏବଂ ଆଉ ଦଶଟା ଦାନ୍ତ ହଲ ହଲ ହେଉଥାଏ । ଦାନ୍ତ ମୂଳରୁ ପୂଜ ବାହାରି ଧାନ ସାଙ୍ଗରେ ପେଟକୁ ଯାଇ ଅଜୀର୍ଣ୍ଣର ଉପକ୍ରମ ହେଉଥାଏ । ପବ୍ଲିକ ସର୍ଭିସ କମିଶନ ଆଗରେ ଠିଆ ହେବା ପୂର୍ବରୁ ଦାନ୍ତର କିଛି ବ୍ୟବସ୍ଥା କରିବା ପାଇଁ କଟକ ଗଲି । ଦାନ୍ତ ଡାକ୍ତର ବ୍ୟବସ୍ଥା ଦେଲେ ସବୁତକ ଦାନ୍ତ ଓପାଡ଼ି ଦେଇ ନକଲି ଦାନ୍ତ ଲଗାଯିବ । ସେଇଆ ହେଲା । ହଲୁଥିବା ଦାନ୍ତ ସଙ୍ଗେ ୧୦।୧୨ଟା ଟାଣୁଆ ଦାନ୍ତ ବି ଗଲେ । ତାରିଖ ପୂର୍ବରୁ ପ୍ରସ୍ତୁତ ହେବାକୁ ତରତର ହୋଇ ପ୍ରତ୍ୟହ ୪ଟା ଲେଖାଏଁ ଦାନ୍ତ ଉପୁଡ଼ାଇଲି । ଶେଷ ସ୍ୱରଟାରୁ ଗୋଟାକ ମୂଳରୁ ରକ୍ତସ୍ରାବ ଏକାବେଳେକେ ବନ୍ଦ ହେଲା ନାହିଁ ଡାକ୍ତରଙ୍କ ଚେଷ୍ଟା ସତ୍ତ୍ୱେ । ବନ୍ଦ ହୋଇଯିବ ବୋଲି ସାହସ କରି ୨ଟା ବେଳେ ଡାକ୍ତର ଦୋକାନରୁ ଧାନ ଭାଇର ବସାକୁ ଗଲି । ସନ୍ଧ୍ୟା ସୁଦ୍ଧା ପ୍ରାୟ ଦେଢ଼ପା' ହେବ ରକ୍ତ ଯିବା ପରେ ସ୍ରାବ ବନ୍ଦ ହେଲା । ଡାକ୍ତର ତ କହିଲେ ତାଙ୍କ ଔଷଧର ଫଳ ହେଲା । ମୁଁ ବୁଝିଲି, ପ୍ରାୟ ୫ଟା ପର୍ଯ୍ୟନ୍ତ

ପାନ ଗୁଣ୍ଡ ଚୋବାଇବା ବେଳେ ପାନ ଚକଟି ପାଟିରେ ପକାଇବା ଆରମ୍ଭ କରିବାରୁ ରକ୍ତସ୍ରାବ ବନ୍ଦ ହେଲା । ମାତ୍ର ଛାଣ ହେବାକୁ ଗୋଟିଏ ହପ୍ତା ଅପେକ୍ଷା କରି ପୁଣି କଟାଇ ଗଲି ; ଦାନ୍ତ ଦୁଇପାଟି ଲଗାଇଲି ।

ସ୍ତ୍ରୀ ଭିତରେ ହିତୈଷୀ ବନ୍ଧୁମାନେ ପରାମର୍ଶ ଦେଲେ ପ୍ୟାଣ୍ଟ କୋର୍ଟ ପିନ୍ଧି ପବ୍ଲିକ ସର୍ଭିସ କମିଶନକୁ ଯିବାକୁ ହେବ । ସରକାରୀ ଗେଜେଟେଡ଼ ଅଫିସରଙ୍କ ସାହେବୀ ପୋଷାକ ତ ଗୁହ୍ । ଓପନ କଲର କୋଟ ଓ ନେକଟାଇ ପିନ୍ଧିବାକୁ ମନ ହେଲନାହିଁ । ଶୀତ ଦିନରେ ତ ପୁଣି ଗରମ ପୋଷାକ ପିନ୍ଧିବାକୁ ହେବ । ଦିନେ ଦୁଇଦିନ ମୋଟା ଭଡ଼ା ହୋଇ ଫ୍ଲାନେଲ କନାରେ ଖଣ୍ଡେ ପ୍ୟାଣ୍ଟ ଓ ସର୍ଜ କନାରେ ଖଣ୍ଡେ କଳା କୋଟ ହେବାର ହେଲା ।

ପବ୍ଲିକ ସର୍ଭିସ କମିଶନଙ୍କ ଆଗରେ ହାଜର ହେବା ଦିନ ମୁଁ ସାହେବୀ ବା ଅଧା ସାହେବୀ ପୋଷାକରେ ଅତି ସନ୍ତର୍ପଣରେ ତାଙ୍କ ଅଫିସ ବାରଣ୍ଡାରେ ଯାଇ ବସିଲି । ପୋଷାକଟା ମୋତେ ଖୁବ ଅଡୁଆ ଲାଗୁଥାଏ । ଲୋକେ ହସୁଥିବେ ବୋଲି ମନେ ହେଉଥାଏ । ତା' ଉପରକୁ ନକଲି ଦାନ୍ତ ଦି'ଗଡ଼ା । ସ୍ତ୍ରୀକୁ ପ୍ରଥମ ଦିନ ଦେଖି ତ ମୋ ତୃତୀୟ ଝିଅ, ବୟସ ଛ' ବର୍ଷ, ଭେଁ ଭେଁ କରି ହୋଇ ଯାଇଥିଲା । ପ୍ରତ୍ୟହ ଚଟା ଲଗାଇଲା ବେଳେ ମୋ ମୁହଁ ମୋତେ ଅତି ବିଭତ୍ସ ଦିଶୁଥାଏ । ନିଜକୁ ଯେପରି ଦିଶୁଛି ଅନ୍ୟଙ୍କୁ ଅନ୍ତତଃ ସେପରି ଦିଶୁଥିବ । ଏହିପରି ଗୁଡ଼ାଏ ଚିନ୍ତା ମୁଣ୍ଡରେ ପଶିଲେ ନିଜର ଆତ୍ମବିଶ୍ୱାସ ଯେପରି ହେବାର କଥା ତାହାକୁ ଅନୁମେୟ ।

ମୁଁ ଥିଲି ଏକମାତ୍ର ପ୍ରାର୍ଥୀ । ପାଞ୍ଚ ମିନିଟରେ ଇଣ୍ଟରଭ୍ୟୁ ସରିଗଲା । ମୁଁ ଦାଖଲ କରିଥିବା ଦୁଇଖଣ୍ଡିଯାକ ସାର୍ଟିଫିକେଟ କମିଶନର ଚେୟାରମ୍ୟାନ ନାଡ଼େଇ ନାଡ଼େଇ କରି ଦେଖିଲେ । ଏ ସାର୍ଟିଫିକେଟରୁ ଖଣ୍ଡିଏ ଦେବାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କର, ଅନ୍ୟ ଖଣ୍ଡିକ ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କର । ଏ ଦୁଇଜଣଙ୍କ ପାଖରୁ ସାର୍ଟିଫିକେଟ ଆଣିବାକୁ ଯିବା ମୂଳରେ ଥିଲା ମୋର ଆତ୍ମବିଶ୍ୱାସହୀନତା । ଗତ ୧୦।୧୨ ବର୍ଷରେ ଏଇ ଦୁହିଁଙ୍କୁ ଉତ୍କଳ ସାହିତ୍ୟ ସମାଜ ଆଦିରେ ଓ ସାଧାରଣ ସଭାରେ ସବୁଠାରୁ ବେଶୀ ବ୍ୟସ୍ତ ଓ ବିରକ୍ତ କରିଥିଲି । ସେ ଦୁହିଁଙ୍କର ମୋ ବିଷୟରେ କ'ଣ ମତ ଜାଣିଲେ ପବ୍ଲିକ ସର୍ଭିସ କମିଶନ ମୋ ବିଷୟରେ କ'ଣ ବିଚାର କରିବେ ଜାଣି ପାରିବେ ବୋଲି ବିଚାରି ଯାଇଥିଲି । ଦୁହେଁ ଯାକ ମୋ ଯୋଗ୍ୟତା ବିଷୟରେ ଖୁବ୍ ଲେଖିଲେ ଏବଂ ପ୍ରଚାର ବିଭାଗକୁ ଏଇପରି ଲୋକ ଦରକାର ବୋଲି ମତ ଦେଇଥିଲେ । ସେ ଦୁଇଖଣ୍ଡି ପଢ଼ି ମୋତେ 'ସରକାରର ପ୍ରଚାର ବିଭାଗ କାହିଁକି ଦରକାର' ବୋଲି ଚେୟାରମ୍ୟାନ୍ ପଚାରିଲେ । ସେ ଜଣେ ଅବସରପ୍ରାପ୍ତ ପୁଲିସ୍ ଆଇ. ଜି., ଗୋରା ସାହେବ । ମୁଁ ଛୋଟଛୋଟ ବାକ୍ୟରେ ପ୍ରତିପାଦନ କରିବାକୁ ଚାହିଁଲି ଯେ, ପ୍ରଚାର ବିଭାଗ ଦେଶର ସରକାରରେ ସବୁଠାରୁ ବେଶୀ ଉପଯୋଗୀ ଅଙ୍ଗ । ବାହାରି ମେମ୍ବର ଜଣେ ଦୁଇ ଚାରିପଦ ମାମୁଲି ପ୍ରଶ୍ନ ପଚାରିବା ପରେ ମୋତେ ବିଦାୟ ମିଳିଲା ।

ଗୋଦାବରୀଶ ବାବୁଙ୍କ ପାଖେ ପବ୍ଲିକ୍ ସର୍ଭିସ କମିଶନଙ୍କ ମନ୍ତବ୍ୟ ଦେଖିବାକୁ ପାଇଲି । ସେଥିରେ ଲେଖାଥିଲା, 'ପ୍ରାର୍ଥୀଙ୍କଠାରେ ପ୍ରଗ୍ଭର ବିଭାଗ ଅଫିସରର ଠାଣି ନାହିଁ । ବୟସ ଓ ଅଭିଜ୍ଞତା ବିଷୟରେ ସରକାର ଦେଇଥିବା ସର୍ତ୍ତ ଯୋଗୁଁ ଅନ୍ୟ କୌଣସି ପ୍ରାର୍ଥୀଙ୍କୁ ଇଣ୍ଟର୍ଭିଉ ପାଇଁ ଡକାଯାଇନଥିଲା । ନ ହେଲେ, ହୁଏତ ଯୋଗ୍ୟତର ବ୍ୟକ୍ତି ମିଳିଥାନ୍ତେ । ସରକାର ଯାହା ଚାହିଁଛନ୍ତି ସ୍ୱାଙ୍କଠାରେ ଅଛି, ସ୍ୱାଙ୍କୁ ରଖାଯାଇପାରେ ।' ଏହା ପଢ଼ି ବିଶେଷ ଆନନ୍ଦିତ ହେବାର ତ ନୁହେଁ । ମୁଁ ଆନନ୍ଦିତ ହେଲି, ପବ୍ଲିକ୍ ସର୍ଭିସ୍ କମିଶନଙ୍କର ସୁପାରିଶ ମିଳିଗଲା ବୋଲି ଗୋଦାବରୀଶ ବାବୁ କହିବାରୁ ।

ତା' ପରେ ସ୍ପେଶାଲ ଡେଭ୍ରିଜନର ଜଣେ ଅଫିସର ଆସିଲେ ମୋର ଅତୀତର ଭଲମନ୍ଦ ଉପରେ ରିପୋର୍ଟ ଦେବାକୁ । ମୁଁ ଅସହଯୋଗ ଆନ୍ଦୋଳନରେ ମୋର ଅଂଶ ବିଷୟ କହିଲି । ୧୪୪ ଧାରା ଅମାନ୍ୟ କରି ଜେଲ୍ ଯିବା କଥା ମଧ୍ୟ କହିଲି । ଭଦ୍ରଲୋକ ମୋ ପ୍ରତି ସହାନୁଭୂତିଶୀଳ ହୋଇ କହିଲେ, 'ଏ କଥା ଆପଣଙ୍କ ଆଡ଼ୁ ନ ବାହାରିଥିଲେ, ମୋ ରିପୋର୍ଟରେ ସ୍ଥାନ ପାଇନଥାନ୍ତା ।'

ଏତକରେ ମୋର ଚାକିରି କରିବାର ଡୋର ବନ୍ଧା ହୋଇଥାନ୍ତା । କିନ୍ତୁ ସ୍ୱା ଉପରେ ସେତେବେଳର ଚିଫ୍ ସେକ୍ରେଟାରୀ ଜୋର ଦେଲେ ନାହିଁ । ସେ ଲେଖିଲେ, '୧୪୪ ଧାରା ଅମାନ୍ୟ କରି ଜେଲ୍ ଯିବା, ଲୋକର ଚରିତ୍ର ଓ ଆଚରଣର ନ୍ୟୂନତାର ପ୍ରମାଣ ନୁହେଁ । ସ୍ୱେ ପୂର୍ବରେ କଂଗ୍ରେସରେ ଥିଲେ ଏବଂ ସରକାରୀ ବିରୁଦ୍ଧ ପ୍ରଚାର କରିଥିଲେ ବୋଲି ଏ ଫାଇଲରେ ଏକାଧିକ ସ୍ଥାନରେ ଲେଖା ଅଛି । ସ୍ୱାଙ୍କର ପ୍ରଗ୍ଭର ଯୋଗ୍ୟତା ଯୋଗୁଁ ସ୍ୱାଙ୍କୁ ନିଯୁକ୍ତ ଦିଆଯାଉଛି । କେବେ କେବେ କ'ଣ କରିଥିଲେ ସେଥିପାଇଁ ନୁହେଁ । ସ୍ୱାଙ୍କର ନିଯୁକ୍ତି ପତ୍ର ପଠାଯାଇ ପାରେ ।' ଗୋଦାବରୀଶ ବାବୁଙ୍କ ପ୍ରଭାବରେ ସେ ଏହା ଲେଖିଲେ ବୋଲି ପ୍ରଥମେ ମନେ କରିଥିଲି । କିନ୍ତୁ ଚିଫ୍ ସେକ୍ରେଟାରୀ ବୋଷ୍ଟେଡ଼ଙ୍କୁ ପରେ ଚହ୍ନିଲି । ସେ କାହାଦ୍ୱାରା ପ୍ରଭାବିତ ହେବା ଲୋକ ନ ଥିଲେ । ଯାହା ଲେଖିଥିଲେ ତାହା ତାଙ୍କର ସ୍ୱାଧୀନ ମତ । ସେ ଥିଲେ ଭାରି ଉଦାର ଲୋକ ।

୧୯୪୪ ଜାନୁୟାରୀ ମାସ ୮ ତାରିଖରେ ମୁଁ କାମରେ ଯୋଗଦେଲି । ଆଜି କାଲି ଯେଉଁ ଘରେ ସିଟି ହସ୍ପିଟାଲ୍ ହୋଇଛି ଓଡ଼ିଶା ସେକ୍ରେଟାରିଏଟ୍ ଥିଲା ସେଇ ଘରେ । ଏବେ ଯେ କୋଠାରେ କେତେକ ଅଂଶ ବଢ଼ିଛି । ସେତେବେଳେ ସ୍ୱାର ତିନି ପା ଘର ବ ନ ଥିଲା । ସ୍ୱାର ଭିତରେ ଥିଲେ ୫ ଜଣ ଗୋରା ସିଭିଲିଆନ୍, ସାତଜଣ ଭାରତୀୟ ଆଇ. ସି. ଏସ. ଏବଂ ପ୍ରାୟ ୧୫ ଜଣ ଉଚ୍ଚପାହ୍ୟା ଡେପୁଟି ମାଜିଷ୍ଟ୍ରେଟ୍, କିରାଣୀରୁ ଉଠିଥିବା ୬ ଜଣ ଆସିଷ୍ଟାଣ୍ଟ ସେକ୍ରେଟାରୀ ଓ ଜଣେ ରେଜିଷ୍ଟ୍ରାର୍ । ମୁଁ ଏକମାତ୍ର ଲୋକ ଯେ କି 'ପଶୁ' ନୁହେଁ କି 'ପକ୍ଷୀ' ନୁହେଁ ।

ମୋ ଉପରେ ସବ୍‌ଲସିଟି ଅଫିସର ଓ ଡେପୁଟି ସେକ୍ରେଟାରୀ ଦୁର୍ଗା ବାବୁ—ରାସ୍ବାହାଦୁର ଦୁର୍ଗା ଚରଣ ଦାସ । ଭାରି କଡ଼ା ହାକିମ । କିନ୍ତୁ ପ୍ରଚାର ବିଭାଗକୁ ଆଦୌ ଉପଯୁକ୍ତ ନୁହନ୍ତି । ସେ ଥିଲେ ଜଣେ ଶ୍ରେଷ୍ଠ ହାକିମ । ଖୁବ୍ ବଡ଼ ମେଜାଜ, କିନ୍ତୁ ସାହେବମାନଙ୍କ ଆଗରେ ଭାରି ନମ୍ର ଏବଂ କଂଗ୍ରେସ ବାଲାଙ୍କର ଘୋର ବିରୋଧୀ । ପ୍ରଥମ ଦିନ ସେ ମୋତେ ବହୁତ ହିତୋପଦେଶ ଦେଲେ । ଗୋଟିଏ ପରାମର୍ଶ, ଯେ କୌଣସି ମତେ ଦୁଇଟା ସୁଟ୍ କରାଇଦେବାକୁ ଏବଂ ମନରେ ଯାହା ଭାବ ଆସୁଛି ତାହା ଭଲ ରକମ ଲେଉଟ ପାଲଟ କରି ଲେଖିବାକୁ । ସେ କହିଲେ, 'ମୁଁ ତୁମ ଆଗରୁ ୨୫ ବର୍ଷ ହେଲା ଚାକିରି କଲିଣି । ମୁଁ କହୁଛି, ମନେ ରଖିବ । ସାହେବମାନଙ୍କୁ ବିଶ୍ୱାସ କରିବ ନାହିଁ, ଯେ ଗୋଟେ କଥା ବିସ୍ତାରନ୍ତି ଗୋଟେ କଥା କହନ୍ତି ।'

ଦୁର୍ଗା ଚରଣ ବାବୁଙ୍କ ଅନୁମତି ନେଇ ଚିଫ୍ ସେକ୍ରେଟାରୀଙ୍କ ସଙ୍ଗେ ସାକ୍ଷାତ କରିବାକୁ ଗଲି । ସେ ବି ପରାମର୍ଶ ଦେଲେ ନୂଆ କାମରେ ଯୋଗ ଦେବା ଲୋକ ଚିଫ୍ ସେକ୍ରେଟାରୀଙ୍କୁ ନିଜର ଆନୁଗତ୍ୟ ଜଣାଇବାକୁ ଯିବା ଦରକାର । ସେ ପୁଣି ଆମ ପ୍ରଚାର ସଂସ୍ଥାର ଅଧିକାରୀ, ହୋମ୍ ଡିପାର୍ଟମେଣ୍ଟର ମୁଖ୍ୟ ଭାବରେ । ପ୍ରଚାର ସଂସ୍ଥା ହୋମ୍ ଡିପାର୍ଟମେଣ୍ଟର ଅଙ୍ଗ ହୋଇ ଥାଏ ।

ମୋର କାର୍ଡ଼ ପାଇବା ମାତ୍ରେ ସେ ମୋତେ ଡକେଇଲେ । ମୁଁ ଖଣ୍ଡିଏ ଲୁଗା ଓ ଗଲାବନ୍ଧ କନା କୋଟ୍ ଖଣ୍ଡିଏ ଲଗାଇଥାଏ । ଏ କୋଟ୍ ଖଣ୍ଡି ଦୁଇ ତିନିଦିନ ହେଲା ନୂଆ କରେଇଥାଏ, ଲୁଗାଟି ଖଦଡ଼ ଓ କୋଟ୍‌ଟି ମିଲ୍ କନାର । ନମସ୍କାର ହେବା ସଙ୍ଗେ ସଙ୍ଗେ ମୋର ଦୋଷ ଜଣାଇଲି, ମୋ ପାଖରେ କିଛି ପଇସା ନ ଥିବାରୁ ଏପରି ପୋଷାକରେ ଆସିଛି, କ୍ଷମା କରିବେ । ଅତି ଉଦାର ଭାବରେ ସେ କହିଲେ, 'ପୋଷାକରେ କିଛି ଯାଏ ଆସେ ନାହିଁ । ଯେପରି ମନ ଓ ସାମର୍ଥ୍ୟ ସେପରି ଲୁଗା ପିନ୍ଧିବ । ଖାଲି ମୋ ମନରେ କାହିଁକି କୌଣସି ଭଦ୍ରଲୋକର ମନରେ ପୋଷାକ ଯୋଗୁଁ ବିକାର ହୁଏ ନାହିଁ । ତୁମର କାମ ଉପରେ ଆମର ଦୃଷ୍ଟି । କାମ କର, ତୁମ କାମ ଯୋଗୁଁ ତୁମ ଉପରେ ଲୋକଙ୍କର ଦୃଷ୍ଟି ପଡ଼ୁ ।'

ମୁଁ ଅତି ନମ୍ର ଭାବରେ କହିଲି, 'ସାର୍ ! ମୁଁ କ'ଣ କରିବ ସେ ବିଷୟରେ କିଛି ଆଦେଶ ଆଶା କରେ ।'

ସେ ତାଙ୍କ ଚାହିଁ ଘୁଞ୍ଚାଏ ହସିଲେ ।

ସେ ଆମ ଏଠାରୁ ପାଟଣା ବଦଳି ହୋଇଯାଇଥାନ୍ତି; ମୁଁ ଯାଇଥିଲି ପାଟଣା, ଗୋଟାଏ କନ୍‌ଫରେନ୍‌ସକୁ, ସେତେବେଳକୁ (୧୯୪୬) ମୁଁ ଗୋଟାଏ ମନ୍ତ୍ରୀଙ୍କ ହୋଇ

ଚଳିଣି—ପବ୍ଲିସିଟି ଅଫିସର ଓ ଅଣ୍ଡର ସେକ୍ରେଟାରୀ, ପ୍ରଥମ ଶ୍ରେଣୀର ଅଫିସର । ଗୋଟାଏ ରାତି ଭୋଜନ ଚାଲିଥାଏ, ଟେବୁଲରେ ୬ ଜଣ ସାହେବ (ଜଣେ ଉତ୍ତର ପ୍ରଦେଶରୁ ଓ ଆଉ ଜଣେ ଆସାମରୁ); ତାଙ୍କ ବାଦ୍ ଆମ ଦେଶୀ ସାହେବ ପ୍ରାୟ ଡଜନେ ଖଣ୍ଡେ ବସିଥାଆନ୍ତି ମିଶାମିଶି ହୋଇ । ମୋ ପାଖରେ ବସିଥିବା ଆସାମୀ ଆଇ. ସି. ଏସ. ସାହେବ ବୋଷ୍ଟେଡ଼ଙ୍କୁ ଦେଖାଇ ଫୁସ୍ ଫୁସ୍ କରି କହିଲେ, 'ଲୋକଟି ଖୁବ୍ ଗମ୍ଭୀର ପ୍ରକୃତିର । ହସ ଏକାବେଳକେ ନାହିଁ ।' ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି, 'ମୁଁ ଅନେ ହିସାବ କରୁଥିଲି ଯେ ସ୍ୱାଙ୍କ ଜୀବନରେ ଯେତିକି ହସିଥିବେ, ଟେପ୍ ରେକର୍ଡ଼ କଲେ ଗୋଟାଏ ଟେପ୍ ବି ଲାଗିବ ନାହିଁ । ମୋ ସମସ୍ତ ଅଧଘଣ୍ଟାରୁ ଢେର କମ୍ ।'

ଭଦ୍ରଲୋକଟି ଟୋକା । ସେ ବି ପବ୍ଲିସିଟି ବାଲା, ବୋଷ୍ଟେଡ଼ଙ୍କ ହସର ଟେପ୍ ରେକର୍ଡ଼ ହେବା କଳ୍ପନାରେ ସେ ଏତେ ଆମୋଦିତ ହୋଇଗଲେ ଯେ, ଖେଁ କରି ହସି ପକାଇଲେ । ଓପର ଓଳି ପାଟଣା ଜଙ୍କସନକୁ ବୁଲି ଯାଇଥିଲି ବେଳେ ରିଫ୍ରେଶ୍‌ମେଣ୍ଟ ରୁମ୍‌ରେ ଟିକିଏ ପିଆ ପିଇ କରିଥିଲେ । ସେତେବେଳେ ଆମର ଚିଫ୍ ସେକ୍ରେଟାରୀ ଥିବା ମିଷ୍ଟର ଉଇଲିଅମ୍‌ସ ନ ଥିଲେ ଅବା ହଠାତ୍ ଅନ୍ୟ କାହାରି ଦୃଷ୍ଟି ଆକର୍ଷଣ କରି ନ ଥାନ୍ତା ସବୁ କଥା ଖୋଲାଖୋଲି ହୋଇ ବାହାରିଲା । ହସର ଯେଉଁ ତାଣ୍ଡବ ଉଠିଲା ସେଥିରେ ବୋଷ୍ଟେଡ଼୍ ବି ମିଶିଲେ ଏବଂ ଶେଷରେ ମୋତେ ପଚାରିଲେ, 'ବର୍ତ୍ତମାନ ଯେଉଁ ଗୋଳ ଲାଗିଛି ସେଥିରେ କେତୋଟା ରେକର୍ଡ଼ ଯିବ ?' ମୁଁ ଅମ୍ଳାନ ମୁହଁ କରି କହିଲି, 'ରେକର୍ଡ଼ ସମସ୍ତ ଅନୁସାରେ ସରିବ; ଶବ୍ଦର ମନ୍ଦ୍ରତାରେ ତ ନୁହେଁ ।' ଆହୁରି ହସ ଗୋଳ ଲାଗିଲା । କ୍ରମେ ବୋଷ୍ଟେଡ଼୍ ସାହେବ ଓ ଅନ୍ୟ ସାହେବମାନଙ୍କର ସଂପର୍କରେ ଆସି ମୁଁ ବୁଝିଲି, ସେମାନେ ଆଦୌ କୁଟୁରୁପିଆ ନୁହନ୍ତି । ମନର କଥା ଫଟା କହି ଦିଅନ୍ତି, ଅବଶ୍ୟ ଆମେ ପାଞ୍ଚ ପଦ କହିବା ଜାଗାରେ ସେମାନେ ପଦେ ଅଧପଦ କହନ୍ତି, ଯାହା କହନ୍ତି ତାହା ମନର କଥା, ସେଥିରେ ଲୁଗ୍ଗ ଗୁଡ଼ୁରି ନ ଥାଏ ।

ମୋର ସେହି ପ୍ରଥମ ସାକ୍ଷାତ ଦିନ, ମୁଁ ତାଙ୍କୁ କାମର ନିର୍ଦ୍ଦେଶ ମାଗିବାରେ ସେ ପ୍ରସ୍ତୁତ ହସି କହିଲେ, 'ରାଜ୍ୟ ଶାସନରେ ପ୍ରଚାରର ଆବଶ୍ୟକତା ବିଷୟରେ ମୋର ବହୁତ ସଂଶୟ ଅଛି । ଅନରେବଲ୍ ମିନିଷ୍ଟର (ଗୋଦାବରୀଶ ବାବୁ) ମନେ କରନ୍ତି, ତୁମେ ଏ ବିଷୟରେ ଆମଠାରୁ ଅଧିକ ଅଭିଜ୍ଞ । ତୁମ ମନରେ ଯାହା ଯାହା ପ୍ରସ୍ତାବ ଆସୁଛି ତାହା ଲେଖିପକାଉଥାଅ । ବଳେ ତାହାର ପରୀକ୍ଷା ନିରୀକ୍ଷାରୁ କର୍ମପନ୍ଥା ବାହାରିବ ।

ତାଙ୍କ ସଙ୍ଗେ କଥାବାର୍ତ୍ତା ୧୫ ମିନିଟ୍‌ରୁ ବେଶୀ ବେଳ ଲାଗିଲା । ଏତେ ସମସ୍ତ ସେ କାହାକୁ ଦିଅନ୍ତି ନାହିଁ । ଘୁଡ଼ାଏ ବେଳ ନଷ୍ଟ ହେଲାଣି ବୋଲି ବୋଧହୁଏ ସେ ବାସ୍ତବ

ହଠାତ୍ 'ଆଚ୍ଛା ହେଉ, ଧନ୍ୟବାଦ' ବୋଲି କହିଦେଲେ । ତା'ର ଭାବାର୍ଥ, 'ହଉ, ଯାଅ ବୋଲି ପରେ ବୁଝିଲି । କିନ୍ତୁ ସେତେବେଳେ ସରଳାର୍ଥ ନ ବୁଝି ମନେ ହେଲା, ସେ ମୋ କଥାରେ ତୃପ୍ତ ହେଉଥାନ୍ତି । ଆଉ ଗୋଟାଏ କ'ଣ ମୁଁ ଉଠାଇଲା ବେଳକୁ ସେ ଆଉ ଥରେ 'ଧନ୍ୟବାଦ' ବୋଲି କହିଲେ ଟିକିଏ ଭିନ୍ନ ସ୍ୱରରେ । ଏହାର ଅର୍ଥ ମଧ୍ୟ ବୁଝିଲି ନାହିଁ । ତୃତୀୟ ଥର ବୁଝିଲି ଓ ଗଲି ମୋର ଦରକାର ହେଲେ ଆଉ ଆସିବ ବୋଲି କହି । 'ହଁ, ହଁ ତୁମେ ସବୁବେଳେ ସ୍ୱାଗତ' ବୋଲି ସେ ମୋତେ ଯେପରି ବିଦାୟ ଦେଲେ, ତାହା ଶୁଣିବା ଲୋକ ଆଉ ଥରେ ଆସିବାକୁ ଭରସିବ ନାହିଁ । ପରେ ମୁଁ ସାହେବଙ୍କ ଧନ୍ୟବାଦର ଓଡ଼ିଆ ଅନୁବାଦ କରିଥିଲି । ପ୍ରଥମ ଧନ୍ୟବାଦର ଅର୍ଥ, 'ହଉ ଯା' ; ଦ୍ୱିତୀୟର 'ଯା'ବେ' ; ଓ ତୃତୀୟ ଥରର ଅର୍ଥ, 'ଯା...କୁ କି ନାହିଁ ବେ' ବୋଲି ଧମକ ।

ମୋ ପାଇଁ ଦିଆ ହୋଇଥିବା ଅତି କ୍ଷୁଦ୍ର କୋଠରୀରେ ବସି ଆମ ହେଡ୍ ଆସିଷ୍ଟାଣ୍ଟଙ୍କଠାରୁ ସନ୍ଧି ନେଇଲି । ବାର ବର୍ଷ ପରେ ମୁଁ ଚାକିରି ଛାଡ଼ିବା ଯାଏଁ ସେ ଥିଲେ ପ୍ରେସ୍‌ର ବିଭାଗରେ ମୋର ହେଡ୍ ଆସିଷ୍ଟାଣ୍ଟ ; ଓ ମୋ ଠାରୁ ୭ ବର୍ଷ ବଡ଼ ଥିବାରୁ ମୋର ଉପଦେଷ୍ଟା ମଧ୍ୟ । ପ୍ରଥମ ଦୁଇ ତିନି ଦିନ ପରେ ସେ ମୋ ଆଗରେ ଗୋଟାଏ ଅଡ଼ୁଆ କାମ ଆଣି ଥୋଇଲେ, ଯାହା ଫଳରେ ମୋର ସରକାରରେ ଟିକିଏ ପ୍ରତିପତ୍ତି ବଢ଼ିଗଲା ; ଯଦିଓ ପ୍ରଥମରେ ମୋର ହେଡ୍ ଆସିଷ୍ଟାଣ୍ଟ ଓ ଡେପୁଟି ସେକ୍ରେଟାରୀ ସନ୍ଦେହ କରିଥିଲେ ଯେ, ଏହା ଫଳରେ ମୋର ଚାକିରିର ଇତି ହୋଇପାରେ ।

ହେଡ୍ ଆସିଷ୍ଟାଣ୍ଟ ସଦାଶିବ ବାବୁ ଗୋଟିଏ ଫାଇଲ୍ ମୋ ଆଗରେ ଥୋଇ, କହିଲେ, 'ଏ ବହିଖଣ୍ଡି କିପରି ଶୀଘ୍ର ପ୍ରକାଶ ପାଇବ, ଆପଣଙ୍କୁ ତରବରରେ ନିଯୁକ୍ତ କରିବାର ଏହା ଗୋଟିଏ କାରଣ । ପି. ଓ. ହୁକୁମ କରିଛନ୍ତି ନୂଆ ଏ. ପି. ଓ. ଯୋଗ ଦେବାମାତ୍ରେ ତାଙ୍କୁ କହିବ ଏ ବହିର ପ୍ରୁଫ୍ ଦେଖିବାରେ ବିଳମ୍ବ ନ କରି ଓ ଶୀଘ୍ର କାମ ସାରିବାକୁ ପ୍ରେସ୍‌କୁ ତାଗିଦା ଦେଇ ଜାନୁୟାରୀ ମାସ ଶେଷ ପୂର୍ବରୁ ବହି ବାହାର କରିବାକୁ ଯତ୍ନ କରିବେ । ଏ ପ୍ରୁଫ୍‌ଟା ୧୦/୧୨ ଦିନ ହେଲା ପଡ଼ି ରହିଲାଣି । ଆଜି ଦେଖି ଦିଅନ୍ତୁ, ପଠାଇ ଦେବା ।'

ପୂର୍ବ ଛାପା ଫର୍ମାଗୁଡ଼ାକ, ଓ ମୂଳ ଇଂରେଜୀ ବହିଟା ମଗାଇଲି ଏବଂ ସବୁ ପଢ଼ି ସାରିଲେ ଏ ବହିର ଛାପା ହେବା ନ ହେବା ବିଷୟରେ ନିଷ୍ପତ୍ତି କରିବାକୁ ଲେଖିବି ବୋଲି କହିଲି । ଅଦା ବେପାରୀର ଜାହାଜ ଖବର ବୁଝିବା କି ଲୋଡ଼ା ବୋଲି ତାଙ୍କୁ ଲାଗିଲା । ପ୍ରୁଫ୍‌ଟା ଆଗ ପଠାଇ ଦେଇ ତା' ପରେ ଲେଖାପଢ଼ା ଯାହା କଲେ ଭଲ ହୁଅନ୍ତା ବୋଲି ପରାମର୍ଶ ଦେଇ ସେ ଅନିଚ୍ଛା ସତ୍ତ୍ୱେ ମୂଳ ଫାଇଲଟା ଆଣିଲେ । ଛଟା ବେଳେ ତାହା ନେଇ ଘରକୁ ଗଲି ଏବଂ ରାତି ୧୨ଟା ଯାଏଁ ସବୁ ପଢ଼ିଲି । ବହିଟା କଣ୍ଟା ବାଡ଼ରେ ଲୁଗା ପକାଇ କାଢ଼ି ଲଗାଇଲା ପରି ଲାଗିଲା । ୧୯୪୬ରେ ଭାରତର ବିଭିନ୍ନ ସ୍ଥାନରେ ଯେଉଁ ଗଣ୍ଡଗୋଳ

ସବୁ ହୋଇଥିଲା ତାହାର ଅତିରଞ୍ଜିତ ବର୍ଣ୍ଣନା ଦେଇ ପ୍ରମାଣ କରି ହୋଇଥାଏ ଯେ, ଏସବୁ ଧ୍ୱଂସାକାଣ୍ଡ ପାଇଁ କଂଗ୍ରେସ ଦାୟୀ । ୧୯୪୪ ବେଳକୁ କଂଗ୍ରେସ ସଙ୍ଗେ ମିଳାମିଶା କରିବାକୁ ସରକାର ଆଗ୍ରହୀ । ଏପରି ସ୍ଥଳେ ୨ ବର୍ଷର ପୁରୁଣା କଥାକୁ ପ୍ରଚାର କରିବାରେ ଲାଭ ଅପେକ୍ଷା କ୍ଷତି ବେଶୀ ବୋଲି ମୋର ମନେହେଲା । ୧୯୪୪ ବେଳକୁ କଂଗ୍ରେସ ପକ୍ଷରୁ କୌଣସି ଉତ୍ତେଜନାମୂଳକ ପ୍ରଚାର ହେଉ ନ ଥାଏ । ବରଂ କଂଗ୍ରେସ ବାଲା ଜାପାନୀ ଯୁଦ୍ଧ ସାମ୍ମୁଖ୍ୟରେ ଯୋଗ ଦେଇଥାନ୍ତି, ଏବଂ ବାକି ମାନେ ଇଂରେଜଙ୍କ ସଙ୍ଗେ ବୁଝା ସଡ଼ା ହେଲେ, ବ୍ୟବସ୍ଥା ସମ୍ବନ୍ଧରେ ପଶି କ୍ଷମତାଧୀନ ହେବାକୁ ଚାହିଁ ବସିଥାନ୍ତି । ଏତେବେଳେ ତାଙ୍କୁ ଉସ୍କାଇବା ବୁଦ୍ଧିମାନର କାର୍ଯ୍ୟ ହେବନାହିଁ ବୋଲି ମୋର ଦୃଢ଼ ମତ । ଏହା ସଂକୋଚ ନ କରି ସରକାରଙ୍କ ଆଗେ ଉପସ୍ଥାପିତ କରିବି ବୋଲି ସ୍ଥିର କଲି ।

ସେତେବେଳେ ତ ମୋତେ ଷ୍ଟେନୋଗ୍ରାଫର ମିଳିବାର ନ ଥାଏ । ରାତି ବାରଟା ପରେ ଏ ବିଷୟରେ ଗୋଟାଏ ନୋଟ୍ ଲେଖିବାକୁ ଆରମ୍ଭ କଲି । ୩ଟା ବେଳେ ସରିଲା । ମୋଟ ୯ ପୃଷ୍ଠାର ଗୋଟେ ଲମ୍ବା ନୋଟ୍ । ବଡ଼ ନୋଟ୍ ଲେଖା ସେଇ ମୋର ପ୍ରଥମ । ଶୋଇବା ପୂର୍ବରୁ ନୋଟ୍‌ଟା ପଢ଼ିଲି । ମୋତେ ଯୁକ୍ତିଯୁକ୍ତ ଲାଗିଲା । ତହିଁ ଆରଦିନ ଅଫିସରେ ଏ ନୋଟ୍ ଦେଖି ସଦାଶିବ ବାବୁ ଭାରି ଦୁଃଖିତ ହେଲେ । ତାଙ୍କର ଦୃଢ଼ ବିଶ୍ୱାସ, ଏ ନୋଟ୍ ଚିଫ୍ ସେକ୍ରେଟାରୀ ବା ଲାଟସାହେବଙ୍କ ଆଗରେ ପଡ଼ିଲେ ନିଶ୍ଚୟ ଚାକିରିରୁ ମୋତେ ବାହାର କରିଦେବେ । ମୁଁ କିନ୍ତୁ ଧରି ବସିଲି, ଯାହା ହେଉ ପଛେ, ଏ ଫାଇଲ ଉପରକୁ ପଠାହେବ ।

ଦୁର୍ଗା ଚରଣ ବାବୁଙ୍କ ଆଗରେ ଫାଇଲ ଯାଇ ପହଞ୍ଚିବାର ଅଧଘଣ୍ଟେ ଭିତରେ ମୋତେ ଡକରା ଆସିଲା । ଦୁର୍ଗା ଚରଣ ବାବୁ ମୋ ନୋଟ୍ ପଢ଼ି ମୁହେଁଇ ; ଏତେ ପାଟିରେ ମୋତେ କହିଲେ, "ତୁମ ଚାକିରୀଟା ସିନା ତୁମକୁ ଗ୍ରେଟ ଦିଶୁଛି, ମୋ ଚାକିରି ଖଣ୍ଡ ତ ମୁଁ ପୁଣି ରଖିବି । ତୁମର ନୋଟ୍ ଚିଫ୍ ସେକ୍ରେଟାରୀ ବା ଲାଟ ସାହେବ ପାଖକୁ ଗଲେ କ'ଣ ହେବ ଜାଣି ପାରୁଛ ? ଯେ ନୋଟ୍‌ଟା ନିଅ, ନଷ୍ଟ କରିଦିଅ, ଏବଂ ଲେଖ ଯେ, ମାସକ ଭିତରେ ବହି ନିଶ୍ଚୟ ବାହାର କରିଦେବ । ଏଠାପର୍ଯ୍ୟନ୍ତ ଆଣିଲି, କାମରେ ମୁକ୍ତସ୍ୱନ ହେଉ ହେଉ ସାଙ୍ଗେ ସାଙ୍ଗେ ଘର ଯୋଡ଼ିଆ କାମ !" ମୁଁ ମୋ ନୋଟ୍‌ର ଉପସଂହାରରେ ଲେଖିଥାଏ, 'ଏ ପୁସ୍ତକର ଛପା ଏଥିକରେ ବନ୍ଦ ରହୁ । ଛପା ଫର୍ମାଗୁଡ଼ାକ ଗୁଳା କାରଖାନାକୁ ପଠାଇ ଦିଆଯାଉ, ବୁଲେଟ୍ ଖୋଳ ହେବା ନିମନ୍ତେ ; ଯାହା କାଗଜ ପ୍ରେସ୍‌ରେ ବଳକା ଅଛି ତାହା ଗଭର୍ଣ୍ଣମେଣ୍ଟ ପ୍ରେସ୍‌କୁ ଫେରିଯାଉ ।' ଏତକ ଦୁର୍ଗା ଚରଣ ବାବୁଙ୍କର ସବୁଠାରୁ ବେଶୀ ବିରକ୍ତିର କାରଣ । ସେ ଏହା ପଢ଼ି ମୋତେ କହିଲେ, "କଣ, ସହକାରୀ ପ୍ରଚାର ଅଫିସର ହେଉ ହେଉ ନିଜକୁ ଲାଟ ସାହେବ ବୋଲି ମନେ କଲେଣି ? ଯାଅ ନୋଟ୍ ବଦଳାଇ କରି ଶୀଘ୍ର ଆଣ ।"

ମୁଁ ବାହାରିଗଲି ; କିନ୍ତୁ ମୋ ଅଫିସକୁ ନ ଯାଇ ସିଧା ଗଲି ଚିଫ୍ ସେକ୍ରେଟାରୀଙ୍କ ପାଖକୁ । ତାଙ୍କୁ ଅଳ୍ପ କଥାରେ ବୁଝାଇ ଦେଲି ଯେ, ୧୯୪୨ ଗଣ୍ଡଗୋଳରେ କଂଗ୍ରେସର ଦାୟିତ୍ୱ ଖୋଳିବା ବେଳ ଏବେ ନୁହେଁ । ଯୁଦ୍ଧ ଉଦ୍ୟମ ପାଇଁ ଲୋକଙ୍କ ସହଯୋଗ ଆକୃଷ୍ଟ କରିବାକୁ ଆମେ ଯାହା ପ୍ରଚାର କରିବା ତହିଁରେ କଂଗ୍ରେସ ସଙ୍ଗେ ନ ଲଢ଼ି କଂଗ୍ରେସକୁ ଆଡ଼େଇ ଦେଇ ଚାଲିବା ଉଚିତ ହେବ । ମୁଁ ଯେଉଁ ନୋଟ ଦେଉଛି ତାହା ଆପଣ ପଢ଼ିବେ ବୋଲି ମୁଁ ଆଶା କରିଥିଲି । କିନ୍ତୁ ପି. ଓ. ମୋର ସେ ନୋଟ ନଷ୍ଟ କରି ଦେବାକୁ ହୁକୁମ କରିଛନ୍ତି ।

ସେ କହିଲେ, "ଦିଅ ସେ ଫାଇଲଟା ଦେଖିବି ।"

ମୁଁ ଉତ୍ତର ଦେଲି, 'ତାହା ପି. ଓ. ଙ୍କ ଜରିଆରେ ଆସିବା କଥା ।'

ସେ ଟିକିଏ ମୁରୁକି ହସି କହିଲେ, 'ହଉ ଧନ୍ୟବାଦ ! ତୁମେ ତ ସେକ୍ରେଟାରିଏଟ୍ କାର୍ଯ୍ୟଧାରା ବେଶ ହୃଦୟଙ୍ଗମ କରିଛ !'

ଏତିକି କହି ସାରି ମୁଁ ଅଫିସକୁ ମୁହାଁଇଲି । ବିଗ୍ରୁଥାଏ ପି. ଓ.ଙ୍କ ପାଖକୁ ଏ ଫାଇଲ ପୁଣି ପଠାଇବାରେ ବିଳମ୍ବ କରିବି । ସ୍ୱଳ୍ପ ଭିତରେ ଚିଫ୍ ସେକ୍ରେଟାରୀ କଣ କରିବେ ଦେଖାଯାଉ । ମୋର ଅଫିସ ଏବକାର ସିଟି ହସ୍ପିଟାଲଠାରୁ ଖଣ୍ଡେ ଦୂରରେ ଗଙ୍ଗାମନ୍ଦିର ପାଖେ ଗୋଟିଏ କୋଠାରେ । ମୁଁ ଅଧାବାଟ ଯାଇଛି, ପି. ଓ.ଙ୍କ ଅର୍ଡ଼ର୍ଲି ଧାଇଁ ଧାଇଁ ଆସି ମୋତେ ସଲାମ କଲା ଏବଂ ପି. ଓ. ଡାକୁଛନ୍ତି ବୋଲି କହିଲା । ମୁଁ ଯାଇ ପହଞ୍ଚିବାରେ ପି. ଓ. ଖଣ୍ଡେ ସ୍ଲିପ ମୋ ହାତକୁ ବଢ଼ାଇ ଦେଲେ । ସେଥିରେ ଲେଖା ହୋଇଥାଏ, "ଏ. ପି. ଓ. ଯେଉଁ ଫାଇଲରେ '୧୯୪୨ ଆନ୍ଦୋଳନରେ କଂଗ୍ରେସର ଭାଗ' ପୁସ୍ତିକାର ଅନୁବାଦ ଛପା କାର୍ଯ୍ୟ ହେଉଛି ତାହା ପଠାଅ ।"

ମୁଁ ଏହା ପଢ଼ୁଥିବା ବେଳେ ପି. ଓ କହିଲେ, 'ତୁମେ ସେ ନୋଟ ବଦଳାଇନାହଁ ବୋଧହୁଏ । ସାହେବର କାହିଁକି ଆଜି ଏ ଫାଇଲ ମନେ ପଡ଼ିଲା କେଜାଣି ? ବୋଧହୁଏ ଚିଫ୍ ମିନିଷ୍ଟର ବା ଆମ ମିନିଷ୍ଟର ମାଗିଥିବେ । ଛପାରେ ବହୁତ ବିଳମ୍ବ ହେଉଛି ବୋଲି ବୋଧହୁଏ କୁଆଡ଼ୁ ଆପତ୍ତି ଆସିଗଲାଣି । ଦିଅ ସେ ଫାଇଲଟା ମୋତେ ।' ମୋଠାରୁ ଫାଇଲଟା ନେଇ ବଡ଼ ବଡ଼ ଅକ୍ଷରରେ ଲେଖିଦେଲେ "ଚିଫ୍ ସେକ୍ରେଟାରୀ ! ନୂଆ ଏ.ପି.ଓ.ଙ୍କ ନୋଟରେ ମୁଁ ଏକମତ ନୁହେଁ । ତାଙ୍କୁ ତାଗିଦ୍ କରି ଦେଉଛି ୮ ଦିନ ଭିତରେ ଏ ବହିର ବଣ୍ଟନ ଆରମ୍ଭ କରାଯିବ । ସେ ନୂଆ ଲୋକ ହୋଇଥିବାରୁ ସରକାରୀ କାଇଦା ବିଷୟରେ ଅନଭିଜ୍ଞ ।'

ମୁଁ ଏହା ଦେଖିଲି, ଆମ ହେଡ଼୍ ଆସିଷ୍ଟାଣ୍ଟ ବି ଦେଖିଲେ । ମୋର ନିଜସ୍ୱ ଏ ନୋଟ ପାଇଁ ଭର୍ତ୍ସନା ହେବ ବୋଲି ସେ ଦୁଃଖିତ ହେଉଥାନ୍ତି । ଯାହା ହେବ ହେଉ ବୋଲି ମୁଁ ମନକୁ ବୁଝାଉଥାଏ । ୧୫ ଦିନ ଯାଏଁ ଏ ଫାଇଲର ଅବସ୍ଥା କ'ଣ ହେଲା ଜଣା

ପଡ଼ିଲା ନାହିଁ । ହଠାତ୍ ଦିନେ ଅର୍ଡ଼ର ଆସିଲା ଆମ ପି. ଓ. କଟକର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ ହୋଇ ଗଲେ ଏବଂ ଆର୍. ଏସ୍. ଓଝା ବୋଲି ଜଣେ ଉଚ୍ଚ ପାହ୍ୟା ଆଇ.ଏ.ଏସ୍. ଅଫିସର (ବିହାରୀ) ଆସିଲେ । ସେ ଦୁର୍ଗାବାବୁଙ୍କଠାରୁ ଢେର ଅଧିକ ସାହେବ । ବୋଧହୁଏ କୁଆଡ଼ୁ ନିର୍ଦ୍ଦେଶ ପାଇଥାନ୍ତି, ମୋ ଦେହରୁ କଂଗ୍ରେସ ଗନ୍ଧ ଦୂର କରିବାକୁ । କିନ୍ତୁ ମୂଳରୁ ଜଣା ପଡ଼ିଥାଏ ଯେ, ଚିଫ୍ ସେକ୍ରେଟାରୀ ବା ଲାଟ୍ ସାହେବଙ୍କଠାରୁ ଏ ନିର୍ଦ୍ଦେଶ ଆସି ନ ଥିବ । ଦୁର୍ଗାଚରଣବାବୁ ଯିବା ପରେ ଆମ ହେଡ୍ ଆସିଷ୍ଟାଣ୍ଟ ଜଣେ ଦି'ଜଣ ଆସିଷ୍ଟାଣ୍ଟ ଓ ଚପରାସି ନେଇ ଗଲେ ନୂଆ ପି. ଓ.ଙ୍କ ଘର ସଫା କରିବାକୁ । ତାଙ୍କ ଟେବୁଲ ତିନିପଟ ହ୍ୱାଟନଟରେ ଗୁଡ଼ାଏ ଫାଇଲ; ତହିଁରୁ ଗୁଡ଼ାଏ ଉପରକୁ ଯିବାକୁ ଥାଏ ଏବଂ ଗୁଡ଼ାଏ ଉପରୁ ଆସିଥାଏ ଅଫିସକୁ ଯିବାକୁ । ହେଡ୍ ଆସିଷ୍ଟାଣ୍ଟ ଏ ଫାଇଲଟା ତା'ର ଭିତରୁ ବାହାର କଲେ । ଚିଫ୍ ସେକ୍ରେଟାରୀ ମୋ ନୋଟର ଉପସଂହାର କଡ଼ରେ ନାଲି ଚିହ୍ନ ଦେଇ ଲେଖିଥା'ନ୍ତି 'ଏକ୍ସପର୍ଟ ହେଡ୍ ।' ତା' ତଳେ ଲାଟ୍ ସାହେବ ଲେଖିଥାନ୍ତି, 'ଆମ ନୂଆ ଏ. ପି. ଓ.ଙ୍କ ନୋଟ ପଢ଼ି ବିଶେଷ ଖୁସି ହେଲି ।' ହେଡ୍ ଆସିଷ୍ଟାଣ୍ଟ ଆଚମ୍ବିତ ହେଲେ । ମୁଁ ସାହେବ-ମାନଙ୍କୁ ଆମ ଲୋକଙ୍କଠାରୁ ଢେର ବିଚାରବନ୍ତ ବୋଲି ଧାରଣା କଲି । ହେଡ୍ ଆସିଷ୍ଟାଣ୍ଟଙ୍କ ଯୋଗୁଁ ସେକ୍ରେଟାରିଏଟ୍ ମହଲରେ ମୋର ନାମ ପ୍ରଚାର ହେଲା ।

ଦୁର୍ଗାବାବୁ ଥିଲେ ମୋର ଅଭିଭାବକ । ନୂଆ ପି. ଓ. ହେଲେ ମୋର ଜେଲର୍ । ମୋର ସବୁ ନୋଟ ସେ ତନ୍ନ ତନ୍ନ କରି ପଢ଼ୁଥାନ୍ତି ଓ ସେଥିରେ ରାଜନୀତିକ ଗନ୍ଧ ପାଇଲେ ଖଣ୍ଡନ୍ତି ଓ ଲେଖି ବି ଦିଅନ୍ତି । ସ୍ୱାଙ୍କ ଯୋଗୁଁ ବଡ଼ ବ୍ୟତିବ୍ୟସ୍ତ ହେଉଥାଏ ଏବଂ ଅନେକ ଦିନ ମନ ବ୍ୟସ୍ତରେ ଘରକୁ ଫେରେ । ଘରେ ବି ଅଶାନ୍ତି । ମୁଁ ତା ପାଖେ ରହିବି ବୋଲି ମୋ ସାନଭାଇ ଆଦୌ ଚାହୁଁ ନ ଥାଏ । ବେଳେ ବେଳେ ମୋତେ ଶୁଣାଇ କହେ, ମୋ ଭାଇନାଙ୍କ ବିଷୟରେ ମୋର ଏତେ ଉଚ୍ଚ ଧାରଣା ! ସେ ଟଙ୍କା ଦୁଇଶହକୁ ମୁଣ୍ଡ ବିକି ଦେବାରୁ ମୁଁ ବନ୍ଧୁ ମହଲରେ ମୁଣ୍ଡ ଟେକି ପାରୁନାହିଁ । ଏଣେ ମୋ ସ୍ତ୍ରୀ ସଙ୍ଗେ ସବୁବେଳେ ଲଗାଇଥାଏ ଘର ଖର୍ଚ୍ଚରେ ଆମ ଅଂଶ କମ୍ ହେଉଛି ବୋଲି । ମୁଁ ମାସ ଶେଷରେ ଦରମା ଆଣି ମୋର ହାତ ଖର୍ଚ୍ଚ ପାଇଁ ସାମାନ୍ୟ ଟଙ୍କା ରଖି ସବୁ ତାକୁ ଦେଇଦେଲି । କିନ୍ତୁ ସେଇ ଟଙ୍କାରୁ ପ୍ୟାଣ୍ଟ କୋଟ ପାଇଁ ଟଙ୍କା ମାଗିବାରେ ଭାଉଜ ସଙ୍ଗେ ତାର ଲାଗିଲା କଳି । ମାସେ ଦି'ମାସ ତା ଘରେ ବହୁ ମନସ୍ତାପରେ କଟାଇ ମୁଁ ତା ଘରୁ ବିଦା ହୋଇ ସେଇ ପାଖରେ ଆଉ ଗୋଟାଏ ଘରେ ରହିଲି ।

ଓଝା ସାହେବ ମଧ୍ୟ ମାତ୍ର ଚାରିଛଅ ମାସ ମୋ ଉପରେ ପୁଲିସ ହୋଇ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ ପଦବୀକୁ ଚାଲିଗଲେ । ଗଲାବେଳେ ମୋ ଉପରେ ଚିଟ୍ ଚଳାଇ ଦେଇ ଗଲେ, 'ସେ ଜଣେ କଂଗ୍ରେସ ବାଲା ଥିଲେ ; ସେ ଗନ୍ଧ ଯିବାକୁ ସମୟ ଲାଗିବ । ସ୍ୱାଙ୍କ ଉପରେ

ତୀକ୍ଷ୍ଣ ଦୃଷ୍ଟି ରଖିବା ଦରକାର ।' ଏହା ସାଙ୍ଗକୁ ସେଇ ସମୟରେ ପଣ୍ଡିତ ନୀଳକଣ୍ଠ ଦାସ ମୋ ଉପରେ ଗୋଟାଏ ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ । ତାଙ୍କ 'ଦୈନିକ ନବଭାରତ'ରେ (ମୌଳିକ ନବଭାରତ ମୁଁ ତାଙ୍କ ସମ୍ପର୍କ ଛାଡ଼ିବା ଦିନୁଁ ପ୍ରାୟ ବନ୍ଦ ହୋଇ ଯାଇଥିଲା) ନିଜ ସମ୍ବାଦ-ଦାତାଙ୍କ ନାମରେ ଗୋଟାଏ ସଂବାଦ ବାହାରିଲା । ସେତେବେଳକୁ ଗୋଦାବରୀଶ ବାବୁଙ୍କର ତାଙ୍କର ଅପଦସ୍ଥ ହୋଇଯାଇଥାଏ, ଏବଂ ସେ ଓ ତାଙ୍କ ପୁଅଙ୍କ ଉଦ୍ୟମରେ ମୁଖ୍ୟମନ୍ତ୍ରୀ ପାରଳା ମହାରାଜାଙ୍କର ବି ଗୋଦାବରୀଶ ବାବୁଙ୍କ ସଙ୍ଗେ ବିରୋଧ ହୋଇ ଯାଇଥାଏ । ଏ ସମ୍ବାଦରେ ମୋର ଦୁଇଟି ଦୋଷ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଯାଇଥିଲା । ପ୍ରଥମରେ କୁହା ଯାଇଥିଲା ଯେ, ନୂଆ ଏ. ପି. ଓ.ଙ୍କ ଦେହରେ କଂଗ୍ରେସ ପ୍ରତି ଅନୁରକ୍ତି ମିଶି ଯାଇଛି । ସେ ସରକାର ଭିତରେ ପଞ୍ଚମ ବାହିନୀ ହୋଇ ନିଶ୍ଚୟ ରହିବେ । ଏହା ଉପରେ ମୋର କୈଫିୟତ ଦେବାକୁ ନ ଥିଲା । କିନ୍ତୁ ଦ୍ୱିତୀୟଟି ମାରାତ୍ମକ । କୁହା ହୋଇଥିଲା ଯେ, ମୁଁ ପୁରୀ ଜିଲ୍ଲା-ବୋର୍ଡର ମେମ୍ବର ଥିଲାବେଳେ ଗାଁ ଲୋକଙ୍କୁ ଧାନ କିଣି ଯୋଗାଇବା ପାଇଁ ୫ଶହ ଟଙ୍କା ଅଡ୍‌ଭାନ୍‌ସ ଆଣିଥିଲି, କିନ୍ତୁ ଏ କାର୍ଯ୍ୟ ମୁଁ କିଛି କରିନାହିଁ । ଦୁଇ ତିନି ବର୍ଷ କାଳ ଟଙ୍କାଟା ନିଜ ପାଖରେ ରଖି ଏବେ ଫେରାଇ ଦେଇଛି । ଏହା ଫଳରେ ମୁଁ କିଛିକାଳ ପାଇଁ ସରକାରୀ ଧନ ଆତ୍ମସାତ୍ କରିଛି । ଏହା ବିଧିବଳେ ତଦନ୍ତ ହୋଇ ଏ. ପି. ଓ.ଙ୍କୁ କାର୍ଯ୍ୟରୁ ବାହାର କରାଯାଉ ଓ ଯଥାବିଧି ଫୌଜଦାରୀ କାର୍ଯ୍ୟାନୁଷ୍ଠାନ ହେଉ ।

ଏ ସମ୍ବାଦର ଇଂରେଜୀ ଅନୁବାଦ ସେ ସମୟର ଗତି ଅନୁସାରେ ଚିଫ୍ ସେକ୍ରେଟାରୀଙ୍କ ଜରିଆରେ ଲାଟ ସାହେବଙ୍କ ପାଖକୁ ଗଲା । ଏହା ପଠାଇବା ବେଳେ ମୁଁ ନିବେଦନ କଲି ଯେ, 'ଏ ସମ୍ବାଦ ମିଥ୍ୟା ଏବଂ ମୋ ବିଷୟରେ ମନ୍ଦ ଧାରଣା ସୃଷ୍ଟି କରିବା ପାଇଁ କଳ୍ପିତ ।' ମୋର ଏ ନୋଟ ଲାଟ ସାହେବଙ୍କ ପାଖକୁ ପଠାଇବା ପୂର୍ବରୁ ସେକ୍ରେଟାରୀ ପୁରୀ କଲେକ୍ଟରଙ୍କ ଠାରୁ ଗୋଟାଏ ରିପୋର୍ଟ ପାଇଲେ । କଲେକ୍ଟର ନିଜେ ଆମ ଗାଁକୁ ଯାଇ ଅନୁସନ୍ଧାନ କରି ଜାଣିଥାନ୍ତି ଯେ, ମୁଁ ଏହି ୫ ଶହ ଟଙ୍କା ଯେଉଁଥିପାଇଁ ନେଇଥିଲି ସେ କାର୍ଯ୍ୟ କରିନାହିଁ । ତେଣୁ ଏହା ସାମୟିକ ସରକାରୀ ଧନ ଆତ୍ମସାତ ବୋଲି ଧରିବା ଉଚିତ । କଲେକ୍ଟର ଏ ଅନୁସନ୍ଧାନ କରି ସାରିବା ପରେ ନବଭାରତରେ ପ୍ରକାଶ ପାଇଥାଏ । ନୂଆ ପି: ଓ: ସ୍ୱାନ ସାହେବ ବର୍ଷେ ଦେଢ଼ ବର୍ଷ ପୂର୍ବରୁ ଖୋର୍ଦ୍ଧାର ଏସ୍: ଡି: ଓ: ଥିଲେ ଏବଂ ମୁଁ ମହାଜନ-ମାନଙ୍କଠାରୁ ଧାନ ଆଣି କିପରି ସେଇ ଦରରେ ଦରିଦ୍ରଙ୍କୁ ଦେଇଛି ଏ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ଥିଲା । ସେ ଚିଫ୍ ସେକ୍ରେଟାରୀ ପାଇଥିବା ରିପୋର୍ଟ ବିଷୟ ମୋତେ କହିଲା ବେଳକୁ ମୁଁ ଜାଣି ସାରିଥାଏ ଯେ, ଆମ ଗାଁର ଜଣେ ମୋ ବିରୋଧି ମହାଜନ ଓ ପଣ୍ଡିତ ନୀଳକଣ୍ଠଙ୍କ ପ୍ରେରଣାରେ ଜିଲ୍ଲା ମାଜିଷ୍ଟ୍ରେଟ ଆମ ଗାଁକୁ ଯାଇଥିଲେ ଓ ଉକ୍ତ ମହାଜନ ଯୋଗେଇଥିବା ଲୋକଙ୍କୁ ପଚରା ଉଚରା କରି ରିପୋର୍ଟ ଲେଖିଥିଲେ । ଏ କଥା ମିଷ୍ଟର ସ୍ୱାନ ସେତେବେଳର ଚିଫ୍‌ସେକ୍ରେଟାରୀ ମିଷ୍ଟର ଉଇଲିୟମସ୍‌ଙ୍କୁ କହିବାରୁ ସେ କଲେକ୍ଟରଙ୍କୁ ଲେଖିଲେ 'କଲେକ୍ଟର ଏ ବିଷୟ ନିଜେ ଏନ୍‌କ୍ୱାରୀ ନ କରି ପୁଲିସ ଜରିଆରେ କରିବା ଉଚିତ ଥିଲା ।

ସରକାର ନିକଟେ ଲୋକ ପଠାଇ ଅନୁସନ୍ଧାନ କରୁଥିଲେ।' ସି. ଓ. ବା ମୁଁ ନ ଜାଣି ଜଣେ ସ୍ପେଶାଲ ଇନସ୍‌ପେକ୍ଟରଙ୍କୁ ଗୁପ୍ତ ଭାବରେ ପଠାଗଲା ଅନୁସନ୍ଧାନ କରିବାକୁ। ପରେ ଜାଣିଲି ଯେ, ଅନାଦି ଦାସ ବୋଲି ଜଣେ ସୁଦକ୍ଷ ପୁଲିସ ଇନସ୍‌ପେକ୍ଟର। ଅନାଦିବାବୁ ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କ ତାଲିମ ଅଫିସର। ସେ ତନ୍ନ ତନ୍ନ ଅନୁସନ୍ଧାନ କରି, ମୁଁ ଯେଉଁ ଭାବରେ ଆମ ଗାଁ ଚାରିପାଖ ତଥା ଖୋର୍ଦ୍ଧାର ବନ୍ୟା ଅଞ୍ଚଳରେ ଶସ୍ତାରେ ଧାନ ଯୋଗାଇଥିଲି ସେ ବିଷୟରେ ଗୋଟିଏ ଉଜ୍ଜ୍ୱଳ ବିବରଣୀ ଦେଲେ, ଏବଂ ଲେଖିଲେ ଯେ ଏଥିଯୋଗୁଁ ମୁଁ ଖୋର୍ଦ୍ଧାରେ ଅତି ଲୋକପ୍ରିୟ।

କଲେକ୍ଟରଙ୍କ ନାମରେ ବି କାଳି ଲାଗିଲା; ଅନ୍ୟଦ୍ୱାରା ପ୍ରଭାବିତ ହୋଇ ମିଥ୍ୟା ରିପୋର୍ଟ ଲେଖିଥିବା ଯୋଗୁଁ ତାଙ୍କୁ କଲେକ୍ଟରର ଦାୟିତ୍ୱ ଆଉ ଦିଆଯିବ ନାହିଁ। ସରକାର ତାଙ୍କୁ ରେଭିନ୍ୟୁ କମିଶନରଙ୍କ ସେକ୍ରେଟାରୀ କରିଦେଲେ। ଚାକିରି ଶେଷ ହେବାକୁ ତାଙ୍କର ଆଉ ବର୍ଷେ ଦୁଇଟି ଥାଏ। ବିଚରା ଏ ଦୁଇଟି ବର୍ଷ ବଡ଼ କଷ୍ଟରେ କଟାଇଲେ। ଅତୀତରେ ସେ ସୁନାମ ଅର୍ଜି ଡେପୁଟିରୁ ଆଇ. ସି. ଏସ୍ ପାହ୍ୟାକୁ ଉଠିଥିଲେ। ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା। ପଣ୍ଡିତ ନୀଳକଣ୍ଠଙ୍କ ଜାତୀୟ ମୁକ୍ତି ସାମୁଖ୍ୟ ସଂସ୍ଥାର ସଭାପତିତ୍ୱ ବି ଗଲା। ନବଭାରତ ପାଇଁ ନେଇଥିବା କଣ୍ଟ୍ରୋଲ କାଗଜରେ କଳାପୋତେଇ କରିଥିବାରୁ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ପ୍ରସ୍ତାବ ବି ଆସିଲା।

ପଣ୍ଡିତ ନୀଳକଣ୍ଠ ପ୍ରମାଦ ଗଣିଲେ ଏବଂ ମୋ ପାଖକୁ ବାରମ୍ବାର ଲୋକ ପଠାଇଲେ, କୌଣସିମତେ ଜାତୀୟ ମୁକ୍ତି ସାମ୍ମୁଖ୍ୟର ଟାଇପରାଇଟର ଓ ପଙ୍ଖା ମାଡ଼ି ବସିଥିବାର ଅଭି-ଯୋଗ ଓ ନବଭାରତ ପାଇଁ ନେଇଥିବା କାଗଜର ଅସଦ୍‌ବ୍ୟବହାର ବିଷୟ ଥାପଡ଼ା ଥାପଡ଼ି କରି ବନ୍ଦ କରି ଦେବାକୁ। ଖାନ ସାହେବଙ୍କୁ କୁହାପୋଛା କରି ମୁଁ ନିଜେ ନୋଟ୍ ଦେଇ ଏ ଅଭିଯୋଗ ଦୁଇଟି ଫାଇଲ କରାଇ ଦେଲି। ମୋର ଏତେ ଅନିଷ୍ଟ କରିଥିବା ଲୋକପାଇଁ ମୁଁ ଲଢ଼ିବାର ଦେଖି ଲାଟ୍ ସାହେବ ପର୍ଯ୍ୟନ୍ତ ମୋର ଉପରିସ୍ଥ ଅଫିସରମାନେ ମୋ ବିଷୟରେ ଖୁବ୍ ଭଲ ଧାରଣା କଲେ। ମୋର ଅନିଷ୍ଟ କରିବାକୁ ପଣ୍ଡିତ ନୀଳକଣ୍ଠ ଓ ଶ୍ରୀ ବିଶ୍ୱେଶ୍ୱର ପଟ୍ଟନାୟକ କରିଥିବା ଯୋଜନା ପରିଣାମରେ ମୋର ଇଷ୍ଟ ସାଧନ କଲା।

ଖାନ ସାହେବ ପବ୍ଲିସିଟି ଅଫିସର ହୋଇ ରହିଲେ ପ୍ରାୟ ଛ'ମାସ। ଏହା ଭିତରେ ମୋ କାର୍ଯ୍ୟରେ ସେ ବିଶେଷ ସନ୍ତୁଷ୍ଟ ହେଲେ। ମୋ ଉଦ୍ୟମରେ ଆରମ୍ଭ ହୋଇଥିବା ଓଡ଼ିଶା ରିଭ୍ୟୁ (ଇଂରେଜୀ) ଓ ଉତ୍କଳ ପ୍ରସଙ୍ଗ (ଓଡ଼ିଆ) ପାକ୍ଷିକ ପତ୍ର ଦୁଇଟିର ସମ୍ପାଦନା ସେ ମୋ ଉପରେ ପୂରା ଛାଡ଼ି ଦେଇଥାନ୍ତି ଓ ଫାଇଲରେ ମୁଁ ଯାହା ପ୍ରସ୍ତାବ ଦିଏ ତାକୁ ଆଖିମୁଜା ସମର୍ଥନ କରୁଥାନ୍ତି। ଶେଷକୁ ସେ ଗୋଟିଏ ଫାଇଲରେ ଲେଖିଦେଲେ, ଏ. ପି. ଓ.ଙ୍କ ପରି ଜଣେ ସୁଦକ୍ଷ ପ୍ରଚାର ଅଫିସର ଥିବା ସ୍ଥଳେ ମୁଁ ଏ ଡିପାର୍ଟମେଣ୍ଟରେ ଅଦରକାରୀ ବୋଲି ମନେ କରୁଛି। ତାଙ୍କୁ ପି. ଓ. କଲେ ସେ ଉତ୍ସାହିତ ହୁଅନ୍ତେ ଓ କାମ ବି ଆହୁରି ଭଲ ହୁଅନ୍ତା।

ଏହାର ଫଳ ମୁଁ ବଡ଼ ଅସୁନ୍ଦର ଭାବରେ ପାଇଲି । ସେଇ ୧୯୪୪ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସ । ମୁଁ କେନ୍ଦ୍ରାପଡ଼ା ଅଞ୍ଚଳରେ ପ୍ରଚାର ଗସ୍ତ କରୁଥାଏ । ଗୋଟିଏ ସନ୍ଧ୍ୟାରେ ମୁଁ କେନ୍ଦ୍ରାପଡ଼ା ହାଇସ୍କୁଲରେ ବକ୍ତୃତା ଦେଉଛୁ, ସମସ୍ତ ଶିକ୍ଷକ, ଛାତ୍ର ଓ ବହୁସଂଖ୍ୟାରେ ସ୍ଥାନୀୟ ଭଦ୍ରଲୋକ ଉପସ୍ଥିତ ଥାନ୍ତି, ମୋ ବକ୍ତୃତା ପ୍ରାୟ ଅଧା ହୋଇ ଯାଇଥାଏ । ଏଇ ସମୟରେ କଟକରୁ ଆମ ଡ୍ରାଇଭର ଗୋଟାଏ ଗାଡ଼ି ଧରି ଆସି ମୋତେ ଜଣ୍ଡେ ଜରୁରୀ ଚିଠି ଦେଲା । ପି. ଓ.ଙ୍କ ଅର୍ଡ଼ର କାଲି ବିଳମ୍ବ ନ କରି ଫେରି ଆସ । ମୁଁ କୌଣସିମତେ ମୋର ବକ୍ତୃତା ସାରି କଟକ ଫେରିଲି ।

ମୁଁ ନ କହୁଲେ ବି ଡ୍ରାଇଭର ହମିଦୁଲ୍ଲା ଭାରି ଜୋର୍‌ରେ ଗାଡ଼ି ଚଳଉଥାଏ । ସେ ମୋତେ ଏତିକ ମାତ୍ର କହୁଥାଏ ଯେ, ସାଢ଼େ ଆଠଟା ପୂର୍ବରୁ ଯାଇ କୋଠିରେ ପହଞ୍ଚିବାକୁ ସାହେବ ହୁକୁମ ଦେଇଛନ୍ତି । ମୁଁ ନାନା ପ୍ରକାର ଦୁଶ୍ଚିନ୍ତାରେ ମ୍ରିୟମାଣ । ପଣ୍ଡିତ ନୀଳକଣ୍ଠ ଓ ବିଶ୍ୱେଶ୍ୱର ବାବୁ କରିଥିବା କାଣ୍ଡର ଫଇସଲା ହୋଇଥିବାର ମୋତେ ଜଣା ନ ଥାଏ । ମୋର ପ୍ରଥମ ଆଶଙ୍କା ହେଲା ବୋଧ ହୁଏ ସେଇ ବିଷୟରେ ମୋ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ କରିବାର ସିଦ୍ଧାନ୍ତ ହୋଇଛି, ସେଇ କଥା ମୋତେ କହିବାକୁ ଏପରି ଜରୁରି ଡାକରା ଆସିଛି । ଭଗବାନ ଏ ବିପଦରୁ ଉଦ୍ଧାର କରନ୍ତୁ ବୋଲି ଡାକି ଡାକି ଆସୁଥାଏ । କଟକରେ ପହଞ୍ଚିଲୁ ପ୍ରାୟ ଆଠଟା ବେଳେ । ବସାକୁ ଗଲି; ବସା ସେତେବେଳକୁ ପେଟିନ୍ ସାହିରେ । ଗୁ ଟିକିଏ ଡ୍ରାଇଭର ସାଙ୍ଗେ ଖାଇଲି । ଭାର୍ଯ୍ୟାକୁ ସାମାନ୍ୟ ସୂଚନା ଦେଲି, ହୁଏତ ଆଜିଠାରୁ ଗୃହକର ସରିଲା । ସେ ମନ ଦଇଟା ଚିନ୍ତା କରି ପାରେ ନାହିଁ; କହିଲା, "ଆଉ କଣ ପାଇଁ ଡାକିଥିବେ । ଆଗ ଯାଇ ବୁଝ । ଏତେ ଭାବନା କାହିଁକି ?" ତା' ଉପରେ ଥୋଡ଼ାଏ ବିରକ୍ତ ହୋଇ ସ୍ୱାନ ସାହେବଙ୍କ କୋଠିକୁ ଗଲି । ସେ ମାର୍ ସାହେବଙ୍କ ସଙ୍ଗେ ରହୁଥାନ୍ତି । ମାର୍ ସାହେବ ସେତେବେଳକୁ ଚିଫ୍ ସେକ୍ରେଟାରୀ । ମୁଁ ଯାଇ ପହଞ୍ଚିଲାବେଳକୁ ଦୁହେଁ ଯାକ ବୈଠକ ଖାନାରେ ବସି ମୋତେ ଅପେକ୍ଷା କରୁଥାନ୍ତି । ଠିକ୍ ସାଢ଼େ ଆଠଟା ବେଳେ ମୁଁ ବୈଠକଖାନାରେ ପଶିଲି । ମୋତେ ଦେଖି ଡ୍ରାଇଭର ଠିକ୍ ସମୟରେ ତୁମକୁ ଆଣିଛି ବୋଲି କହି ସ୍ୱାନ୍ ସାହେବ ଖୁସି ହେଲେ ଓ ତାଙ୍କ ଅଫିସ୍ ରୁମ୍‌କୁ ମୋତେ ନେଇ ନେଇ କହିଲେ, "ମୁଁ ଦୁଇମାସ ଛୁଟି ନେଇ ସିମଳା ଯାଉଛି । ଆଉ ଏ କାମକୁ ଫେରିବି ନାହିଁ ବୋଲି ଆଶା କରେ । ବୋଧ ହୁଏ ମୋତେ ସିନିଅର୍ ଆଇ. ସି. ଏସ୍. ସ୍କେଲ୍ ମିଳିବ, ମୁଁ ଲାଟ୍ ସାହେବଙ୍କ ସେକ୍ରେଟାରୀ ହେବି । ତୁମେ ପବ୍ଲିସିଟି ଅଫିସର ଭାବେ ମୋ ଠାରୁ ଚାର୍ଜ ନେବ । ତୁମ ପାଇଁ ଗୋଟେ ନୂଆ ସ୍କେଲ୍ ସ୍ଥିର ହୋଇଛି । ତୁମେ ପବ୍ଲିସିଟି ଅଫିସର ଭାବେ ୫ଶହ ଦରମା ପାଇବ, ଅଣ୍ଡର ସେକ୍ରେଟାରୀ ମଧ୍ୟ ହେବ । ମୋର ଦୃଢ଼ ଆଶା ସରକାର ତୁମକୁ ପି. ଓ. ନିଯୁକ୍ତ କରିବାଦ୍ୱାରା ଠିକ୍ କରିଛନ୍ତି ବୋଲି କାର୍ଯ୍ୟରେ ପ୍ରମାଣ କରି ପାରିବ ।" ଏ ଖବର ଶୁଣି ମୋର ମନ କ'ଣ ହେଲା ଲେଖିବା ଅଯୁକ୍ତ ମାତ୍ର; ୭ ବର୍ଷ ପରେ ଉପଯୁକ୍ତ ବିବେଚିତ ହେଲେ ୩୫୦ ଟଙ୍କାରେ ପି. ଓ. ହେବା

ନେଲ ଏଗାର ମାସରେ ସେ ସ୍ଥାନକୁ ଉଠିଲି । ଦରମା ୭ଶହ, ଅଣ୍ଡର ସେକ୍ରେଟାରୀ ଆଲାଉଏନସ୍ ୨୦୦ ଟଙ୍କା ମିଶି । ତା' ଉପରକୁ ପୁଣି ମହଙ୍ଗାଭତ୍ତା ଶହେ । ମୋର ଏ ସୌଭାଗ୍ୟ ସ୍ମାନ ସାହେବଙ୍କ ପକ୍ଷପାତିତା ଯୋଗୁଁ ହେଲା ବୋଲି ମୁଁ ତାଙ୍କୁ ଧନ୍ୟବାଦ ଦେବାବେଳେ ସେ କହିଲେ, "କୌଣସି ଜଣେ ଲୋକର ପକ୍ଷପାତିତା ବା ଅନୁଗ୍ରହରେ ଅନ୍ୟ କୌଣସି ଜଣଙ୍କର ଲାଭକ୍ଷତି ସରକାରରେ ହୁଏ ନାହିଁ । ଏହି ହେଉଛି ପାଞ୍ଚଜଣିଆ କାରଖାନା; ପାଞ୍ଚଜଣ ନ ବସୁଥିଲେ ଏଠାରେ କିଛି ହୋଇପାରେ ନାହିଁ । ତୁମେ ସମସ୍ତଙ୍କର ପ୍ରିୟପାତ୍ର ହୋଇଛ । ବିଶେଷ କରି ଲାଟ ସାହେବଙ୍କର । ଯଦି କେହି ଜଣଙ୍କଠାରେ ତୁମେ ଋଣୀ ତେବେ ସେ ହେଉଛନ୍ତି, ସାର୍ ହଥର୍ଣ୍ଣ ଲୁଇସ୍ । ସେ ମୋ ଉପସ୍ଥିତିରେ ଚିଫ୍ ସେକ୍ରେଟାରୀଙ୍କ ଆଗରେ କହିଲେ, ଏ ଅଫିସରଟି ସରକାରର ଗୋଟିଏ ସମ୍ପତ୍ତି, ଦୈବାତ୍ ମିଳିଯାଇଛି ।"

ମୁଁ ଦୈବାତ୍ ମିଳି ନ ଥିଲି । ପଣ୍ଡିତ ଗୋଦାବରୀଶ ମିଶ୍ର ମୋତେ ଟାଣି ଆଣିଥିଲେ ସରକାରକୁ । ସେ ବହୁବାର ମୋର ବନ୍ଧୁମାନଙ୍କ ଆଗରେ କହିଥିଲେ, 'ଏହି ଯଦି ଭାରତ ସରକାରଙ୍କ ଦୃଷ୍ଟିରେ ପଡ଼ିବ ତେବେ ଆଉ କେତେ ଉପରକୁ ଉଠିପାରିବ । ସ୍ୱୀୟ ନିଜ କାର୍ଯ୍ୟରେ ନିଷ୍ଠା ଓ ଆନ୍ତରିକତା ଅଛି ।' ମୋର ଏ ପଦୋନ୍ନତି ବେଳକୁ ପଣ୍ଡିତ ମିଶ୍ର ମନ୍ତ୍ରୀ ନ ଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଚେଷ୍ଟାରେ ପାରଳାଖେମୁଣ୍ଡି ମହାରାଜା ଓ ଗୋଦାବରୀଶ ବାବୁଙ୍କ ଭିତରେ ମନାନ୍ତର ହୋଇ ପାରଳାଖେମୁଣ୍ଡି ମନ୍ତ୍ରିମଣ୍ଡଳ ଭାଙ୍ଗି ଯାଇଥାଏ ଓ ଲାଟ ଶାସନ ଜାରି ହୋଇଥାଏ । ମୋ'ର ଅପ୍ରତ୍ୟାଶିତ ଉନ୍ନତିରେ ବିସ୍ମିତ ମୋର ପକ୍ଷ ଓ ବିପକ୍ଷ ଲୋକଙ୍କ ଭିତରୁ କେତେକ କହିଲେ ଯେ, ମୋର କଥା କହିବା ଢଙ୍ଗରେ ମୁଁ ସାହେବମାନଙ୍କୁ ଆପ୍ୟାୟିତ କରିବା ଯୋଗୁଁ ମୋ'ର ଏପରି ଭାଗ୍ୟୋଦୟ ହେଲା ।

ସେ ରାତିରେ ସ୍ମାନ ସାହେବଙ୍କୁ ବିଦାୟ ଦେବାକୁ ଷ୍ଟେସନକୁ ଗଲି । ସେ ଦୁଇମାସ ଛୁଟିରେ ଯାଉଥାନ୍ତି ସିମଳା । ସେଠାରୁ ଫେରିଲେ ସେ ଲାଟ ସାହେବଙ୍କ ସେକ୍ରେଟାରୀ ନିଯୁକ୍ତ ହେବେ ବୋଲି ଶୁଣିଥା'ନ୍ତି । ତାଙ୍କୁ ଏକ୍ସପ୍ରେସ୍‌ରେ ବସାଇ ମୁଁ ବସାକୁ ଫେରିଲା ବେଳକୁ ୧୦ଟା ପାର୍ ହୋଇ ଯାଇଥାଏ । ସେତେବେଳକୁ ପିଲାମାନେ ଶୋଇ ପଡ଼ିଥାନ୍ତି ଓ ସେମାନଙ୍କ ମା' ମୋତେ ଚାହିଁ ବସିଥାଏ । ମୁଁ କେନ୍ଦ୍ରାପଡ଼ାରୁ ଆସି ଯେଉଁ ୧୦/୧୫ ମିନିଟ୍ ଘରେ ଥିଲି ସେଥିରେ ମୋର ଭାବ ଭଙ୍ଗୀ ଦେଖି ସେ ଭାରି ଭୟ କରିଥାଏ ଯେ ଆଜି ହୁଏତ ମୋତେ ଚାକିରିରୁ ଯିବାକୁ ହେବ । ମୁଁ ସାହେବ କୋଠିରୁ ଫେରି ବିଷାଦର ଅଭିନୟ କଲି ପ୍ରାୟ ପାଞ୍ଚମିନିଟ୍ କିନ୍ତୁ ଏହା ବେଶୀ ବେଳ ରଖି ପାରିଲି ନାହିଁ । ସବୁ କଥା ତାକୁ କହିଲି । ମୋତେ ଏଥର ଆଠଶହ ଟଙ୍କା ଲେଖାଏଁ ମାସିକ ମିଳିବ ବୋଲି ଶୁଣି ସେ ସାଦୌ ଉତ୍‌ଫୁଲ୍ଲ ନ ହୋଇ କହିଲା, "ଦୁଇଶହ ପାଇଲେ ଯାହା, ଦୁଇହଜାର ପାଇଲେ ସେଇଆ, ତୁମର ଅଭାବ ଦୂର ହେବ ନାହିଁ । ଆଜି ଯେମିତି ହାଇଁ ହାଇଁ, ଜୀବନ

ଯାକ ସେହିପରି ହାଇଁ ହାଇଁ । ତୁମର ସବୁବେଳେ 'ବେନ ଆଙ୍କ୍ଲ' କଥଣ ।" ସେତେବେଳେ ଏହା ଶୁଣି ବଗିଡ଼ି ଥିଲି କିନ୍ତୁ କ୍ରମେ ପ୍ରମାଣିତ ହୋଇଗଲା ଯେ ସେ ଖାଣ୍ଟି କଥା କହୁଥିଲା ।

ଟଙ୍କା ହାତକୁ ଆସିବାର ବହୁ ପୂର୍ବରୁ, ତହିଁ ଆର ଦିନଠାରୁ ଆମର ଖର୍ଚ୍ଚ ବଢ଼ିଗଲା । ତହିଁ ଆର ଦିନ ୧୫ଶହ ଟଙ୍କାରେ ଗୋଟେ ପୁରୁଣା ମରସ୍ ଗାଡ଼ି କିଣା ହୋଇଗଲା ଟଙ୍କା ଆସିଲା ଆମ ଖୋର୍ଦ୍ଧାର ଜଣେ ଅବସରପ୍ରାପ୍ତ ଅଫିସର ଜଗନ୍ନାଥ ପଟ୍ଟନାୟକଙ୍କଠାରୁ । ସେ ବ ପେନ୍‌ସନ୍ ସାହିରେ ଥାନ୍ତି । ତାଙ୍କୁ ପାଞ୍ଚ ମାସରେ ଟଙ୍କା ଶୁଝିବାକୁ କହୁଥାଏ । ମୋ ଜୀବନରେ କରଜକୁ କେବେ ଖାତିର କରିନାହିଁ । କରଜ ଯେତେ ଯେତେ ବଢ଼େ ତାକୁ ପରିଶୋଧ କରିବାର ଉପାୟ ତହୁଁ ତହୁଁ ଅଧିକ ହଣେ । ମୁଁ ଚାକିରିକୁ ଆସିଥିଲି କରଜରୁ ମୁକ୍ତ ହେବାକୁ କିନ୍ତୁ ଏଥି ଆରମ୍ଭ କରିଜର ଦ୍ୱିତୀୟ ଓ ବଡ଼ ଅଧ୍ୟାୟ । ୧୯୫୫ରେ ଚାକିରି ଛାଡ଼ିଲା ବେଳକୁ ଚାକିରି ପୂର୍ବର ସବୁ କରଜ ସିନା ଶୁଝା ହୋଇଥାଏ, ଚାକିରି ବେଳର କରଜ ତହିଁର ଦୁଇଗୁଣରୁ ବେଶୀ, ପ୍ରାୟ ୬ ହଜାର ଟଙ୍କା ହୋଇ ଯାଇଥାଏ । ଆଜି ତ ମନେ ହେଉଛି ମୋ ମଲାବେଳକୁ କରଜ ସ୍ୱାର ତିନି ଗୁଣବୃଣ ହୋଇ ଯାଇଥିବ, ପିଲାଙ୍କ ମୁଣ୍ଡରେ ବୋଝ । ମୁଁ ମୋ ନନାଙ୍କ କରଜ ଯେପରି ଶୁଝିଥିଲି ସେ ସେହିପରି ଶୁଝିବେ ବୋଲି ମନେ ହେଉଛି । ସେତେବେଳେ ମୋ ଉପରେ ଥିଲା ୨୫ଶହ, ମୋ ମଲାବେଳକୁ ୨୫ ହଜାର ଥିଲେ ତ ବେଶୀ ହେଲା ବୋଲି କହିହେବ ନାହିଁ । ମୋ ପିଲା ଦିନର ଟଙ୍କାଏ ମଲାବେଳକୁ ଦଶଟଙ୍କାରୁ ବେଶୀ ହୋଇଥିବ । ପୁଣି ମୋ ନନା ମଲାବେଳକୁ ତାଙ୍କର ବଡ଼ ପୁଅ ମୋର ବୟସ ଥିଲା ଚଉଦ । ମୁଁ ଆଜି ମଲେ ବ ମୋ ସାନ ପୁଅର ବୟସ ଚବିଶି ।

ମଟର ଚଳାଇବା ଲଢ ମଧ୍ୟରେ ହୋଇ ଯାଇଥାଏ । ମୋର ଗୋଟାଏ ଚପରାସୀକୁ ଘରେ ଖାଇବାକୁ ଦେଇ ରଖିଲି । ଦିନଯାକ ସରକାରୀ କାମ କରେ, ଦିନରେ ବା ଦୁଇ ଦିନରେ ଥରେ ମଟରଟାରେ ପାଣି ମୁହଁଏ ପକାଇଦିଏ । ତାକୁ ବାଗିଆ ବାଗି କରି କର୍ମକୁଶଳ କଲା ବେଳକୁ, ତାଙ୍କ ଚପରାସୀ ସଂଘ ପକ୍ଷରୁ ମୋ ପାଖକୁ ଖଣ୍ଡେ ଚିଠି ଆସିଲା, ସରକାରୀ ଚପରାସୀକୁ ଘରୋଇ କାର୍ଯ୍ୟରେ ଲଗାଉଛ ବୋଲି । ବୁଝ୍ ବୁଝ୍ ଆମ ଗୁଣମଣି ଦରଖାସ୍ତରେ ଦସ୍ତଖତ କରିଥିଲେ । ସାଙ୍ଗେ ସାଙ୍ଗେ ତାକୁ ବିଦାୟ କରି ତାଙ୍କ ସଭାପତିଙ୍କୁ ଚିଠି ଖଣ୍ଡେ ଦେଇଦେଲେ ଚଳିବ ବୋଲି ଭାବିଲା ବେଳକୁ ଆମ ଘରୁ ଅପରତି ପରାମର୍ଶ ଆସିଲା, ସଙ୍ଘର ସଭାପତିଙ୍କୁ ଡାକି ବଚରାର ଅବସ୍ଥା ବୁଝାଇ ଦେଲେ ସେ ବୁଝିବେ । ସଂପୃକ୍ତ ଚପରାସୀଟି ଛ' ମାସିଆ ନିଯୁକ୍ତ ପାଇଥିଲା ; କାଳ ପୂରିବାକୁ ଆଉ ଦେଢ଼ମାସ, ତା'ପରେ ଆମ ଘରେ ପୁଞ୍ଜେ ପୁଞ୍ଜେ ଖାଇଲେ ଚାକିରି ଖୋଜିବାକୁ କୁଆଡ଼େ ବୁଲିବ । ଖାଇବା ପୁଞ୍ଜାକ ଉଠିଗଲେ ବଚରା ଚଳିବ କେମିତି ? ସଭାପତି ନିମନ୍ତ୍ରଣ ରକ୍ଷାକରି ଆସିଲେ । ତାଙ୍କ ସଂଘର ସ୍ୱାର୍ଥରକ୍ଷା କରିବା ପାଇଁ ଗୁଡ଼ାଏ ଯୁକ୍ତି କଲେ, ଶେଷରେ ରାଜି ହୋଇ ଗଲେ ଯେ ଚପରାସୀ ଆମ ଘରେ ଖାଇବାରେ ଆପତ୍ତି ନାହିଁ, କିନ୍ତୁ ମଟର ଧୋଇବ ନାହିଁ । ମୁଁ ରାଜି ହେଲି, ସେଇ ଚପରାସୀକୁ ମାସକୁ ୧୦ ଟଙ୍କା ଧରେଇ ଦେଲି । ସେ ପେନ୍‌ସନ୍ ସାହିର ଗୋଟିଏ ମୂଲିଆ

ହାତନରେ ମଟରେ ଧୂଆଇଲା ନଜ ସୁପରଭଜନରେ । 'ସୁପରଭଜନ'ର ଅର୍ଥ ସେ କାଳର ଅଫିସରମାନେ ବୁଝିଥିଲେ । ଏବର ଅଫିସରମାନେ ବୁଝିଛନ୍ତି କ ନାହିଁ ଜାଣେ ନାହିଁ । ଠାଏ ଦୁ'ଠା ଦେଖିଛି ଏବର ଚପରାସୀମାନେ ଘରର ଗୃହକର ପଣ କାମ କରୁଛନ୍ତି । ଆମେ ସ୍ୱାଧୀନତା ପାଇବାର ଦୁ' ତନ ବର୍ଷ ଭତରେ ଅଫିସରଙ୍କୁ କ୍ଷମତା ମିଳଗଲା, ଖାଇବାକୁ ଦେଇ ବା ନ ଦେଇ ଚପରାସୀଙ୍କୁ ଘରେ ଗୃହକର ପର ଖଟାଇବା ।

ପବ୍ଲିସିଟି ଅଫିସର ଭାବରେ ମୋର ନାମ ଅତ ଶୀଘ୍ର ପ୍ରଚ୍ୟରତ ହୋଇଗଲା, ଏବଂ ସମ୍ମାନ ବ ବଢ଼ଲା । ସେତେବେଳକୁ ଓଡ଼ିଶା ଗଭେଟ (ଇଂ) ଓ ଉତ୍କଳ ପ୍ରସଙ୍ଗ ସମଗ୍ର ରାଜ୍ୟରେ ଚଳୁଥାଏ । ଗଭର୍ଣ୍ଣମେଣ୍ଟ ପ୍ରେସ ଏତେ ସଂଖ୍ୟାରେ ଉତ୍କଳ ପ୍ରସଙ୍ଗ ଛପାଇ ପାରବ ନାହିଁ ବୋଲ ରାଷ୍ଟ୍ରଭାଷା ପ୍ରେସ୍‌ରେ ତାହା ଛପାହେଲା ; ଓଡ଼ିଶା ଗଭେଟ କନ୍ତୁ ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ ଛପା ହେବ ବୋଲ ସରକାରୀ ଆଦେଶ ହେଲା । ପ୍ରଥମେ ପ୍ରଥମେ ଓଡ଼ିଶା ଗଭେଟ ପାଇଁ ସବୁତକ ପାଣ୍ଡୁଲିପି ଟାଇପ୍ କର ଚଫ୍ ସେକ୍ରେଟାରୀଙ୍କୁ ଦେଉଥିଲି । ସେ ୩/୪ ଥରର ପାଣ୍ଡୁଲିପି ସଂଶୋଧନ କଲାପରେ ମୋତେ କହିଲେ, "ତୁମ ଇଂରାଜୀରେ ତ ଭୁଲ ନାହିଁ । ମୋର ସମସ୍ତ କାହିଁକ ନଷ୍ଟ କରୁଛ ।" ସେ ମାର୍ ସାହେବ (Maher) । ଶ୍ରେକ୍‌ଠୋକ୍ କଥା ତାଙ୍କୁ ସୁଖ ଲଗେ । ମୁଁ ଜବାବ୍ ଦେଲି, "ସେ କୌଣସି ମତେ ଆପଣଙ୍କୁ ତ ସୁଧାକୁ ପଢ଼ିବାରେ ସମସ୍ତ ନଷ୍ଟ କରବାକୁ ହେବ ଇ ହେବ ଚଫ୍ ସେକ୍ରେଟାରୀ ଓ ଆମ ଡିପାର୍ଟ-ମେଣ୍ଟର ସେକ୍ରେଟାରୀ ଭାବରେ । ଖାଲ ଟାଇପ୍‌ରେ ପଡ଼ିବେ ନା ଛପାରେ ପଡ଼ିବେ ସେତକ ପ୍ରଶ୍ନ । ଆପଣଙ୍କ ଆଖି ଆଗରୁ ପଡ଼ିଲେ ବିଷୟବସ୍ତୁ ଓ ଭାଷା ବିଷୟରେ ମୁଁ ନିଶ୍ଚିନ୍ତ ହେବ ।" ସେ ହସି ହସି କହିଲେ, "ଭାରତୀୟ ଇଂରେଜି ତୁଳନାରେ ତୁମର ଇଂରେଜି ଖୁବ୍ ଭଲ (According of Indian standards you write very good English). ମୁଁ ଉତ୍ତର ଦେଲି, "ଭାରତୀୟଙ୍କ ଇଂରେଜି ସାହେବଙ୍କ ଇଂରେଜିର ସମକକ୍ଷ ହୋଇ ନ ପାରେ । ଏହାର ଜ୍ଞାନ ଓ ପ୍ରୟୋଗ ବ୍ୟାକରଣକୁ ଧର ହୋଇ ନାହିଁ । ଚେଣ୍ଣ କଣ ଚଳୁଛି ତାହା ଇଂରେଜି ଲେଖକ ଜାଣିବା ଦରକାର । ତାହା ଜଣେ ଇଂରେଜଠାରୁ ଭାରତୀୟ କପର ଜାଣିବ ? ଆପଣ ମୋ ପାଣ୍ଡୁଲିପିରେ ଯେଉଁ ଚ୍ୟର ପାଞ୍ଚ ଜାଗା ପ୍ରିପୋଜିଶନ୍ (Preposition) ବଦଳାଇ ଦେଇଥିଲେ, ସେଥିପାଇଁ ମୁଁ କୃତଜ୍ଞ ।"

ସେ ଯେଉଁ ଚ୍ୟର ପାଞ୍ଚ ମାସ ରହିଲେ ତା ଭିତରେ ମୁଁ ଶିକ୍ଷିତ ଇଂରେଜର ଢଙ୍ଗ ରଙ୍ଗ ଓ ମନୋବୃତ୍ତି ବିଷୟରେ ବହୁତ କିଛି ଜାଣି ପାରଥିଲି । ଅବଶ୍ୟ ଥରେ ଏଇ ମାର୍ ସାହେବ ମୋତେ ସତର୍କ କରାଇ ଦେଇଥିଲେ, "ଭାରତୀୟ ସିଭିଲିଆନଙ୍କୁ ଦେଖି, ସବୁ ଇଂରେଜ ଏଇ ପର ବୋଲି ବିଶ୍ୱାସ କରବ ନାହିଁ । ଭାରତକୁ ଆସିବା ପୂର୍ବରୁ ଆମକୁ ଯେଉଁ

ତାଲିମ୍ ଦିଆଯାଏ, ସେଥିରେ କେମିତି ଚାଲିବୁ, କେମିତି କହିବୁ ଏ ବିଷୟରେ ଖୁବ ସତର୍କ କରାଯାଏ । ସେଇ ଅନୁସାରେ ଚାଲୁ ଚାଲୁ, ସେପରି ଚାଲିବା ପ୍ରକୃତିଗତ ହୋଇଯାଏ । ଅବସର ପରେ ଭାରତୀୟ ସିଭିଲିଆନ୍ ଦେଶକୁ ଫେରିଲେ ନୂଆ ବନ୍ଧୁ କରିବାରେ ଅସୁବିଧା ଭୋଗ କରନ୍ତି ।'' ସ୍ୱାଙ୍କ ବିଷୟରେ ଓ ମୋ ପରିଚିତ ସିଭିଲିଆନ୍‌ଙ୍କ ଭିତରୁ ଆଉ ତିନି ଚାରି ଜଣଙ୍କ ବିଷୟରେ ମୁଁ ଏ କଟକଣାକୁ ବଡ଼ ବୋଲି ଦେଖିନାହିଁ । ବିଶେଷ କରି ଆର୍. ଏ. ଇ. ୱିଲିୟମସ୍ ତ କହିଲା ବେଳେ କିଛି ଲୁଚେଇ ଛପେଇ ରଖିବା ଅସମ୍ଭବ । ତାଙ୍କର ମୁଁ ଏକ ରକମ ସଙ୍ଗୀ ହୋଇଗଲି । ସେ ଫଟୋ ଉଠାଇବାରେ ଧୁରୀଣ । ମୋର ସେଥିରେ କିଛିଏ ପ୍ରବେଶ ଥାଏ । ଗୋଟିଏ ଭଲ କ୍ୟାମେରା ମୋ ପାଖରେ ଥାଏ । ପ୍ରାୟ ପ୍ରତି ରବିବାର ଦିନ ଆମେ ଦୁହେଁ ତାଙ୍କ ଗାଡ଼ିରେ ସକାଳ ଆଠଟା ବେଳୁ କୋଣାର୍କ ଯାଉଁ ; ସେଠାରେ ମଧ୍ୟାହ୍ନ ଭୋଜନ କରି ଚାରିଟା ପାଞ୍ଚଟା ବେଳକୁ ଫେରିଆସୁ । ଥରେ ଭୁବନେଶ୍ୱର ମହାପ୍ରସାଦକୁ ତାଙ୍କୁ ନିମନ୍ତ୍ରଣ କରିଥିଲି । ତାଙ୍କ ସଙ୍ଗେ ଯେଉଁତକ ସମୟ କଟେ ସେଥିରେ ଟୁର୍‌ର ବାହାରେ ମୋ କାର୍ଯ୍ୟ ବିଷୟରେ ବହୁତ କଥା ପଡ଼େ । ରାତିରେ ମଧ୍ୟ ଦିନେ ଦିନେ ତାଙ୍କ ଘରେ ଖାଇବାକୁ ଡାକନ୍ତି ।

ମୁଁ ପ୍ରାୟ ୧୦।୧୨ ଜଣ ସାହେବଙ୍କ ସଙ୍ଗେ ରାତ୍ରି ଭୋଜନ କରିଛି ଓ ତାହାର ଅଭିଜ୍ଞତାରେ ଆମ ତୁଳନାରେ ସେମାନେ କିଛି ଖା'ନ୍ତି ନାହିଁ ବୋଲି ଧାରଣା କରିଛି । ଯୋଡ଼ାଏ ତିନୋଟି କୁକୁଡ଼ା ଡିମ୍ବ ଭଜା କମ୍ବା ସିଝା, ଦି'ଖଣ୍ଡ ଖଣ୍ଡି ପାଉଁରୁଟି ସ୍ଲାଇସ୍ ଏବଂ ଗୋଟିଏ ପ୍ଲେଟ ମାଂସରେ ତାଙ୍କର ଭୂରି ଭୋଜନ । ମୁଁ ଅନେକ ସମୟରେ ସାହେବଙ୍କ ଘରୁ ଫେରି ମୋ ଘରେ କିଛି ପୁଞ୍ଜିଏ ଖାଏ ।''

## ସେ ବେଳର ସରକାରୀ କାର୍ଯ୍ୟଧାରା ଓ ଚଳଣି :

ସାହେବଙ୍କର କର୍ମ ନିଷ୍ଠା ବିଷୟରେ ମଧ୍ୟ ମୁଁ ସେମାନଙ୍କଠାରୁ କିଛି ପ୍ରମାଣ ପାଇଛି । ଥରେ ଏଇ ୱିଲିୟମ ସାହେବଙ୍କୁ ମୋ କାମ ବିଷୟରେ ଗୋଟିଏ ପ୍ରତିକୂଳ ମନ୍ତବ୍ୟ ଦେଇଥିବା କଥା ମୁଁ ତାଙ୍କ ଘରେ କହିଲି । ସେ କହିଲେ, "ଅଫିସ ଜିନିଷ ଘରକୁ କାହିଁକି ଆଣୁଛ ?" ମୁଁ କହିଲି, "ଅଫିସରେ ତ ମୋର ଅଫିସ କାମ ସରେ ନାହିଁ । ମୁଁ ରାତିରେ ଓ ସକାଳେ ମଧ୍ୟ ତାକୁ ଖୋଜିବୁଏ ।" ସେ କହିଲେ "ତାହା ଠିକ୍ ନୁହେଁ । "ସେ ଘରକୁ ଫାଇଲ ପତ୍ର ନିଅନ୍ତି ନାହିଁ । ଚାରିଟା ପାଞ୍ଚଟାକୁ ଟେବୁଲ ସଫା ନ ହେଲେ ସେ ଆଉ ଘଣ୍ଟେ ବସନ୍ତି । ତଥାପି ନ ସରିଲେ ତହିଁ ଆରଦିନ ସାଢ଼େ ନଅଟା ପୂର୍ବରୁ ଅଫିସକୁ ଚାଲି ଆସନ୍ତି । ମାତ୍ରୁଦ ସାହେବଙ୍କ ପରି ସ୍ୱେ ବିଚକ୍ଷଣ ନୁହନ୍ତି କିନ୍ତୁ ଖୁବ ବୋଧା । କୌଣସି କଥା ନ ବୁଝିପାରିଲେ ଡାକି ବୁଝନ୍ତି ବା ଫାଇଲରେ ପ୍ରଶ୍ନ ପଚାରି ତାହା ଫେରାଇ ଦିଅନ୍ତି । ସ୍ୱାଙ୍କର ଗୋଟିଏ ବଡ଼ ଗୁଣ ଦେଖିଛି, ଯାହା ନଜରରେ ପଡ଼ିଥାଏ ତାହା ସ୍ୱାଙ୍କର ଆଦୌ ପାସୋର ଯାଏ ନାହିଁ । ସରକାରଙ୍କୁ କୁହା ପୋଗୁ କରି ମୁଁ ୩୪ ସେଟ୍ ମାଇକ୍ରୋଫୋନ ରଖିଥାଏ । ଥରେ କୋରାପୁଟ ଜିଲ୍ଲାରେ ଆମର ମାଇକ୍ରୋ-

ଫୋନ ନାହିଁ ବୋଲି ଲେଖି ଦେଇଥିଲି । ତା ପୂର୍ବରୁ ଥରେ ଲେଖା ଥିଲା ସେଠାରେ ୪ ସେଟ୍ ଅଛି । ସେ ସାଙ୍ଗେ ସାଙ୍ଗେ ମୋତେ ପଶ୍ନ ପଠାଇଲେ, ଚାରି ସେଟ୍ ତ ଥିଲା, କାହିଁକି ନାହିଁ ? ମୁଁ ଖୋଜା ଖୋଜି କରି ବାହାର କଲି ୩ଟି ସେଟ୍ ବେମରାମତି ଆଉ ଗୋଟିଏ ଜିଲ୍ଲା ପ୍ରଚାର ଅଫିସରଙ୍କ ସଙ୍ଗେ ଉଡ଼ିସ୍ମା ଯାଇଛି ଫେରି ନାହିଁ । ତାଙ୍କ ମନକୁ ପାଇଲା ନାହିଁ । ସେ ଲେଖିଲେ, ନିତାନ୍ତ ପ୍ରୟୋଜନ ପାଇଁ ଗୋଟିଏ ସେଟ୍ ହେଡ୍ କ୍ୱାଟରରେ ସବୁବେଳେ ଥିବା ଦରକାର । ମରାମତି ନିମନ୍ତେ ଦୋକାନରେ କେତେ ଦିନ ପଡ଼େ ତାହା ମଧ୍ୟ ସେ ଅନୁଧ୍ୟାନ କରି ବୁଝିଲେ ।

ଦୁଇ ତିନି ମାସ ପରେ, ଶୀତ ଋତୁ ନ ଥାଏ, କଲି ପଡ଼ୁଥାରେ ଗୋଟାଏ ପ୍ରଦର୍ଶନୀର ଆୟୋଜନ କଲି । ସବୁ ବିଭାଗର ପୂର୍ଣ୍ଣ ସହଯୋଗ ମିଳିଲା । ଭାରି ଶିକ୍ଷଣୀୟ ଅନୁଷ୍ଠାନଟିଏ ବୋଲି ସମସ୍ତେ ସ୍ୱୀକାର କଲେ । ଗଭର୍ଣ୍ଣର ସାହେବ ତାଙ୍କ ବକ୍ତୃତାରେ କହିଲେ ଯେ, ଏହିପରି ପ୍ରଦର୍ଶନୀ ପ୍ରଚାର ବିଭାଗର ଗୋଟିଏ ପ୍ରଧାନ ଅଙ୍ଗ ହେଲେ ଲୋକଙ୍କର ପ୍ରଭୂତ ମଙ୍ଗଳ ହେବ, ଏବଂ ସରକାରଙ୍କର ଲୋକଙ୍କ ସହିତ ସମ୍ପର୍କ ଘନିଷ୍ଠ ହେବ । ସବୁ ଅଫିସରେ ମୋର ମୁହଁ ଦେଖାଯିବାରେ ମୋର ଆତ୍ମବିଶ୍ୱାସ ବି ବଢ଼ିଲି ।

ମୋ ପ୍ରତି ସାର୍ ହଥର୍ଣ୍ଣ ଲୁଇସଙ୍କ ପକ୍ଷପାତିତା ମୋତେ ବି ବିସ୍ମିତ କଲା । ମୁଁ ଯାହା ଲେଖିଲି, ଯାହା ମତ ଦେଲି, ସେଥିରେ ସେ ରାଜି ହୋଇଯିବାରେ ମୋତେ ତ ଭାରି ବଡ଼ ଲାଗେ ; ତହିଁ ସଙ୍ଗେ ସଙ୍ଗେ ଲାଗେ, ଏତେ ବଡ଼ ବିଚକ୍ଷଣ ସିଭିଲିଆନଙ୍କ ଦୃଷ୍ଟିକୋଣ ମୋ ଦୃଷ୍ଟିକୋଣ ସଙ୍ଗେ ସମାନ ହେଉଛି କିପରି ? ଏଇ ସମୟରେ ମୋର ଗୋଟାଏ ପ୍ରସ୍ତାବକୁ ସେ ଯେପରି ଗ୍ରହଣ କଲେ ତାହା ଦେଖି ଆମ ଡିପାର୍ଟମେଣ୍ଟର ସମସ୍ତେ ଓ ଅନ୍ୟ ଡିପାର୍ଟମେଣ୍ଟର ଯେ ଶୁଣିଲେ ସେ ତାଜୁବ୍ ହେଲେ । ଆମ ଡିପାର୍ଟମେଣ୍ଟର ଜଣେ ଜିଲ୍ଲା ପ୍ରଚାର ଅଫିସର ଖଣ୍ଡେ ପ୍ରଶ୍ନୋତ୍ତରୀ ଶତକ ଲେଖିଥିଲେ । ଏଥିରେ ମହାତ୍ମା ଗାନ୍ଧୀଙ୍କର ପ୍ରତ୍ୟେକ କାର୍ଯ୍ୟକୁ ବଡ଼ ନିଷ୍ଠୁର ଭାବରେ ସମାଲୋଚନା କରାଯାଇଥିଲା । ପ୍ରତିପାଦିତ ହୋଇଥିଲା ଯେ ମହାତ୍ମାଜୀଙ୍କଦ୍ୱାରା ଭାରତର ବହୁତ କ୍ଷତି ହୋଇଛି ଓ ଆହୁରି ହେବ । ଏ ଲେଖାଟା ଭାରତ ସରକାରଙ୍କ ପାଖକୁ ପଠା ହୋଇଥିଲା ।

ସେ ଏହାକୁ ଭାରି ପସନ୍ଦ କରିଥିଲେ ଏବଂ ପ୍ରତି ରାଜ୍ୟର ପ୍ରଚାର ବିଭାଗ ଜରିଆରେ ଏହାକୁ ସବୁଆଡ଼େ ଛପାଇ ଦେବାକୁ ସ୍ଥିର କରି ଆମ ରାଜ୍ୟକୁ ପଠାଇଥିଲେ ୫ ହଜାର ବାଣ୍ଟିବା ସକାଶେ । ଲେଖକଙ୍କୁ ମଧ୍ୟ କିଛି ପାରିଶ୍ରମିକ ଦିଆ ହୋଇଥିଲା । କେଉଁ ଜିଲ୍ଲାକୁ କେତେ ପଠା ହେବ ତହିଁର ତାଲିକା ଦେଇ ମୋ ପାଖକୁ ଫାଇଲ ଆସିଲା । ମୁଁ ପବ୍ଲିଶିଟି ଅଫିସର ଚାର୍ଜ ନେବାର ଅଳ୍ପ ଦିନ ଭିତରେ ଏ ପୁସ୍ତକର ଅସ୍ତିତ୍ୱ ବିଷୟ ଜାଣିଲି । ବଣ୍ଟନ ତାଲିକା

ମଞ୍ଜୁର ନ କରି ମୁଁ ଫାଇଲଟି ଘରକୁ ନେଲି ଓ ଏ ପୁସ୍ତକ ଉପରେ ଗୋଟିଏ ଲମ୍ବା ନୋଟ ଚିଫ୍ ସେକ୍ରେଟାରୀଙ୍କ ପାଖକୁ ପଠାଇଲି । ମୋ ନୋଟର ମର୍ମ ଥିଲା, ଯୁଦ୍ଧ ଶେଷ ହେବା ଉପରେ, ଯୁଦ୍ଧ ସରିବା ମାତ୍ରେ ଭାରତ ସରକାର ମହାତ୍ମା ଗାନ୍ଧୀ ଓ ତାଙ୍କ ଅନୁଚରଙ୍କ ସଙ୍ଗେ ସାଲିସ ସମାଧାନ କରି ଭାରତ ଶାସନରେ ଭାରତୀୟଙ୍କୁ ଅଧିକ କ୍ଷମତା ଦେବାକୁ ନିଶ୍ଚୟ ମସୁଧା କରିବେ । ଗାନ୍ଧୀଙ୍କୁ ବନ୍ଧୁ କରି ପାଇବାକୁ ଆମେ ଇଚ୍ଛା କରିବା । ଏପରି ନିଷ୍ଠୁର ଓ ଏକଦେଶ-ଦର୍ଶୀ ସମାଲୋଚନାଦ୍ୱାରା ବନ୍ଧୁତା ବଢ଼େ ନାହିଁ, ବରଂ ବୈରିତ୍ୱ ପୁଷ୍ଟ ହୁଏ । ଦ୍ୱିତୀୟତଃ, ଭଲରେ ହେଉ ବା ମନ୍ଦରେ ହେଉ ଭାରତର ଜନସାଧାରଣ ଗାନ୍ଧୀଙ୍କୁ ଦେବତା ବୋଲି ପୂଜା କରନ୍ତି । ଆମ ପ୍ରଚାର ବିଭାଗର କାମ ହେଲା, ଲୋକଙ୍କୁ ସରକାର ପ୍ରତି ଆକୃଷ୍ଟ କରିବା । ଅଶିକ୍ଷିତ ଜନସାଧାରଣ ଗାନ୍ଧୀଙ୍କ ସମାଲୋଚନା ଶୁଣି ତାଙ୍କ ବିରୁଦ୍ଧରେ ଯିବା ପରିବର୍ତ୍ତେ ଆମର ବିରୋଧୀ ହେବେ ; ମୁଖରେ କିଛି ନ କହିଲେ ବି ମନ ଆମ ପ୍ରତି ବିମୁଖ ହୋଇଯିବ । ଏ ପୁସ୍ତିକା ଯେତେବେଳେ ଲେଖା ହୋଇଥିଲା, ସେତେବେଳେ ହୁଏତ ଏହାର ଉପଯୋଗିତା ଥିଲା । ବର୍ତ୍ତମାନ ଏହାର ଆଦୌ ଉପଯୋଗିତା ନାହିଁ ବୋଲି ମୋର ମନେ ହେଉଛି । ତେଣୁ ମୋର ପ୍ରସ୍ତାବ ଏହାର ବଣ୍ଟନ ବନ୍ଦ କରାଯାଉ ।

ସେତେବେଳେ ଉଇଲିୟମ୍ସ ସାହେବ ଚିଫ୍ ସେକ୍ରେଟାରୀ ; ନୂଆ ହୋଇ ବାହାରରୁ ଆସିଥାନ୍ତି । ସେ ନିଜର କିଛି ମତ ନ ଦେଇ ଲାଟ ସାହେବଙ୍କ ପାଖକୁ ଫାଇଲ ପଠାଇ ଲେଖିଦେଲେ, "ମାନ୍ୟବର ଲାଟ ସାହେବ ପି. ଓ.ଙ୍କ ଏ ନୋଟ ଦେଖିବାକୁ ଇଚ୍ଛାକରନ୍ତି ।" ତହିଁଆରଦିନ ଫାଇଲ ଫେରି ଆସିଲା । ଲାଟ ସାହେବ ତାଙ୍କ ନିଜ ହାତରେ ଲେଖି ଦେଇ ଥା'ନ୍ତି, "ବୋଧହୁଏ ଏ ନୋଟରେ ଯାହା ଲେଖା ହୋଇଛି ତାହା ଠିକ୍ । ଅର୍ଡ଼ର ହେଲା ସେକ୍ରେଟାରିଏଟ୍ର ପ୍ରତି ବିଭାଗରେ ପଡ଼ିଲା ।

ଏହାର ଅଳ୍ପ ଦିନ ପରେ ମୋ ଟେବୁଲକୁ ହୋମ ଡିପାର୍ଟମେଣ୍ଟର ସ୍ପେଶାଲ ସେକ୍ସନରୁ ଖଣ୍ଡେ କାଗଜ ଆସିଲା ଆମ ମତ ପାଇଁ ନୁହେଁ, ଅବଗତି ପାଇଁ । ଓଡ଼ିଶାର ଗୋଟିଏ ଖ୍ୟାତ କାଗଜ ଉପରେ ଦୁଇହଜାର ଟଙ୍କା ଅମାନତ ଦାଖଲ କରିବାକୁ ନିଷ୍ପତ୍ତି । ଏଥିରେ ଦସ୍ତଖତ କରି ଏହାକୁ ଫାଇଲ କରି ଦେବାର କଥା । ସରକାରୀ ଦପ୍ତରରେ ଲାଟ ସାହେବଙ୍କ ଅନୁଗ୍ରହରେ ମୋତେ ଯେଉଁ ସ୍ୱାଧୀନତା ମିଳିଥାଏ, ତହିଁ ଯୋଗୁଁ ମୁଁ ଏହା ଉପରେ ବି ଚାଟ୍ର ଚଳାଇଲି । ମୁଁ ଲେଖିଲି, 'ସଂପୃକ୍ତ କାଗଜଟି ସ୍ୱଚ୍ଛଳ । ଏ ଟଙ୍କା ଦାବୀ କରିବା ଫଳରେ ତାହା ବନ୍ଦ ହୋଇଯିବ ନାହିଁ ; ଭିତରେ ଭିତରେ ଆହୁରି ଉଗ୍ର ହୋଇଯିବ । ମାନ୍ୟବର ଲାଟ ସାହେବ ଯଦି ସଂପୃକ୍ତ କାଗଜର ସମ୍ପାଦକ ଓ ପରିଚାଳକଙ୍କୁ ଚା ଖାଇବାକୁ ଡାକି ଟିକିଏ ଚେତାବନୀ ଦେଇ ଦିଅନ୍ତି ତେବେ ଅମାନତ ମାଗିବା ଅପେକ୍ଷା ତେର ଅଧିକ ଫଳ ହେବ ବୋଲି ମନେ ହୁଏ ।' ଏ ନୋଟ ପଢ଼ି ଆମ ହେଡ଼ ଆସିଷ୍ଟାଣ୍ଟ ତ ସ୍ତମ୍ଭିତ ହୋଇଗଲେ ; ଅଫିସରେ ମୋ ପ୍ରତି-ବେଶୀ ଜଣେ ସେକ୍ରେଟାରୀ ମୋ ପ୍ରତି ପ୍ରୀତି ସଦାଶୟରେ କହିଲେ, "ଅଦା ବେପାରୀଙ୍କୁ ଜାହାଜ ଖବର ଲୋଡ଼ା ପଡ଼ିଛି କାହିଁକି ? ଏହି ବି ସେକ୍ରେଟାରିଏଟ୍ କାର୍ଯ୍ୟ ପଦ୍ଧତିର ଆନୁକୂଲ୍ୟ ନୁହେଁ ।

ଆମ ଜାଣିବା ସକାଶେ ଯେଉଁ ନଷ୍ଟଭିର ନକଲ ଆମ ପାଖକୁ ଆସୁଛୁ ତା ଉପରେ ଆମର ଚଷ୍ଟ ଚଳାଇବା ବାଧ୍ୟ ନୁହେଁ । ଏ ସବୁ କାର୍ଯ୍ୟରେ ମୁଣ୍ଡ ପୂରାଇ ପ୍ରସ୍ତର ବଢ଼ାଗ ଅନଧିକାର ଚର୍ଚ୍ଚା କରୁଛୁ ।’’

ସେତେବେଳେ ମୋର ଯେଉଁ ମେଜାଜ ସେଥିରେ ଏ ସତର୍କବାଣୀ ମୋ କାନରେ ନ ପଶିବାର କଥା । ନୋଟଟା ଚଫ୍ ସେକ୍ରେଟାରୀଙ୍କ ପାଖକୁ ଚାଲିଗଲା । ଦୁଇ ତନ ଦିନ ପରେ ଚିଫ୍ ସେକ୍ରେଟାରୀ ମୋତେ ରାତ୍ରୀ ଭୋଜନକୁ ଡାକିଲେ । ମୁଁ ଆଜି ମଣବାର ପୂର୍ବ ମୁହୂର୍ତ୍ତରେ ରାତରେ ଯେତକ ଖାଉଛି ସାହେବମାନେ ମଧ୍ୟବୟସରେ ବ ରାତରେ ସେତକ ଖାଆନ୍ତି । ଭଦ୍ରତାକୁ ଜଳାଞ୍ଜଳି ଦେଇ ମାଗି ମାଗି ପେଟ ପୂରାଇବାକୁ ଚେଷ୍ଟା କଲେ ବ ଫଳ ହୁଏନାହିଁ । ଘରକୁ ଫେର ଆଉ ଟିକଏ କ’ଣ ନ ଖାଇଲେ ନିଦ ହୁଏ ନାହିଁ । ଏହିପର ଦୁଇ ଚାରଥର ହୋଇଯିବା ପରେ, ମୁଁ ସାହେବଙ୍କ ସଙ୍ଗେ ରାତ୍ରୀ ଭୋଜନକୁ ଗଲେ ମୋ ଶୋଇବା ଘରର ତ୍ରେଷ୍ଟିଆ ଟେବୁଲରେ କିଛି ଖାଦ୍ୟ ସାମଗ୍ରୀ ରଖା ହେବାର ବାଧ୍ୟ ପ୍ରବର୍ତ୍ତିଲା ।

ସେ ଦିନ ଖାଇବା ଭିତରେ ଚଫ୍ ସେକ୍ରେଟାରୀ ସେଇ ଫାଇଲ କଥା ଉଠାଇଲେ । ବହୁତ ଆଲୋଚନା ହେଲା । ତାଙ୍କୁ ମଙ୍ଗାଇଲି ଯେ, ଖବର କାଗଜ ପାଖକୁ ଆମେ ନୋଟିସ ଦେଇ ତାଙ୍କ ଅମାନତ ଜମା ଦେବାର ହୁଏତ ୧୦।୧୫ ଦିନ ଭିତରେ ଯୁକ୍ତ ସଙ୍ଗତ । ତା’ପରେ ଆମେ ଆମ ଆଡ଼ୁ ଅମାନତ ଫେରାଇବା ।

ସେଇଦିନ ନେପୋଲିଅନ୍‌ଙ୍କର ଗୋଟାଏ ଉକ୍ତି ଉପରେ ନଜର ପଡ଼ିଥାଏ । ସେ କହିଥିଲେ, ‘ତନିଖଣ୍ଡ ଖବର କାଗଜକୁ ମୁଁ ଯେତେ ଡରେ, ଲକ୍ଷେ ସଙ୍ଗୀନ ମୁନକୁ ସେତେ ଡରେ ନାହିଁ ।’ ଏ କଥା ଚଫ୍ ସେକ୍ରେଟାରୀଙ୍କୁ କହିଲି । ସେ ଉପସଂହାର କଲେ, ‘ମୁଁ ଏ ଫାଇଲ ଉପରେ କ’ଣ କରିବ ବିଚାରୁଛି ।’

୮।୧୦ ଦିନ ଯାଏଁ କିଛି ଶୁଣିଲି ନାହିଁ । ହଠାତ୍ ଦିନେ ଗୋଟାଏ ଚା ପାର୍ଟିକୁ ନିମନ୍ତ୍ରଣ ଲାଟ ସାହେବଙ୍କ ଘରୁ ଆସିଲା । ଏଭଳି ନିମନ୍ତ୍ରଣ ଆସିଲେ ମୁଁ ସାଙ୍ଗେ ସାଙ୍ଗେ ପାଇଖାନାକୁ ଯାଏଁ । ଲାଟ ସାହେବ କ’ଣ ସବୁ ପଚାରବେ ତା’ର ଜବାବ ମୁଁ ଦେଇ ପାରବ କି ନାହିଁ ଚିନ୍ତା କରୁ କରୁ ପେଟ ବିଗିଡ଼ିଯାଏ । ଆମର କେତେଟା ବ୍ୟାଟେରୀ, କେତେ ଲାଉଡ଼ସ୍ପିକର, ମାଇକୋଫୋନ ଅଛି ତାହିଁର ହିସାବ ତୁଣ୍ଡେ ତୁଣ୍ଡେ ଦେବାଠାରୁ ଏ ମାସରେ କୁଆଡ଼େ ଗସ୍ତରେ ଯାଇଥିଲି, କ’ଣ ବକ୍ତୃତା ଦେଲି ଏସବୁ ମନେ ପକାଇ ପକେଟ ବହିର ପୃଷ୍ଠା ଲେଉଟାଇ ପ୍ରସ୍ତୁତ ହେବାକୁ ପଡ଼େ । ତାଙ୍କ ଚା ଟେବୁଲରୁ ଉଠି ମଟର ଷ୍ଟାର୍ଟ କଲା ପର୍ଯ୍ୟନ୍ତ ମନ ସ୍ୱାଭାବିକ ସ୍ୱଚ୍ଛନ୍ଦତାକୁ ଫେରେ ନାହିଁ ।

ସେଦିନ ଚା ସମୟର ୧୦ ମିନିଟ ପୂର୍ବରୁ ଗଲି ସ୍ୱାନ ସାହେବଙ୍କ ସଙ୍ଗେ ଟିକଏ ଖୁସି ଗପ କରିବାକୁ । ମୁଁ ଗଲାବେଳକୁ ସେଇ ଖବର କାଗଜର ସମ୍ପାଦକ ଓ ପରଚାଳକ ସ୍ୱାନ ସାହେବଙ୍କ ବରଣ୍ଡାରେ ଲଙ୍ଗପଙ୍ଗ ହେଉଛନ୍ତି ଚାହାଲି ଦୁଆର ମୁହଁରେ ପିଲେ ହେଲାପର ।

ଭିତରରେ ଯାଇ ସ୍ୱାନ ସାହେବଙ୍କୁ କହି ଦୁଇଟା ଚଉକି ସେମାନଙ୍କୁ ଯୋଗାଇଦେଲି । ଆଗନ୍ତୁକ ଦୁହେଁ ମୋର ଗୁରୁଜନ । ବଡ଼ଙ୍କଠାରୁ ଶୁଣିଲି ଲାଟ ସାହେବ ଟି ଖାଇବାକୁ ଡକାଇଛନ୍ତି । ଟି’ ନିମନ୍ତ୍ରଣ ପାଇଲେ ମୁଁ ଯେପରି ହୁଏ ସେପରି ନ ହୋଇ ସେମାନେ ଖାଲି ବାଉଳା ହେଉଛନ୍ତି ବୋଲି ଜାଣିଲି । ସାନ ଜଣକ ପଚାରିଲେ, ‘ତୁମକୁ କି’ଣ ନିମନ୍ତ୍ରଣ ହୋଇଛି ?’ ମୁଁ ଉତ୍ତର ଦେବା ପୂର୍ବରୁ ଚିଫ୍ ସେକ୍ରେଟାରୀଙ୍କ ଗାଡ଼ି ଆସି ଲାଗିଗଲା । ସେ ଖବର କାଗଜ ବାଲା ଦୁଇ ଜଣଙ୍କ ସଙ୍ଗେ ପୁରୁଣା ବନ୍ଧୁ ପରି ଆଳାପ କରି ସେ ଦିନର ଯୁଦ୍ଧ ଖବର ଗପିବାରେ ଲାଗିଲେ ଏବଂ ଗପି ଗପି ତାଙ୍କୁ ନେଇ ଟି’ ଟେବୁଲ କଡ଼ରେ ବସାଇଲେ । ପଛରେ ମୁଁ ଓ ସ୍ୱାନ ସାହେବ (ଲାଟଙ୍କ ସେକ୍ରେଟାରୀ) ଗଲୁଁ । ପ୍ରାୟ ମିନିଟିଏ ଖଣ୍ଡେ ପରେ ଭିତର ଦୁଆର ଫିଟିଲା ଓ ଲାଟ ସାହେବ ସମସ୍ତଙ୍କ ସଙ୍ଗେ ସମ୍ଭାଷଣ କରି ଆସନ ଗ୍ରହଣ କଲେ । ସାମନାରେ ଆସି ଟି’ ଥୁଆ ହେଲା । ସେଇ ଗତାନୁଗତିକ ଟି’ । ଏ ବିଷୟରେ ମୁଁ ସେକାଳେ ରସୁଲି କରେ; ମୁଁ କହେ ଲାଟ ସାହେବ ନିଯୁକ୍ତ ହେବାଦିନ ଦି’ ଚାରି ହଣ୍ଡା ଟି’ ପାଣି ଫୁଟେଇ ଦିଅନ୍ତି, ଓ ଗୋଟାଏ କେଟ (କାଠବାକ୍ସ) ସ୍ୟାଣ୍ଡଉଇଚ ଓ ୨ କେଟ ବିସ୍କୁଟ କଲିକତାଠାରୁ ମାଗରେ ଆଣନ୍ତି । ପ୍ରତି ଟି’ ପାର୍ଟିରେ କେଟ୍‌ଲି ଲେଖାଏଁ ଟି ପାଣି ଗରମ ହୁଏ ଓ କେଟରୁ କିଛି ଖାଦ୍ୟ ସାମଗ୍ରୀ ବାହାରେ । ଏହିପରି ହେଉ ହେଉ ହଣ୍ଡା ଖାଲି ହେଲେ ଓ କେଟ୍‌ଗୁଡ଼ାକ ଫୋପଡ଼ା ହେଲେ ଲାଟ ସାହେବଙ୍କ ବଦଳି ହୋଇ ଅନ୍ୟ ଆଡ଼େ ଯା’ନ୍ତି ବା ଏକାଥରକେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରନ୍ତି ।

ଥରେ ଏହିପରି ଗୋଟିଏ ଟି’ ପାର୍ଟିରେ ଲାଟ ସାହେବ, କଥା ପ୍ରସଙ୍ଗରେ ତାଙ୍କ ଟି ଓ ସ୍ୟାଣ୍ଡଉଇଚ ବିଷୟରେ କି’ଣ ପଦେ କହିବାରେ ମାରଉଡ଼ ସାହେବ କହିଲେ, “ଆପଣଙ୍କ ପ୍ରଚାର ବିଭାଗ ଏହାର ତାରିଫ କରିବାରେ ହେଳା କରି ନାହାନ୍ତି ।”

ଲାଟ୍ ସାହେବ ହସି ହସି କହିଲେ “ମୁଁ ଜାଣେ । ତୁମେ ସେ ଡିପାର୍ଟମେଣ୍ଟର ଆଡ୍‌ଭାଇଜର ଭାବରେ ଯେତିକ ଜାଣ, ମୁଁ ଗଭର୍ଣ୍ଣର ଭାବରେ ଅନ୍ତତଃ ସେତିକ ଜାଣିଥିବି ବୋଲି ତୁମେ ଧରିନେବା ଉଚିତ । ଏତିକି କହି ସେ ଉଇଲିୟମସ୍‌ଙ୍କୁ କହିଲେ, “ତୁମେ ତ ଆମ ପ୍ରଚାର ଅଫିସରଙ୍କର ପ୍ରିୟ ବନ୍ଧୁ, ଆମ ଟି’ ପ୍ରଶସ୍ତି ଶୁଣିଥିବ ।” ମୁଁ ତୁନି ହୋଇ ବସିଥାଏ । ଗପିବାରେ ମୋର ଉଚ୍ଛୃଙ୍ଖଳତା ଯୋଗୁଁ ମନରେ ଦୁଃଖ ବି ହେଉଥାଏ । ଉଇଲିୟମସ୍ ସାହେବ ସ୍ୱାଙ୍କ ଗୋଷ୍ଠୀରେ ନୂଆ । ସେ ଟିକିଏ ବିବ୍ରତ ହୋଇ କୈଫିୟତ ଦେଲାପରି କହିଲେ, “ସେ ଖୁବ୍ ଭଲ ଫଟୋ ଉଠାନ୍ତି ।” ଦ୍ୱିତୀୟ ଆଡ଼ଭାଇଜର୍ ଗୋଖଲେ ସାହେବ କହିଲେ, “ତେବେ ତାଙ୍କୁ ଷ୍ଟାଫ୍ ଫଟୋଗ୍ରାଫର୍ କରିଦିଅ ।” ମୁଁ କହିଲି, “ଉଇଲିୟମସ୍ ସାହେବ ମୋ ଅପେକ୍ଷା ଢେର ଉଚ୍ଚଦରର ଫଟୋଗ୍ରାଫର୍ ।” ଲାଟ୍ ସାହେବ ଖୁବ୍ ହସି ହସି କହିଲେ, “ଧନ୍ୟବାଦ ! ଫଟୋଗ୍ରାଫର୍ ଗ୍ରହକଣରୁ ଉଦ୍ଧାର ପାଇବାକୁ ଖୁବ୍ ଉପାୟଟାଏ କଲ । ତୁମ ପ୍ରସ୍ତାବ ଅନୁସାରେ ଉଇଲିୟମସ୍ ଫଟୋଗ୍ରାଫର୍ ନିଯୁକ୍ତ ହେବା ଉଚିତ ।” କେମ୍ପ ସାହେବ କହିଦେଲେ, “ସରକାରୀ ଗ୍ରହକଣରେ ସର୍ବୋତ୍ତମ ଲୋକ ନିଯୁକ୍ତ ହେବ

କଦାଚିତ ହୁଏ ।'' ହସରେ ଲଟ୍ ସାହେବଙ୍କ ଗ୍ଯ' ବିଷୟରେ ମୋର ଚୁଗୁଲି ପାସୋର ହୋଇଗଲା । ଏ ବିଷୟ ଆମେ ଗ୍ଯରିଜଣଙ୍କ ଭିତରେ ସୀମିତ ହୋଇ ରହିଲୁ—ମୁଁ, ସ୍ୱାନ୍ ସାହେବ, ମାର୍ଉଡ୍ ଓ ଲଟ୍ ନିଜେ । ଏହାର ପ୍ରଗ୍ଯରକ ଥିଲେ ସ୍ୱାନ୍ । ମୁଁ ଦିନେ ଲଟ୍ ସାହେବଙ୍କ ଗ୍ଯ' ପାଣି ବିଷୟରେ ସ୍ୱାନ ସାହେବଙ୍କ ଆଗେ ଗପିଥିଲି । ସେ ଉପରକୁ କଥା ଉଠାଇ ଦେଇଥିଲେ । ଗପିବାରେ ସେ ମୋ' ଠାରୁ କୌଣସି ପ୍ରକାରେ କମ୍ ନୁହନ୍ତି ।

ଏ କଥାରେ ପ୍ରକୃତ ବିଷୟଟା ପଛରେ ପଡ଼ିଯାଉଛି । ଖବର କାଗଜ ବାଲା ଦୁଇଜଣଙ୍କ ସଙ୍ଗେ ଟିକିଏ ସୁଖାଳାପ କରି ସାର୍ ହ୍ୱାର୍ଥ୍ ଯୁଦ୍ଧ ପରିସ୍ଥିତି ବିଷୟରେ ଅନର୍ଗଳ କହିବାକୁ ଲଗିଲେ, ମୋ ଠାରୁ ଢେର ସୁନ୍ଦର ସ୍ୱରରେ ଓ ଉଡ଼୍ଞ୍ଚି ଢଙ୍ଗରେ । ସେ ଭବିଷ୍ୟତ ବାଣୀ ଶୁଣାଇଲେ ଯେ, ହିରୋସୀମା ଉପରେ ବୋମା ପଡ଼ିବା ଦିନ ମୁକ୍ତି କାର୍ଯ୍ୟତଃ ସରିଛି । ସପ୍ତାହକ ଭିତରେ ଯୁଦ୍ଧ ବିରତି ଘୋଷିତ ହୋଇପାରେ । ସେତେବେଳକୁ ପ୍ରାୟ ୭ଟା ହୋଇ ଯାଇଥାଏ । ନିଜ ସେକ୍ରେଟାରୀଙ୍କଠାରୁ ସଙ୍କେତ ପାଇ ଲଟ୍ ସାହେବ ଉଠି ପଡ଼ିଲେ ; କହିଲେ "ଆଜି ବହୁତ ସମୟ ବସିଗଲେ, ଏଥର ଏ ଆସର ଭଙ୍ଗ ।" ନ' ଜଣରୁ ଗ୍ଯରିଜଣ କମିଟି ବିଦା ହୋଇଗଲେ କେଜାଣି ? ଆମେ ଥାଉ ଖବର କାଗଜ ବାଲା ଦୁଇଜଣ, ଚିଫ୍ ସେକ୍ରେଟାରୀ ଓ ମୁଁ । ଲଟ୍ ସାହେବ ସମ୍ପାଦକଙ୍କ ପାଖକୁ ଗ୍ଯଲିଆସି ନମ୍ର ସ୍ୱରରେ କହିଲେ, "ଆପଣଙ୍କୁ ପଦେ କହିବାର ଥିଲା । ଆପଣଙ୍କ କାଗଜରେ ପ୍ରକାଶିତ ଗୋଟିଏ ବିଷୟ ମୋର ଦୃଷ୍ଟିକୁ ଆସିଛି । କିନ୍ତୁ ଯୁଦ୍ଧର ଶେଷ ମୁହୂର୍ତ୍ତରେ ମୁଁ ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ କରିବାକୁ ଗ୍ଯହେଁ ନାହିଁ । ମୁକ୍ତି ସରିବା ମାତ୍ରେ, ଆପଣମାନେ ଓ ଆମେ ଭାରତର ଅଚଳ ଅବସ୍ଥା ସୁଧାରିବାରେ ଲଗିବା । ପରସ୍ପରକୁ କାଟିବା ଭଳିଆ କିଛି ଏ ବେଳେ ହେବା ଉଚିତ ନୁହେଁ ।" ନମ୍ର ସ୍ୱରରେ ଏ କଥା କୁହା ହୋଇଥିଲେ ହେଁ ସମସ୍ତଙ୍କୁ ଶୁଭୁଥାଏ । ଲଟ୍ ସାହେବ ଟିକିଏ ବଡ଼ ପାଟିଆ, ସମ୍ପାଦକ ମୁଣ୍ଡ ଟୁଙ୍ଗାରୁଥାନ୍ତି, ଏବଂ ପରିଗ୍ଯଳକ ଗଡ଼ଜାତ ରାଜାଙ୍କ ଗୋଡ଼ାଣିଆ ପରି ହେଉଥାନ୍ତି । ଲଟ୍ ସାହେବ ଘର ଭିତରକୁ ଗଲେ । ଚିଫ୍ ସେକ୍ରେଟାରୀ ସମ୍ପାଦକଙ୍କୁ, ଗାଡ଼ି ଆଣିଛନ୍ତି କି ନାହିଁ ପଗ୍ଯରିଲେ, ଓ ନାହିଁ ଶୁଣି ମୋତେ କହିଲେ, ଅତିଥି ଦୁହିଙ୍କୁ ତାଙ୍କ ଘରେ ଛାଡ଼ି ଆସିବାକୁ । ବାଟରେ ପରିଗ୍ଯଳକ ମହାଶୟ ମୋତେ କାଉଲି ବାଉଲି କରି ପକାଇଲେ ଘୁଡ଼େଇ ତୁଡ଼େଇ ପ୍ରଶ୍ନ ପଗ୍ଯରି । ଆମର କୋଉ ଲେଖାଟା ଉପରେ ଆପତ୍ତି ହୋଇଛି ? କାହିଁକି ? ତୁମେ ଏ କଥା ଉଠାଇଥିଲ ନା ଆଉ କିଏ ? ମୋର ସହସ୍ରେ ହାଣ୍ଡିକୁ ଏକ ଠେଙ୍ଗା—ସ୍ୱେ ଉପର ମହଲର କଥା, ମୁଁ ନ ଆଜିଯାଏ ଏ ବିଷୟ ଆଜି ଶୁଣିଲି । କିଛି ସମୟ ପରେ ତାଙ୍କ ମୁଣ୍ଡରେ ଗୋଟାଏ ପ୍ରଶ୍ନ ଉଠିଲା । ସେ ପଗ୍ଯରିଲେ "ତେବେ ତୁମକୁ ଆଜି କାହିଁକି ଡାକିଥିଲେ ?" ମୁଁ ଦଣ୍ଡେ ଇତସ୍ତତଃ ହୋଇ ଉତ୍ତର ଦେଲି, "ବୋଧ ହୁଏ ଆପଣମାନଙ୍କ ସଙ୍ଗେ କପରି ଚଳିବାକୁ ହେବ, ତାଲିମ କରିବାକୁ ।" ଉତ୍ତରଟା ଠିକ ଲଖରେ ବାଜିଲା । ଲଟ ସାହେବଙ୍କ ଉପାୟ ମଧ୍ୟ । 'ଆମ କାଗଜରେ ଆଉ କିଛି ଆପତ୍ତି ଜନକ ବାହାରିଛି କି' ବୋଲି ସେ (ପରିଗ୍ଯଳକ) ୧୫ ଦିନରେ

୫୨୭ ଅର ଟେଲିଫୋନ କଲେ । ଗୃ' ପାର୍ଟିର ପରଦିନ ନିଜ ସମ୍ବାଦଦାତାଙ୍କଠାରୁ ବୋଲି ଲେଖି ଲିଟ ସାହେବଙ୍କ ଗୃ ଭୋଜ ବିଷୟରେ ଯେଉଁ ଦୀର୍ଘ ପ୍ରବନ୍ଧ ଲେଖିଥିଲେ ସେଥିପାଇଁ ତାଙ୍କୁ 'ରାଏ ବାହାଦୁର' ପଦବୀ ମିଳିଥାନ୍ତା । ହଠାତ୍ ମତ ବଦଳାଇବା ବିଷୟରେ ଯେ ଆମ ରାଜ୍ୟରେ ପ୍ରଥମ ପୁରସ୍କାର ପାଇବାର କଥା ।

ଅଳ୍ପ କିଛି ଦିନ ପରେ ମୋତେ ଗୋଟାଏ ଗୃ' ନିମନ୍ତ୍ରଣ ଆସିଲା । ଯାଇ ଦେଖେ ତ ଅତିଥି ମୁଁ ଏକୁଟିଆ, ସେକ୍ରେଟାରୀ ମାତ୍ର ସାଥିରେ ଥିଲେ । ଦେଖା ହେବା ମାତ୍ରେ ମୋତେ ସାର୍ ହିଥର୍ଣ୍ଣ ହସି ହସି କହିଲେ, 'ଆମ ଗୃ ହାଣ୍ଡି ସବୁ ପ୍ରାୟ ଖାଲି । ଆଉ ୫ ଦିନରେ ଆମେ ଏଠାରୁ ବିଦାହେବୁଁ । ଏଥର ଆସିବେ ତୁମ ନିଜ ଲୋକ ।' ମୁଁ ଶଙ୍ଖ ସେକ୍ରେଟାରୀଙ୍କ ଠାରୁ ଶୁଣିଥାଏ, ସ୍ୱାଙ୍କ ସ୍ଥାନରେ ଆସିବେ ସାର୍ ଚନ୍ଦୂଲାଲ ତ୍ରିବେଦୀ । ମୁଁ ଉତ୍ତର ଦେଲି, "ଆପଣଙ୍କଠାରୁ ମୋର ନିଜର ଲୋକ ଜୀବନରେ ଆଜିଯାଏଁ ପାଇନାହିଁ; ଭବିଷ୍ୟତରେ ପାଇବା ବିଷୟରେ ବି ସନ୍ଦେହ ।" ଏ କଥା ମୁଁ ଖୁସାମଦ କରି କହିନଥିଲି । ଭବିଷ୍ୟତ ବିଷୟରେ ଯାହା କହିଲି ତାହା ସତ୍ୟ ହେଲା ନାହିଁ, କିନ୍ତୁ ଅତୀତ ବିଷୟରେ ଯାହା କହିଥିଲି ତାହା ନିରାଟ ସତ ବୋଲି ଆଜି ପର୍ଯ୍ୟନ୍ତ ମନେ କରୁଛି । ସେ କେତେ ଉଚ୍ଚରେ, ମୁଁ ତାଙ୍କ ତୁଳନାରେ ଖୁବ ଶ୍ରେଷ୍ଠ; କିନ୍ତୁ ତାଙ୍କ ଉପସ୍ଥିତିରେ ମୁଁ ନିଜର ନ୍ୟୁନତା ଭୁଲି ତାଙ୍କ ସାଙ୍ଗେ କଥା ବାର୍ତ୍ତା ହୁଏ । ଏ ଅଧିକାର, ତାଙ୍କ ଉଦାରତାରେ ସେ ମୋତେ ଦେଇଥାନ୍ତି । ଏହା ଫଳରେ ଥରେ ଦୁଇଥର ମୁଁ ସୀମା ଡେଇଁଛି ବୋଲି ମନେ ପଡ଼ୁଛି; କିନ୍ତୁ ସେଥିପାଇଁ ମୁଁ କୌଣସି ପରାଭବ ପାଇବା ପରିବର୍ତ୍ତେ ପ୍ରଶଂସା ପାଇଛି ।

**ଏବକୁ ଅସମ୍ଭବ :**

ତୁଙ୍ଗମା ଯୋଜନାର ଉପକ୍ରମଣିକା ବେଳ; ସାର ହିଥର୍ଣ୍ଣ ଯାଇଥାନ୍ତି ସେ ସ୍ଥାନ ଦେଖିବାକୁ, ମୁଁ ଯାଇଥାଏ ତାଙ୍କର ସମ୍ବର୍ଦ୍ଧନା ପାଇଁ ଆଦିବାସୀଙ୍କୁ ଏକଜୁଟ କରିବାକୁ । ସନ୍ଧ୍ୟାବେଳେ ସେଠାରେ ପହଞ୍ଚିଲୁ । ଲିଟ ସାହେବଙ୍କ ପାଇଁ ତମ୍ବୁ ହେରିକା ହୋଇ ସାରିଥାଏ । କୋରାପୁଟର ପ୍ରଚାର ଅଫିସର, ମୁଁ ଗଲାବେଳକୁ, ଲିଟ୍ ସାହେବଙ୍କ ତମ୍ବୁ ଦୁଇଟା ଛିନଟା ଠିଆ କରିସାରି ଖଣ୍ଡେ ଦୂରରେ ମୋ ପାଇଁ ଗୋଟାଏ ତମ୍ବୁ ତେରୁଥାନ୍ତି । ଆମର ତମ୍ବୁ ହୋଇ ତା' ଭିତରକୁ ଆମେ ଗଲାବେଳକୁ ପ୍ରାୟ ରାତି ୧୦ଟା । ମୁଁ ଯାଇ ଲିଟ୍ ସାହେବଙ୍କ ସଙ୍ଗେ ରାତି ଭୋଜନ ଖାଇ ଫେରିଲା ବେଳକୁ ସ୍ୱାନ୍ ସାହେବ ବଡ଼ ବ୍ୟତିବ୍ୟସ୍ତ ହୋଇ କହିଲେ, "ଆମେ ଗୁଣ୍ଡ ଦୁଧ ଡବା ଗୁଡ଼ି ଆସିଛୁ । ଗୋଟିଏ ଡବାରେ ଟିକିଏ ଅଳ୍ପ ଥିଲା ଯେ ଏ ଓଳି ସରିଗଲା । କାଲି ସକାଳେ ଗୃ ପାଇଁ କିଛି ନାହିଁ । ମୁଁ କିଛି ଉପାୟ ଦେଖୁନାହିଁ । ତୁମେ କାଲି ସକାଳେ ନିକୁଛି ପକ୍ଷେ ପାଉଣ୍ଡେ ଦୁଧ ଯୋଗାଇବ ।" ମୁଁ ହଁ କରି ଚାଲି ଆସିଲି । ମୋର ବଳ କଳା ପ୍ରଚାର ଅଫିସରଙ୍କ ଠାରେ । ମୁଁ ବିଶ୍ୱାସ ଆସିଲି ଯେ ତାଙ୍କୁ ତାଙ୍କ ଭ୍ୟାନ୍‌ରେ ଜୟପୁର ପଠାଇ ଗୁଣ୍ଡ ଦୁଧ ମଗାଇ ଆଣିବ । ସେ କହିଲେ, "ମୁଁ ଜୟପୁର ଯିବାକୁ ପ୍ରସ୍ତୁତ । କିନ୍ତୁ ଜୟପୁରରେ ଗୁଣ୍ଡ ଦୁଧ ମିଳିବା ନ ମିଳିବା ସନ୍ଦେହ ।

ଗୋଟିଏ ଦୋକାନରେ ମିଳେ, ଏଠାକୁ ଆଣିବାକୁ କାଲି ଖୋଜିଲି ସେ ପାଇଲି ନାହିଁ । ସେ କହୁଥିଲି, "ଗୁଣ୍ଡ ଦୁଧ ଆସୁ ଆସୁ ଆଉ ଦୁ' ଗୁଟିଦିନ ଲାଗିବ ।'' ମୋର ପରିକଳ୍ପନା ଫେଲ୍ ହେବାରେ ହତବୁଦ୍ଧି ହେଲି । ସେ ଅଞ୍ଚଳରେ ଗାଈ ଦୁଧ ମିଳେ ନାହିଁ । ସ୍ଥାନୀୟ ଲୋକେ ଗାଈ ଖା'ନ୍ତି, ଗାଈଙ୍କୁ ହଳରେ ଲଗାନ୍ତି, କିନ୍ତୁ ଦୁଧକୁ ସେମାନଙ୍କର ଘୃଣା । ଗାଈ ହଳରେ ଲାଗିଥାନ୍ତି, ବାଛୁରି ମା ପଛେ ଯାଉଥାଏ ଦେଖିଛି । କିନ୍ତୁ ସେ ଅଞ୍ଚଳରେ ଗାଈ ଦୁହାଁ ହେବା ସେ କାଳେ କେହି ଶୁଣି ନ ଥାନ୍ତି, ଦେଖିବା ତ ଦୂରର କଥା । କିଛି ସମୟ ପରେ ପ୍ରଶ୍ନର ଅଫିସର କହିଲେ, "ସାର୍, ମୁଁ ଗୋଟିଏ ବିକଳ୍ପ ବିଚାର କରୁଛି । ମୋର ଆଶା, କାଲି ସକାଳେ ମୁଁ ଲାଟ ସାହେବଙ୍କ ଗୁହିଦା ମେଣ୍ଟାଇ ପାରିବି ।'' କିପରି କୁଆଡ଼ୁ ଦୁଧ ଆଣିବେ ସେ କଥା ମୋତେ କହିବାକୁ ସେ କୁଣ୍ଠିତ ହେଲେ । କାଲି କହିବ ବୋଲି କହି ସେ ପାଖରେ ଥିବା ଆଦିବାସୀ ପଲ୍ଲୀକୁ ଗ୍ଲିଗଲେ ତାଙ୍କ ଡ୍ରାଇଭର ଓ ଚପରାସୀକୁ ନେଇ ।

ତା'ହିଁ ଆରଦିନ ସକାଳେ ଦେଖିଲି ମୋ ତମ୍ବୁରେ ଗୋଟିଏ ଟେବୁଲ୍ ଉପରେ ଦୁଇ ବୋତଲ ଦୁଧ । ଧୋବ ଫର୍ ଫର୍ ଦିଶୁଛି । ମୋ ଖଟିଆ ପାଖରେ ଚା' କେଟଲି ମୁହଁରୁ ଧୂଆଁ ବାହାରୁଛି, ଚା' ଖାଇବା ପୂର୍ବରୁ ଦୁଧ କୁଆଡ଼ୁ ଆସିଲା, କିଏ ଆଣିଲା ଇତ୍ୟାଦି କର୍କଶ ଭାବେ ପଚରାପଚରି କରିବାରୁ ପ୍ରଶ୍ନର ଅଫିସର ଶ୍ରୀ ପଟ୍ଟନାୟକ (ସେ ଆଜିଯାଏ ଅଛନ୍ତି କି ନାହିଁ କେଜାଣି ? ମୋର ବୟସର ଲୋକ) ଅତି ବିନୀତ ଭାବରେ ଥଙ୍ଗ ଥଙ୍ଗ ହୋଇ ମୋତେ ଜଣାଇଲେ ଯେ ସେହି ଗାଈ ଦୁଧ ନୁହେଁ 'ମାଈ ଦୁଧ' । ମୁଁ ବିରକ୍ତ ହେବାରେ ସେ ଗ୍ରହିକୋଣ୍ମ ପକାଇ ମୋତେ ସମଜାଇଲେ ଯେ ସେ ଦୁହିଁବା ପୂର୍ବରୁ ଦୁଗ୍ଧା-ଧାର ଖୁବ୍ ପରିଷ୍କାରସୁତୁରା କରାଇଛନ୍ତି । ତାଙ୍କ ଡ୍ରାଇଭର ନିଜେ ରହି ଦ୍ୱାର୍କୁ ଫରହ କରିଛି ଏଇ ପାହାନ୍ତିଆରେ । ତାକୁ ସେ କାଲି ରାତିରେ ସେ ଗାଁରେ ଛାଡ଼ି ଆସିଥିଲେ । ଏଥିରେ ଚା କେମିତି ହେଉଛି ସେ ଆଗ ପରୀକ୍ଷା କରି ସାର ମୋ ଆଗରେ ଚା' ଥୋଇଥିଲେ । ଆଗ ତ ଏ କଥା ଶୁଣି ମୋତେ ବାନ୍ତି ମାଡ଼ିଲା, ଚା' କେଟଲିକୁ ଛୁଇଁ ଛୁଇଁ । ପଟ୍ଟନାୟକେ ମୋତେ ନିର୍ଭର ଜବାବ ଦେଲେ ଯେ, ଚା' ଗାଈ ଦୁଧ ଚା' ଠାରୁ ଅଧିକ ରୁଚିକର ହେଉଛି । ମୁଁ ହସି ଦେଇ କହିଲି, "ତୁମର ସାର୍ଟିଫିକେଟ ଉପରେ ସ୍ତ୍ରୀ'କୁ ପଠାଯାଉ ।'' ଆମେ ସେହି ନିଷ୍ପତ୍ତି କରିବା ପୂର୍ବରୁ ଲାଟ ସାହେବଙ୍କ ଖାନସମା ଆସି ମୋତେ ସଲାମ ପକାଇଲା ଓ ଦୁଧ ପାଇଁ ଆସିଛି ବୋଲି କହିବାରେ ମୁଁ ଦୁଧ ବୋତଲ ଦୁଇଟା ଦେଖାଇ ଦେଲି ।

ପ୍ରାୟ ଘଣ୍ଟାଏ ପରେ ମୋତେ ଡକରା ଆସିଲା । ମୁଁ ଯାଇ ପହଞ୍ଚିଲା ବେଳକୁ ଲାଟ ଓ ସେକ୍ରେଟାରୀ ଦୁହେଁ ଚା ଟେବୁଲ ଉପରେ । ଚା'ର ତାରିଫ କଲେ । ଏତେ ସୁନ୍ଦର ଦୁଧ ମୁଁ ଠିକ୍ ସମୟରେ ଆଣି ଯୋଗାଇ ଦେଇ ଥିବାରୁ ମୋତେ ଯାହା ମିଳିଲା ତାହା ମୁଁ ମୋ ଅଫିସରଙ୍କ ପାଖକୁ ପୂରାପୂରି ଫରୱାର୍ଡ଼ କରି ଦେଇ ନିର୍ଲିପ୍ତ ରହିଲି । ଘନ ଘନ

ଆହ୍ବାନ ଆସିଲା ମୁଁ ସାହେବଙ୍କ ସଙ୍ଗେ କପେ ପିଇବାକୁ । ଦୁଇ ଅର୍ଥ ବୋଧକ ବାକ୍ୟଟିଏ କହିଲି, 'ମୁଁ ଏଥିରୁ ଗୁଡ଼ାଏ ପିଇ ସାରିଛି ।' ସାହେବ ବୁଝିଲେ ଏଇ ମାତୃବକ୍ଷାମୃତରୁ । ମୁଁ କିନ୍ତୁ କହିଲି, ମୁଁ ଜୀବନରେ ଏହା (ଘିଅ) ଖାଇଛି । ପରେ କଥା ପ୍ରସଙ୍ଗରେ ଏ କଥା ସ୍ୱାନ ସାହେବଙ୍କ ଆଗରେ କହିଦେଲି । ସେ ମୋ ଠାରୁ ଫୁଙ୍କିଲା; କଥା ଲାଟ ସାହେବଙ୍କ ଯାଏଁ ଉଠିଗଲା । ସେ ପଚାରି ଦେଲେ, ଦୁଧକୁ ଦୋଷମୁକ୍ତ କରିବାରେ ସେ ହେଲା କରି ନାହାନ୍ତି ଏହା ଆନନ୍ଦର ବିଷୟ । ଆମର ତ ଗୋଟାଏ ଆକଟ ମେଣ୍ଢିଗଲା । ମୋଟ ଉପରେ କିନ୍ତୁ ସେ ଦିନ ଆମେ ଯାହା ଖାଇଲେ ତାହା ଆମେ ସବୁଦିନ ଖାଉଥିବା ଦୁଧଠାରୁ ଢେର ସୁସ୍ୱାଦୁ ।"

ଆଉ ଥରେ, ସ୍ୱା ପରେ, ସମ୍ବଲପୁରଠାରେ ମୁଁ ତାଙ୍କ ବକ୍ତୃତା ଉପରେ ଅନଧିକାର ଚର୍ଚ୍ଚା କରିଥିଲି । ସାର୍ ହଥର୍ଣ୍ଣ ଯାଇଥାନ୍ତି ହୀରାକୁଦ ବନ୍ଧର ଶୁଭ ଦେବାକୁ । ସମ୍ବଲପୁର ଜିଲାର ସରକାରୀ ଓ ବେସରକାରୀ ବହୁତକ ବିଶିଷ୍ଟ ଲୋକ ଉପସ୍ଥିତ ଥାନ୍ତି । ଯେଉଁ ଅଞ୍ଚଳ ସବୁ ବୁଡ଼ିଯିବ ସେଠାର ସାଧାରଣ ଲୋକ ବହୁ ସଂଖ୍ୟାରେ ଆସିଥାନ୍ତି । ସାର୍ ହଥର୍ଣ୍ଣଙ୍କ ବକ୍ତୃତାର ଓଡ଼ିଆ ଅନୁବାଦ ମୁଁ ତାଙ୍କ ପରେ କରି କହିଲି । ସେତେବେଳକୁ ୮ ଶଙ୍କର ପ୍ରସାଦ ମିଶ୍ରଙ୍କ ନେତୃତ୍ୱରେ ହୀରାକୁଦ ବନ୍ଧ ବିଷୟରେ ଯେଉଁଭଳି ପ୍ରଚାର ଚାଲିଥାଏ ସେଥିରେ ଲୋକେ ଆତଙ୍କିତ ହୋଇଥାନ୍ତି ଏବଂ ଲାଟ ସାହେବଙ୍କ ଆଗେ ସେମାନଙ୍କ ବିରୋଧ ଜଣାଇବାକୁ କଳ୍ପନା କରିଥାନ୍ତି । ମୁଁ ଲାଟ ସାହେବଙ୍କ ଉକ୍ତିର ଓଡ଼ିଆ ତର୍ଜମା କଲାବେଳେ, ବିରୋଧ କରିବାକୁ ନାପସନ୍ଦ କରି ସେ ଯେଉଁ ପଦେ ଅଧେ କହିଥିଲେ, ତାକୁ ଫେଣେଇ ବାହ୍ଲ କହୁ ଏଭଳି କେତେ କଥା କହିଲି ଯାହା ତାଙ୍କ ବକ୍ତୃତାରେ ନ ଥିଲା । ସେ ଖୁବ୍ ଓଜନ କରି କଥା କହନ୍ତି, ଓ ଯାହା ଲେଖନ୍ତି ତାହା ଖୁବ୍ ବିଚାର କରି ଲେଖନ୍ତି, ଏବଂ ଲେଖାକୁ ଥରେ ଦୁଇଥର ପଢ଼ିଦେଇ ସେ ଏପରି ଆବୃତ୍ତି କରିଥାନ୍ତି, ଯାଫି ହୋଇଥିବା ବକ୍ତୃତା ହାତରେ ନ ଧରି ସେ ଏପରି କହିଯାନ୍ତି ଯେ କମା ପୂର୍ଣ୍ଣଚ୍ଛେଦ ମଧ୍ୟ ଏପଟ ସେପଟ ହୁଏନାହିଁ । ଏହି ବକ୍ତୃତାର ଅନୁବାଦ କରୁକରୁ ବିରୋଧୀମାନଙ୍କୁ ଲକ୍ଷ୍ୟକରି ପାଞ୍ଚ ଦଶପଦ ମିଶାଇ ଦେଲି । ମୋର କଥା ଶ୍ରୋତାମାନଙ୍କ ମନକୁ ପାଇଲା ବୋଲି ମୋର ହୃଦ୍‌-ବୋଧ ହେଲା । ସାର୍ ହଥର୍ଣ୍ଣ ମଧ୍ୟ ମୂଳରୁ ଶେଷ ପର୍ଯ୍ୟନ୍ତ ଆଗ୍ରହରେ ଶୁଣୁଥିବାର ଲକ୍ଷ୍ୟ କରିଥିଲି । ମନରେ ବି ଟିକିଏ ଅହମିକା ହୋଇ ଯାଉଥିଲା । ଓପରଓଳି ଚାହା ଖାଇଲାବେଳେ ଜାଣିଲି ସାର୍ ହଥର୍ଣ୍ଣ ମୋ ବକ୍ତୃତା ମୂଳରୁ ଶେଷ ପର୍ଯ୍ୟନ୍ତ ଶୁଣିଛନ୍ତି ଓ ବୁଝିଛନ୍ତି ମଧ୍ୟ । ମୁଁ ତାଙ୍କ ବକ୍ତୃତା ଉପରେ ଯେତେ ଚଟ୍ ଚଳାଇଥିଲି ତାହା ମଧ୍ୟ ତାଙ୍କ ଦୃଷ୍ଟିକୁ ଏଡ଼ିନାହିଁ । ସେଦିନ ଯାଏଁ ମୁଁ ଜାଣିନଥିଲି ଯେ ସେ କେତେ ବର୍ଷ ପୂର୍ବେ ସମ୍ବଲପୁରର ଡେପୁଟି କମିଶନର ଥିଲେ ଏବଂ ଓଡ଼ିଆ ଓ ସମ୍ବଲପୁରୀ ଓଡ଼ିଆ ବେଶ୍ ବୁଝନ୍ତି । ଘି ଖାଇଲି

ବେଳେ ସେ ମୋତେ ସୂକ୍ଷ୍ମ ସଙ୍କେତ ଦେଇଥିଲେ ଯେ ତାଙ୍କର ଭୟ ଥିଲା, ମୁଁ ଅଧୁକ୍ତି ଯୋଗୁଁ ତାଙ୍କ ଆସନର ଅମର୍ଯ୍ୟାଦା କରିଦେବି । କିନ୍ତୁ ତାହା ମୁଁ କରିନାହିଁ । ଏ ପ୍ରଶଂସାରେ ମୁଁ ଯେତିକି ଆନନ୍ଦିତ ହୋଇଥିଲି ତହିଁରୁ ଅଧିକ ଯତ୍ନ ହୋଇଥିଲି । ସାର୍ ହ୍ୱଥର୍ଣ୍ଣ ଲୁଇସଙ୍କ ଉଦାରତା ଓ ମହାନୁଭବତା ମୁଁ ଅନ୍ୟତ୍ର କ୍ୱଚିତ ଦେଖିଛି ।

ରାଜ୍ୟର ସ୍ୱାର୍ଥ ବିଷୟରେ ଏତେ ସାବଧାନତା ମଧ୍ୟ ଆମର ସ୍ୱରାଜ୍ୟ ଅମଳରେ ମୁଖ୍ୟମନ୍ତ୍ରୀମାନଙ୍କଠାରେ ଦେଖିନାହିଁ । ଗୋଟିଏ ଶ୍ରେଷ୍ଠ କଥା ମନେ ପଡ଼ୁଛି । ଲାଟ୍ ସାହେବଙ୍କର ଖଣ୍ଡିଏ ମଟର ଗାଡ଼ି—ଓଲଡ୍ସ୍ ମୋବାଇଲ୍ । ସେ ଖଣ୍ଡ ତାଙ୍କୁ ମିଳିଥିଲା ତାଙ୍କ ପୂର୍ବବର୍ତ୍ତୀ ଗଭର୍ଣ୍ଣରଙ୍କଠାରୁ । ସେତେବେଳକୁ ତା'ର ବୟସ ୭।୮ବର୍ଷ ହୋଇ ଯାଇଥାଏ ; ବାଟରେ ପ୍ରାୟ ଅଚଳ ହୁଏ । ଥରେ ମୁଁ କହିଦେଲି ଏ ଗାଡ଼ି ବଦଳରେ ଆଉ ଖଣ୍ଡେ କିଣିବା ବେଳ ହୋଇଗଲାଣି । ସେ କହିଲେ, "ଏ ବୁଢ଼ା ଅମଳଟା ଏଇ ପୁରୁଣା ଗାଡ଼ିରେ ଚାଲିଥାଉ । ସ୍ୱାଧୀନ ଭାରତର କେନ୍ଦ୍ର ଓ ରାଜ୍ୟରେ ବହୁତ ନୂଆ ଗାଡ଼ି ଦେଖିବାକୁ ପାଇବ ; ସେତେବେଳ ପାଇଁ ଆମେସବୁ ବଙ୍କିମୂର୍ତ୍ତି ହେବା ଦରକାର ।" ଏକଥା କେତେଦୂର ସତ୍ୟ ହେଲା ତାହା ଆମେ ସମସ୍ତେ ଅଙ୍ଗରେ ନିଭାଉଥାଉଁ । ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ମାନେ ତ ନିଜନିଜ କ୍ଷେତ୍ରରେ ସର୍ବେସର୍ବା । ଯେଉଁ ବଡ଼ଲାଟ ଓ ଛୋଟଲାଟମାନେ କେବଳ ମାଟି ପ୍ରତିମା ପରି ଖଟୁଲିରେ ବସିଛନ୍ତି ତାଙ୍କ ଆଟୋପ ଦେଖିଲେ ତାଜବ୍ ହେବାକୁ ହୁଏ ।

ସାର୍ ହ୍ୱଥର୍ଣ୍ଣ ଲୁଇସଙ୍କ ସହୃଦୟତା ଯୋଗୁଁ ମୋର ସବୁ ଦୋଷ ଦୁର୍ଗୁଣ ଉପରେ ଢାଙ୍କୁଣି ଦିଆ ହୋଇଗଲା । ମୋର ଜଣେ ଉପରସ୍ଥ ଅଫିସର ମୋ ନାମରେ ଲେଖି ଯାଇଥିଲେ ଯେ ମୁଁ ବହୁକାଳ ବେସରକାରୀ ଲୋକ ହୋଇଥିବାରୁ ମୋ ଉପରେ ତୀକ୍ଷ୍ଣ ଦୃଷ୍ଟି ରହିବା ଦରକାର । ସେ କଥା କୁଆଡ଼େ ଫସର ଫାଟିଗଲା । ମୋର ଖାତି ଗତି ହୋଇଗଲା ସମସ୍ତଙ୍କର ଗ୍ରାହ୍ୟ । ଓଡ଼ିଶା ଗେଜେଟରେ ବାହାରୁ ମିଳିଥିବା (Contributed) ପ୍ରବନ୍ଧ ବୋଲି ପ୍ରତିମାସରେ ଗୋଟାଏ ଦୁଇଟା ଛପାଗଲା । ସେ ସବୁ ମୋର ନିଜ ଲେଖା ବୋଲି ସମସ୍ତେ ଜାଣୁଥିଲେ । ଏଥିରେ ଓପରେ ତଳ ସବୁ କର୍ମଚାରୀଙ୍କର ପ୍ରଚ୍ଛନ୍ନ ସମାଲୋଚନା ଥାଏ । ସରକାରୀ ଗତାନୁଗତିକ ଧାରାରୁ ଏହା ସ୍ୱତନ୍ତ୍ର ଥିବାରୁ ନାକ ଟେକିବା ବଦଳରେ ସମସ୍ତେ ଏହାକୁ ସ୍ୱାଗତ କରୁଥାନ୍ତି । ମୁଁ ବି ଏଥିରେ ଉତ୍ସାହିତ ହୋଇ ମୋର ଆତ୍ମମୁଖ୍ୟ ବଳୁଆ କରୁଥାଏ ।

କିନ୍ତୁ କିନ୍ତୁ ବେଳେ ବେଳେ ମୁଁ ସୀମାଲଙ୍ଘନ କରିଯାଏ, କିନ୍ତୁ ଏଥିପାଇଁ ମୁଁ ଠୋକର ଖାଇନାହିଁ ; ସବୁବେଳେ ସମର୍ଥନ ଓ ବାହାବା ପାଇଛି । ଅତମାତ୍ରାରେ କହି-ପକାଇବାର ଗୋଟିଏ କଥା ମନେ ପଡ଼ୁଛି । କଲ କ୍ଳବରେ ଦିନେ ଖାନାପିନା ଚାଲିଥାଏ । ସମସ୍ତେ ସାହେବ, କେବଳ ଆମେ ଦୁଇଜଣ ଦେଶୀ, ମୁଁ ଓ ଆଉ ଜଣେ ସେକ୍ରେଟାରୀ, ଏଗ୍ରିକଲ୍‌ଚର୍ । ସେ ପ୍ରାୟ ଚୁପ୍ ହୋଇ ବସିଥାନ୍ତି, କିନ୍ତୁ ପିଉଥାନ୍ତି ଖୁବ୍ । ମୋର

କଥା ଖୁବ୍, କିନ୍ତୁ ପିଇବା ଏକାବେଳକେ ନାସ୍ତି । ଯେ କୌଣସି ବିଭାଗରେ ଯେ କୌଣସି ଜାଗା ଖାଲି ହେଲେ ଆଇ. ସି. ଏସ୍. ଅଫିସରଙ୍କୁ ନେଇ ଭର୍ତ୍ତି କରିଦେବାର ଯେଉଁ ରୀତି ଚାଲିଛି ତା'ର ସମାଲୋଚନା ହେଉଥାଏ । ଏଥିକି ବେଳେ ମୁଁ ଗେଟ୍ଟେଇଗେଟ୍ଟେଇ କହିଦେଲି, ଠାଏ ରାମଲୀଳାର ହନୁମାନର ପାର୍ଟ କରୁଥିବା ଲୋକ ବେମାର ପଡ଼ିବାରୁ ଜଣେ ଆଇ. ସି. ଏସ୍ ଅଫିସର ସେ ସ୍ଥାନକୁ ପଠାଯିବାର ବିଗ୍ଭର ହେଉଛି । ସାହେବମାନଙ୍କ ଏତେ ଆମୋଦିତ ହେଲେ ଯେ ଆଉ ବୋତଲେ ମଦ ପିଇଦେଲେ । ଆଳାପାଳି ହୋଇଥିଲେ ଏଇଥିରୁ ଲଙ୍କାକାଣ୍ଡ ଉପୁଜିଥାନ୍ତା ।

ସେତେବେଳେ ସେକସନ ୯୩ ଅନୁସାରେ ଲାଟ ଶାସନ । ପାରଳାଖେମୁଣ୍ଡି ମହାରାଜାଙ୍କ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥାଏ । ଖାଲି ପଣ୍ଡିତ ଗୋଦାବରୀଶଙ୍କୁ ହଇରାଣ କରିବାକୁ ମହାରାଜା ମନ୍ତ୍ରୀମଣ୍ଡଳ ଭାଙ୍ଗି ଦେଇଥାନ୍ତି । ପଣ୍ଡିତ ନୀଳକଣ୍ଠ ମହାରାଜାଙ୍କୁ ମତାଇ ଏହା କରାଇଲେ ବୋଲି ସେତେବେଳେ ଗୁଜବ ଉଠିଥିଲା । ମୁଁ ଏହାର ସତ୍ୟାସତ୍ୟ ଅନୁସନ୍ଧାନ କରିନାହିଁ । କେବଳ ଏତିକି ଜାଣେ ଯେ ଦୁଇ ପଣ୍ଡିତଙ୍କର ମନୋମାଳିନ୍ୟର ମାତ୍ରା ଏତେବେଳକୁ ଖୁବ ବଢ଼ିଯାଇଥାଏ । ଏ ଦୁହିଁଙ୍କର ମନୋମାଳିନ୍ୟ ପାଞ୍ଚବର୍ଷ ପୂର୍ବେ ମୁହିଁ ତୁଟାଇଥିଲି, ଏଥର ଯେଉଁ ଫଟାଫଟି ହେଲା ତା' ମୂଳରେ କ'ଣ ଥିଲା ସେ ବିଷୟ ଜଣାପଡ଼ିଲା ନାହିଁ । ଦୁହେଁଯାକ ନିଜର ଜୀବନ ଚରିତରେ ଏହାର ସନ୍ତୋଷ-ଜନକ କାରଣ ଦେଇନାହାନ୍ତି । ଏତିକି ଜାଣେ ମନ୍ତ୍ରୀମଣ୍ଡଳରୁ ବଡ଼ ପଣ୍ଡିତେ ଯାହା ଫାଇଦା ଉଠାଇବାକୁ ବସିଥିଲେ, ସେଥିରେ ସାନ ପଣ୍ଡିତେ ବାଧା ଦେଲେ ।

ମନ୍ତ୍ରୀମଣ୍ଡଳ ଭାଙ୍ଗିବା ବେଳକୁ ପଣ୍ଡିତ ନୀଳକଣ୍ଠଙ୍କର ଜାତୀୟ ଯୁକ୍ତ ସାମ୍ମୁଖ୍ୟ ଅଭ୍ୟୁଥା ନଷ୍ଟବୁଦ୍ଧି ହୋଇ ନ ଥାଏ ।

ମନ୍ତ୍ରିମଣ୍ଡଳ ଭାଙ୍ଗିବାର ଅଳ୍ପ ଦିନରେ ଜାତୀୟ ଯୁକ୍ତ ସାମ୍ମୁଖ୍ୟର ପୋଥି ବନ୍ଧା ହୋଇ ଯାଇଥାଏ । ଓଡ଼ିଶାରେ ଏ ଅନୁଷ୍ଠାନ ବିଶେଷ କିଛି କାର୍ଯ୍ୟ କରିଥିଲା ବୋଲି କହିହେବ ନାହିଁ । କଂଗ୍ରେସରୁ ଓହରି ଆସିଥିବା କେତେକ ଜଣ ରାଜନୀତିକ ବ୍ୟକ୍ତି ଓ ମାନ୍ଧା ଦଳର କେତେଜଣ ନାମଜାଦା ଲୋକ ଏଥିରେ ପଶିଥିଲେ ଗସ୍ତ ଖର୍ଚ୍ଚ ଆଶାରେ । ସେମାନଙ୍କର ପରସ୍ପର ମଧ୍ୟରେ ବି ସମଜାସି ନ ଥିଲା । ସମଗ୍ର ଓଡ଼ିଶାର ଯୁକ୍ତ ସାମ୍ମୁଖ୍ୟର ନେତା ଥିଲେ ପଣ୍ଡିତ ନୀଳକଣ୍ଠ ଦାସ । କଟକ ଜିଲ୍ଲାର ମୁଖ୍ୟ ଥିଲେ ଦେୱାନବାହାଦୁର ଶ୍ରୀକୃଷ୍ଣ ମହାପାତ୍ର । ପଣ୍ଡିତ ମହାଶୟ ଓ ଦେୱାନବାହାଦୁର, ଏ ଦୁହିଁଙ୍କ ଭିତରେ କଥାବାର୍ତ୍ତା ବି ନ ଥିଲା । ପଣ୍ଡିତ ନୀଳକଣ୍ଠ ଏହି ଅନୁଷ୍ଠାନରେ ରହି ଗୁଡ଼ାଏ ଗସ୍ତଖର୍ଚ୍ଚ ବି ନେଉଥିଲେ ଏବଂ ଦୈନିକ ନବଭାରତ ଚଳାଇବା ପାଇଁ ବହୁ ପରିମାଣରେ କାଗଜ ସରକାରରୁ ନେଉଥିଲେ । ମୁଁ ଆସି ଚାକିରିରେ ଯୋଗ ଦେଲା ପରେ ସେ ବିଷୟରେ ପୁଲିସ ଦେଇଥିବା ଗୋଟିଏ ରିପୋର୍ଟ ଦେଖିଲି । ସେଥିରେ ଲେଖା ହୋଇଥାଏ ଯେ, ନବଭାରତ ଦୁଇ ହଜାରେ ବି ଛପା ହୁଏ ନାହିଁ । ନୀଳକଣ୍ଠ ବାବୁ ଦିନକୁ ଗ୍ଭରିହଜାରର କାଗଜ ନେଉଥାନ୍ତି । ଏ ରିପୋର୍ଟଟି

ମୋ ଟେବୁଲରେ ଗୁଡ଼ାଏ ଦିନ ପକାଇ ରଖିଲି ଏହା ଉପରେ କୌଣସି ନୋଟ୍ ଦେବା ପୂର୍ବରୁ ।

ମୁଁ ନବଦ୍ୱୀପରେ ଥିବାବେଳେ କାଗଜ ବେପାରୀ ରଙ୍ଗଲାଲ ମୋଦୀଙ୍କର ଗୁଡ଼ିଏ ଟଙ୍କା ଆମ ଉପରେ ଥିଲା । ମୁଁ ଯେଉଁ ଦିନ ନବଦ୍ୱୀପରୁ ଗୁଡ଼ିଲି ସେ ଦିନ ନୀଳକଣ୍ଠ ବାବୁଙ୍କୁ ସଙ୍ଗରେ ନେଇ ରଙ୍ଗଲାଲ ମୋଦୀଙ୍କୁ ବୁଝାଇ ଦେଇ ଆସିଥିଲି ଯେ, ମୁଁ ପ୍ରେସ୍ ଗୁଡ଼ି ଯାଉଛି, ଏ ଟଙ୍କା ନୀଳକଣ୍ଠ ବାବୁ ଦେବେ । ପ୍ରେସର ଯାହାଙ୍କ ଉପରେ ଟଙ୍କା ଥିଲା ସେମାନଙ୍କୁ ମଧ୍ୟ ନୀଳକଣ୍ଠ ବାବୁଙ୍କ ଆଗରେ କହିଦେଇ ଆସିଥିଲି ଯେ, ତାଙ୍କ ଉପରେ ଥିବା ଟଙ୍କାରେ ମୋର ହକ୍ ନାହିଁ, ଏ ଟଙ୍କା ନୀଳକଣ୍ଠ ବାବୁ ପାଇବେ । ନୀଳକଣ୍ଠ ବାବୁ ଏ ଟଙ୍କା ସବୁ ନେଲେ, କିନ୍ତୁ ମୋ ଉପରେ ଥିବା କାଗଜ ବାଲାର ଟଙ୍କା ଦେବାକୁ ନାହିଁ କରିଦେଲେ । କାଗଜ ବାଲା ମୋତେ ଦି'ତିନି ଥର ମାଗିଥିଲା । ସେତେବେଳେ ମୁଁ ଅତି ଦୁଃଖରେ ଥାଏ । ଦିନେ ରଙ୍ଗଲାଲ ବାବୁଙ୍କ ପାଖକୁ ଆସି ନୀଳକଣ୍ଠ ବାବୁ ଟଙ୍କା ଦେବେ ବୋଲି ଜବାବ୍ କରିଥିବା କଥା ତାଙ୍କୁ ପଚାରିଲି । ସେ କହିଲେ, "ସେ ଦିନ ସେ ହଁ କରିଥିଲେ, ଏବେ ନାହିଁ କରୁଛନ୍ତି, ମୁଁ କ'ଣ କରିବି ?" ମୁଁ ମୋ ଅବସ୍ଥା ତାଙ୍କୁ ଜଣାଇଲି ଏବଂ ମୋର ଅବସ୍ଥା ବଦଳିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲି । ବନ୍ଧୁମାନେ ସେତେବେଳେ କହୁଥିଲେ, ତୁମେ ନୀଳକଣ୍ଠ ବାବୁଙ୍କ ପାଖକୁ ଯାଅ, ପ୍ରେସ୍‌ରେ ରହିବାକୁ ରାଜି ହୁଅ, ସବୁ ଠିକ୍ ହୋଇଯିବ । ରଙ୍ଗଲାଲ ବାବୁ ବି ସେଇଆ କହିଲେ । ମୁଁ କିନ୍ତୁ ସିଦ୍ଧାନ୍ତ କରିଥିଲି ଯେ ଯାହା ହେଉ ପଛେ ମୁଁ ଆଉ ନୀଳକଣ୍ଠ ବାବୁଙ୍କ ପାଖରେ ରହିବି ନାହିଁ । ରଙ୍ଗଲାଲ ବାବୁ ବର୍ଷକରୁ ଅଧିକ ସମୟ ଅପେକ୍ଷା କଲେ । ତା' ପରେ ମୋ ନାମରେ ଗୋଟିଏ ମକଦ୍ଦମା କରିଦେଲେ । ମକଦ୍ଦମା ସମନ ଆସିବା ବେଳକୁ ସ୍ୱାନ ସାହେବ ପବ୍ଲିସିଟି ଅଫିସର ଓ ମୁଁ ଆସିଷ୍ଟାଣ୍ଟ ପବ୍ଲିସିଟି ଅଫିସର । ଅଫିସ୍ ଠିକଣାରେ ସମନ ଆସିଲା । ଆଗ ତାଙ୍କ ଟେବୁଲକୁ ଗଲା । ଏଇ କାଗଜ କଣ ପଚାରିବାରୁ ମୁଁ ସବୁ କଥା କହିଲି । ସେ ତ ନୀଳକଣ୍ଠ ବାବୁଙ୍କ ନାଁ ଶୁଣିଲେ ନିଆଁ ହୋଇ ଯାଉଥାନ୍ତି । ସେ ମୋତେ କହିଲେ, ଏ ମକଦ୍ଦମା ଲଢ଼, ମୁଁ ଆଜ୍ଞା ଅନୁମତି ଦେଉଛି । ମୁଁ 'ହଁ' ବୋଲି କହି ଘରକୁ ଗଲି । ମକଦ୍ଦମା ଲଢ଼ିବାକୁ ମୋର ମନ ହେଉ ନ ଥାଏ, ବରଂ ଭାବୁଥାଏ ଯଦି ଜାତି ହରାଇ ସରକାରୀ ଚାକିରି କଲି ତେବେ ନିଜର ମକଦ୍ଦମାରେ ଘାଣ୍ଟି ହେଲେ ସରକାରୀ କାମରେ ପୂରା ମନ ଦେଇ ପାରିବି ନାହିଁ, ଓ ସରକାରୀ ମହଲରେ ମାମଲା ବାଜ୍ ବୋଲି ନାମ ଅର୍ଜିବି । ଏଣେ ଗୁଡ଼ାଏ ଟଙ୍କା, ପ୍ରାୟ ଦୁଇ ହଜାର । ହଜାରକ ସେତେବେଳେ ମୋତେ ଲକ୍ଷେ ପରି ଲାଗୁଥିଲା । ମକଦ୍ଦମା ନ ଲଢ଼ିଲେ ମୋ ନାମରେ ତ ସବୁତକ ଟଙ୍କା ଡିକ୍ରୀ ହୋଇଯିବ । ସୁଝିବି କୁଆଡ଼ୁ ? ଏହିପରି ବିଚାର ସବୁବେଳେ ଚିନ୍ତିତ ଥାଏ । ସ୍ୱାନ ସାହେବ ମୋର ଖବର ପ୍ରତିଦିନ ଥରକୁ ଥର ପଚାରି ଯାହା କରୁଥାନ୍ତି ସେଥିରେ ମୋ ଦୁଶ୍ଚିନ୍ତା ଆହୁରି ବଢ଼ୁଥାଏ । ଶେଷରେ ମୁଁ ସ୍ୱାନ୍ ସାହେବଙ୍କୁ ଶୁଣାଇ ଦେଲି, "ମୁଁ ମକଦ୍ଦମା ଲଢ଼ିବି ନାହିଁ । ମୁଁ ନୀଳକଣ୍ଠ ବାବୁ ଓ ରଙ୍ଗଲାଲ ମୋଦୀ ନାଁରେ ଭଗବାନଙ୍କ ପାଖେ ଗୋଟିଏ ମକଦ୍ଦମା କରି ଦେଉଛି ।

ସେ ଯାହା କରବେ ।" ସ୍ମାନ ସାହେବଙ୍କର ଭଗବାନଙ୍କ ବିଷୟରେ ବଡ଼ ନୀଚ ଧାରଣା । ସେ କହିଲେ, "ଭଗବାନ୍ କ'ଣ ଜଜ୍ ନା ଓକିଲ ?" ମୁଁ କହିଲି, "ଭଗବାନ କୋର୍ଟକୁ ଯାଇ ନ ପାରନ୍ତି, ଜଜ୍ ମନରେ ଟିକିଏ ସହାନୁଭୂତ ମୋ ପାଇଁ ଜାଗ୍ରତ କରି ପାରବେ ତ ?" ସେ କହିଲେ, 'କେହି ବିଷୟରେ ଜଜ୍‌ଙ୍କୁ ଗୋଟାଏ ଧାରଣା ଦେବାକୁ ତୁମ ପକ୍ଷରୁ ଗୋଟାଏ ଜବାବ୍ ଅନ୍ତତଃ ଦିଆଯାଉ ।' ମୁଁ ଏଥିରେ ରାଜି ହେଲି ଓ କହିଲି, 'ଆପଣଙ୍କର ଅନୁଗ୍ରହ ହେଲେ ବି ଜଜ୍‌ଙ୍କୁ ଉପେକ୍ଷା କରାଯାଇ ପାରିବ ।' ସେ ପଚାରିଲେ, 'କେମିତ ?' ମୁଁ କହିଲି, 'ମୋତେ ଆସିଷ୍ଟାଣ୍ଟ ସେକ୍ରେଟାରୀ ହେବାକୁ ଆପଣ ଯଦି ପ୍ରସ୍ତାବ କରି ଦିଅନ୍ତି ତେବେ ମାସକୁ ଯେ ଶହେକ ଆଲାଉଏନସ୍ ମିଳିବ ସେତକ ଏ ମକଦ୍ଦମା ବାବଦରେ "ଉଡ଼ିଗଲା ଖଇ ଗୋବିନ୍ଦାୟ ନମଃ" କରିଦେଲେ ଚଳିଯିବ' । ଏ କଥାଟି ତାଙ୍କୁ ବର୍ଣ୍ଣନା କରିବାକୁ ହେଲା । ଜଣେ ବ୍ରାହ୍ମଣ ହାତରେ ଉଖୁଡ଼ା ଦାନାଟିଏ ଧରି ଡଙ୍ଗା ପାର ହେଉଥିଲେ ଘରେ ଦିଅଁଙ୍କୁ ପୂଜା କରିବା ପାଇଁ । ବାଟରେ ଝଙ୍କାଏ ପବନ ହୋଇ ଦାନାଟି ପାଣିରେ ପଡ଼ିଗଲା । ବ୍ରାହ୍ମଣ ନଦୀ ସ୍ରୋତରୁ ପାଣି ଟିକେ ଧରି 'ଉଡ଼ିଗଲା ଖଇ ଗୋବିନ୍ଦାୟ ନମଃ' ବୋଲି ଢାଳି ମାରିଦେଲେ । ଟିକିଏ ବିଶ୍ଳେଷଣ କରି ତାଙ୍କୁ ବୁଝାଇ ଦେଲି, ଯେଉଁ ପଇସା ମୋ ପିଲାଙ୍କ ଭୋଗ ଲାଗିଥାନ୍ତା, ସେତକ ମୋର ମହାଜନ ଶୁଝିବାରେ ଲାଗିଯିବ । ସେ ଏ କଥାର ମର୍ମ ବୁଝିବାକୁ ଟିକିଏ ସମୟ ନେଲେ କିନ୍ତୁ ବୁଝି ଖୁବ୍ ଗୁଡ଼ାଏ ହସିଲେ । ପ୍ରତିଶୋଧ ନେବାକୁ ନୀଳକଣ୍ଠ ବାବୁଙ୍କ ସଙ୍ଗେ ଲାଗି ଯେତିକ ସମୟ ଖର୍ଚ୍ଚ କରିବି ସେତକ ସମୟ ମୋର ସରକାରୀ କାର୍ଯ୍ୟରେ ଲଗିଲେ ମୁଁ ପାଉଥିବା ଦରମା ସାର୍ଥକ ହେବ ବୋଲି କହିବାରେ ସେ ମୋ ଆଡ଼କୁ ଟିକିଏ ଗ୍ରୁହିଁ ରହିଲେ । ରଙ୍ଗଲାଲ ମୋଦିଙ୍କ ମକଦ୍ଦମାର ତାରିଖ ହେବା ପୂର୍ବରୁ ମୁଁ ଆସିଷ୍ଟାଣ୍ଟ ସେକ୍ରେଟାରୀ ଭାବରେ ଶହେ ଟଙ୍କା ଆଲାଉଏନ୍ସ ପାଇଲି ଏବଂ ୬ ମାସ ପରେ ତାଙ୍କର ମକଦ୍ଦମା ଡିକ୍ରୀ ହେଲା ବେଳକୁ ମୁଁ ୫ଶହ ଟଙ୍କାରେ ପବ୍ଲିସିଟି ଅଫିସର ହୋଇ ଯାଇଥାଏ, ଆସିଷ୍ଟାଣ୍ଟ ସେକ୍ରେଟାରୀରୁ ଅଣ୍ଡର ସେକ୍ରେଟାରୀକୁ ଉଠିଥାଏ ଏବଂ ମହଙ୍ଗାଭତ୍ତା ମିଶି ମୋର ଦରମା ୮ଶହ ହୋଇଥାଏ ।

ସ୍ମାନ ସାହେବ ମୋତେ ଗ୍ରୁର୍ଯ ଦେଇ ଦୁଇମାସ ଛୁଟିରେ ସିମଲା ଗ୍ଲଲଗଲେ । ତା' ପରେ ଆସି ଲାଟ୍ ସାହେବଙ୍କ ସେକ୍ରେଟାରୀ ହେଲେ ଗୁଡ଼ାଏ ଦିନ । ପ୍ରତି ହପ୍ତାରେ ମୋର ତାଙ୍କ ସଙ୍ଗେ ଦେଖାହୁଏ । ସେ ମକଦ୍ଦମା ବିଷୟ ମଝିରେ ମଝିରେ ପଚାରନ୍ତି । ଗ୍ରଏ ବାହାରିଲା ପରେ ତାଙ୍କୁ ମୁଁ କହିଲି, ଭଗବାନ୍ ଆପଣଙ୍କ ଜରିଆରେ ମୋର ଗୁଡ଼ାଏ ଦରମା ବଢ଼ାଇ ଦେଲେ ଓ ଜଜ୍‌ଙ୍କ ଜରିଆରେ ଋଣ ଅଧେ କମାଇଦେଲେ । ଏହା ତାଙ୍କୁ ଆଗରୁ କହିବାର ସୁଯୋଗ ପାଇ ନଥିଲି ।

ସ୍ମାନ ସାହେବଙ୍କ ପରାମର୍ଶରେ, ପରେ ହାଇକୋର୍ଟ୍ ଜଜ୍ ହୋଇଥିବା ୬ ସୌରିପ୍ରସାଦ ମହାପାତ୍ରଙ୍କୁ ଓକାଲତନାମା ଦେଇଥିଲି ମକଦ୍ଦମାର ଜବାବ୍ ଦେବାକୁ । ସେ ଜବାବ୍ ଦାଖଲ କରିବା ପରେ ମୁଁ ଆଉ ମକଦ୍ଦମାର ତଦ୍‌ବିର କଲି ନାହିଁ, ଅଳ୍ପ ଦିନ ପରେ ସେ ଜଜ୍ ହୋଇଗଲେ । ତାଙ୍କ ମୋହରର ମୋ ପାଖକୁ ଦୁ'ଗ୍ଲରଥର

ଆସିଥିଲେ । ମୋ ସଙ୍ଗେ କଥାବାର୍ତ୍ତା ହୋଇ ଯା'ନ୍ତି । ଘୋଷ ବାବୁ ନଜ ଫାଇଲ୍ ସବୁ ଯାହାଙ୍କୁ ଦେଇ ଯାଇଥାନ୍ତି, ତାଙ୍କ ନାମରେ ଖଣ୍ଡେ ଓକାଲତନାମା ବ ଲେଖାଇ ନେଇଥିଲେ । ଘୋଷ ବାବୁଙ୍କ ସଙ୍ଗେ ପଢ଼ିବା ବେଳୁ ମୁଁ ପରଚତ । ସେ ଓ ତାଙ୍କ ବଡ଼ ଭାଇ ଯେଉଁ ଘରେ ଓକାଲତ ଆରମ୍ଭ କରଥାନ୍ତି, ମୁଁ ସେଇ ଘରର ବାହାର ଘରେ ରହ କଲେଜରେ ପଢ଼ୁଥାଏ । ତାଙ୍କର ପୂର୍ଣ୍ଣ ଶ୍ରଦ୍ଧା ମୁଁ ସେତେବେଳେ ପାଇପାରଥାଏ । ସେ ମୋ ପାଇଁ ଓକଲ ହେବା ଯୋଗୁଁ ଗୋଟିଏ ପଇସା ନେଇ ନ ଥିଲେ । ଥରେ ତାଙ୍କ ଟେବୁଲ ଉପରେ କୋଡ଼ିଏଟି ଟଙ୍କା ଥୋଇ ଦେଇଥିଲି ଯେ ସେ ତାହା ମୋ ହାତକୁ ଫେରାଇ ଦେଇ କହଥିଲେ, ମୁଁ ମାଗିଲେ ଦେବ । ସେ ଗିବା ପରେ ତାଙ୍କ ମୋହରରଙ୍କୁ ମୁଁ କୋଡ଼ିଏଟି ଟଙ୍କା ଦେଇଥିଲି । ଆଉ ଥରେ ଦ'ଥର ସେ ଆସିଛନ୍ତି କନ୍ତୁ ମୁଁ ପଇସା ଦେଇ ନାହିଁ । ସେ ମାଗି ନାହାନ୍ତି । ସବୁ ବାହାରଲା ପରେ ସବୁ ନକଲ ବ ମୁଁ ଆଣିନାହିଁ । ରଙ୍ଗଲାଲ ବାବୁଙ୍କଠାରେ ମୁଁ ତାକୁ ପଢ଼ିଲି । ନୀଳକଣ୍ଠ ବାବୁଙ୍କ ଉପରେ ଡଗ୍ରୀ ହୋଇଛୁ ୨୨ଶହ ଓ ମୋ ଉପରେ ୧୮ଶହ । ମଝିରେ ଥରେ ରଙ୍ଗଲାଲ ବାବୁ ଲଗେଇଥିଲେ ପ୍ରେସ୍ ଉପରେ ଥିବା ଟଙ୍କା ପାଇଁ ହ୍ୟାଣ୍ଡନୋଟ୍ କରଦେବା ପାଇଁ । ମୁଁ ୧୫ଶହ ଟଙ୍କାକୁ ହ୍ୟାଣ୍ଡନୋଟ କର ଦେଇଥିଲି । ସେଇ ଦନଠାରୁ ପ୍ରେସ୍ ନାମରେ ହସାବ ଗଡ଼ୁଥିଲା । ଜଜ୍ ହ୍ୟାଣ୍ଡନୋଟ ଟଙ୍କାଟା ମୋ ଉପରେ ଡିକ୍ରୀ କଲେ ଓ ପ୍ରେସ୍ ଉପରେ ଥିବା ଟଙ୍କାତକ ତାଙ୍କ ଉପରେ । ଖର୍ଚ୍ଚା ପର୍ଚ୍ଚା ମିଶି ମୋ ଉପରେ ହୋଇଥାଏ ୧୮ଶହ ଓ ତାଙ୍କ ଉପରେ ୨୨ଶହ । ସେତେବେଳକୁ ମୋର ମାସିକ ଦରମା ସବୁ ସବୁ ମିଶି ୮ଶହ । ରଙ୍ଗଲାଲ ବାବୁଙ୍କ ସଙ୍ଗେ ଜବାବ କର ଆସିଲି, ପ୍ରତ ମାସରେ ମୁଁ ଆଣି ପଚ୍ଚଶ ଟଙ୍କା ଲେଖାଏଁ କସ୍ତି ଦାଖଲ କରବ । ସେ ଏଥିରେ ସ୍ୱୀକୃତ ହେଲେ ଓ ତାଙ୍କ ଓକଲଦ୍ୱାରା କସ୍ତି କାଗଜ କରାଇ ନେଲେ ।

ମିଷ୍ଟର ସ୍ମାନ ମତ ଦେଲେ ଯେ ମକଦ୍ଦମା ଲଢ଼ୁଥିଲେ ବର୍ତ୍ତମାନ ଯାହା ଦେବାକୁ ପଡ଼ୁଛି ସେଥିରୁ ରକ୍ଷା ପାଇଥାନ୍ତି । ସେ ପୁଣି କହଲେ, ମୁଁ ଯଦ ଅପିଲ କରବ ତେବେ ସେ ତାଙ୍କ ସିଗ୍ରେଟ୍ ଅଭ୍ୟାସ ଛାଡ଼ିଦେଇ ମୋତେ ଅପିଲ ପାଇଁ ସାହାଯ୍ୟ ଦେବେ । ମୁଁ ତାଙ୍କୁ ଆନ୍ତରକ ଧନ୍ୟବାଦ ଦେଲି ଏବଂ ଜଣାଇଲି ଯେ ମୁଁ ଏ ରାୟକୁ ମାନିଯାଇ ଚୁକ୍ତି ପତ୍ର କରଦେବା ପାଇଁ ରଙ୍ଗଲାଲ ବାବୁଙ୍କ ଓକଲକୁ ଜବାବ ଦେଇ ସାରଛୁ । ସ୍ମାନ୍ ସାହେବ ସେତେବେଳେ ଅବବାହତ ଓ ସିଗ୍ରେଟ୍‌ରେ ମାସକୁ ପ୍ରାୟ ୨ଶହ ଟଙ୍କା ଖର୍ଚ୍ଚ କରନ୍ତି । ମଦ ବଷୟ ମୁଁ ଅନୁସନ୍ଧାନ କର ନାହିଁ । ଥରେ କନ୍ତୁ ରହସ୍ୟ କର ସେ କହଥିଲେ ଖର୍ଚ୍ଚ ତାଲକାକୁ ଦେଖିଲେ ଜଣେ ଅବବାହତ ଲୋକର ମଦ ଖର୍ଚ୍ଚ ବବାହତ ଲୋକର ପତ୍ନୀ ଖର୍ଚ୍ଚ ସଙ୍ଗେ ସମାନ ।

ମୁଁ ପ୍ରବୁର ବଭାଗର ମୁଖ୍ୟ ଅଫିସର ହୋଇଯିବାରୁ ଓ ବୁଡ଼ାଏ ଟଙ୍କା ପାଇବାରୁ ମୋ କାର୍ଯ୍ୟରେ ଖୁବ୍ ଲାଗିଲି, ନା ସାର୍ ହ୍ୟଅର୍ଷ୍ଟ ଲୁଇସ୍ ଓ ସେତେବେଳର ଚଫ୍ ସେକ୍ରେଟାରୀ ମିଷ୍ଟର ଉଇଲସ୍‌ମହ୍ ଓ ଆଡ଼ିଶ୍ନଇଜର ମିଷ୍ଟର ମାର୍‌ଉଡ଼ ଓ ମିଷ୍ଟର ଗୋଖଲେଙ୍କ ଚିଠି

ଆସୁଡ଼ାରେ ବେଶୀ କାମରେ ମାତିଲି ତାହା ଠିକ୍ କରି କହିପାରୁ ନାହିଁ । ସେତେବେଳେ ମୁଁ ଯାହା ପାଉଥିଲି ତାହାର ତିନିଗୁଣ ପାଇଲି ବେଳେ ମୁଁ କାମରେ ବୀତସ୍ପୃହ ହୋଇ ସ୍ବୀକାର ଛାଡ଼ି ଦେଇଥିଲି । ଯେଉଁ ସମୟର କଥା କହୁଛି ସେତେବେଳେ ଯାହା ମିଳୁଥିଲା ତା'ର ତିନିଭାଗରୁ ଭାଗେ ପାଇଲି ବେଳେ ମଧ୍ୟ ମୋର କାମରେ ଉତ୍ସାହ ଟିକିଏ ସୁଦ୍ଧା କମି ନ ଥିଲା । ଏହାର କାରଣ ବିଷୟରେ ମୁଁ ବହୁତ ଚିନ୍ତା କରିଛି, ଏ ପର୍ଯ୍ୟନ୍ତ ମଧ୍ୟ ଏ ସମୀକ୍ଷା କରିନାହିଁ । ମୋର ଦୃଢ଼ ବିଶ୍ୱାସ ନିଜ କର୍ତ୍ତବ୍ୟରେ ନିଷ୍ଠା ଓ ଉତ୍ସାହ କେତେ ଜଣ ଉଚ୍ଚ ଅଫିସରଙ୍କଠାରୁ ମୋ ଠାକୁ ସଂକ୍ରମିଥିଲା ଓ ସେମାନଙ୍କର ପ୍ରୋତ୍ସାହନରେ ମୁଁ ଉତ୍ସାହିତ ହୋଇଥିଲି ।

ଆଜି ଶେଷାବସ୍ଥାରେ ମନେ ପଡ଼ୁଛି ମୋତେ ସରକାରୀ କାର୍ଯ୍ୟରେ ଯେଉଁମାନେ ମତେଇ ଦେଇଥିଲେ ତାଙ୍କ ଭିତରେ ପ୍ରଥମ ସାର୍ ହ୍ୱଥର୍ଣ୍ଣ ଲୁଇସ୍ । ତା' ତଳକୁ ଚିଫ୍ ସେକ୍ରେଟାରୀ ମିଷ୍ଟର ବୋଷ୍ଟେଡ଼୍, ମିଷ୍ଟର ହ୍ୱିଲିୟମସ୍ , ମିଷ୍ଟର ମାର୍ ଓ ଶ୍ରୀଯୁକ୍ତ ଭବାନୀ ଚରଣ ମୁଖାର୍ଜୀ ଏଇମାନଙ୍କ ପଦାନୁସରଣ କରି ମୁଁ ମୋ କାର୍ଯ୍ୟରେ ଲାଗିଲି । ମୋତେ ରାଜନୀତିକ ବାଟ ଦେଖାଇବା ଲୋକଙ୍କ ସଂଖ୍ୟା ବହୁତ । ସ୍ବୀକାର କରିବା ମାନେ ମୁଁ ରାଜନୀତିକ ନେତାମାନଙ୍କୁ ବାକ୍ସରେ ତାଲା ପକାଇ ଦେଇ ସଚିବାଳୟର ଶ୍ରେଷ୍ଠମାନଙ୍କ ଆଡ଼େ ସବୁବେଳେ ଆଖି ପକାଇଲି ଏବଂ ଉଚ୍ଚ ଅଫିସରମାନଙ୍କର ସହାନୁଭୂତି ଓ ସହଯୋଗ ଯୋଗୁଁ ମୋର କାର୍ଯ୍ୟରେ ଅଗ୍ରସର ହେଲି । ମୋର ଗୁରୁ ଓ ପଥ ପ୍ରଦର୍ଶକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଶ୍ରୀ ହ୍ୱଥର୍ଣ୍ଣ ଲୁଇସ୍ଙ୍କ ପ୍ରତି ମୁଁ ଏତେ ଆକୃଷ୍ଟ ହୋଇଗଲି ଯେ, ତାଙ୍କୁ ଦେଖିଦେଲେ ମୋର ମନେହୁଏ ସେ ମୋଠାରୁ ଆମ ବିଭାଗର କୌଣସି ଗୋଟିଏ ଯୋଜନା କାମନା କରୁଛନ୍ତି ।

ଯେଉଁ ଦିନ କାର୍ଯ୍ୟରେ ଯୋଗ ଦେଲି ସେଦିନ ଚିଫ୍ ସେକ୍ରେଟାରୀ ମିଷ୍ଟର ବୋଷ୍ଟେଡ଼୍ ମୋତେ କହିଥିଲେ, ପ୍ରଚାର ବିଭାଗରେ କ'ଣ କ'ଣ କରାଯିବ ତାହାର ପରାମର୍ଶ କ୍ରମେ କ୍ରମେ ଆଡ଼୍ ସରକାରକୁ ଦେବ । ସାର୍ ହ୍ୱଥର୍ଣ୍ଣ ଲୁଇସ୍ଙ୍କ ଆଖିରେ ଥାଉ ଗୋଟିଏ ପ୍ରଭାବ । ତାହିଁରୁ ଆଦେଶ ବାହାରେ, "ତୁମ ବିଭାଗରେ କ'ଣ କରିବା କାଲି ବିଳମ୍ବ ନ କରି କହ ।" ଆଜି ମନେ ପଡୁଛି, ଥରେ ତାଙ୍କ ସଙ୍ଗେ ବସି କଥାବାର୍ତ୍ତା ହେଲାବେଳେ କହିହୋଇଗଲା, 'ଆମେ ଖଣ୍ଡିଏ ଇଂରେଜୀ ଓ ଖଣ୍ଡିଏ ଓଡ଼ିଆ ସାମୟିକ ପତ୍ର (ପାକ୍ଷିକ) ପ୍ରକାଶ କରିବା ?' ସ୍ୱୀପରେ ପାଞ୍ଚମିନିଟ୍ ମୁଁ ତାଙ୍କ ପାଖେ ରହିଲି । ଆଦେଶ ପେଇକରି ଘରକୁ ଆସିଲି, 'କାଲି ମଧ୍ୟାହ୍ନ ଭୋଜନ ପୂର୍ବରୁ ପତ୍ରିକା ଯୋଡ଼ିକରେ କ'ଣ ବାହାରିବ, କେତେ ପୃଷ୍ଠା ହେବ, ମୋଟ ଖର୍ଚ୍ଚ କେତେ ହେବ ଏହାର ସବିଶେଷ ବିବରଣ ହିସାବ ସହିତ ନୋଟ୍ ସିଟ୍ରେ ଟାଇପ କରାଇ ଆଣିଥିବ ।' କେତେ ଅଳ୍ପ ସମୟ ଭିତରେ ସେ ଯୋଜନା ମଞ୍ଜୁର ହେଲା, ସରକାରୀ ପ୍ରେସ୍ରେ ଓଡ଼ିଶା ରିଭିଉ Orissa Review) ଓ ଗୋଟିଏ ବାହାର ପ୍ରେସ୍ରେ ଉତ୍କଳ ପ୍ରସଙ୍ଗ ଛପାହୋଇ ଗୁଡ଼ିଏ ଗ୍ରାହକଙ୍କର ରେଜିଷ୍ଟର ତିଆର ହେଲା, ତାହା ଆଜି ମନେ ପଡ଼ି ଯାଉଛି । ପ୍ରକୃତ ଆତ୍ମସନ୍ତୋଷ ହୁଏ ଯେ, ସେତେବେଳେ ପ୍ରକୃତ କାମ

ହେଉଥିଲା ; କାମଟି ହୋଇଗଲେ ଉପରସ୍ଥ ହାକିମ ମନ୍ତ୍ରୀ ପ୍ରଭୃତିଙ୍କ ମୁହଁରେ ଯେଉଁ ସନ୍ତୋଷର ଚିହ୍ନ ଦେଖାଯାଏ ତାହା ସେବକଙ୍କୁ ଆହୁରି ଲାଗିବା ନିମନ୍ତେ ଉତ୍ସାହ ଦିଏ । ତା'ର ବର୍ତ୍ତମାନ ହୋଇଯାଇଛି ଅଭାବ । ସେ ଅଭାବର ସ୍ଥାନ ପୂରଣ କରିବା ନିମନ୍ତେ ଧନର ପ୍ରଲୋଭନ ଯଥେଷ୍ଟ ହେଉନାହିଁ । ବଡ଼ ହାକିମମାନେ ନାନା ଉପାୟରେ ଏତେ ଗୁଡ଼ାଏ ଧନ ଏକାଠି ଜମାକରି ଦେଉଛନ୍ତି ଯେ କ୍ଷୁଦ୍ରସ୍ତରୀ ସହକର୍ମୀଙ୍କ ଦୃଷ୍ଟିରେ ଧନ ତୁଚ୍ଛ ହୋଇଯାଉଛି । ଅନାୟାସରେ ବା ଅଳ୍ପାୟାସରେ ଧନ ଠକି ଦେବା କିମ୍ବା ଠକି ନେବା ବା ଡକାୟତି କରିବା ଏତେ ସହଜ ହୋଇଯାଇଛି ଲକ୍ଷ୍ମୀଙ୍କର ଆଉ ଲାବଣ୍ୟ ନାହିଁ । ସେତେବେଳେ ବିଶେଷ କୌଣସି ଲୋଭ ନ ଥାଇ କେବଳ ନିଜ ଇଜ୍ଜତ ବଢ଼ାଇବାକୁ କର୍ମଚାରୀମାନେ ବହୁତ ଖାଟୁଥିଲେ ।

ଗୁରି ପାଞ୍ଚ ସଂଖ୍ୟା ଓଡ଼ିଶା ରିଭିଉ ବାହାରିବା ପରେ ମୋର ମନ ହେଲା ବେନାମୀ ପ୍ରବନ୍ଧ ଗୋଟାଏ ଗୋଟାଏ ମଝିରେ ଛାପେଇବା । ସର୍ବପ୍ରଥମ ପ୍ରବନ୍ଧଟି ଲୁଇସ୍ ସାହେବଙ୍କ ନଜରରେ ପଡ଼ିବା ମାତ୍ରେ ସେ ଗୁରୁ'ର ଗୋଟିଏ ନିମନ୍ତ୍ରଣ ପତ୍ର ପଠାଇଦେଲେ, ତାଙ୍କର ଅତି ମାମୁଲି ଗୃହ ଭିତରେ ସାମ୍ବାଦିକତା ବିଷୟରେ ବଡ଼ ଜଟିଳ ପ୍ରଶ୍ନର ଆଲୋଚନା ହେଲା । ଠାଏ ରହସ୍ୟରେ ମୁଁ କହି ଦେଇଥିଲି ଆମ ଲାଟ ସାହେବ ସିଭିଲ ସର୍ଭିସରେ ନ ପଶି ସାମ୍ବାଦିକତାରେ ପଶିଥିଲେ ଭଲ ସମ୍ପାଦକ ହୋଇଥାନ୍ତେ ।

ଏ କଥା ତାଙ୍କ ନିଜ ମାର୍ଗରେ ତାଙ୍କ କାନକୁ ଯାଇଲାଗିଲା । ସେଦିନ ବିଶ୍ୟାକୁ ବିଲାତରେ କେତେଟା ବଡ଼ ବଡ଼ କାଗଜ ଓ ସମ୍ପାଦକଙ୍କର ନାମ ମୋର ମନେଥାଏ । ନ ହେଲେ ସେଦିନର ଗୁରୁ'ଟା ଅତି ମାମୁଲି ହୋଇଯାଇଥାନ୍ତା । ଏହି ବେନାମୀ ଲେଖାମାନଙ୍କ ଯୋଗୁଁ କାଗଜ ଦୁଇଟିର ମର୍ଯ୍ୟାଦା ବହୁତ ବଢ଼ିଗଲା ।

ରାଜ୍ୟର ବିଭିନ୍ନ କେନ୍ଦ୍ରରେ ପ୍ରଦର୍ଶନୀର ଗୋଟିଏ ଯୋଜନା ମୁଁ କଲି, ଆଗ ତାଙ୍କ ସଙ୍ଗେ ଆଲୋଚନା କରି । ଏହା ଆଗ୍ରହରେ ଗୃହୀତ ହେଲା । ରାଜ୍ୟ ବଜେଟରେ ଧନ ଗୁରେଟି ଡିପାର୍ଟମେଣ୍ଟରେ ପ୍ରଦର୍ଶନୀ ପାଇଁ ବ୍ୟବସ୍ଥା ଥିଲା । କୃଷି, ଗୋପାଳନ, ଶିଳ୍ପ ପ୍ରଭୃତି ବିଭାଗର ପ୍ରଦର୍ଶନୀ ସେହି ସେହି ବିଭାଗ ବଡ଼ ମାମୁଲି ଭାବରେ ନିଜେ ନିଜେ କରୁଥିଲେ । ମୁଁ ପ୍ରସ୍ତାବ କଲି, ଏସବୁ ନିୟମିତ ଭାବରେ ପ୍ରଚୁର ବିଜ୍ଞାନ ଜରିଆରେ ପ୍ରବର୍ତ୍ତିତ ହେଉ । ଲାଟ ସାହେବ ବଡ଼ ଆଗ୍ରହର ସହିତ ଏ ପ୍ରସ୍ତାବ ଗ୍ରହଣ କଲେ । ପ୍ରଥମ ପ୍ରଦର୍ଶନୀ ହେଲା ବାରବାଟି ପଡ଼ିଆରେ, ଏବେ ଯେଉଁଠି ଷ୍ଟେଡ଼ିୟମ ହୋଇଛି । ତାହା ସେତେବେଳେ ଏକ ପ୍ରକାଣ୍ଡ ପଡ଼ିଆ ଥାଏ । ସେଇଥିରେ ଏ ପ୍ରଦର୍ଶନୀ ହେଲା ଏବଂ ଅତି ଲୋକପ୍ରିୟ ହୋଇଥିଲା । ଏ ଗୋଟାଏ ନୂଆ ବାଲିଯାତ୍ରା ବୋଲି ଲୋକେ କୁହାକୁହି ହେଉଥିଲେ । ବିଭିନ୍ନ ବିଭାଗର କାର୍ଯ୍ୟାବଳୀ ବିଷୟରେ ପ୍ରତ୍ୟେକ ଅଭିଜ୍ଞ ଲୋକମାନେ ବକ୍ତୃତା ଦେଉଥିଲେ ଏବଂ ବିଭିନ୍ନ ବିଭାଗର ବହୁ ଉପାଦେୟ ପ୍ରଚୁର ପତ୍ର ବଣ୍ଟା ହେଉଥିଲା । ଲାଟ ସାହେବ ଗୋଟିଏ ଫାଇଲରେ ଲେଖିଲେ, ଏହିପରି ପ୍ରଦର୍ଶନୀ ବିଭିନ୍ନ ଜିଲ୍ଲାରେ ହେଲେ ସରକାର

ଲୋକଙ୍କର ନିକଟବର୍ତ୍ତୀ ହୋଇପାରିବ ଏବଂ ଜନସାଧାରଣ ସରକାରୀ କାର୍ଯ୍ୟର ସମୀକ୍ଷା କରିବାକୁ ସମର୍ଥ ହୋଇ ସହଯୋଗ କରିବାକୁ ପ୍ରବୃତ୍ତ ହେବେ ।

ପ୍ରତି ପନ୍ଦର ଦିନରେ ବିଭାଗୀୟ ମୁଖ୍ୟମାନଙ୍କର ଗୋଟିଏ ବୈଠକ ସେକ୍ରେଟାରି-ଏଟରେ ବସିଲା ଏବଂ ସେଥିରେ ବିଭାଗୀୟ ମୁଖ୍ୟମାନେ ତାଙ୍କ ଡିପାର୍ଟମେଣ୍ଟମାନଙ୍କର କାର୍ଯ୍ୟ ବିଷୟରେ ଆଲୋଚନା କଲେ । ମୁଁ ମଧ୍ୟ ନିୟମିତ ଭାବରେ ସେକ୍ରେଟାରି ଓ ଡିରେକ୍ଟର-ମାନଙ୍କ ସଙ୍ଗେ କଥାବାର୍ତ୍ତା କରି ପ୍ରତ୍ୟେକ ଡିପାର୍ଟମେଣ୍ଟର କାର୍ଯ୍ୟ ବିଷୟରେ ଷାଣ୍ମାସିକ ପ୍ରଚାର ପୁସ୍ତିକା ଖଣ୍ଡିଏ ଖଣ୍ଡିଏ ପ୍ରଚାର ବିଭାଗ ପକ୍ଷରୁ ପ୍ରକାଶ କଲି । ଏ ପର୍ଯ୍ୟନ୍ତ ପ୍ରଚାର ବିଭାଗ ସ୍ୱରାଷ୍ଟ୍ର (Home) ଡିପାର୍ଟମେଣ୍ଟର ଗୋଟିଏ ଅଙ୍ଗ ହୋଇ ଥାଏ ।

ଏହି ସମୟରେ ପ୍ରତି ଜିଲ୍ଲାରେ ସରକାରଙ୍କ ପକ୍ଷରୁ ଗୋଟିଏ ଗୋଟିଏ ଲାଇବ୍ରେରୀ ସ୍ଥାପିତ ହେଲା ; ପ୍ରତି ବର୍ଷ ଦେଶ ବିଦେଶରେ ପ୍ରକାଶିତ ଭଲ ଭଲ ପୁସ୍ତକ ବାଛି ଏ ଲାଇବ୍ରେରୀକୁ ଆଣିବା ନିମନ୍ତେ ବ୍ୟବସ୍ଥା ହେଲା ।

## ଶ୍ରୀ ଓ ଶ୍ରୀମତୀ ଓଝା :

ଅଳ୍ପ କିଛି ଦିନ ପାଇଁ ଶ୍ରୀଯୁକ୍ତ ଓଝା ବୋଲି ଜଣେ ବିହାରୀ ସିଭିଲିଆନ ପବ୍ଲିସିଟି ଅଫିସର ହୋଇ ଆସିଥିଲେ । ବିଶେଷ କାର୍ଯ୍ୟଦକ୍ଷ ବୋଲି କହିପାରୁନାହିଁ, କିନ୍ତୁ ବଡ଼ ପଣ୍ଡିତ । ତାଙ୍କର ପିତୃ ପିତାମହ ଭାରି ସଂସ୍କୃତଜ୍ଞ ଥିଲେ । ସେମାନଙ୍କର ପ୍ରଭାବରେ ପ୍ରାଚୀନ ସଂସ୍କୃତ ବିଷୟରେ ତାଙ୍କର ବିଶେଷ ପରିଚୟ ଥିଲା । ଇଂରେଜୀ ସାହିତ୍ୟ ବ୍ୟତୀତ ଫ୍ରେଞ୍ଚ ଓ ଜର୍ମାନ ସାହିତ୍ୟରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ସରକାରୀ ଲାଇବ୍ରେରୀମାନଙ୍କର କ୍ୟାଟେଲଗ୍ ତିଆରି କରିବାରେ ସେ ଯେଉଁ ସାହାଯ୍ୟ କରିଥିଲେ ତାହା ଆଉ କେହି କରି ପାରିଥାନ୍ତେ ବୋଲି ମୋତେ ଲାଗୁନାହିଁ ।

ତାଙ୍କ ସ୍ତ୍ରୀ ମଧ୍ୟ ଜଣେ ବିଦୁଷୀ ଥିଲେ । ତାଙ୍କରି ସାଙ୍ଗରେ ବସି କଥାବାର୍ତ୍ତା ହେବାରେ ମୁଁ ରାମାୟଣ ଓ ମହାଭାରତ ଭିତରେ ପଶି ପାରିଥିଲି । ମୋର ଖୁବ୍ ଅଳ୍ପ ବୟସରେ ପିତୃ ବିୟୋଗ ହୋଇଥିଲା । ହେଉ ପାଇଲା ଦିନୁ ମୋ ପିତାଙ୍କଠାରୁ ସବୁବେଳେ ମୁଁ ରାମାୟଣ ମହାଭାରତ ବିଷୟ ଶୁଣେ, କିନ୍ତୁ ବାଲ୍ୟାବସ୍ଥା ଯୋଗୁଁ ତାହାର ମର୍ମ ମୁଁ ଭଲକରି ହୃଦୟଙ୍ଗମ କରିପାରି ନ ଥିଲି । ଶ୍ରୀମତୀ ଓଝା ମୋଠାରୁ ଅନ୍ତତଃ ଦଶବର୍ଷ ସାନ ହେଲେହେଁ ସେ ମୋର ଯେତେ ଉପକାର କରିଛନ୍ତି ପଣ୍ଡିତ ନୀଳକଣ୍ଠଙ୍କ ବ୍ୟତୀତ ଆଉ କେହି ଜଣେ ଆଗରୁ ସେତେ କରିଥିଲେ ବୋଲି ମନେ ହେଉନାହିଁ । ବହୁ ବାର ନିଜ ମନରେ ଭାବିଛି, ଅବଶ୍ୟ କାହାକୁ କହିନାହିଁ ଯେ ଶ୍ରୀମତୀ ଓଝାଙ୍କ ତୁଳନାରେ ପଣ୍ଡିତ ନୀଳକଣ୍ଠଙ୍କ ପାଣ୍ଡିତ୍ୟ ଅଳ୍ପ ଗଭୀର । ଶ୍ରୀମତୀ ଓଝା ରାମାୟଣ ଓ ମହାଭାରତ ଗଳ୍ପ ଭିତରର ମର୍ମ ପ୍ରତି ମୋତେ ଯେପରି ଆକୃଷ୍ଟ କରିଥିଲେ ସେପରି କାହାରିକ ତାହିଁରୁ ବେଶୀ ଆକର୍ଷଣ ପରବର୍ତ୍ତୀ କାଳରେ ପୁରୀର ପ୍ରଧାନାଚାର୍ଯ୍ୟ ପଣ୍ଡିତ ଆନନ୍ଦ ମିଶ୍ରଙ୍କଠାରୁ ପାଇଛି । ସେ ତ ଏକ

ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ମୋତେ କାଳ ସହିଲେ ପରେ ତାଙ୍କ ବିଷୟ ଯଥା ସ୍ଥାନରେ ଉଲ୍ଲେଖ କରିବି ।

ଦିନେ ଛାଡ଼ି ଦିନେ, ଅନ୍ତତଃ ହପ୍ତାକେ ଦୁଇ ଥର ମୁଁ ମିଷ୍ଟର ଓଝାଙ୍କ ଘରକୁ ଯାଏ ଏବଂ ଶ୍ରୀମତୀ ଓଝାଙ୍କଠାରୁ ରାମାୟଣ, ମହାଭାରତ ଶୁଣେ ; ଅବଶ୍ୟ ଦିନେ ଦିନେ ଶ୍ରୀଯୁକ୍ତ ଓଝା ତାଙ୍କ ପାଠ (ଇଂରେଜୀ ଓ ଫ୍ରେଞ୍ଚ ଇତ୍ୟାଦି) ବିଷୟରେ କହିବା ଫଳରେ ଶ୍ରୀମତୀ ଓଝା ତାଙ୍କ ଉପରକୁ ଖୁଲିଯା'ନ୍ତି । ସେ ମନେ କରନ୍ତି, ବୈଦେଶିକ ସାହିତ୍ୟର ଆଲୋଚନାଦ୍ୱାରା ସମୟ ନଷ୍ଟ ହୁଏ । ଅନେକ ସମୟରେ ଶ୍ରୀମତୀଙ୍କ କଥା ପ୍ରତି ମୋର ସମର୍ଥନ ଥିଲେ ବି ମୁଁ ଭଦ୍ରତା ଖାତିରରେ ଓ ମୋ ହାକିମଙ୍କ ପ୍ରତି ସମ୍ଭ୍ରମ ଯୋଗୁଁ ମୁଣ୍ଡ କି ମୁଣ୍ଡ କି ହସି ମୋ କର୍ତ୍ତବ୍ୟ ସମାପନ କରିଦିଏ ।

ଦିନେ ଓପରଓଲା ଅଫିସରେ ଗୋଟିଏ ଗୋପନୀୟ କଥା କହି ଶ୍ରୀଯୁକ୍ତ ଓଝା ମୋର ଏ ସୌଭାଗ୍ୟର ଇତି କରିଦେଲେ । ତାଙ୍କ ଦରଜା ମୋର ଏପରି ବନ୍ଦ ହୋଇଗଲା ଯେ ସେ ଦୁହେଁ ଚିରକାଳ ପାଇଁ କଟକ ଛାଡ଼ିଲା ଦିନ ବି ମୁଁ ତାଙ୍କୁ ବିଦାୟ ଦେବାକୁ ଷ୍ଟେସନକୁ ଯାଇ ପାରିଲି ନାହିଁ ।

ସେଦିନ ମୁଁ ମିଷ୍ଟର ଓଝାଙ୍କଠାରୁ ଶୁଣିଲି, ତହିଁ ପୂର୍ବଦିନ (ରବିବାର) ସକାଳେ ତାଙ୍କ ଘରେ ଗୋଟାଏ ବିପ୍ଳବ ହୋଇ ଯାଇଛି । ଶ୍ରୀମତୀ ଓଝା ଚଟି ଯାଇ ତାଙ୍କ ବୈଠକ-ଖାନାର ତିନୋଟି ସୋଫା ଓ ଗଦି ଚୌକି ସେଣ୍ଟ୍ରୋଲ ଅଜାଡି ପୋଡ଼ି ଦେଇଛନ୍ତି ଓ କୌଣସି ବନ୍ଧୁଙ୍କୁ ଘରକୁ ନ ଡାକିବାକୁ ହୁକୁମ ଦେଇଛନ୍ତି । ଦୋଷୀଙ୍କ ଭିତରେ ମୁଁ ଉଚ୍ଚ ଆସନ ପାଇଛି ଓ ମିଥ୍ୟାବାଦୀ ବୋଲି ବିଶେଷଣରେ ବିଭୂଷିତ ହୋଇଛି ।

ମୁଁ ଅତି ବିବ୍ରତ ହୋଇ ଯାଇଥିଲି । ସବୁ ଶୁଣିବା ପରେ ହସିବି କି କାନ୍ଦିବି ସ୍ଥିର କରି ପାରିଲି ନାହିଁ । ମୁଁ ମୋର କେତେଜଣ କଂଗ୍ରେସୀ ବନ୍ଧୁଙ୍କଠାରୁ ରାଜନୀତିକ ସଙ୍ଗୀତ ସଂଗ୍ରହ କରି ତାକୁ ଛପାଇ ମଫସଲରେ ବାଣ୍ଟିବାର ଆରମ୍ଭ କରିଥିଲି । ତା' ଭିତରେ ଆମର ଜଣେ କଂଗ୍ରେସ ସହଯୋଗିନୀ ଥା'ନ୍ତି । ସାମାନ୍ୟ ପାରିଶ୍ରମିକ ଦେଇ ଏମାନଙ୍କୁ ମୁଁ କାମରେ ଲଗାଇଥାଏ । ପ୍ରାୟ କେହି ନିଜ ନାମରେ ରସିଦ ଦେଇ ଟଙ୍କା ନିଅନ୍ତି ନାହିଁ । ପ୍ରକୃତ ନାମ ଅଲଗା ଫାଇଲରେ ଥାଏ ଏବଂ ନିୟମିତଭାବେ ଚିଫ୍ ସେକ୍ରେଟାରୀଙ୍କ ପାଖକୁ ଫାଇଲ୍ ଯାଏ । ବେଳେ ବେଳେ ଚିଫ୍ ସେକ୍ରେଟାରୀ ଏହାକୁ ଲାଟ ସାହେବଙ୍କ ପାଖକୁ ପଠାନ୍ତି । ଏହି କବିଙ୍କ ଭିତରେ ଜଣେ ଦି' ଜଣ ଖ୍ୟାତନାମା ନେତା ମଧ୍ୟ ଥା'ନ୍ତି ।

ବିପ୍ଳବ ଘଟିଥିଲା ଜଣେ ନାରୀ କବିଙ୍କ ଯୋଗୁଁ ; ସେ ଅନେକ ସମୟରେ ମୋ ଅଫିସକୁ ଆସନ୍ତି ଓ ମୁଁ ନ ଥିବା ବେଳେ ମୋ ଚଉକିରେ ବସି ସରକାରୀ କାଗଜରେ ମନଇଚ୍ଛା ଲେଖାଲେଖି କରନ୍ତି । ଚିଫ୍ ସେକ୍ରେଟାରୀଙ୍କ ନଜରରେ ସେ ମୋ ଅଫିସ ଅଧିକାର କରି ଥିବାର ପଡ଼ିଥିଲା । ଚିଫ୍ ସେକ୍ରେଟାରୀ ମୋତେ ଡକାଇ ପଚାରିଲେ, "ତୁମ ଜାଗାରେ ତୁମେ

ଜଣେ ଉତ୍ତରାଧିକାରଣୀ ନିଯୁକ୍ତ କରିଥିବାର ଦେଖିଲି, ସରକାରଙ୍କ ବିନା ଅନୁମତିରେ ଏହା କରିବା ଆଇନ୍‌ସମ୍ମତ ନୁହେଁ । ତୁମେ ଅନୁମତି ଲୋଡ଼ିଥିଲେ ତ କାଗଜ ସର୍ବପ୍ରଥମେ ମୋ ଟେବୁଲକୁ ଆସିଥାନ୍ତା ।" ମୁଁ ତଟସ୍ଥ ହୋଇ ଯାଇଥିଲି । ପରେ ତାଙ୍କର ମୁହଁରେ ହସ ଦେଖି ପ୍ରକୃତିସ୍ଥ ହେଲି ଓ ତାଙ୍କୁ ଜଣାଇଦେଲି ଯେ ସେ ନିୟମିତ ଗୀତ ଲେଖି ପଇସା ନିଅନ୍ତି ; ଗୀତର ବିଷୟବସ୍ତୁର ସୂଚନା ପାଇଁ ଏବଂ ପଇସା ନେବାକୁ ମଝିରେ ମଝିରେ ଆସନ୍ତି । ସେ ସନ୍ତୁଷ୍ଟ ହୋଇଥିଲେ । ନିର୍ଦ୍ଦିଷ୍ଟ ସମୟରେ ଆସିବାକୁ ତାଙ୍କୁ ନିର୍ଦ୍ଦେଶ ଦେବାକୁ ଓ ସେ ଥିବାବେଳେ ନିଜର ଆସନ ନ ଛାଡ଼ିବାକୁ ମୋତେ ପରାମର୍ଶ ଦେଇଥିଲେ । ଏକଥା ତାଙ୍କୁ ମୁଁ ସୂଚାଇ ଦେବାରେ ତାଙ୍କର ମୋ ପାଖକୁ ଆସିବାର ଥର ବଢ଼ିଗଲା, ଏବଂ ଥରେ ଆସିଲେ ସେ ବହୁତ ସମୟ ରହି ଯାଉଥିଲେ । ମୋର କାମ ବାକିଆ ରହିଯାଏ, ମୁଁ ଘରେ ତାକୁ ତୁଲାଏ ।

ଶ୍ରୀମତୀ ଓଟ୍ସାଙ୍କ ଘରର ଏ ଅଗ୍ନି ଉତ୍ସବ କଥା ଚପରାସି ମହଲରେ ନାନା ରୂପେ ଚିତ୍ର ହୋଇ ବଡ଼ ଅଫିସରଙ୍କ ମହଲକୁ ଗଲା ଏବଂ ମୋର ବିପକ୍ଷ ରାଜନୈତିକ ମହଲରୁ ଚିଫ୍ ସେକ୍ରେଟାରୀଙ୍କ ପର୍ଯ୍ୟନ୍ତ ବି ଗଲା ବୋଲି ଶୁଣିଲି । ଦିନେ ଚିଫ୍ ସେକ୍ରେଟାରୀ ମିଷ୍ଟର ମାର୍ ମୋତେ ତାଙ୍କ କାମରାକୁ ଡକାଇ କହିଲେ, "ଯେଉଁ ମହିଳା ଜଣକ ପ୍ରାୟ ପ୍ରତ୍ୟେକ ଦିନ ତୁମ ଅଫିସକୁ ଆସି ବହୁ ସମୟ ନଷ୍ଟ କରୁଛନ୍ତି ସେ ସେକ୍ରେଟେରିଏଟ୍ ହତାକୁ ଆସିବା କେହି ପସନ୍ଦ କରୁନାହାନ୍ତି । ସେ ଯେଉଁ କାର୍ଯ୍ୟରେ ଆସୁଛନ୍ତି, ସେଥିପାଇଁ ଦରକାର ହେଲେ ସେ ତୁମ ବସାକୁ ଯାଇ ପାରନ୍ତି । ଆଉ ଯେପରି ଅଫିସକୁ ନ ଆସିବେ ସେ ଦିଗରେ ଦୃଷ୍ଟି ଦିଅ ।" ମୁଁ ହଁ କରି ଆସିଲି । ମୋ ଅଫିସରେ ଆସି ପହଞ୍ଚିଲା ବେଳକୁ ଭଦ୍ରମହିଳା ମୋ'ର କାମରାରେ ମୋ ଚଉକିରେ ବସିଛନ୍ତି । ମୁଁ ଦୁଇ ତିନି ମିନିଟ୍ ଠିଆ ହେଲା ପରେ ଉଠିଲେ । ସ୍ୱର ବିରକ୍ତ ଲାଗୁଥାଏ ।

ମୋ ସାମନା ଚୌକିକୁ ଆସି ଆରମ୍ଭ କଲେ ବେପାର । ପୁଳାଏ କାଗଜ ମୋ ଆଗରେ ଥୋଇ କହିଲେ, "ଏ ପାଞ୍ଚଟି ଗୀତପାଇଁ ମୋତେ ପଚିଶଟି ଟଙ୍କା ଦିଅ, ମୋର ଖୁବ ଦରକାର ଅଛି ।"

ମୋତେ ଗୋଟାଏ ବୁଦ୍ଧି ଦିଶିଗଲା । ମୁଁ କହିଲି, "ମୋତେ ଆଜି ସାହେବ ଏଇ ବିଷୟରେ ଡାକିଥିଲେ । ସେ ମୋତେ ଜଣାଇ ଦେଲେ ଯେ, ଆଜିଠାରୁ ପ୍ରଚାର ବିଭାଗରେ ଗୀତ ବହି ଛାପା ହେବ ନାହିଁ । ତେଣୁ ମୁଁ ଆଉ ରଖି ପାରିବି ନାହିଁ । ଆପଣ ଯା'ନ୍ତୁ ।"

ଭଦ୍ରମହିଳା ସହଜରେ ଛାଡ଼ିବାର ପାତ୍ର ନୁହନ୍ତି । ଗତ କାଲର ତାରିଖ ଦେଇ ରସିଦ ଦେବେ ବୋଲି ପ୍ରସ୍ତାବ କରି ତାଙ୍କର ନିତାନ୍ତ ଟଙ୍କା ଦରକାର ବୋଲି କଟାଳ କରି ବସିଲେ । ଟଙ୍କା କେତୋଟି ଦେଲି ଏବଂ ଏହା ମୁଁ ହାତରୁ ଦେଉଛି ବୋଲି କହି ଆଉ ଆସିବେ ନାହିଁ ବୋଲି କହିଲି । ଏହାଙ୍କ ଯୋଗୁଁ ପ୍ରଚାର ବିଭାଗରେ ସଙ୍ଗୀତ ପୁସ୍ତିକା ପ୍ରକାଶ

ବନ୍ଦ ହେଲା ବୋଲି କହିଲେ ଚଳେ । ଏହା ପରେ ବର୍ଷେ ପାଇଁ, ଦାସକାଠିଆ ବାଲାଙ୍କ ସାହାଯ୍ୟରେ କିଛି ଦିନ ପ୍ରଚାର ହେଲା । ଏହା ବେଶ୍ ଲୋକପ୍ରିୟ ହୋଇଥିଲା ।

ଶ୍ରୀମତୀଙ୍କ ବିଷୟରେ ଯେଉଁ ଦୁର୍ନାମ ବ୍ୟାପିଲା ଏବଂ ସ୍ୱାମୀ ବିରୁଦ୍ଧରେ ସେ ଯେଉଁ ପ୍ରତିକ୍ରିୟା କଲେ ତା ଫଳରେ ନା ଆଉ କ'ଣ ପାଇଁ କେଜାଣି, ମିଷ୍ଟର ଓ୍ୱାଟ୍ ଅତି ଅଳ୍ପ ସମୟ ମଧ୍ୟରେ ସେକ୍ରେଟେରିଏଟ୍‌ରୁ ବଦଳି ହୋଇ ବାଲେଶ୍ୱର ଗଲେ ଜିଲ୍ଲା ମାଜିଷ୍ଟ୍ରେଟ ହୋଇ । ସେଠାରେ ମାତ୍ର ତିନି ଚାରି ମାସ ରହିବା ପରେ ଦିନେ ଶିକାର କରି ଯାଇ ଆପଣା ବନ୍ଧୁକ ଦୁର୍ଘଟଣାରେ ପ୍ରାଣ ହରାଇଲେ । ସେ ଥିଲେ ଜଣେ ଉପର ଠାଉରିଆ ଅଫିସର । ସେ କାଳର ଗିସ୍ତାନ ସମସ୍ତରେ ସେ ନିଜ କର୍ତ୍ତବ୍ୟରେ ନିଷ୍ଠା ନ ରଖି ଖୁସିବାସିରେ ଚଳୁଥିଲେ । ତାଙ୍କର ମନ ଥିଲା ସମ୍ପୂର୍ଣ୍ଣ ରୂପେ ତାଙ୍କ ସ୍ୱାର୍ଥ ଓ ସୁଖରେ ।

ତାଙ୍କ ପରେ ଜିଲ୍ଲା ମାଜିଷ୍ଟ୍ରେଟ ହୋଇ ଗଲେ ମ୍ୟାକ୍‌ଡୋନାଲ୍ଡ୍ ସାହେବ । ସେ ଅବିବାହିତ । ନିଜ କର୍ତ୍ତବ୍ୟ ବ୍ୟତୀତ ଅନ୍ୟ କୌଣସିଥିରେ ତାଙ୍କର ତିଳେମାତ୍ର ଦୃଷ୍ଟି ନ ଥାଏ । ତାଙ୍କୁ ପ୍ରଥମେ ଦେଖିଥିଲି ଖୋର୍ଦ୍ଧାର ସବ୍‌ଡିଭିଜନ ମାଜିଷ୍ଟ୍ରେଟ ଭାବେ । ଦୁଇ ତିନିବର୍ଷ ଆଉ ଦୁଇ ତିନୋଟି ଜାଗାକୁ ଯାଇ ସେ ଆସିଲେ ମୂଳ ସେଟ୍‌ଲମେଣ୍ଟ୍ ଅଫିସର୍ ହୋଇ । ସେଥିରେ ସେ ଛ'ମାସ ଟିକିଏ ରହି ମୋତେ ତାଙ୍କ ଚାର୍ଜ ଦେଇ ଗଲେ ବାଲେଶ୍ୱର । ସେ କିପରି ନିରଳସ ଓ କର୍ତ୍ତବ୍ୟପରାୟଣ ଅଫିସର ଥିଲେ, ତାହାର ଗୋଟିଏ ଦୃଷ୍ଟାନ୍ତ ଏଠାରେ ଦେବି । ସେ ଦିନ ମୁଁ ଯାଇଥାଏ ଗସ୍ତରେ ବାଲେଶ୍ୱର । ରାତି ଭୋଜନକୁ ସେ ମୋତେ ନିମନ୍ତ୍ରଣ କଲେ । ତାଙ୍କ ଖାଇବା ଘରେ ଆମେ ବସିଛୁ, ଥାନାରୁ ଖବର ଆଣି ଜଣେ ପହଞ୍ଚିଲା, 'କଲିକତା ଆଡ଼େ ଯୋଡ଼ାଏ ଟ୍ରକ ଚାଉଳ ନେଇ ଯାଉଛି । ବୋଧହୁଏ ସୀମା ପାର ହୋଇ ଗଲାଣି । ତାକୁ ଜବତ୍ କରିବାକୁ ହେବ । ଜଣେ ମାଜିଷ୍ଟ୍ରେଟ ଦରକାର ।' ସେତେବେଳକୁ ପ୍ରାୟ ରାତି ଦଶଟା, ସାହେବ ଘଣ୍ଟାକୁ ଚାହିଁଲେ, କହିଲେ, 'ଏତେବେଳେ କାହାକୁ ପାଇବି । ମୁଁ ଗଲେ ହେବ ?'

ପୁଲିସ ସବ୍‌ଇନ୍‌ସ୍‌ପେକ୍ଟର ବିସ୍ମିତ ହେଲେ । ଟିକିଏ ମଟର ଆସିଲା । ମାଜିଷ୍ଟ୍ରେଟଙ୍କର ନିଜର ମଟର ନ ଥାଏ । ସେତେବେଳେ ଆଜିକାଲି ପରି ଜିପ୍ ହାଉଯାଉ ହେଉ ନ ଥାଏ । ପ୍ରାୟ ଦଶ ମିନିଟରେ ସବ୍‌ଇନ୍‌ସ୍‌ପେକ୍ଟର ଖଣ୍ଡେ ପ୍ରାଇଭେଟ ମଟର ଆଣିଲେ । ମୋର ଖାଇବା ପିଇବା ବିଷୟ ବୁଝିବାକୁ ଖାନସମାକୁ କହି ମୋଠାରୁ ବିଦାୟ ନେଇ ମ୍ୟାକ୍‌ଡୋନାଲ୍ଡ୍ ଖାଇବା ଟେବୁଲରୁ ଉଠିଗଲେ । ମୁଁ ସାଙ୍ଗରେ ଯିବାକୁ ବାହାରିବାରେ 'କାହିଁକି କଷ୍ଟ କରିବ' ବୋଲି ମୋତେ ନିବର୍ତ୍ତାଇଲେ । ମୁଁ ସର୍କିଟ ହାଉସକୁ ଆସିଲି, କିନ୍ତୁ ଆଉ ନିଦ ହେଲା ନାହିଁ । ପ୍ରାୟ ୪ଟା ବେଳେ ମ୍ୟାକ୍‌ଡୋନାଲ୍ଡ୍ ମୋ ପାଖକୁ ଆସିଲେ ଓ ଅଧଘଣ୍ଟାରେ ନିଜ କୋଠିକୁ ଗଲେ । ଦୁଇଟିଯାକ ଟ୍ରକ ଆସି ଥାନା ହତାରେ ରହିଲା ।

ତହିଁ ଆରଦିନ ସକାଳଓଳି ମୋର ନିକଟବର୍ତ୍ତୀ ଗୋଟିଏ ଗ୍ରାମକୁ ଯାଇ କଟକ ଫେରି-ଯିବାର କଥା ! ତା ନ କରି ମୁଁ ସେ'ପଟରେ ବାଲେଶ୍ୱର ଫେରି ଆସିଲି ଏ ଘଟଣାର ଶେଷ ଦେଖିବାକୁ । ମୁଁ ସାଢ଼େ ଏଗାରଟା ବେଳେ ଆସିଲା ବେଳକୁ ସବ୍‌ଡିଭିଜନ କୋର୍ଟରେ ମକଦ୍ଦମା ପଡ଼ିଛି, କଲ୍ଲା ମାଜିଷ୍ଟ୍ରେଟ ସାକ୍ଷ୍ୟ ଦେଉଛନ୍ତି । ଟ୍ରକ ମାଲିକ ଦୁଇଜଣଙ୍କୁ କିଛି କିଛି ଜୋରିମାନା ହେଲା ଓ ଚାଉଳ ସରକାରୀ ରେଟରେ ବିକ୍ରି ହୋଇ ଟ୍ରକ ମାଲିକଙ୍କୁ ଟଙ୍କା ଦିଆ ହୋଇଗଲା । ଓଡ଼ିଶା ସରକାର ଏ ଅସାଧାରଣ ନିଷ୍ପତ୍ତିକୁ ସ୍ୱୀକାର କରିଗଲେ । ପକ୍ଷ ଅପିଲ କରିଥିଲେ କ'ଣ ହୋଇଥା'ନ୍ତା କେଜାଣି ! ଏଭଳି ପରିଶ୍ରମ କରିବା ଓ ଗତାନୁଗତିକ ମାର୍ଗରୁ ଅଲଗା ମକଦ୍ଦମା ଫଇସଲା କରିବା ମୁଁ ଅନ୍ୟତ୍ର ଦେଖିନାହିଁ ।

ପାର୍ଲାଖେମୁଣ୍ଡି ମନ୍ତ୍ରୀମଣ୍ଡଳ ଭାଙ୍ଗି ଯାଇଥାଏ । ସରକାରଙ୍କ ପରାମର୍ଶଦାତା ହୋଇ ମାରିଉଡ଼ ସାହେବ ଓ ଗୋଖେଲ ସାହେବ ନିଯୁକ୍ତ ହୋଇଥାନ୍ତି । ମାରିଉଡ଼ ସାହେବଙ୍କର ଶ୍ରଦ୍ଧା ମୁଁ ଆଗରୁ ପାଇଥିଲି । ଗୋଖେଲ ସାହେବଙ୍କ ସଙ୍ଗେ ଅନ୍ତରଙ୍ଗତା ଅତି ଅଳ୍ପ ଦିନରେ ବଢ଼ିଗଲା । ମୋ ସାହାଯ୍ୟରେ ବର୍ତ୍ତମାନର ଭାରତୀୟ ମନ୍ତ୍ରୀ, ଓଡ଼ିଶାର ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କର କିଛି ଉପକାର ହୋଇଥିଲା । ଗୋଟିଏ ବିଷୟ ମନେ ପଡ଼ୁଛି ଲେଖି ଦେଉଥାଏଁ । ଲାଟ ଶାସନ ସମୟରେ ମୋର ମାନନୀୟ ଅଧ୍ୟାପକ ଓ ହିତୈଷୀ ପରିଜା ସାହେବ କୃଷି ବିଭାଗର ଡିରେକ୍ଟର ହୋଇ ଆସିଲେ । ଦିନେ ବିଜୁବାବୁ ଆସିଲେ ସେ ତାଙ୍କୁ ଗୁରୁଜନ ଦୃଷ୍ଟିରେ ଅଭ୍ୟର୍ଥନା ନ କରି ସାହେବ ଭଙ୍ଗୀରେ କରି ତାଙ୍କୁ ବିଗାଡ଼ି ଦେଲେ । ତା'ପରେ ମୋ ପାଖକୁ ଆସିଲେ । ମୋତେ ନାନା କଥା କହି ଚୌଦ୍ୱାର ଲୁଗାକଳର ଟିକିଏ ଅଭିବୃଦ୍ଧି କରିବାପାଇଁ ସାହାଯ୍ୟ କରିବାକୁ କହିଲେ । ମୁଁ ସାଙ୍ଗେ ସାଙ୍ଗେ ଗୋଖେଲ ସାହେବଙ୍କ ପାଖକୁ ଗଲି । ମୋ'ର ଅନୁମତି ପତ୍ର ନେବା ଦରକାର ହୁଏ ନାହିଁ । ମୁଁ ଗୋଖେଲ ସାହେବଙ୍କ ଘର ଭିତରେ ପଶିଲା ବେଳକୁ ପରିଜା ସାହେବ ତାଙ୍କ ପାଖରେ ବସି ଦୁଃଖ ସୁଖ ହେଉଥା'ନ୍ତି । ବିଜୁବାବୁ ତାଙ୍କୁ ଦେଇଥିବା ଅପମାନର ସବିସ୍ତାର ଚର୍ଚ୍ଚା ହେଉଥାଏ । ମୁଁ ପଶିବା ମାତ୍ରେ ଗୋଖେଲ ସାହେବ ମୋତେ ପଚାରିଲେ, ତମେ ବିଜୁ ପଟ୍ଟନାୟକଙ୍କୁ ଜାଣ ? ମୁଁ କହିଲି ଆଜ୍ଞା, ହଁ ! ତାଙ୍କୁ ଜାଣେ ତାଙ୍କ ବାପାଙ୍କୁ ମଧ୍ୟ ଜାଣେ । ସେ କିପରି ଲୋକ ? ମୁଁ କହିଲି,, "ତାଙ୍କ ବାପା ଥିଲେ ଭଦ୍ର, ଆମ୍ଭମାନଙ୍କର ଜଣେ ପୂଜ୍ୟ ବ୍ୟକ୍ତି । ଏ ମହାଶୟ ଜଣେ ଯନ୍ତ୍ରୀ, ପାଇଲଟ୍ । ପରିଡ଼ା ସାଙ୍ଗ ହେବା ଉଚିତ୍ । ଗୋଖେଲ ସାହେବ ପୂର୍ବେ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ଥିଲେ, 'ପାଇଲଟ୍' ତାଙ୍କୁ ନୂଆ ନୁହେଁ । ସେ ଖୁବ୍ ହସିଲେ ପରିଜା ମଧ୍ୟ ହସିଲେ ଓ ମୋତେ କହିଲେ, ଠିକ୍ ଠିକ୍, ତାଙ୍କର ଯନ୍ତ୍ରୀଙ୍କର ବୁଦ୍ଧି । ମୁଁ ଯୋଗେଇ ଦେଲି, ଯୋଗ୍ୟତା ମଧ୍ୟ । ସେଠାରୁ ପଡ଼ିଲା ଚୌଦ୍ୱାର ଲୁଗାକଳ କଥା । ଅତି ସହଜରେ ବିଜୁବାବୁଙ୍କର ୭୦ଟି ଯନ୍ତ୍ର ବଢ଼ିଗଲା ।

କେମ୍ପ ବୋଲି ଜଣେ ସାହେବ । ସେ ଉନ୍ନୟନ ବିଭାଗର ସେକ୍ରେଟାରୀ ଥାଆନ୍ତି । ଓଡ଼ିଶା ଶତାବ୍ଦୀରେ ଦେବା ନିମନ୍ତେ ତାଙ୍କ ଡିପାର୍ଟମେଣ୍ଟ ବିଷୟରେ ମୁଁ ଗୋଟିଏ ପ୍ରବନ୍ଧ ମାଗିଲି । ତହିଁ ଆଉ ଦିନ ଦରକାର । ତାଙ୍କ ହେଡ଼ ଆସିଷ୍ଟାଣ୍ଟ ନାହିଁ କରିଦେଲେ । ସାତ ଦିନ ପୂର୍ବରୁ ଏହା ହୋଇ ପାରିବ ନାହିଁ । ତିନି ଦିନରେ ନିତାନ୍ତ ଦରକାର ବୋଲି ମୁଁ କହିଲି । ସେ ମୁଣ୍ଡ ଟୁଙ୍ଗାରି ଦେଇ ମୋତେ ବିଦା କରିଦେଲେ । ୭୨ ଘଣ୍ଟା ହୋଇ ନାହିଁ, ମୋତେ ଲେଖା ମିଳିଲା, ଟାଇପ୍‌ରେ କୋଡ଼ିଏ ପୃଷ୍ଠା, ଖାଲି ଗୁଡ଼ାଏ ଅଙ୍କ ଟଙ୍କା ପଇସାର ହିସାବ । ସାହେବ ନିଜେ ଠିକ କଷି କରି ଦେଖି ଦେଇ ଥାଆନ୍ତି ।

ଇଂରେଜଙ୍କ ଅମଳରେ ଭାରତୀୟ ଅଫିସରମାନେ ମଧ୍ୟ କାର୍ଯ୍ୟରେ ଭାରି ସାବଧାନ ଓ ତତ୍ପର ଥାଆନ୍ତି, ରାୟ ବାହାଦୁର ସାମୁଏଲ ଦାସ ଓ ରାୟ ବାହାଦୁର ପଦ୍ମଚରଣ ଦାସ । ସାହେବମାନେ ବିଦା ହେବା ପରେ କାର୍ଯ୍ୟ ତତ୍ପରତା କୁଆଡ଼େ ଲିଭିଗଲା ବୋଲି ମୋର ବିଶ୍ୱାସ । ତାଙ୍କଠାରୁ ଦୀକ୍ଷା ନେଇ ଯେଉଁ ଗୁଣ୍ଡିକ ଥିଲେ, ସାମୁଏଲ ଦାସ ଓ ପଦ୍ମଚରଣ ଦାସଙ୍କ ପରି ସେମାନେ ଅବସର ନେବା ସଙ୍ଗେ ସଙ୍ଗେ ଅସଲ ସାହେବଙ୍କର ସ୍ମୃତି ମଧ୍ୟ ଲୋପ ହୋଇଗଲା । ଆଉ ରହିଲେ ଯେଉଁ ସାହେବ ସେମାନେ ସ୍ୱହିଁକରି ବସିଥିଲେ କମିତି ସାହେବ ଗଲେ ଶାସନ ଓଲଟ ପାଲଟ ହୋଇଗଲେ ସେମାନେ ପୋଷାକ ପତ୍ର ଦେଖାଇ ସାହେବ ହୁଅନ୍ତେ ଓ ସ୍ୱରାଜ୍ୟ କ୍ଷମତାର ଅପ-ପ୍ରୟୋଗ କରି ପଇସା ଲୁଣ୍ଠାଇ ମୋଗଲ ବାଦଶାହଙ୍କ ପରି ଅଇସ କରନ୍ତେ । ଏ ପନ୍ଥା ମଧ୍ୟ ଅବସର ନେଲେଣି । କିନ୍ତୁ ସ୍ୱାଙ୍କର ଅବସର ଅବସର ନୁହେଁ, କାରଣ ସ୍ୱାଙ୍କର ଉତ୍ତରାଧିକାରୀ ଅଛନ୍ତି । ସ୍ୱେ ମଧ୍ୟ ବଞ୍ଚି ଥିବା ଯାକ ଦ' ପଇସା କରୁଥିବା ବୋଲି ଦୀକ୍ଷା ନେଇଛନ୍ତି । ଯମ ଚୁଟି ଧରିବା ପର୍ଯ୍ୟନ୍ତ ଧନ ଚିନ୍ତା କରୁଥିବ "ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍," ଏଇ ଅର୍ଥ ଜଣେ କରୁଥିବାର ଶୁଣିଛୁ । ଏହି ଡ୍ରେଣୀୟ ସାହେବଙ୍କର ଉତ୍ତରାଧିକାରୀ ବର୍ତ୍ତମାନ ଆଇ. ଏ. ଏସ୍., ଆଇ. ପି. ଏସ୍., ମନ୍ତ୍ରୀ ଓ ଲୋକ ନାୟକ ।

ଏଇ ଲାଟ ଶାସନ ସମୟରେ (୧୯୪୫ରୁ କେତେବର୍ଷ) ଯେଉଁ ସାହେବମାନଙ୍କୁ ଦେଖି ମୋର ଆଦର୍ଶ ରୂପେ ଗ୍ରହଣ କରିଛୁ । ସେଥିରୁ ଗୋଟିଏ ଗୋଟିଏ ମନେ ପଡ଼ିଗଲେ ଆଜି ପଶ୍ଚାତ୍ତାପ ହେଉଛୁ । ସେତେବେଳେ ଜଣେ ଥାଆନ୍ତି କମିସନର । ତାଙ୍କ ନାମ ବିସ୍ମୃତ ହୋଇଛୁ । ତାଙ୍କର ଏକମାତ୍ର ପୁଅ ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଇ ଥାଏ । ସେ ସମ୍ବାଦ ଆସିବା ସମୟରେ ଦୈବାତ୍ ମୁଁ ତାଙ୍କ ପାଖରେ ଥିଲି । କୋଠିରେ ସେ ଓ ତାଙ୍କ ସ୍ତ୍ରୀ । ପୁତ୍ରଶୋକ କରିବାକୁ ତାଙ୍କୁ ଛାଡ଼ି ଦେଇ ମୁଁ ବିଦା ହୋଇ ଆସିଲି । ପୁଅ ମରିବାର ଦଶ ଦିନ ହୋଇ ଥାଏ । ଏଇ ସାହେବଙ୍କୁ ଦେଖିଲି ଅନୁଗୁଳ ରାସ୍ତାରେ । ରଥରେ ଯାଉଥାନ୍ତି । ଅନୁଗୁଳ ଆଉ ୫ ମାଇଲ ଥାଏ । ଗୋଟିଏ ଗଛମୂଳେ ଠିଆ ହୋଇଥାନ୍ତି । ସେତେବେଳେ ' ବାଜିବାକୁ ୧୫ ମିନିଟ୍ । ମୁଁ ଅଭିବାଦନ କଲାବେଳେ ମୋତେ କହିଲେ, "ମୋର [illegible]ଟା ବେଳେ ଅନୁଗୁଳ ସର୍କିଟ୍ ହାଉସରେ ପହଞ୍ଚିବା କଥା । କଣ ଗୋଟାଏ ଭାବ ଭାବ ଗାଡ଼ିଟା ଯୋଉରେ ଚଳାଇ ଆଣିଲି । ୧୧ଟା ପୂର୍ବରୁ ସର୍କିଟ ହାଉସରେ ପହଞ୍ଚିଲେ ସବଡିଭିଜନ ଅଫିସର

ଓ ଅନ୍ୟମାନେ ବ୍ୟସ୍ତ ହୋଇଯିବେ । ତେଣୁ ଏଠାରେ ୫୧୦ ମିନଟ ରହିଯିବାକୁ ସ୍ଥିରକରିଛୁ । ଆପଣ କୁଆଡ଼େ ଯାଉଛନ୍ତି ?"

ମୁଁ ଜଣାଇଲି ମୋର ଆଉ ଆଗକୁ ଯିବାର ଅଛି । କିନ୍ତୁ ଆପଣଙ୍କୁ ଏକୁଟିଆ ଛାଡ଼ି ଯିବି ନାହିଁ । ଏହା କହି ନିକଟବର୍ତ୍ତୀ ଜାମୁକୋଳି ଗଛରେ ପାଚିଲା ଜାମୁକୋଳି ଓହଳି ଥିବାର ମୋ ଡ୍ରାଇଭରକୁ ଦେଖାଇ ଦେଲି । ସାହେବ ସେଥିରେ ଅଂଶୀଦାର ହୋଇ ତାଙ୍କ ଅନୁକୂଳ ଗଛ ପାଇଁ ସମସ୍ଥାନୁବର୍ତ୍ତୀ ହେଲେ ।

ତା'ର ଅଳ୍ପ ଦିନ ପରେ ହଠାତ୍ ଶୁଣିଲି ମହାନଦୀ ଡଙ୍ଗା ବୁଡ଼ି ତାଙ୍କ ପ୍ରାଣ ଯାଇଛି । ବର୍ଷା ଦିନ । ମହାନଦୀରେ ମଧ୍ୟମ ଧରଣର ଗୋଟିଏ ବଢ଼ି ଆସିଥାଏ । ସେ ଦିନ ରବିବାର । ସାହେବ ତାଙ୍କ ଅଫିସର କେତେଟି ଅଦରକାରୀ ଡଙ୍ଗାକୁ ନେଇ ଗୁଡ଼ାଏ ଜରୁରୀ ଫାଇଲ ନେଇ ଯାଇଥିଲେ ନିର୍ଜ୍ଜନରେ ନଈ ଭିତରେ ବିହାର କରି ସରକାରୀ କାମ କରିବେ । ଘଣ୍ଟେ ଦୁଇଘଣ୍ଟା କାମ କରିଲା ପରେ ହଠାତ୍ ଗୋଟିଏ ଘୂର୍ଣ୍ଣିବାତ୍ୟା ଆସିଲା । ଡଙ୍ଗାଟି ବୁଡ଼ି ଗଲା । ନଈ କୂଳରେ ତାଙ୍କ ଚପରାସୀ ଆଗ୍ରହରେ ଅପେକ୍ଷା କରିଥିଲା । ତା ନଜର ପଡ଼ିବାରୁ ବା ଗଡ଼ଗଡ଼ିଆ ଘାଟରେ ଥିବା ଗୋଟିଏ ଡଙ୍ଗାବାଲାର ନଜର ପଡ଼ିବାରୁ ପାଞ୍ଚ ସାତ ମିନଟ୍ ଭିତରେ ଡଙ୍ଗା ବାହାରିଲା, ଓଦା ସରସର ଫାଇଲଗୁଡ଼ାକ ବାହାରିଲା । ସେତେବେଳକୁ ସାହେବଙ୍କର ପ୍ରାଣବାୟୁ ବାହାରି ଯାଇଥାଏ ।

ତାଙ୍କ ପତ୍ନୀଙ୍କୁ ସମବେଦନା ଜଣାଇବାକୁ ଯାଇଥିଲି । ଏକମାତ୍ର ପୁଅ ମରିବାର ଖବର ପାଇବାର ପୂର୍ବ ମାସେ ହୋଇ ନ ଥାଏ । ସ୍ୱାମୀଙ୍କର ମୃତ୍ୟୁ ଖବର ପଛେ ପଛେ ଶବ ଆସି ପହଞ୍ଚିଥିଲା । ତାଙ୍କୁ କବର ଦେବାରେ କେତେକ ବନ୍ଧୁଙ୍କ ସାଙ୍ଗରେ ମୁଁ ଟିକିଏ ସାହାଯ୍ୟ କରିଥିଲି । ମେମ୍ ସାହେବ କଟକ ଛାଡ଼ିବା ପୂର୍ବରୁ ଆଉ ଦୁଇ ଥର ତାଙ୍କ ସଙ୍ଗେ ଦେଖା କରିଥିଲି । ତାଙ୍କ ଖବର ମଧ୍ୟ କମିସନରଙ୍କ ଅଫିସର କେତେକ ବନ୍ଧୁଙ୍କଠାରୁ ସଂଗ୍ରହ କରିଥିଲି । ୨୦ ହଜାର ଟଙ୍କାର ଗୋଟିଏ ମାତ୍ର ଇନ୍‌ସ୍ୟୁରାନସ୍ ପଲିସି ଥିଲା । ଆଇ.ସି.ଏସ-ମାନଙ୍କର ତହବିଲରେ ମାସକୁ ମାସ ଯାହା ଜମା ରହୁଥିଲା, ସେ ବାବଦରେ ତାଙ୍କର ୨୫ଶହ ପାଉଣ୍ଡ ଥିଲା । ସରକାର ପକ୍ଷରୁ ଆଉ ସାମାନ୍ୟ କିଛି ଗ୍ରାଣ୍ଟ ମିଳିଥିଲା । ସେ ବିଷୟରେ ତାଙ୍କର ଆଗ୍ରହ ନ ଥାଏ । ପତି ଓ ପୁତ୍ରଙ୍କ ପାଇଁ ବିଶେଷ ଶୋକ ନ ଥାଏ । କେବେବେଳେ ଅନ୍ୟମନସ୍କ ଭାବେ ଉପରକୁ ଚାହିଁ ଥାନ୍ତି । ଆଦର୍ଶ ମହିଳା ବୋଲି ତାଙ୍କୁ ମୁଁ ମନେ ରଖିଛି ।

ଆଦର୍ଶ ସାହେବ ବୋଲି ମୁଁ ମନେ ରଖିଛି, ଲାଟ ସାହେବ ସାର ଜର୍ଜ ଲୁଇସ୍, ମିଷ୍ଟର ସ୍ୱାନ, ମିଷ୍ଟର ମ୍ୟାକଡୋନାଲଡ ଓ ମିଷ୍ଟର ମାର୍ ଡନୀଲଙ୍କୁ । ଶେଷୋକ୍ତ ଦୁହିଁଙ୍କୁ ଦେଖିଲେ, ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ' କଥାଟି ମୋର ମନେ ପଡ଼େ ।

ଭାରତର ନେତୃବୃନ୍ଦ ବିଲାତ ସରକାରଙ୍କ ସଙ୍ଗେ ଆଉ ଟିକିଏ ଚେଷ୍ଟା କରିଥିଲେ ଭାରତରୁ ହଠାତ୍ ସାହେବମାନଙ୍କୁ ନ ଘଉଡ଼ାଇ ଆଉ ୧୦ । ୧୫ ବର୍ଷ ରଖି ଦେଇଥାନ୍ତେ । ସେପରି ହୋଇଥିଲେ ଭାରତର ପ୍ରଶାସନ ପଦ୍ଧତିର ଯେତେ ବେଗେ ଅବନତି ହେଲା ସେତେ ହୋଇ ନ ଥାନ୍ତା ଓ ଆଜି ବିଂଶ ସତାବ୍ଦୀ ବେଳକୁ ( ୧୯୭୭ ) ଗତ ୩୦ ବର୍ଷର ଭାରତ ଇତିହାସ ମଳିନ ହୋଇ ନ ଥାନ୍ତା ।

୧୯୪୭ ସ୍ୱାଧୀନତା ଉତ୍ସବ ପୂର୍ବରୁ ମୁଁ ପ୍ରାୟ ତିରିଶ ଜଣ ଭାରତୀୟ ଓ ସାହେବ ବଡ଼ ବଡ଼ ଅଫିସରଙ୍କ ଘନିଷ୍ଠ ସମ୍ପର୍କରେ ଆସିଥାଏ । ଅଧିକାଂଶ ସାହେବ ଅଫିସରଙ୍କ କାର୍ଯ୍ୟରେ ଆନ୍ତରିକତା ଦେଖି ମୁଁ ତାଜୁବ ହୋଇ ଯାଉଛି । କେବଳ ଆଇ. ସି. ଏସ. ସାହେବ ନୁହନ୍ତି, ଚିଫ୍ ଇଞ୍ଜିନିୟର ଶ' ସାହେବ ଓ ପୋଲିସ୍ ଆଇ. ଜି. ରାଇଟ୍ ନେଭିଲ ଓ ଜଣେ ଜଙ୍ଗଲ ସାହେବ ( ନାମ ମନେ ପଡ଼ୁ ନାହିଁ )ଙ୍କର କର୍ମତତ୍ପରତା ଓ ନିଷ୍ଠା ମୋ ହୃଦୟରେ ଗାର ପଡ଼ି ରହି ଯାଇଛି । ଭାରତୀୟ ଆଇ. ସି. ଏସ.ଙ୍କ ମଧ୍ୟରେ ନିଷ୍ଠାପର ଲୋକ ଯେ ନ ଦେଖିଛି ତା' ନୁହେଁ କିନ୍ତୁ ଏମାନଙ୍କ ସଂଖ୍ୟା ଖୁବ୍ କମ୍ । ଅଧିକାଂଶ ଭାରତୀୟ ଆଇ. ସି. ଏସ. କର୍ମଚାରୀ ସରକାରଙ୍କଠାରୁ ମିଳିଥିବା ଅଧିକାର ବଳରେ ଲୋକ-ସେବା ପରିବର୍ତ୍ତେ ସେହି ସରକାରୀ କଳ ଲୋକଙ୍କ ଉପରେ ଖଟାଇ ନିଜର କ୍ଷମତା ଜାହିର କରିବାରେ ଓ ତଦ୍ୱାରା ନିଜର ବଡ଼ପଣ ପ୍ରତିଷ୍ଠା କରିବାରେ ଏବଂ ଅପ୍ରତ୍ୟକ୍ଷ ଭାବରେ ତାହା ବଳରେ ଦି ପଇସା କରିବାରେ ହେଲା କରୁ ନ ଥିଲେ । ସାହେବ ଆଇ. ସି. ଏସ. ବେଳେ ବେଳେ କ୍ଷମତା ଜାହିର କରୁ ଥିଲେ ହେଁ ସେହି କ୍ଷମତାକୁ ଖଟାଇ ଦି' ପଇସା କମାଇବାର ଦୃଷ୍ଟାନ୍ତ ମୁଁ ଦେଖି ନାହିଁ । କିନ୍ତୁ ଦେଶୀ ସାହେବଙ୍କ ଭିତରେ ଏହି ସ୍ୱାର୍ଥ ସିଦ୍ଧ କରିବାର ଦୃଷ୍ଟାନ୍ତ ଦେଖି ନାହିଁ ବୋଲି କହି ପାରୁ ନାହିଁ । ଦି' ପଇସାର ଉପକାର ନ ଦେଖିଲେ ସେମାନେ ଅନେକ ସମୟରେ ହଲିଲା ପାଣିକୁ ଗୋଡ଼ ନ ଦେଇ ନିର୍ବିକାର ରହିବାର ଦେଖିଛି । ତହିଁ ସଙ୍ଗେ ସଙ୍ଗେ ଏପରି ଜଣେ ଜଣେ ଦେଖିଛି ଯେଉଁମାନେ କି କର୍ମତତ୍ପରତା, ସାଧୁତା ଓ ନିଜର ନିରପେକ୍ଷତାରେ କୌଣସି ସାହେବଙ୍କଠାରୁ କୌଣସି ଅଂଶରେ କମ ନୁହନ୍ତି । ଓଡ଼ିଶାରେ ଯାହାଙ୍କ ସମ୍ପର୍କରେ ଆସିଛି ତାହାଙ୍କ ଭିତରୁ ଦୁଇ ଜଣ ସର୍ବପ୍ରଥମେ ଦୃଷ୍ଟିକୁ ଆସୁଛନ୍ତି ।

ପ୍ରଥମ ଜଣକ ଶ୍ରୀ ଚନ୍ଦ୍ରଶେଖର ଝା (C. S. Jha), ଦ୍ୱିତୀୟ ଜଣକ ଭବାନୀଚରଣ ମୁଖାର୍ଜୀ (B. C. Mukherjee) ।

ଶ୍ରୀଯୁକ୍ତ ଝା ଥିଲେ ଯୋଗାଣ ବିଭାଗର ସେକ୍ରେଟାରୀ । ମୁଁ ଯେଉଁ କାମରେ ସ୍ଥାନ ପାଇଥିଲି ତାଙ୍କର ଆସ୍ଥାନ ତା'ରି ପାଖରେ । ସେ ଟିକିଏ ମେଳାପୀ ଲୋକ

ହୋଇଥିବାରୁ ତାଙ୍କ ସଙ୍ଗେ ଆଲାପ କରିବାର ସୁଯୋଗ ପାଇଥିଲି । ଦୁଃଖ ସୁଖ ହେଉ ହେଉ ମୁଁ ଗୁଜରାଟରୁ ଆସିବା ପୂର୍ବରୁ ଦରିଦ୍ର ଲୋକଙ୍କୁ ସୁବିଧାରେ ଧାନ ଚାଉଳ ଯୋଗାଇ ଦେବାକୁ ଯେଉଁ ବ୍ୟବସ୍ଥା କରିଥିଲି ସେ ବିଷୟ ତାଙ୍କୁ କହିଲି । ଏହା ତାଙ୍କ ମନକୁ ପାଇଗଲା । ମୋର ବ୍ୟବସ୍ଥା ବିଷୟରେ ଗୋଟିଏ ନୋଟ୍ ଦେବା ପାଇଁ ସେ ମୋତେ ମାଗିଲେ । ମୁଁ ଯାହା କରୁଥିଲି ଲେଖିଦେଲି । ପ୍ରଥମେ ଗ୍ରାମର ବିଶିଷ୍ଟ ଲୋକଙ୍କୁ ଏକାଠି କରାଯାଏ । କାହା ପାଖରେ କେତେ ଧାନ ଅଛି ପଚରା ଉଚରା ହୁଏ । ଦରିଦ୍ର ଲୋକଙ୍କ ପାଇଁ କିଛି ଦେବାକୁ ସଭାରେ ସେମାନଙ୍କୁ ଅନୁରୋଧ କରାଯାଏ । ସେହି ସଭାରେ ଅଭାବଗ୍ରସ୍ତ ଲୋକଙ୍କର ତାଲିକା କରାଯାଏ । ବିକ୍ରେତା ତାଙ୍କ ନିଜ ଦୁଆରେ ଧାନ ବିକି ମୂଲ୍ୟ କ୍ରେତାଠାରୁ ଆଦାୟ କରନ୍ତି । ଭଦ୍ରଲୋକ ଏ କାର୍ଯ୍ୟରେ ପ୍ରତ୍ୟକ୍ଷଦର୍ଶୀ ହୋଇ ରହନ୍ତି । ଏହା ମୋର ଚେଷ୍ଟାରେ ବହୁ ସ୍ଥାନରେ ପ୍ରବର୍ତ୍ତି ଥିଲା । ଧାନ ଟଙ୍କାକୁ ଦଶ ସେର ଦରରେ କିଣା ଯାଉଥିଲା । ସେହି ଦଶ ସେର ଦରରେ ମିଳୁଥିଲା ଓ ସେଇ ଦରରେ ଯାଉଥିଲା । ଏପରି ନ କରି ସରକାରଙ୍କ ନିୟମ ଅନୁସାରେ ସରକାରଙ୍କ ନିଯୁକ୍ତ ଦୋକାନୀଠାରୁ କିଣିବାକୁ ଗଲେ ଦଶ ସେରକୁ ଦୁଇ ଟଙ୍କା ପଡୁଥିଲା । ଆମ ଚେଷ୍ଟାରେ ଯେଉଁମାନେ ପାଇଲେ ସେମାନେ କୃତଜ୍ଞତାରେ ଟଙ୍କାକୁ ମୁଠେ ଲେଖେଁ ଧାନ ଚାନ୍ଦା ଦେଉଥିଲେ । ସେହି ଚାନ୍ଦା ଫଳରେ ଯୋଡ଼ିଏ ମାଇନର ସ୍କୁଲ ହୋଇଥିଲା ଓ ଗୋଟିଏ ହାଇସ୍କୁଲ ଉପକୃତ ହୋଇଥିଲା ।

ଏହି ରିପୋର୍ଟ ତିଆରି କରି ମୁଁ ଯୋଗାଣ ବିଭାଗର ଡେପୁଟି ସେକ୍ରେଟାରୀଙ୍କ ଜରିଆରେ ସେକ୍ରେଟାରୀ ମିଁ ଝାଙ୍କ ପାଖକୁ ପଠାଇଲି । ଡେପୁଟି ସେକ୍ରେଟାରୀ ମୋ ଯୋଜନା ଉପରେ ତିକ୍ତ ବୃଉଲା ଲେଖାଇ ନୋଟ ଦେଲେ । ତାଙ୍କ ମତରେ ଏ ଯୋଜନା କାର୍ଯ୍ୟକାରୀ ହେଲେ କେତେ ଜଣ ରାଜନୈତିକ ଲୋକ ଉପକୃତ ହେବେ । ଗାଁର ମାମଲତକାରମାନେ ନିଜର ଆର୍ଥିକ ଉପକାର କରିବେ । ଗାଁରେ ଲୁଡ଼ାଏ ଗଣ୍ଡଗୋଳ ଲାଗିବ । ଶାନ୍ତି ରକ୍ଷା କରିବାକୁ ପୁଲିସ ବ୍ୟତିବ୍ୟସ୍ତ ହେବେ ଓ ସରକାରଙ୍କର ଦୁର୍ନାମ ହେବ । ତାଙ୍କ ମତରେ ସରକାରଙ୍କର ନିର୍ମିତ ବ୍ୟବସ୍ଥା ହୋଇଛି ଥାଉ । ମହାଜନଠାରୁ ଟଙ୍କାକୁ ଦଶ ସେର ଲେଖେଁ ଧାନ କିଣା ହୋଇ ସବଡିଭିଜନ ହେଡ଼କ୍ୱାର୍ଟରରେ ଜମା ହେଉ । ସେଠାରୁ ଲାଇସେନ୍ସପ୍ରାପ୍ତ ଦୋକାନୀମାନେ ସରକାରୀ ଦରରେ ଆଣି ଖାଉଟିକୁ ଦିଅନ୍ତୁ । ( କିଣିବା ଦର ଟଙ୍କାକୁ ଦଶ ସେର, ଖାଉଟିଙ୍କୁ ମିଳିବା ଦର ଟଙ୍କାକୁ ପାଞ୍ଚ ସେର ; ମଝିରେ ଯେଉଁ ପାଞ୍ଚ ସେର ରହିଲା ତାହା ଗାଡ଼ି ଭଡ଼ା ଖର୍ଚ୍ଚ, ସରକାର ଏ ବ୍ୟବସ୍ଥା ଚାଳନା କରିବାର ଖର୍ଚ୍ଚ ଓ ବିକ୍ରୟକାରୀର ମୁନାଫା ) । ଡେପୁଟି ସେକ୍ରେଟାରୀ ପରିଷ୍କାର ବୁଝାଇ ଦେଲେ ସରକାର ଯେଉଁ ପ୍ରଯୋଜନା କରିଛନ୍ତି ଏଥିରେ କେହି ଟଙ୍କା ଖାଇଯିବାର ସମ୍ଭାବନା ନାହିଁ ।

ସେକ୍ରେଟାରୀ ଶ୍ରୀଯୁକ୍ତ ଝା ଡେପୁଟି ସେକ୍ରେଟାରୀଙ୍କ ସେ ନୋଟ ପାଇବାର ଦିନ ଦୁଇଦିନ ପରେ ମୋତେ ଡକାଇଲେ ଓ ଫାଇଲଟି ମୋତେ ଦେଖାଇଲେ । ଡେପୁଟି

ସେକ୍ରେଟାରୀଙ୍କ ନୋଟ ଉପରେ ସେ ତାଙ୍କ ପୃଷ୍ଠା ଟାଇପ୍ କରି ନୋଟ ଚିଫ୍ ସେକ୍ରେଟାରୀଙ୍କ ଜରିଆରେ ପରାମର୍ଶ ଦାତା ( Adviser ) ଓ ଲାଟସାହେବଙ୍କ ପାଖକୁ ପଠାଇ ଅର୍ଡ଼ର ଆଣି ଥାନ୍ତି । ମୁଁ ଦେଇଥିବା ନୋଟ ମଞ୍ଜୁର ହୋଇଥାଏ । କେବଳ ଏତିକି ଅସୁବିଧା ଥାଏ, ଗାଁ ପଞ୍ଚାୟତ ଜରିଆରେ ଯେଉଁ ଧାନ କିଣି ହେବ ସେ ବିଷୟରେ ସ୍ଥାନୀୟ ଏସ୍. ଡି. ଓ କୁ ଜଣାଇଥିବାକୁ ହେବ ଓ ସେ ସୁବିଧା ଅନୁସାରେ ନିଜର ଜଣେ ଅଫିସର ଓ ପୁଲିସଙ୍କୁ ଏ ବିଷୟରେ ତଦ୍‌ବିର କରିବାକୁ ବ୍ୟବସ୍ଥା କରିବେ । ସେକ୍ରେଟାରୀଙ୍କ ପରାମର୍ଶରେ ତାଙ୍କର ଅଣ୍ଡର ସେକ୍ରେଟାରୀ ମୋତେ ସାହାଯ୍ୟ କରିବାକୁ ବ୍ୟବସ୍ଥା କଲେ । ଏହି ଯୋଜନା କେତେଗୁଡ଼ିଏ ସ୍ଥାନରେ କାର୍ଯ୍ୟକାରୀ ହୋଇଥିଲା ଓ ଖୁବ ଭଲ ଫଳ ହୋଇଥିଲା ।

ସ୍ୱାଧୀନତା ପରେ କାଳକ୍ରମେ ମିଷ୍ଟର ଝାଙ୍କ ପରି ଅଫିସରମାନେ ଉପରକୁ ଉପରକୁ ଉଠିଗଲେ । ମିଷ୍ଟର ଝା ଆନ୍ତର୍ଜାତିକ କ୍ଷେତ୍ରରେ କାମ କଲେ । ସାହେବମାନେ ସ୍ୱଦେଶକୁ ବାହୁଡ଼ିଗଲେ ଓ ଏହି କେତୋଟି ସେକ୍ରେଟାରୀଙ୍କ ଭଳି ଲୋକେ ଶାସନର ବଡ଼ ବଡ଼ ଆସନରେ ବସିଗଲେ ; ଖୁବ ହାକିମି କଲେ ; ଗୁଡ଼ିଏ ଲେଖାଏଁ ପଇସା କଲେ ଏବଂ ଏଇମାନଙ୍କଠାରୁ ମନ୍ତ୍ରୀଙ୍କୁ ମଧ୍ୟ ସ୍ୱାଙ୍କ ରୋଗ ବ୍ୟାପିଲା ।

ଆଉ ଜଣେ ଭାରତୀୟ ଆଇ. ସି. ଏସ. ବି. ସି. ମୁଖାର୍ଜି । ମୋର ବେସରକାରୀ ଅମଳରେ ସେ ଥିଲେ କଟକର ଜିଲ୍ଲା ମାଜିଷ୍ଟ୍ରେଟ. ସାହେବଙ୍କର ଅସଲ ହପ୍ତି ବେଲ, ମୋ ଲୁକର ଅମଳରୁ ; ସ୍ୱାଧୀନତା ପରେ ଆସିଲେ ଆମ ରାଜ୍ୟର ଚିଫ୍ ସେକ୍ରେଟାରୀ ହୋଇ । ତାଙ୍କର କାର୍ଯ୍ୟଦକ୍ଷତା, ନିର୍ଭୀକତା ଓ ସାଧୁତା ଆଜି ଯାଏଁ ଆମ ରାଜ୍ୟର ଆଦର୍ଶ ହୋଇ ରହିଛି ।

ଇଂରେଜ ଆଇ. ସି. ଏସ.ମାନେ କାମ ଛାଡ଼ି ଚାଲିଯିବାରେ ଓ ମିଷ୍ଟର ଝା ଏବଂ ବି. ସି. ମୁଖାର୍ଜି ପ୍ରମୁଖ ଉପରକୁ ଉଠିବା ଫଳରେ ଯେଉଁ ଶ୍ରେଣୀର ଲୋକେ ସରକାରଙ୍କର ଉଚ୍ଚତମ ଶ୍ରେଣୀରେ ରହିଲେ, ସେମାନଙ୍କ ଯୋଗୁଁ ଶାସନର ମର୍ଯ୍ୟାଦା କମିଗଲା ଏବଂ ଇଂରେଜ ଅମଳର ଲଟ୍‌ନ ରହିବାରୁ ଶାସନକୁ ରାସ୍ତାରେ ରଖି ହେଲା ନାହିଁ । ଯେଉଁମାନେ ଆମ ଦେଶର ଶ୍ରେଷ୍ଠ ରାଜନୀତିକ ଶାସକ ହେଲେ ସେମାନେ ଦେଶର ରାଜନୀତିକ ଅଧିକାରୀମାନଙ୍କର ଚାଳକ ହୋଇ ନ ପାରିବାରୁ ଶାସନର ମହତ୍ତ୍ୱ ରହିଲା ନାହିଁ । ଲୁକରଆମାନେ ଦେଶୀ ଶାସକଙ୍କଦ୍ୱାରା ରାସ୍ତାରେ ରହିବା ପରିବର୍ତ୍ତେ ନିଜର ଆଦର୍ଶରେ ଶାସକମାନଙ୍କୁ ଧନଲୁବ୍ଧ କରି ସନାଇଲେ ଓ ସାହେବୀ ଢଙ୍ଗରେ ପ୍ରସ୍ତୁତ କରି ପକାଇଲେ । ଫଳରେ ଇଂରେଜ ଯିବା ପରେ ଇଂରେଜ ଶାସନର ମର୍ଯ୍ୟାଦା କମିଗଲା ଏବଂ ଇଂରେଜଙ୍କ ଠାଣିଟା ରହିଲା ; ଖାଲି ରହିଲା ତାହିଁକି ବଢ଼ିଲା ବୋଲି କହିଲେ ଚଳେ ।

ଇଂରେଜଙ୍କର ଶେଷ ଅମଳକୁ ଇଂରେଜଙ୍କର ଲୋଲୁପତା ଖୁବ୍ କମିଯାଇଥିଲା । ଇଂରେଜମାନେ ଯିବା ପରେ ତାଙ୍କ ଜାଗାରେ ଯେଉଁ ଦେଶୀ ଲୋକେ ବସିଲେ ତାଙ୍କର ଧନ ଲୋଲୁପତା ବିଶେଷ ଭାବରେ ବଢ଼ିଗଲା । ଇଂରେଜ ଅମଳର ସର୍ବପ୍ରଥମେ କ୍ଲାଇବ, ଓ୍ୱାରେନ୍ ହେଷ୍ଟିଂସ୍ ପ୍ରମୁଖଙ୍କଠାରେ ଯେଉଁ ଲୋଭ ଓ ଦୁର୍ନୀତି ଦେଖାଯାଇଥିଲା ଆମ ଦେଶୀ ଶାସକଙ୍କଠାରେ ସେଇଆ ଦେଖାଦେଲା । ସେତେବେଳେ କ୍ଲାଇବ୍ ଓ ଓ୍ୱାରେନ୍ ହେଷ୍ଟିଂସ୍-ଙ୍କର ଦୁର୍ନୀତି ଓ ଲୋଭକୁ ଦମନ କରିବା ପାଇଁ ଇଂରେଜ ଶାସକ ଘୋର ପ୍ରତିକାର କରିଥିଲେ । ତାହା ଫଳରେ ଭାରତର ଗୁରୁକରିଆ, ଯେଉଁମାନେ କି ସେତେବେଳେ ଭାରତୀୟ ନବାବ ବୋଲାଉଥିଲେ ସେମାନେ ଜରିମାନା ଦେବଗଲେ ।

ଆମ ଏଠାରେ ହେଲା ଠିକ୍ ଓଲଟା । ମହାତ୍ମା ଗାନ୍ଧୀଙ୍କ ତ୍ୟାଗ ମନ୍ତ୍ରରେ ଯେଉଁ ନେତାମାନେ ଉଦ୍‌ବୁଦ୍ଧ ହୋଇଥିଲେ ସେମାନେ ଆମ ଦେଶୀ ସାହେବମାନଙ୍କର ଆଦର୍ଶ ଓ ପ୍ରେରଣାରେ ଅତି ଧନଲୋଲୁପ ଓ ବିଳାସ ଲାଳସୀ ହୋଇ ପଡ଼ିଲେ ।

ଏଠାରେ ସେକାଳର ଗୋଟିଏ କଥା ଉଲ୍ଲେଖ ନ କରି ରହିପାରୁ ନାହିଁ । ମୋ ବୟସର ଲୋକଙ୍କର ବାଲ୍ୟଜୀବନ ଆରମ୍ଭ ୧୯୧୪-୨୦ ରେ । ସେତେବେଳେ ସାହେବ-ମାନଙ୍କୁ ଦେଖିଛୁ । ସେମାନଙ୍କର ନିତ୍ୟନିଷ୍ଠତା ଓ ସରଳ ଜୀବନରେ ତାଜୁବ୍ ହୋଇଥିଲି । ଶିକ୍ଷା ବିଭାଗର ଗୋଟିଏ ଉଦାହରଣ ଦେଉଛୁ । ଆମ ଅମଳର ରେଭେନ୍‌ସା କଲେଜ । ପ୍ରିନ୍‌ସିପାଲ୍ ଓ ବିହାର ଓଡ଼ିଶାର D. P. I. ଖଣ୍ଡିଏ ଖଣ୍ଡିଏ ଧଳା ହାଫ୍ ପ୍ୟାଣ୍ଟ ଓ ତା' ଉପରେ ଖଣ୍ଡିଏ ଖଣ୍ଡିଏ ଧଳା ହାଫ୍‌ଶାର୍ଟ ପିନ୍ଧି class କୁ, ଅଫିସ୍‌କୁ ଆସୁଥିଲେ । ପାଠ ସାରି ଆମର ଚାକିରି କରିବା ବେଳ ହେଉଛୁ ୧୯୩୫-୪୦ ଓ ୧୯୪୦-୪୫ । ସେତେବେଳକୁ ଇଂରେଜଙ୍କର ଯିବା ବେଳ । ସେତେବେଳେ ଅଳ୍ପ ଦରମା ପାଉଥିବା କଲେଜ ଅଧ୍ୟାପକ ଓ ସବ୍‌ଡେପୁଟି ଓ ଡେପୁଟି ହୋଇଥିବା ଦେଶୀ ଯୁବକ ଲାଟ୍ ସାହେବର ପୋଷାକ ଓ କାଇଦା ଧରିଥାନ୍ତି । ଏଠିର ସ୍ୱାଧୀନ ପୂର୍ବ କାଳର କିରାଣୀର ସ୍ୱାଧୀନ ସହ ମଧ୍ୟ ସମାନ ନ ଥାଏ । ଏଥିଯୋଗୁ ଦେଶର ସ୍ୱାଧୀନତାର ମହତ୍ତ୍ୱ ରହିଲା ନାହିଁ ।

ସ୍ୱାଧୀନତା ଘୋଷଣା, ନିର୍ବାଚନ, କଂଗ୍ରେସର ପ୍ରଥମ ମନ୍ତ୍ରୀମଣ୍ଡଳ ଗଠନ, ଆଇ. ସି. ଏସ୍‌ଙ୍କ ହାତରୁ କ୍ଷମତା ଆସି ନାମକୁ ମାତ୍ର ମନ୍ତ୍ରୀଙ୍କ ହାତରେ ପଡ଼ିବା ପର୍ଯ୍ୟନ୍ତ ଶାସନ ରହିଲା ଲାଟ୍ ଶାସନ ହୋଇ । ଲାଟଙ୍କ ହାତରେ ଶାସନ । ତାଙ୍କର ସାହାଯ୍ୟକାରୀ ଦୁଇଜଣ: ମି. ମାରଉଡ୍ ଓ ମି. ଗୋସ୍ୱେଲ୍ । ଚତୁର୍ଥରେ ଚିଫ୍ ସେକ୍ରେଟେରୀ ମି. ଉଇଲ୍-ସ୍ମିଥ୍ । ଏଥିରୁ ଜଣେ ଯାହା ବିଚାରିଲେ ସେଇ ହେଲା ସିଦ୍ଧାନ୍ତ । ଏଇ ସମସ୍ତଙ୍କ ମୋ ଅମଳରେ ମୁଁ ପ୍ରକୃତ ଶାସନ ବୋଲି ମନେ କରୁଛୁ । ଆମ ବ୍ୟତୀତ ଅନ୍ୟ କୌଣସି ବିଷୟ କେନ୍ଦ୍ର ମନକୁ ନେଉଥିବାର ମୁଁ ଲକ୍ଷ୍ୟ କରିନାହିଁ । କିରାଣୀ ଓ ଚପରାସୀ ପର୍ଯ୍ୟନ୍ତ ସମସ୍ତେ ସେତେବେଳେ କାର୍ଯ୍ୟରେ ଏକନିଷ୍ଠ । ଆମ ବନ୍ଦ, ଅନଶନ, କଲମ ଛାଡ଼ ଭଳି ଅନାଚାରର ତ ସେତେବେଳେ ଗନ୍ଧ ନ ଥିଲା, ଅଫିସରେ ବସି ଦୁଇଜଣ କିରାଣୀ ବି ଦୁଃଖ ସୁଖ ହେବା

ସେତେବେଳେ ସମ୍ଭବ ନ ଥିଲା । ଚପରାଶୀ ସବୁବେଳେ ଜାଗ୍ରତ ରହି ସାହେବଙ୍କ ଘଣ୍ଟିକୁ କାନ ଡେରିଥାନ୍ତି । ସାହେବଙ୍କର ଘଣ୍ଟି ଅପ୍ରତ୍ୟାଶିତ ଭାବେ ବାଜି ଉଠିଲେ 'ହଜୁର' ବୋଲି କହି ସାହେବଙ୍କ କୋଠରୀର ଦୁଆରେ ଠିଆ ହୋଇ ରହନ୍ତି । ସେତେବେଳେ ସେଉଁ ଅଫିସରର ଗଣ୍ଡିଯାଅ, ସବୁବେଳେ ଅଫିସରମାନେ ଫାଇଲ୍ ଉପରେ ଆଖି ରଖି ବସିଥା'ନ୍ତି, ଲେଖିଥାନ୍ତି ।

ଶାସନର ଏହା ହେଉଛି ପ୍ରକୃଷ୍ଟ ପ୍ରକାର । ଅବଶ୍ୟ ସେତେବେଳେ ଗୋଟିଏ ଜିନିଷ ଅଭାବ ଥିଲା । ରାଜନୀତିକ ପ୍ରଚାର ଫଳରେ ଶାସନପ୍ରତି ଅବିଶ୍ୱାସ ଓ ଅବମାନନାର ବୀଜ ଲୋକଙ୍କ ମନ ଭିତରେ ପ୍ରୋଥିତ କରାଇ ଦିଆ ଯାଇଥିଲା । ସମସ୍ତେ, ସରକାରୀ କର୍ମଚାରୀ ଓ ଲୋକ ସାଧାରଣ ଧରି ନେଇଥିଲେ ଯେ ଲାଟ୍ ଶାସନ ଗୋଟାଏ କାମଚଳା ଶାସନ, ଥାଉ ବା ଥାପଡ଼ି କାମ । ଅସଲ ଶାସନ ଆସିବ ନିର୍ବାଚନ ପରେ । ଏହି ଧାରଣା ଯୋଗୁଁ ଲୋକମତ ଓ ଶାସନ ଜଳ ଓ ତେଲ ମିଶିଲା ପରି ହୋଇ ଯାଉଥିଲା ।

ଏ ସମସ୍ତେ ସେତେବେଳେ ଗୁଡ଼ାଏ କାମ ହୋଇଯାଇଛି । ଏହି ପର୍ଯ୍ୟନ୍ତ ବି ସେଥିରୁ ଅନେକାଂଶ ଚାଲିଛି । ସବୁ ସମାପ୍ତ ହୋଇନାହିଁ । ସେତେବେଳେ ତିଆରି ହେଲା ପ୍ରଥମ ପଞ୍ଚବାର୍ଷିକ ଯୋଜନା । ଯାହାର ଫଳରେ ବୋଲି କହିଲେ ଲୋକଙ୍କର ବୈଷୟିକ ଉନ୍ନତି ହେବ,—କୃଷିରେ, ଗୋପାଳନରେ, କୁକ୍କୁଟ ପାଳନରେ, ମତ୍ସ୍ୟ ଉତ୍ପାଦନରେ, ଶିଳ୍ପ କୃଷିରେ । ଯାହା ବାଦ୍ ଶାସନ କ୍ଷମିତ ଚଳିବ, ଲୋକେ ଶାନ୍ତ ଓ ନିର୍ଭୟ ହେବେ, ସବୁ ବିଷୟରେ ଯୋଜନା ତିଆରି ହେଲା । ଏହାର ମୂଳଦୀ ରହିଲେ ଚୋଟନେଲ ସାହେବ । ସବୁବେଳେ ଚାଲିଥାଏ ଚର୍ଚ୍ଚା, ହିସାବ ପତ୍ର, ଆଲୋଚନା, ଏହିପରି ଅନବରତ ଖଡ଼ ଘୋରଘୋର ।

ମୁଁ ସେଥିରେ ପୂର୍ଣ୍ଣପ୍ରାଣରେ ମିଶିଥାଏ । ପ୍ରତି ସପ୍ତାହରେ ଜିଲ୍ଲା ପ୍ରଚାର ଅଫିସରମାନଙ୍କୁ ଯୋଜନା ଓ ଅନ୍ୟାନ୍ୟ କାର୍ଯ୍ୟ ବିଷୟରେ ବୁଲେଟିନ୍ ପଠା ହେଉଥାଏ ଓ ତଦନୁସାରେ ବ୍ୟକ୍ତିଗତ କଥାବାର୍ତ୍ତା, ସଭାସମିତି ଓ ପ୍ରଦର୍ଶନୀ କରିଆରେ ସେ ସବୁ ବିଷୟ ଲୋକଙ୍କ ଆଗରେ ବାଢ଼ି ସହଯୋଗ କରିବାକୁ ଲୋକଙ୍କୁ ଉଦ୍‌ବୋଧିତ କରିବାରେ ଲାଗିଥାଏ ।

ପ୍ରତି ମାସରେ ବିଭିନ୍ନ ବିଭାଗ ବିଷୟରେ ଅନ୍ତତଃ ଦୁଇଟିଏ ପ୍ରଚାର ପୁସ୍ତିକା ବାହାରି ବଣ୍ଟାଯାଏ ଏବଂ ଓଡ଼ିଶା ଗଭର୍ଣ୍ଣ୍ୟ ଓ ଉତ୍କଳ ପ୍ରସଙ୍ଗର ନିୟମିତ ପ୍ରକାଶନରେ ସମସ୍ତ ସହକର୍ମୀ ସେଥିପାଇଁ ବାହାରେ ଚେଷ୍ଟା କରୁଥାନ୍ତି । ଅତି ଅଳ୍ପ ମୂଲ୍ୟରେ ଏହା ବିକ୍ରି ହେଉଥାଏ । ବିନା ମୂଲ୍ୟରେ ଖଣ୍ଡିଏ ମାତ୍ର କାହାକୁ ଯେପରି ବଣ୍ଟା ନ ଯିବ ଏ ଦିଗରେ ମୁଁ ବିଶେଷ ସତର୍କ ଥାଏ । ଯେଉଁ ଜିଲ୍ଲାରେ ବେଶୀ ସଂଖ୍ୟାରେ ଏ ଦୁଇଟି ପତ୍ରିକା ବିକ୍ରି ହେଉଥାଏ ସେ ପ୍ରଚାର ଅଫିସରମାନଙ୍କୁ ବହୁ ମାନ ଦିଆଯାଉଥାଏ । ଆମ ବିଭାଗର ଅଧ୍ୟବସାୟ ଯୋଗୁଁ ସରକାରର, ପ୍ରତ୍ୟେକ ବିଭାଗର ଆମ ପ୍ରତି ଶ୍ରଦ୍ଧା ଥାଏ ଓ ଆମର ସହଯୋଗ ସମସ୍ତେ କାମନା କରୁଥାନ୍ତି ।

## ହୀରାକୁଦ ଯୋଜନା

ଏହି ସମୟର ବଡ଼ କଥା ହେଲା ହୀରାକୁଦ ଯୋଜନା । ତାହାର ଟିକିନିଖି ବିବରଣୀ ଦେଇ ଗୋଟିଏ ପ୍ରକାଣ୍ଡ ପୁସ୍ତକ ଛପା ହେଲା ; ତାକୁ ପ୍ରଚ୍ଛର ବିଭାଗରେ ନାନା ପ୍ରକାରେ ଫେଣେଇ କ୍ଷୁଦ୍ର କ୍ଷୁଦ୍ର ପୁସ୍ତିକା ଓ ପ୍ରଚ୍ଛର ପତ୍ର ସଭାସମିତିରେ ବଣ୍ଟା ହେଉଥାଏ । ଏ ବନ୍ଧର ଯୋଜନା ବିରାଟ । ଭାରତରେ ଏତେ ବଡ଼ କାମ ହାତରେ ନେବା କେହି କେବେ କଳ୍ପନା କରି ନ ଥିଲେ । ବିଖ୍ୟାତ ଇଞ୍ଜିନିୟର ଶ୍ରୀଯୁକ୍ତ ଖୋସଲାଙ୍କର ଏଥିରେ କୃତିତ୍ୱ ସବୁଠାରୁ ବେଶୀ ଏବଂ ସେ୍ୱାକୁ ସାହସ କରି ସମ୍ବଲପୁରରେ ଶୁଭ ଦେବା ସେକାଳର ଓଡ଼ିଶାର ଲାଟ୍ ସାର୍ ହଥର୍ଣ୍ଣ ଲୁଇସ୍ କରିଥିଲେ ।

ବହୁ ଲୋକ ବାସଚ୍ୟୁତ ହେଲେ, ସେମାନଙ୍କର ଥଇଥାନ କିପରି ହେବ । ଗୁଡ଼ାଏ ପାଣି ଏକାଠି ବନ୍ଧମୂଳରେ ଜମିରହିବ । ଯଦି ଦୈବାତ୍ ବନ୍ଧ ଭାଙ୍ଗି ଯାଏ, ତାହାହେଲେ ସମଗ୍ର ସମ୍ବଲପୁର ଏକାଥରକେ ଧ୍ୱଂସ ହେବ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ବନ୍ୟା ନିରୋଧ କରିବା ନିମନ୍ତେ ସମ୍ବଲପୁରକୁ ଧ୍ୱଂସ କରାଯାଉଛି । ଏହିପରି ଗୁଡ଼ାଏ ଆଶଙ୍କା ଓ ଅଭିଯୋଗ ବିରୋଧୀମାନଙ୍କ ପକ୍ଷରୁ ବାହାରିଲା । ସାର୍ ହଥର୍ଣ୍ଣ ଏକ ସମୟରେ ସମ୍ବଲପୁରର ଲୋକପ୍ରିୟ କଲେକ୍ଟର ଥିଲେ । ତାଙ୍କର ନାମର ପ୍ରଭାବ ଯୋଗୁଁ ହୀରାକୁଦରେ ଶୁଭ ଦେବା ଦିନ ସଭାରେ ବହୁ ଲୋକ ଯୋଗଥିଲେ ! କିନ୍ତୁ ତା'ର ପରେ ପରେ ସେ ଦିନ ଏ ଯୋଜନାକୁ ସ୍ୱାଗତ କରିଥିବା ବହୁ ଲୋକ ବନ୍ଧର ବିରୋଧୀ ପାଲଟି ଗଲେ ଓ ସମ୍ବଲପୁରର ଶ୍ରୀ ... ପ୍ରସାଦ ମିଶ୍ର ପ୍ରଭୃତିଙ୍କ ନେତୃତ୍ୱରେ ବିରାଟ ଆନ୍ଦୋଳନ ସୃଷ୍ଟି ହେଲା ସମ୍ବଲପୁରର ଗଉନ୍ତିଆମାନେ ନିଜର ଗଉନ୍ତି ବୃତ୍ତି ଲୋପ ... ବିରୋଧୀ ଆନ୍ଦୋଳନରେ ବିଶେଷ ସହଯୋଗ କରିଥିଲେ । ଏକ ସମୟରେ ମନେ ହେଉଥିଲା ଏହି ଆନ୍ଦୋଳନ ଯୋଗୁଁ ହୀରାକୁଦ ବନ୍ଧ ଯୋଜନା କଳ୍ପନାରେ ହିଁ ରହିଯିବ । ଭାଗ୍ୟକୁ ଲୁଇସ୍ ସାହେବଙ୍କ ଉତ୍ସାହ ଓ ନିଷ୍ଠା ପଛକୁ ପ୍ରଥମ କଂଗ୍ରେସ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କର ବଳିଷ୍ଠ ନେତୃତ୍ୱ ମିଳିଗଲା । ହୀରାକୁଦ ବନ୍ଧ ଯେପରି ଭାବେ ହେଲା ଓ ଯେପରି ଅଳ୍ପ ଦିନରେ ଶେଷ ହୋଇଗଲା ସେଭଳି ଆଉ କୌଣସି ଯୋଜନା ଏ ପର୍ଯ୍ୟନ୍ତ ହୋଇଥିଲା ପରି ମନେ ହେଉନାହିଁ । ସମଗ୍ର ଦେଶରୁ କର୍ମପ୍ରେରଣା ଓ ପ୍ରବଣତା ଯେତେ ଯେପରି ଲୋପ ହୋଇଯାଇଛି । ସାର୍ ହଥର୍ଣ୍ଣ ଲୁଇସ୍ ୧୫।୩।୪୭ ରେ ବହୁମୁଖୀ ହୀରାକୁଦ ବନ୍ଧର ଭିତ୍ତି ପ୍ରସ୍ତର ସ୍ଥାପନା କରିଥିଲେ । ତାଙ୍କର ସେ ଦିନର ବକ୍ତୃତା ଅଦ୍ୟାପି ମନେ ଅଛି । ସେ ଏ ଭଳି ଯେଉଁ ଭାଷଣ ଦିଅନ୍ତି ତାକୁ ଆଗରୁ ଷ୍ଟେନୋଗ୍ରାଫରକୁ ଡାକି ଦିଅନ୍ତି । ସେ ଟାଇପ କରି ସେ୍ୱାକୁ ଦେଲେ ତା'ର ସଂଶୋଧନ ଓ ପରିବର୍ତ୍ତନ କରୁକରୁ ସମୁଦାୟ ଭାଷଣଟି ସେ୍ୱାଙ୍କର ମୁଖସ୍ଥ ହୋଇଯାଏ । ସାଫ ହୋଇଥିବା ଭାଷଣଟି ପକେଟରେ ପୂରାଇ ସେ ଭାଷଣ ଦେବାକୁ ଠିଆ ହୋଇଯାନ୍ତି, କଥା କହିଲା ପରି ମୂଳରୁ ଶେଷ ପର୍ଯ୍ୟନ୍ତ କହିଯାଆନ୍ତି ; କମା, ପୂର୍ଣ୍ଣଚ୍ଛେଦ ବି ଛାଡ଼ ହୁଏ ନାହିଁ । ଲୁଇସ୍ ସାହେବ ଗୋଟିଏ ଗ୍ରେଟିଆ

ମଣିଷ। କିନ୍ତୁ ତାଙ୍କର ମୁହଁରେ ତେଜ ଓ ନେତୃତ୍ୱର ଦୀପ୍ତି। ସେ ଦିନର ଭାଷଣରେ ସେ ଓଡ଼ିଶାର ଭବିଷ୍ୟତକୁ ଏପରି ଉତ୍ଫୁଲ୍ଲଭାବେ ବର୍ଣ୍ଣନା କଲେ ଯେ, ମୁଁ ଉଲ୍ଲସିତ ହୋଇଗଲି। ତାଙ୍କ ବକ୍ତୃତାର ଓଡ଼ିଆ ଅନୁବାଦ ମୁଁ କରିବାର କଥା, ଲେଖିକରି ନେଇଥିଲି। କିନ୍ତୁ କହୁ କହୁ ବିରୋଧୀମାନଙ୍କ ଜାବତା କରି ସେ ଯେଉଁ ଧାଡ଼ିଏ ଦି'ଧାଡ଼ି କହିଥିଲେ ତାକୁ ମୁଁ ଫେଣେଇ ତୀବ୍ର ଭର୍ତ୍ସନା ରୂପରେ ପ୍ରକାଶ କରିଦେଲି। ବକ୍ତୃତା ପରେ ସେ ମୋତେ ସାବାସି ଦେଲେ। ପରେ ଜାଣିଲି ସେ ଓଡ଼ିଆ ଭାଷା ବିଶେଷ କରି ସମ୍ବଲପୁରୀ ଓଡ଼ିଆ ଭଲରୂପରେ ବୁଝନ୍ତି; କହି ବି ପାରନ୍ତି ଓ ମୁଁ ତାଙ୍କ ବକ୍ତୃତାରେ ଯେଉଁ ତିକ ମିଶାଇଥିଲି ତାକୁ ଧରି ବି ପାରିଥିଲେ। ମୋର ତତ୍ପରତାରେ ସେ ଖୁସି ହୋଇ ସେତେବେଳେ କିଛି କହି ନ ଥିଲେ କିନ୍ତୁ ପରେ ମୋତେ ବୁଝାଇଥିଲେ, 'ନିଜର ବିରୋଧୀ-ମାନଙ୍କ ଭର୍ତ୍ସନା କରାଯାଏ ନାହିଁ। ସବୁବେଳେ ଆଶା କରାଯାଉଥାଏ ଯେ, ଦିନେ ସେମାନେ ପାଖକୁ ଆସିବେ।' ଏହା ପରବର୍ତ୍ତୀ ସମୟରେ ଖ୍ରୀଷ୍ଟ ଗୀତାରେ ଦେଖିଛୁ ଓ ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ପ୍ରତି ମୋର ଖାତିର୍ ବିଶେଷ ଭାବେ ବଢ଼ିଯାଇଛି।

ସେଇ ଦିନ ସଂଧ୍ୟାବେଳେ ଲାଟ୍‌ସାହେବଙ୍କ ସଙ୍ଗେ ମୁଁ ଚା ଖାଉଥିଲି। ଆଉ୍-ଭାଇଜର ଥିଲେ, ଜିଲ୍ଲାପାଳ ପ୍ରମୁଖ ବଡ଼ ଅଫିସର ଥିଲେ, ଭାରତ ସରକାରଙ୍କର ଦି' ତିନି ଜଣ ଥିଲେ, ସମସ୍ତଙ୍କର ମନ ଭରି ଖୁସି। ଲାଟ ସାହେବ ଆମମାନଙ୍କର ହୃଦୟରେ ସ୍ଥାନ ପାଇଯାଇଥାନ୍ତି। ଏ ପରିସ୍ଥିତିରେ ମୁଁ ତାଙ୍କ ଭିତରେ ଗୋଟିଏ କ୍ଷୁଦ୍ର ଜନ୍ତୁ ବୋଲି ପାଦୋର ଦେଇଥିଲି। ଏଣୁ ତେଣୁ ଗପ ଭିତରେ ଲାଟ୍‌ସାହେବଙ୍କର ମଟରଗାଡ଼ି ନାମରେ ଦି' ଚାରିପଦ କହିଲି। ଗୋଟିଏ ଓଲଡ଼ସ୍‌ମୋବିଲ ଗାଡ଼ି। ବହୁ ଦିନର, ତାଙ୍କ ପୂର୍ବବର୍ତ୍ତୀ ଲାଟ୍ ହବାକ୍ ସାହେବଙ୍କ ବେଳର। ତା'ର କାର୍ଯ୍ୟକାରିତା ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ବଖାଣି କହିଲି, ଲାଟ୍ ସାହେବଙ୍କର ଗାଡ଼ିଟି ବଦଳିବା ଦରକାର। ତାଙ୍କ ମୁହଁ ଗମ୍ଭୀର ହୋଇଗଲା, ସେ କହୁ କହୁ ଟିକିଏ ଅଡ଼କିତ ଭାବରେ କହିଦେଲେ, 'ଦେଶର ଧନକୁ କିପରି ନିଜର ବିଳାସରେ ଖର୍ଚ୍ଚ କରାଯାଏ ତହିଁର ବହୁ ଉଦାହରଣ ଆଗକୁ ଅଛି। ଏ ଗାଡ଼ି ଦଶବର୍ଷ ଆମମାନଙ୍କର ସେବା କଲାଣି। ଆଉ ତିନି ମାସ ସ୍ୱଚ୍ଛନ୍ଦରେ କରିପାରିବ।' ଏହାର ପ୍ରମାଣ ଜୀବନରେ ବହୁତ ପାଇଛି ଓ ପାଉଛି। ସେ ସବୁ ଦିନ ମନେ ପଡ଼ୁଛନ୍ତି।

ସେଇ ଥରର କଥା। କଟକରୁ ହୀରାକୁଦ ବନ୍ଧ ମୁଣ୍ଡକୁ ଯିବା ଚକୋଣେ ଏରୋପ୍ଲେନର ବନ୍ଦୋବସ୍ତ ହୋଇଥିଲା। ଭାରତ ସରକାରଙ୍କ ପାଖରୁ ଆସିଥିବା କେତେଜଣଙ୍କର ବାଗ୍ରର, ସମ୍ବଲପୁର ନିକଟବର୍ତ୍ତୀ ଉଡ଼ାଜାହାଜ ପଡ଼ିଆ ପର୍ଯ୍ୟନ୍ତ ଯିବେ। ସେଠାରୁ ମଟରରେ ବନ୍ଧପାଖକୁ ଯିବେ। ଲାଟ ସାହେବ ଏ କଥାଟାକୁ ଉଡ଼ାଇଦେଲେ। ସେ କହିଲେ, "ଯେମିତି ହେଲେ ବି ଉଡ଼ାଜାହାଜ ଘାଟିରୁ ମଟରରେ ଯିବାକୁ ହେବ। ଆଗରୁ ଏକାଥରକେ କଟକରୁ ମଟରରେ ଗଲେ କ୍ଷତି କ'ଣ। ବହୁତ ପଇସା ରହିବ।" ସେଇଆ ହେଲା।

ସର୍ବସାଧାରଣ ଧନ ଉପରେ ଲୁଇସ୍ ସାହେବଙ୍କର ଯେପରି ନଜର ଥିଲା, ଆଜିକାଲି ଆଉ ସେପରି ନାହିଁ । ସେ ଅନେକ ସମୟରେ କହିବାର ଶୁଣିଛି, ସରକାରୀ ଧନ ଖର୍ଚ୍ଚ କରିବାରେ କୋଟିପତିଙ୍କ ପରି ହେବାକୁ ହେବ । ନିଜ ପଇସାରେ ବଦାନ୍ୟତା ଦେଖାଇବ । ସେ ଓ ତାଙ୍କ ଗୋଷ୍ଠୀ ଦେଶରୁ ବିଦା ହେବା ପରେ ରାଜନୀତିକ ଲୋକଙ୍କ ହାତରେ ରାଜକୋଷର ଗୁପ୍ତ ରହିବା ଫଳରୁ ଆମ ଦେଶର ପଇସା ଖାଲି ବରବାଦ ହେବାରେ ଲାଗିଛି । ପଞ୍ଝାଏ ଲୋକ ନ୍ୟାୟାନ୍ୟାୟର ବିଚାରକୁ ଏକାବେଳକେ ଛାଡ଼ି ନିଜର ସମ୍ପତ୍ତି ବଢ଼ାଇବାରେ ଲାଗିଛନ୍ତି । ଦେଶର ଉନ୍ନତି କରିବାକୁ ଯେତେ ଉଦ୍ୟମ ହେଉଛି ସେଥିରେ କେତେକ ବ୍ୟକ୍ତିଙ୍କର ମାତ୍ର ଧନରେ ଉନ୍ନତି ହେଉଛି । ଆମର ସର୍ବୋଚ୍ଚ ଶାସକମାନେ ଯେଉଁ ବିଳାସ ବ୍ୟସନରେ ରହୁଛନ୍ତି ଓ ଧନ ଓ ମାନରେ ମତ୍ତ ହୋଇଛନ୍ତି ତାହା ସ୍ୱାଧୀନତା ମିଳିବା ବେଳେ କେହି କଳ୍ପନା କରି ନ ଥିଲେ । ନିରପେକ୍ଷ ଅର୍ଥନୀତିଜ୍ଞମାନେ ଯଥାଯଥ ଅନୁସନ୍ଧାନ କଲେ ଦେଖିଲେ ସ୍ୱାଧୀନତା ଦିନଠାରୁ ଦରିଦ୍ର ଦରିଦ୍ରତର ହେଉଛନ୍ତି ଓ ଧନୀ ଅଧିକ ଧନ କମାଉଛନ୍ତି । ନିରପେକ୍ଷ ବିଚାର ଦେଶରୁ ଯାଉଛି । ତାହା ପୁଣି କେବେ ଫେରିବ ଭଗବାନ ଜାଣନ୍ତି । ଲୋକମତ ଶାସନଦ୍ୱାରା ସବୁ ସୁଧୁରିବ ବୋଲି ଆଶା ଥିଲା । କାର୍ଯ୍ୟରେ ଦେଖାଯାଉଛି ଲୋକେ ଅତିସଙ୍କୀର୍ଣ୍ଣ ସ୍ୱାର୍ଥପର ରାଜନୀତିକଙ୍କର ଗୋଡ଼ାଣିଆ ହୋଇ ଯାଉଛନ୍ତି ।

ସେ କାଳର ଲାଟ ଶାସନର କଷଟି ପଥରରେ କଷିଲେ ଦେଖାଯିବ, କ୍ରମେ କ୍ରମେ ଶାସନର ମୂଳଦୁଆ ଦୁର୍ବଳ ହୋଇ ଯାଉଛି । ସ୍ୱାଧୀନତାର ୩୦ ବର୍ଷ ପରେ ଆଜି ଜଣା ପଡ଼ୁଛି, ଦେଶରେ ଅରାଜକତାର ଉପକ୍ରମ ହେଲାଣି । ଏହା ସହରରୁ ଆରମ୍ଭ ହୋଇ ମଫସଲ ଆଡ଼କୁ ଗତି କରୁଛି । ମନେ ପଡ଼ୁଛି, ସେ ସମୟର ଜଣେ ଉଚ୍ଚ ଶାସକ କଥା ପ୍ରସଙ୍ଗରେ କହିଥିଲେ, "ଖୁବ୍ ବଡ଼ ହେଲେ ଭାରତର ଗଣତନ୍ତ୍ର ଶାସନର ମର୍ଯ୍ୟାଦା ଗୋଟିଏ ଶତାବ୍ଦୀର ଚଉଠ ପର୍ଯ୍ୟନ୍ତ ରହିବ । ତା'ପରେ ରାଜୁଡ଼ା ଶାସନ ହୋଇଯିବ ।"

ଏ କଥାର ମର୍ମ ମୁଁ ଅନେକ ସମୟରେ ଭାବେ । ସମୟର ଗତିରେ ଏ କଥାର ମର୍ମ ଗ୍ରହଣ କରିବାକୁ ଚେଷ୍ଟା କରେ । କିନ୍ତୁ ମନେକରେ ଯମ୍ଭାନିତ ବନ୍ଧୁ ଯେଉଁ ମନ୍ତବ୍ୟ ଦେଇଥିଲେ ସେଥିରେ ବର୍ତ୍ତମାନ ପରିସ୍ଥିତି ଯାହା ହେବ ତାହା କଳନା କରିପାରିନଥିଲେ । ଶାସନ ପରିଣାମରେ ରାଜୁଡ଼ା ହୋଇଯିବ ବୋଲି ସେ ଯାହା କହିଥିଲେ ତାହା ନିର୍ଣ୍ଣୟ କରିବାରେ ଦୂରଦର୍ଶିତା ନ ଥିଲା । ଯେଉଁ ରାଜୁଡ଼ାକୁ ଆମେ ଛାଡ଼ି ଆସିଛୁ, ସେତେବେଳେ ରାଜାଙ୍କୁ ତାଙ୍କ କର୍ମଚାରୀମାନେ ମାନୁଥିଲେ । ଲୋକେ ବି ମାନୁଥିଲେ । କର୍ମଚାରୀ ଓ ଜନସାଧାରଣ ସମସ୍ତଙ୍କର ରାଜାଙ୍କ ଡର ଥିଲା । ଆଜି ଯେ ରାଜା, ସେମାନେ ନାମକୁ ମାତ୍ର ରଜା, ତାଙ୍କ କର୍ମଚାରୀମାନେ ତାଙ୍କୁ ପଛରେ ବିଦ୍ରୂପ କରନ୍ତି । ଲୋକେ ହାତଗୁଞ୍ଚା ଦେଇ ଏ କର୍ମଚାରୀଙ୍କୁ ଭୁଆଁ ବୁଲାଉଛନ୍ତି । ଆଜି ୩୦ ବର୍ଷ ପରେ କର୍ମଚାରୀମାନେ ନିଜ ସ୍ୱାର୍ଥ-

ଚିନ୍ମାନେ ଶାସକ ଓ ଜନସାଧାରଣ ଉଭୟଙ୍କୁ ଯେପରି ବେଖାତିର କରି ଷ୍ଟ୍ରାଇକ୍, କଲମ୍ବ-ଗ୍ରାଉ ଆନ୍ଦୋଳନ ପ୍ରଭୃତି କରୁଛନ୍ତି ତାହା ୧୯୪୫-୪୬ ରେ କେହି କଳ୍ପନା ବି କରିପାରୁ-ନଥିଲେ ।

ଲୁଇସ୍ ସାହେବଙ୍କ ନଅବର୍ଷ ଶାସନ ସମୟରେ ଶାସନ ସୁଗମତ ଚାଲିଥିଲା ଓ ସେ ସମୟରେ ଦେଶରେ ଯେତେଗୁଡ଼ିଏ କାର୍ଯ୍ୟ ଆରମ୍ଭ ହୋଇଥିଲା ତାହା ଅନ୍ୟ କୌଣସି ସମୟରେ ହୋଇନାହିଁ । ଯେତେବେଳେ ଯେଉଁ କାର୍ଯ୍ୟର ଶୁଭ ଦଆ ହୋଇଥିଲା ତାକୁ ଯଥାସ୍ୱତ ସମ୍ମାନ କରିଥିଲେ ଦେଶର ବହୁ ମଙ୍ଗଳ ହୁଅନ୍ତାଣି । ବହୁ ମରୁଡ଼ିକୁ ସମ୍ଭାଳ ହୋଇଥାନ୍ତା, ଲୋକଙ୍କର ବୈଷୟିକ ଉନ୍ନତି ହୋଇଥାନ୍ତା । ସରକାରୀ ଧନର ସୁନସ୍ଥଳଣ ହୋଇ ପାରିଥାନ୍ତା ।

ଲୁଇସ୍ ସାହେବଙ୍କ ଅମଳରେ ଯୁଦ୍ଧର ଅବସାନ ସୂଚନା ମିଳିବାକ୍ଷଣେ ସାଧାରଣ ଲୋକଙ୍କ ମଙ୍ଗଳ ପାଇଁ ସେକ୍ରେଟେରୀ ଏବଂ ବିଭିନ୍ନ ବିଭାଗର ମୁଖ୍ୟମାନଙ୍କର ମାସିକ ସଭା ହେଉଥିଲା । ସେଥିକୁ କେତେକ ବିଶିଷ୍ଟ ବେସରକାରୀ ଲୋକଙ୍କୁ ବି ଡକା ଯାଉଥିଲା ଓ ସେମାନଙ୍କ ପରାମର୍ଶ ଗୁରୁତ୍ୱର ଭାବରେ ବିଚାରକୁ ନିଆଯାଉଥିଲା । ଏହାର ଗୋଟିଏ ମାତ୍ର ଉଦାହରଣ ଏଠାରେ ଦେଲେ ଯଥେଷ୍ଟ ହେବ । ଜଣେ ବେସରକାରୀ ଭଦ୍ରବ୍ୟକ୍ତି ଏହିପରି ଗୋଟିଏ ସଭାରେ ପ୍ରସ୍ତାବ ଦେଲେ, ଓଡ଼ିଶା ବାହାରକୁ ଯେଉଁ ଶ୍ରମିକମାନେ ଯାଉଛନ୍ତି ସେଗ, ତାଙ୍କୁ ରୋକାଯାଉ ; ନ ରୋକିଲେ ଆମ ରାଜ୍ୟରେ କିଛି କାମ ହୋଇପାରିବ ନାହିଁ । ଏ ପ୍ରସ୍ତାବର ବିଚାର ମୋର ଉଦ୍ୟମରେ ପରବର୍ତ୍ତୀ ବୈଠକକୁ ରହିଲା । ଏହା ଭିତରେ ମୁଁ ଓଡ଼ିଶା ରିଭ୍ୟୁରେ ଏପରି ଗୋଟିଏ ପ୍ରବନ୍ଧ ପ୍ରକାଶ କଲି ଯାହା ଫଳରେ ଏ ପ୍ରସ୍ତାବର ମୃତ୍ୟୁ ଅଙ୍କୁର କାଳରେ ହୋଇଗଲା ।

ଏହି ସମୟରେ ଓଡ଼ିଶା ରିଭ୍ୟୁ ଓ [illegible] ପ୍ରାପ୍ତ (Contributed) ଲେଖା ବୋଲି ମୁଁ ପ୍ରତି ସଂଖ୍ୟାରେ ଗୋଟିଏ ଦୁଇଟି ଲେଖାଏଁ ପ୍ରବନ୍ଧ ପ୍ରକାଶ କରୁଥାଏଁ ।

ଏ ପ୍ରବନ୍ଧମାନଙ୍କରେ ପ୍ରକାଶିତ ମତାମତ ପାଇଁ ସରକାର ଦାୟୀ ନୁହନ୍ତି ବୋଲି ଲେଖା ହେଉଥାଏ । ସେ ସମୟର ଚିଫ୍ ସେକ୍ରେଟେରୀଙ୍କ ଯୋଗୁଁ ମୋର ଏ ଉଦ୍ୟମ ସରକାର ମଞ୍ଜୁର କରିଥିଲେ । ଏଭଳି ପ୍ରବନ୍ଧରୁ କେତେକ ମୁଁ ନିଜେ ଲେଖିଦିଏ ଏବଂ ଆଉ କେତେକ ମୋର ଅନ୍ତରଙ୍ଗ ବନ୍ଧୁମାନଙ୍କଠାରୁ ଗ୍ରହଣ କରି ସେମାନଙ୍କୁ କିଛି କିଛି ପାରିଶ୍ରମିକ ଦିଏ । ମୁଁ ନିଜେ ଲେଖିଥିବା ଅନେକ ପ୍ରବନ୍ଧ ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ବୋଷଙ୍କ ଭଳି କେତେକ ବିଶିଷ୍ଟ ଓ ଦୁର୍ଦ୍ଦଶାଗ୍ରସ୍ତ ବନ୍ଧୁଙ୍କଠାରୁ ମିଳିଛି ବୋଲି ଲେଖି ସେମାନଙ୍କୁ ସେଥିପାଇଁ ପାରିଶ୍ରମିକ ଦେଇଦିଏ । ସେତେବେଳେ ସରକାର ପ୍ରତିଷ୍ଠା କରିଥିବା ସଙ୍ଗୀତ ପ୍ରଚାର ବିଭାଗ ପାଇଁ ମଧ୍ୟ ଶ୍ରୀମତୀ ସରଳା ଦେବୀ, ଶ୍ରୀ ଗୋଦାବରୀଶ ମହାପାତ୍ର ଓ ତାଙ୍କ-ଦ୍ୱାରା ମନ୍ତ୍ରୀତ୍ୱ ଛଡ଼ିଥିବା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କଲମରୁ କେତେକ ସଙ୍ଗୀତ ସଂଗ୍ରହ କରି ଛପାଉଥାଏ ।

ବାହାରକୁ ଯାଉଥିବା ଶ୍ରମିକମାନଙ୍କ ସମସ୍ୟା ବିଷୟରେ ଗୋଟିଏ ପ୍ରବନ୍ଧ ମୁଁ ଲେଖି ପୂର୍ଣ୍ଣ ବୋଷଙ୍କଠାରୁ ତାକୁ ସଂଗ୍ରହଣ କରି ଓଡ଼ିଶା ଶଭ୍ୟରେ ଛପାଇ ଦେଲି । ଆସନ୍ତା ମିଟିଂରେ ଏଇ ବିଷୟ ପଡ଼ିଲାବେଳକୁ ସେଇ ପ୍ରବନ୍ଧଟି ପ୍ରକାଶିତ ହୋଇଥାଏ ଓ ଲାଟ ସାହେବଙ୍କ ହାତରେ ପଡ଼ିଥାଏ । ସେ ତାକୁ ପଢ଼ି ଏତେ ମୁଗ୍ଧ ହେଲେ ଯେ ଏହି ବିଷୟରେ ପ୍ରସ୍ତାବ ଆଣିଥିବା ବେସରକାରୀ ଭଦ୍ରବ୍ୟକ୍ତିଙ୍କୁ ସେ ପ୍ରବନ୍ଧଟି ପଢ଼ିବାକୁ କହି ଦରିଦ୍ର ଲୋକଙ୍କ ହିତ ଦୃଷ୍ଟିରେ ଏ ବିଷୟରେ ପ୍ରସ୍ତାବିତ ନିଷେଧ ନ କରିବାକୁ ବୁଝାଇ ଦେଲେ । ପରେ ଏ ପ୍ରବନ୍ଧ ମୁଁ କାହାଠାରୁ ଆଣିଛି ବୋଲି ମୋତେ ପଚାରିଲେ । ମୁଁ ପୂର୍ଣ୍ଣ ବୋଷଙ୍କ ନାମ କହିଲି ଓ କଲିକତାରେ ରହି ସେ ବହୁ ବର୍ଷ ଓଡ଼ିଆ ଶ୍ରମିକମାନଙ୍କର ସେବା କରିଛନ୍ତି ବୋଲି ବୁଝାଇଲି । ସୁବିଧା ଦେଖି ତାଙ୍କୁ ଆଣିବ ବୋଲି ମୋତେ କହିଲେ । ଥରେ ଗୋଟିଏ ଚା ପାର୍ଟିକୁ ତାଙ୍କୁ ନିମନ୍ତ୍ରଣ କରାଇଥିଲି । ଅଳ୍ପ ଦିନରେ ଲୁଇସ୍ ସାହେବ ବିଲାତ ଗଲେ ଓ ପୂର୍ଣ୍ଣବାବୁ ଇହଧାମ ତ୍ୟାଗ କଲେ ।

୧୯୪୫ ରେ ଯୁଦ୍ଧ ବନ୍ଦ ହେବା ପୂର୍ବରୁ ସଙ୍ଗୀତ ପ୍ରଚାର ବିଭାଗ ମୋ ହାତକୁ ଚାଲି ଆସିଥାଏ ଓ ଯୁଦ୍ଧ ସାହାଯ୍ୟ ବିଭାଗ ବୋଲି ଆଉ ଯେଉଁ ବେସରକାରୀ ସଂସ୍ଥାଟି ଗଠିତ ହୋଇଥିଲା ତାହା ମଧ୍ୟ ସରକାରୀ ପ୍ରଚାର ବିଭାଗରେ ମିଶି ଯାଇଥାଏ । ଏଥିରେ ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଥିଲେ କଟକ ଜିଲ୍ଲାର ମୁଖ୍ୟ ଓ ପଣ୍ଡିତ ନୀଳକଣ୍ଠ ଦାଶ ଥିଲେ ସମଗ୍ର ଓଡ଼ିଶାର ମୁଖ୍ୟ । ସେ ଗୋଟିଏ ଅଫିସ୍ କରିଥିଲେ । ସେଥିକୁ ଟାଇପ୍ ରାଇଟର, ପଙ୍ଖା, ଚଉକି ଟେବୁଲ ପ୍ରଭୃତି ଯାହା ନେଇଥିଲେ ସେଗୁଡ଼ିକ ଥରେ ଦୁ'ଥର ଲେଖିବା ପରେ ମଧ୍ୟ ଫେରାଇଲେ ନାହିଁ । ଥରକୁ ଥର ମୋ ଉପରେ ଚିଫ୍ ସେକ୍ରେଟେରୀଙ୍କ ଆଜ୍ଞା ତାଗିଦା ଆସିଲା, ଏଥିପାଇଁ ପଣ୍ଡିତ ମହାଶୟଙ୍କ ବିରୁଦ୍ଧରେ ଉଚିତ୍ କାର୍ଯ୍ୟାନୁଷ୍ଠାନ କରିବାକୁ । ଏଣେ ପଣ୍ଡିତ ମହାଶୟ ତାଙ୍କ ଗସ୍ତଖର୍ଚ୍ଚ ପାଇଁ ଗୋଟାଏ ଲମ୍ବା ବିଲ ଦେଇଥାନ୍ତି । ତାହାର ବହୁ ଭାଗ କଟକରୁ ତାଙ୍କ ଗାଁକୁ ଯିବା ଖର୍ଚ୍ଚ । ତାହା ତାଙ୍କୁ ଦିଆ-ଯିବାର ନୁହେଁ ବୋଲି ଅର୍ଡ଼ର ହୋଇଥାଏ ।

ମୁଁ ଭାରି ଅଡ଼ୁଆରେ ପଡ଼ିଲି । ପଣ୍ଡିତ ମହାଶୟ ମୁଁ ଚାକିରି ଗ୍ରହଣ କଲା ସମୟରେ ମୋ ବିରୁଦ୍ଧରେ ଯାହା କରିଥିଲେ ଓ ନବଭାରତ ପ୍ରେସ୍ ସମ୍ପର୍କରେ କାଗଜ ବ୍ୟବସାୟୀଙ୍କୁ ଲଗାଇ ମୋ ବିରୁଦ୍ଧରେ ଯେଉଁ ମକଦ୍ଦମା କରାଇଥିଲେ ଏତେବେଳେ ମୁଁ ତାଙ୍କ ବିରୁଦ୍ଧରେ କିଛି କଲେ ପ୍ରତିଶୋଧ ନେଉଛି ବୋଲି ସେ ମନେ କରିବେ । ପ୍ରତିଶୋଧ ନେବାର ମନୋବୃତ୍ତି ମୋର ନ ଥାଏ । ତେଣୁ ମୁଁ ଗୋଟିଏ ପ୍ରସ୍ତାବ ଦେଲି: ତାଙ୍କ ଗସ୍ତ ଖର୍ଚ୍ଚ ନାକଚ କରାଯାଉ ଏବଂ ଜାଗାସବୁ ଯୁଦ୍ଧ ସାହାଯ୍ୟର ଉପକରଣାଦି ପାଇଁ କୌଣସି କାର୍ଯ୍ୟାନୁଷ୍ଠାନ କରା ନ ଯାଉ । ଚିଫ୍ ସେକ୍ରେଟେରୀଙ୍କୁ ଏ ବିଷୟ ପାଇଁ ବ୍ୟକ୍ତିଗତ ଭାବରେ ସବୁ କହିଲି । ନୀଳକଣ୍ଠ ବାବୁଙ୍କୁ ସାଧୁ କରିବା ବୋଲି ସେ ଆଗ କହିଥିଲେ ଓ ଯୁଦ୍ଧ ସାହାଯ୍ୟ ବେଳେ ସେ ତାଙ୍କର ଖବର କାଗଜ ପାଇଁ ବହୁତ କାଗଜ ନେଇଯାଇଥିବାର

ପ୍ରକାଶ କଲେ । ଯାହା ହେଉ ମୋର ଆଲୋଚନା ପରେ ସେ ମୋ କଥାରେ ଏକମତ ହୋଇ ଲର୍ଡ୍ ସାହେବଙ୍କ ମଞ୍ଜୁରୀ ଆଣିଥିଲେ ।

ପଣ୍ଡିତ ମହାଶୟଙ୍କୁ ଏସବୁ ବିଷୟ ବୁଝାଇବା ପରେ ବି ସେ କହୁଥାନ୍ତି, କୌଣସି ମତେ ତାଙ୍କ ଗସ୍ତଖର୍ଚ୍ଚଟା ମିଳେଇ ଦେବାକୁ । ତାଙ୍କ ପାଖରେ ଗସ୍ତଖର୍ଚ୍ଚର ଯେଉଁ କପି ଥିଲା ତାକୁ ତନ୍ନତନ୍ନ କରି ଦେଖି ତାଙ୍କୁ ବୁଝାଇଲି ଯେ ସେଥିରୁ ଚଉଦ ଅଣା ତାଙ୍କର ଗାଁକୁ ଯିବା ଓ ଗାଁରୁ ଆସିବା ଖର୍ଚ୍ଚ । ଏହା ତାଙ୍କର ପ୍ରାପ୍ୟ ବୋଲି ସରକାରୀ ଅର୍ଡ଼ର ଥିବା ଦରକାର । ସେ କହିଲେ, ଏଥିପୂର୍ବରୁ ସେ ସବୁବେଳେ ଗାଁକୁ ଯିବା ଓ ଗାଁରୁ ଆସିବା କହି ବିଲ୍ ନେଇଛନ୍ତି । ମୁଁ କହିଲି, ସେ କଥା ଉଠିଲେ ସେ ପୂର୍ବ ବିଲ୍‌ରେ ନେଇଥିବା ଟଙ୍କା ଓ୍ୟାପସ୍ ଦେବାକୁ ପଡ଼ିପାରେ । ଏହା ଶୁଣିବା ପରେ ସେ ଟିକିଏ ଚମକି ପଡ଼ିଲା ପରି ହେଲେ । ଘରକୁ ଯିବା ଆସିବାରେ ସେ ମୋଟ ଉପରେ ସ୍ବଶ ହଜାର ଟଙ୍କା ପର୍ଯ୍ୟନ୍ତ ନେଇଥା'ନ୍ତି । ସେତକ ଓ୍ୟାପସ କରିବାକୁ ପଡ଼ିଲେ ଏ ନୂଆ ବିଲ୍‌ର ଦୁଇଗୁଣ ଟଙ୍କା ଯିବ । ଶେଷରେ କହିଲେ "ହଉ, ମୁଁ ଆଉ କଣ କହିବି ? ତୁ ତ ମୋର ନିଜ ଲୋକ, ଯାହା ପାରିବୁ ।" ଏତିକରେ ଏ କଥା ସରିଲା । ସେ ଆଉ କିଛି ଚିଠି ଦେଇ ନାହାନ୍ତି କିମ୍ବା ମୋତେ ଆଉ ଥରେ କହି ନାହାନ୍ତି ।

କାଉନ୍ସିଲ ମୁଖ ସାମ୍ମୁଖ୍ୟ ପ୍ରଚାର ବିଭାଗ ସଙ୍ଗେ ମିଶିଗଲା । ସେଥିରେ ଥିବା ଅଫିସରଙ୍କୁ ପ୍ରଚାର ବିଭାଗର ଜିଲ୍ଲାମାନଙ୍କରେ ରଖିଦେଲି । ସେ ମୋଟେ ତିନିଜଣ, ତେଣୁ ତା ବାଦ କର୍ମଚାରୀମାନଙ୍କ ମଧ୍ୟ ପ୍ରଚାର ବିଭାଗରେ ସାମିଲ୍ ହୋଇଗଲେ । ଏଥିରେ ଥିଲେ ୬ ଗୋଦାବରୀଶ ମହାପାତ୍ର । ସେ ବହୁତ ଗୁଡ଼ିଏ ଗୀତ ଲେଖି କରି ଦେଲେ । ତାହା ଆମର ଜିଲ୍ଲା ଅଫିସରମାନେ ନାନା ରୂପରେ ପ୍ରଚାର କଲେ । ଗୋଦାବରୀଶ ମହାପାତ୍ର ନିଆଁଖୁଣ୍ଟା ଛପାଉଥାନ୍ତି । ସେଥିରେ ପ୍ରାୟ ସରକାର ବିରୋଧୀ ବିଷୟ ଲେଖା ହୁଏ । ଆମକୁ ଯାହା ଦିଅନ୍ତି ତାହା ଠିକ୍ ଓଲଟା । ତାଙ୍କର ଏ ଦୋମୁଣ୍ଡିଆ ଲେଖା ଆମ ଚିଫ୍ ସେକ୍ରେଟେରୀଙ୍କୁ ସୁଖ ଲାଗୁନଥାଏ । ମୁଁ ଲୁହାପୋଛା କରି ତାଙ୍କୁ ଆପୁଡ଼ା ଥାପୁଡ଼ା କରୁଥାଏ ।

ସେତେବେଳକୁ ପଣ୍ଡିତ ଗୋଦାବରୀଶ ମିଶ୍ର ମନ୍ତ୍ରୀମଣ୍ଡଳରୁ ଯାଇଥାନ୍ତି । ପଇସା ପତ୍ର ଯୋଗୁ ବଡ଼ ଅଭାବ ଭୋଗ କରୁଥାନ୍ତି । ଦିନେ ମହାପାତ୍ର ଦଶଟି ଗୀତ ଲେଖିକରି ଆଣି ଦେଲେ । କହିଲେ, ଏହା ପଣ୍ଡିତ ମିଶ୍ରଙ୍କର । ସେ ତ ନାଁ ଦେବେ ନାହିଁ । କ'ଣ ଦେବ ଦିଅ । ନାଁ ଦେଇଥିଲେ ଗୋଟିଏ ଗୀତକୁ ଦୁଇଶହ ତିନିଶହ ଦିଆଯାଇପାରିଥାନ୍ତା, କିନ୍ତୁ ତା ନ ଥିବାରୁ ମାମୁଲି ଶହେ ଲେଖାଏଁ ଦେଲି । ଏ ବିଷୟରେ ପଣ୍ଡିତ ମିଶ୍ରଙ୍କଠାରେ ଚୁଗୁଲି କରି ମହାପାତ୍ର ମୋର ତାଙ୍କର ସମ୍ପର୍କକୁ ଟିକିଏ ତିକ୍ତ କଲେ । ବିଷୟ କିଛି ନୁହେଁ । ଏହି ସମୟରେ ସ୍ବାବଲମ୍ବନ କନ୍ଧ ପାଇଁ ପ୍ରଚାର କରିବାକୁ ସରକାର ପ୍ରାୟ ଦଶ ଜଣ ଅଧିକ ପ୍ରଚାର ଅଫିସର ରଖିଲେ । ଏ ଗୁଡ଼ିକ ସବୁ ମୁଁ ବାଛୁଥିଲି । ବ୍ୟକ୍ତିଗତ ଭାବରେ ସମସ୍ତଙ୍କ ସଙ୍ଗେ

ସାକ୍ଷାତ କରି ସେମାନଙ୍କ ନାମ ସୁପାରଶ୍ କଲି । ସମସ୍ତେ ଷ୍ଟେଟ୍ ଓ ସରକାରୀ ଇଲାକାରେ ବଡ଼ କାମ କରୁଥିଲେ । ମୁଁ ଭବିଷ୍ୟତର ଯେଉଁ ଚିତ୍ର ଦେଇଥିଲି ସେଥିରେ ସେମାନେ ଭଲ ଯାଇ ଦରଖାସ୍ତ ଦେଲେ । ମୋ ଭବିଷ୍ୟତ ବାଣୀ ସଫଳ ହେଲା । ନୂଆ ଅଫିସରମାନଙ୍କ ଭିତରୁ କେହି ପଶ୍ଚାତ୍ତାପ କଲେ ନାହିଁ । ସେମାନଙ୍କ ପାଇଁ ମୁଁ ଭବିଷ୍ୟତର ଯେଉଁ ସ୍ୱପ୍ନ ଦେଇଥିଲି ତାହା ଦୁଇ ଜଣଙ୍କଠାରେ ଫଳିଲା । ସେ ଦୁହେଁ ବର୍ତ୍ତମାନ ପ୍ରଚାର ବିଭାଗର ବଡ଼ ଅଫିସର ।

ହୀରାକୁଦ ଡ୍ୟାମ ବିରୁଦ୍ଧରେ ଗୋଟାଏ ବଡ଼ ଧରଣର ଆନ୍ଦୋଳନ ଚାଲିଥାଏ । ଏଠାରେ ଶଙ୍କର ପ୍ରସାଦ ମିଶ୍ର ଓ ଜଣେ ବଡ଼ ଓକିଲ ନେତୃତ୍ୱ ନେଇଥାନ୍ତି । ସେ ହୀରାକୁଦ ଡ୍ୟାମ ବିରୁଦ୍ଧରେ ଗୁଡ଼ାଏ ସତ୍ୟ ଓ ବହୁତ ଗୁଡ଼ାଏ ଅସତ୍ୟ ମିଶାଇ ପ୍ରଚାର କରୁଥାନ୍ତି । ଆମ ଲୋକ ଗଲେ ତାଙ୍କୁ ବୁଝାଇ ଦିଅନ୍ତି ନାହିଁ । ସମଗ୍ର ସମ୍ବଲପୁର, ବନ୍ଧ ଭିତରେ ଓ ହୀରାକୁଦ ବନ୍ଧର କେନାଲମାନଙ୍କ ପାଣିରେ ବୁଡ଼ିଯିବ ବୋଲି କହୁଥାନ୍ତି ଓ "କଟକିଆ ଶଳେ" ଆସି ଆମ ଜିଲ୍ଲାକୁ ଛାରଖାର କରିଦେବେ ବୋଲି କହିଲା ବେଳେ ଭାରି ଜୟ ଜୟ ନାଦ ହୁଏ । ଏଥିରେ ଆମ ଲୋକେ ଗୁଲୁକନ ଖସି ଆସି ରିପୋର୍ଟ ଦେଇ ଦିଅନ୍ତି । ମୁଁ ତ ସେତେବେଳକୁ ପ୍ରଚାର ବିଭାଗର ଅଧିକାରୀ ହୋଇ ଯାଇଥାଏ । ଭାରି ଉତ୍ସାହରେ ମୁଁ କାମରେ ଲାଗିଥାଏ । ଏ ରିପୋର୍ଟ ସବୁ ଦେଖି ମୁଁ ସ୍ଥିର କଲି ଦଶ ଦିନ ସମ୍ବଲପୁର ଜିଲ୍ଲାରେ ଗସ୍ତ କରିବି । ଆମ ଅଫିସରମାନେ ବିଭିନ୍ନ ସ୍ଥାନରେ ମୋ କହିବା ଅନୁସାରେ ପ୍ରଚାର କରିବେ । ଏହା ଚିଫ୍ ସେକ୍ରେଟେରୀଙ୍କୁ ଜଣାଇ ଦେଇ ;ମୁଁ ବାହାରିବାକୁ ବସିଲି । ସେତେବେଳେ ଚିଫ୍ ସେକ୍ରେଟାରୀ ମୁଖାର୍ଜି ସାହେବ । ସେ ପୂର୍ବରୁ ଜିଲ୍ଲାମାଜିଷ୍ଟ୍ରେଟ୍ ଶ୍ରୀ ଗୁହଙ୍କଠାରୁ ସବୁ ରିପୋର୍ଟ ପାଇଥାନ୍ତି । ମୋତେ କହିଲେ, "ତମ କାର୍ଯ୍ୟକୁ ମୁଁ ସର୍ବତୋଭାବେ ପସନ୍ଦ କରୁଛି । କିନ୍ତୁ ଜୀବନଟାକୁ ଏପରି କାର୍ଯ୍ୟରେ ବଳି ଦିଅ ନାହିଁ । ହୀରାକୁଦ ବନ୍ଧ ବିରୁଦ୍ଧରେ ଯାହା ପ୍ରଚାର ହେଉଛି ସେ ସବୁ ମିଛ ନୁହେଁ । ଆମେ ଖୋସଲା ସାହେବଙ୍କ କଥାରେ ପଡ଼ି ଅନ୍ଧାରୁଆ ଡେଉଁଥାଇଁ ; ସାବଧାନରେ ଚାଲ । ଶେଷରେ ସରକାରୀ ବଳ ସାହାଯ୍ୟରେ ଜନସାଧାରଣଙ୍କୁ ଦବାଇ ଦେବାକୁ ହେବ ।" "ଆଜ୍ଞା ହେଉ" ବୋଲି କହି ଗସ୍ତକମ ମଞ୍ଜୁର କରାଇଲି ।

ଯାଇ ସମ୍ବଲପୁରରେ ପହଞ୍ଚିଲା ବେଳକୁ ମନ ଗୁହ (ମୋଠାରୁ କଲେଜରେ ଗୁଣ୍ଟ ବର୍ଷ ବଡ଼ । ଡେପୁଟି ମାଜିଷ୍ଟ୍ରେଟ୍‌ରୁ ଜିଲ୍ଲାମାଜିଷ୍ଟ୍ରେଟ୍ ହୋଇଥାନ୍ତି ) ମୋତେ ଖୁବ୍ ସଦ୍ଭାବ ଦେଖାଇ ଖୁଆଇଲେ ପିଆଇଲେ । ସର୍ବଶେଷରେ ମୋ ସଙ୍ଗେ ମନ୍ତ୍ରଣା ହେଲା ମୁଁ କାଲି 'ସାପଲହରା' ଗଲାବେଳେ ମୋ ସଙ୍ଗେ ଅନ୍ତତଃ ପଚାଶ ଜଣ ସଶସ୍ତ୍ର ପୋଲିସ୍ ଯିବେ । କାଲି ସକାଳେ କହିବ ବୋଲି କହି ଚାଲିଗଲି । ତହିଁ ଆରଦିନ ସକାଳୁ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଦେଲି, 'ଆପଣଙ୍କର ମୋ ମଙ୍ଗଳପାଇଁ ଚିନ୍ତାରେ ମୁଁ ଚିରଋଣୀ ରହିବି । ପୁଲିସ୍ ନେଇ ପ୍ରଚାର କରିବା ନିରର୍ଥକ । ଯଦି ମୋ'ର ବା ଅଉ କାହାର ମୃତ୍ୟୁ ହୋଇଯାଏ ଆପଣ ସରକାରଙ୍କୁ ବିଧିବାଙ୍କ ସାହାଯ୍ୟ ପକାଶ ଯଥାଯଥ ସାହାଯ୍ୟ କରିବାକୁ କହିଛନ୍ତି । ମୁଁ କାଲି ଯାଉଛି ଭିତ । ଦିନ ଦିନଟା ସୁଦ୍ଧା ମୁଁ ଯଦି ଫେରି ଆପଣଙ୍କ ସଙ୍ଗେ ଅଫିସରେ ଦେଖା

ନ ହୁଏ ତାହାହେଲେ ଆପଣ ସଙ୍ଗେ ସଙ୍ଗେ ପୋଲିସ ଦଳକୁ 'ସ୍ୱାପଲହରା' ପଠାଇ ଦେବେ ।

ଏତକ କହି ମୁଁ ବାହାରିଲି । ମୋ ସଙ୍ଗେ ସାଥି ହେଲେ ଶ୍ରୀଯୁକ୍ତ ଭୈରବ ମହାନ୍ତି (ସେତେବେଳେ ଆସେମ୍ବ୍ଲି ମେମ୍ବର, ତା'ପରେ ଉପମନ୍ତ୍ରୀ ଏବଂ ବର୍ତ୍ତମାନ ଲୋକସଭାର ସଦସ୍ୟ) । ଆମେ ଯାଇ ପହଞ୍ଚିଲୁ ବେଲକୁ ବଟଣ କାରଖାନା । ଗୋଟେ ବଡ଼ ଆମ୍ବତୋଟା, ଯାହାକୁ ଆମେ ସଭା ଓ ପ୍ରଚାର ପାଇଁ ସଫାସୁତୁରା କରିଥିଲୁ, ସେଇଟିକୁ ଗାଁ ବାଲା ଦଖଲ କରିସାରିଥାନ୍ତି । ପାଖ ଆଖର ସ୍ଥାନୀୟ ମହିଳା, ପ୍ରାୟ ୪୦ବର୍ଷ ଭିତରର, ସମ୍ବଲପୁରୀ ଶାଢ଼ୀ କାଛୁକରି ପିନ୍ଧି ମୁଣ୍ଡ ଢାଙ୍କ ଦେବା ନିମନ୍ତେ ଟେଣ୍ଡର ପାଉଥାନ୍ତି । ସଭାସ୍ଥଳ ବୁଲିଆଡ଼ ଯାକ ବୁଲିଆସି ଭୈରବ ବାବୁ ଓ ମୁଁ ଗୋଟିଏ ପିଣ୍ଡିରେ ସତରଞ୍ଜି ଖଣ୍ଡିଏ ପକାଇ ବସିଲୁ । ସ୍ତ୍ରୀ ଲୋକମାନଙ୍କର ଶୋଭାଯାତ୍ରା ବାହାରିଲା । ଆମ ପଛଆଡ଼େ ଗୋଟିଏ ବଡ଼ ଖଟ ଆଶ୍ରୟ ସ୍ୱରୂପ ଡେରା ହୋଇଥାଏ । ସ୍ତ୍ରୀ ଲୋକମାନଙ୍କର ଆକ୍ରମଣରୁ ଆତ୍ମରକ୍ଷା କରିବା ପାଇଁ ଆମର ସେଇ ଖଣ୍ଡିକ ପ୍ରତିରୋଧ କରୁଥାଏ । ସ୍ତ୍ରୀ ଲୋକମାନେ ହାତ ଗୋଡ଼ ଯେପରି ଚଳାଉଥାନ୍ତି, ତୁଣ୍ଡ ବି ସେଇପରି ଚଳାଉଥାନ୍ତି । କଣ୍ଟକ ପେଷ୍ଟ ପଡ଼େ ନାହିଁ, କ୍ୱାହା ନଡ଼ଆ (କୋପ୍ପ) ଦରକାର ନାହିଁ । ଗୋଦର ଗୋଡ଼ ନାଇଁ ଘୁଞ୍ଚୁ । ମନ୍ଦ ସ୍ୱରରେ ଚିତ୍କାର କରି ହାତ ଯେତେବେଳେ ଆମ ମୁହଁକୁ ବଢ଼ାଇ ଦେଉଥାନ୍ତି ସେଥିରେ ହାତ ଅପେକ୍ଷା ଦୁରନ୍ତର ତାଙ୍କ ଛେପ ଆମ ଦୁହିଁଙ୍କର ମୁହଁରେ ଲାଗୁଥାଏ । ମୁଁ ମଝିରେ ମଝିରେ ଖଣ୍ଡିଏ ରୁମାଲ୍ ମୁହଁରେ ଘଷୁଥାଏ । ଭୈରବ ବାବୁଙ୍କର ବିରକ୍ତ ମୁହଁକୁ ହସଖୁସି ଦ୍ୱାରା ଚପାଇବାକୁ ଚେଷ୍ଟା କରୁଥାଏ । ଏହାର ଟିକିଏ ପରେ ଗୋଟିଏ ମଧ୍ୟବୟସ୍କ ପୌଢ଼ାର ସମସ୍ତ ଲୁଗାଟି ତଳକୁ ଖସିପଡ଼ିଲା ଓ ରହିଲା କୌପୁନ । ସେତିକବେଳେ ମୁଁ ଠିଆହୋଇ ସମସ୍ତଙ୍କୁ ଶୁଭିଲା ପରି ମାଇକ୍ରୋଫୋନ ଖଞ୍ଜି ବକ୍ତୃତା ଆରମ୍ଭ କଲି । ତା'ର ସାରମର୍ମ : ତମେ ସ୍ୱାରକୁଦ ବନ୍ଧ ଚାହୁଁନାହିଁ । ଭଲ କଥା । ଆମକୁ ଯିଏ ଏଠାକୁ ପଠାଇଛନ୍ତି ତାଙ୍କୁ ଯାଇଁ ଆମେ ଏ ଖବର ଦେବୁ । ତା'ପରେ କ'ଣ ହେବ ସେ ଜାଣନ୍ତି । ଆମେ ଆଉ ଆସିବୁ ନାହିଁ । କିନ୍ତୁ ଆମର ଏତିକ ମାତ୍ର ଆପତ୍ତି ଯେ ତୁମେ କଥାଟା ଜଣାଉ ଜଣାଉ ଇଜ୍ଜତ ସାରି ଦେଉଛ । ମୋର ଜଣେ ଭଉଣୀ ବର୍ତ୍ତମାନ ସମସ୍ତ ଲୁଗା ଫିଟେଇ ଦେଲେ । ଏଥିରେ ତାଙ୍କର ଇଜ୍ଜତ ଗଲା ଟି ! ଏତିକ ସମସ୍ତେ ବିଚାର କର ।

ଏତକ କହିସାରିବା ମାତ୍ରେ ମୁଁ ବସି ପଡ଼ିଲି ଏବଂ ସମସ୍ତ ଜନତା ଅବାକ୍ ହୋଇଗଲେ ।

× × ×

ଖାସ୍ ଆତ୍ମ ଜୀବନୀ ପାଇଁ ଲେଖାଯାଉଥିବା ଆତ୍ମ ଜୀବନୀ ଏଇଠାରୁ ଆଉ ଲେଖା ହୋଇ ପାରନ୍ତା । ସେତକ ଦରକାର ନ ପଡ଼ିଲେ ଅବା ଆଉ କଏ ସେତକ ବାଧ୍ୟ ନ କଲେ ସ୍ୱର୍ଗୀୟ ଚନ୍ଦ୍ରମଣି ମିଶ୍ର ସ୍ୱାକୁ ଲେଖୁ ନ ଥିଲେ । ଏ ତ ଆରମ୍ଭ ହୋଇଥିଲା ସେଇପରି……

ସେଦିନ ଚନ୍ଦ୍ରମଣି ସନ୍ଧ୍ୟା କାର୍ଯ୍ୟକର୍ମ ସାରି ନିଜ ଶୋଇବା ଖଟ ଉପରେ ଛୋଟ ଡେସ୍କଟିକୁ ରଖି ନବଜୀବନ ପାଇଁ ଲେଖୁଥାନ୍ତି, ସମ୍ବଲପୁରର ଭରତ ଚନ୍ଦ୍ର ନାୟକ ଆସି ପହଞ୍ଚିଲେ । ବହୁତ ଦିନ ପରେ ଦୁଇ ବନ୍ଧୁଙ୍କର ଭେଟ ଭେଟି ହୋଇଥାଏ । ମୁଡ଼େ ସମସ୍ତ ଖୁସି ଗପ ଚାଲିଲା । ହଠାତ୍ ଗପର ମୋଡ଼ ବଦଳାଇ ଭରତ ଚନ୍ଦ୍ର କହିଲେ, "ମୋର ପୂର୍ବ ସ୍ମୃତି କଥା ଶିରୋନାମାରେ ଆପଣ ଆତ୍ମଜୀବନୀ ଲେଖନ୍ତୁ । ତା'ହେଲେ ଆପଣଙ୍କ ବୈଚିତ୍ର୍ୟମୟ ଜୀବନ କଥା ସମସ୍ତେ ପଢ଼ିବାକୁ ପାଆନ୍ତେ । ଗତ ରାତିଠୁ ଏଇ କଥା ମୋ ମନରେ ଖେଳୁଛି ।" ସ୍ୱଭାବ ସୁଲଭ ଢଙ୍ଗରେ ଚନ୍ଦ୍ରମଣି ତାଙ୍କର ପ୍ରିୟ ବନ୍ଧୁଙ୍କ ଉପରେ ସେ ଦାୟିତ୍ୱଟି ଲଦି ଦେଇ କହିଲେ, "ଆଗ ଆପଣଙ୍କ ଜୀବନ ଗପ ସମସ୍ତେ ଶୁଣନ୍ତୁ, ମୋ କଥା ପରକୁ ଥାଉ ।" ଭରତଚନ୍ଦ୍ର ପ୍ରଥମେ ଅମଙ୍ଗ ହୋଇ ଯୁକ୍ତି ବାଢ଼ିଲେ ଯେ "ମୋ ଜୀବନରେ ଏମିତି କ'ଣ ବୈଶିଷ୍ଟ୍ୟ ଅଛି ଯେ ଲେଖିବି ! ମୋ ହାତରେ ଏ ସବୁ ହେବନି, ତୁମେ ଲେଖିବ ସିନା ଲେଖ ।"

ଚନ୍ଦ୍ରମଣି ନଛୋଡ଼ ବନ୍ଦା ।

ବନ୍ଧୁଙ୍କ ମୁହଁରେ ନାହିଁକୁ ହଁ କରାଇବାରେ ତାଙ୍କର ଭାରି ବାହାଦୁରୀ ପଣ । ବନ୍ଧୁଙ୍କ ଯୁକ୍ତିକୁ ଖଣ୍ଡନ କରି କହିଲେ, "ଏଗାରଟି ଝିଅର ଯେଉଁ ବାପ ଅନ୍ଧାର ମୂଳକର ଅନ୍ଧ ସଂସ୍କାର ଓ ରକ୍ଷଣଶୀଳ ସମାଜର କଣ୍ଟକଣା ବିରୁଦ୍ଧରେ ସଂଗ୍ରାମ କରି ସବୁଗୁଡ଼ିକୁ ପାଠ ପଢ଼ାଇ ମଣିଷ କରି ପାରିଛି ତା'ର ଜୀବନ-ଉପନ୍ୟାସ ସମସ୍ତଙ୍କୁ ନିଶ୍ଚୟ ସୁଆଦ ଲାଗିବ । ଏଇ ମାସଠୁ ନବଜୀବନରେ ଏହା ଧାରାବାହିକ ବାହାର କରିବା ।"

ପ୍ରସ୍ତାବକ ନିଜେ "ମୋର ପୂର୍ବସ୍ମୃତି କଥା" ଲେଖିବାର ଗୁରୁ ଦାୟିତ୍ୱ ନେଇ ଫେରିଲେ । ହିସାବ ଭିତରେ ।।୧° ପୃଷ୍ଠାର ଲେଖା ଆସି ନବଜୀବନରେ ପହଞ୍ଚିଲା । ଦୀର୍ଘ ୫ ବର୍ଷ ଯାଏ ନବଜୀବନରେ ତାହା ଧାରାବାହିକ ବାହାରି ୧୯୬୭ ରେ ପୁସ୍ତକ କଳେବର ନେଇ ଓଡ଼ିଆ ଭାଷାର ପ୍ରଥମ ସମ୍ପୂର୍ଣ୍ଣ ଜୀବନ ଚରିତ ରୂପେ ଆତ୍ମପ୍ରକାଶ କଲା । ସେ ବହି ଯେ ପଢ଼ିଛି, ସେ ମୁଗ୍ଧ ହୋଇଛି ।

ଏଥର ଚନ୍ଦ୍ରମଣିଙ୍କ ପାଳି । ଭରତ ଚନ୍ଦ୍ରଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳିତ ହେଲା ସାପ୍ତାହିକ ନବଜୀବନ ପ୍ରକାଶନ ହୁଅନ୍ତେ ( ୧୯୭° ) "ଅର୍ଦ୍ଧଶତାବ୍ଦୀର ଅନୁଭୂତି" ରୂପରେ । କିଛି କାଳ ସେଥିରେ ଧାରାବାହିକ ବାହାରିବା ପରେ ମାସିକ ନବଜୀବନରେ କ୍ରମଶଃ

ପ୍ରକାଶିତ ହେଲା । ନବଜୀବନ ପାଇଁ "ଆର୍ଟିକ୍ଲ୍" ଲେଖିଲା ପରେ ମାସକୁ ଥରେ ୩୨ ପୃଷ୍ଠାର ଲେଖା ଲେଖି ଦିଅନ୍ତି । ଅର୍ଦ୍ଧଶତାବ୍ଦୀର ଅନୁଭୂତ ଅଧା ବାଟ ଯାଇନି, ଘୋଷିତ ହେଲା ଜାତୀୟ ଜରୁରୀକାଳୀନ ପରିସ୍ଥିତି ଓ ତଦ୍ଜନିତ ସମ୍ବାଦପତ୍ର ଓ ପତ୍ରିକାମାନଙ୍କ ଉପରେ କଣ୍ଠରୋଧ ପରୁଆ । ମାସିକ ନବଜୀବନର ଶେଷ ୮ ପୃଷ୍ଠାରେ "ସମ୍ବାଦ ଓ ସଂକେତ" ପ୍ରକାଶିତ ହେଉଥିଲା । ଏହି ସମ୍ପାଦକୀୟ ସ୍ତମ୍ଭରେ "ସମ୍ବାଦ" ଅପେକ୍ଷା "ସଂକେତ" ଉପରେ ସେ ଅଧିକ ଗୁରୁତ୍ୱ ଦେଉଥିଲେ । ମାତ୍ର ସେନସର୍ ଅଧିକାରୀମାନେ ସମ୍ପାଦକୀୟର ସଂକେତ ଦିଗ ପ୍ରତି ଅସନ୍ତୁଷ୍ଟ ଓ ହିଂସ୍ର ହେବା ଫଳରେ, ନବଜୀବନର ପ୍ରକାଶନ ବନ୍ଦ ହୋଇଗଲା ଓ ତା ସହିତ ଅର୍ଦ୍ଧଶତାବ୍ଦୀର ଅନୁଭୂତ-ଜର୍ଣ୍ଣର । ଯେଉଁ ନବଜୀବନ ଦୀର୍ଘ ୨୦ ବର୍ଷ ଧରି ଓଡ଼ିଶାର ସମାଜ, ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ନୂତନ ଚେତନାର ଏକ ଅପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା ତାର ଜୀବନ ଯିବାରେ ଚନ୍ଦ୍ରମଣିଙ୍କ ସାରସ୍ୱତ ସାଧନା ପ୍ରାୟ ସମାଧିସ୍ଥ ହୋଇ ଗଲା । ନବଜୀବନର ପ୍ରକାଶନ ବନ୍ଦ ହେଲା ୧୯୭୬ରେ । କଂପୋଜ କରିବା ପାଇଁ କଂପୋଜିଟରର କପି ନ ମାଗିବାରୁ ଆତ୍ମଜୀବନୀ ଲେଖିବାକୁ ଆକଟ ମଧ୍ୟ ପଡ଼ିଲାନି । କେତେ ଦିନ ପରେ ବନ୍ଧୁ ବାନ୍ଧବଙ୍କ ବାଧ୍ୟବାଧକତାରେ ସେ ପୁନର୍ବାର ଯେତେବେଳେ ଅର୍ଦ୍ଧ ଶତାବ୍ଦୀର ଅନୁଭୂତ କଥା ଲେଖି ବସିଲେ ସେତେବେଳକୁ ଡେରି ହୋଇଗଲାଣି । କାଳ ଆଉ ବେଶୀ ଦିନ ସହିଲାନି । ପ୍ରାୟ ଏକ ବର୍ଷ କାଳ ଶଯ୍ୟାଶାୟୀ ରହିବା ପରେ ୧୫ ଅଗଷ୍ଟ ୧୯୮୦ ରେ ତାଙ୍କର ଜୀବନ ଦୀପ ଲିଭିଗଲା ।

ଚନ୍ଦ୍ରମଣି ଥିଲେ ଏକ ଅନନ୍ୟ ସାଧାରଣ ସାରସ୍ୱତ ଶିଳ୍ପୀ । ତାଙ୍କ ଅସମ୍ପୂର୍ଣ୍ଣ ଜୀବନ-ଚିତ୍ରକୁ ପୂର୍ଣ୍ଣ କରିବାର ଶକ୍ତି ବା ସାହସ ଆମର କାହିଁ ! ଶିଳ୍ପୀଙ୍କର ନିଜସ୍ୱ ନୈପୁଣ୍ୟର ଅନୁକରଣ ବା କିଏ କରିବ ?

ବାଳପୁରଠାରୁ ସତ୍ୟବାଦୀ ବଲାଙ୍ଗିର ଦେଇ କଟକ ଯାଏ ଲମ୍ବି ଥିବା ବିଦ୍ୟାଧ୍ୟୟନ ପରେ ତାଙ୍କ ଜୀବନର ମୁଖ୍ୟ ୩ଟି ପର୍ବ ସ୍ୱାଧୀନତା ଆନ୍ଦୋଳନ ଓ କଂଗ୍ରେସ ସଂଗଠନ, ସରକାରୀ ଚାକିରି ଓ ନବଜୀବନ ପ୍ରକାଶନ । ସରକାରୀ ଚାକିରି ଜୀବନର ଅନୁଭୂତିଗୁଡ଼ିକୁ ଲିପିବଦ୍ଧ କରିବା ପୂର୍ବରୁ ସେ ଚାଲିଗଲେ । ଏହି ପର୍ବ ସମ୍ପୂର୍ଣ୍ଣ ହୋଇଥିଲେ ଅନେକ ଉପାଦେୟ କଥା ମିଳିଥାନ୍ତା । ସେ ଡାଏରୀ ଲେଖା ଆରମ୍ଭ କରିଥିଲେ ୧୯୫୩ ମସିହାରୁ ଓ ଏ ଅଭ୍ୟାସ ଶେଷ ପର୍ଯ୍ୟନ୍ତ ଅତୁଟ ରଖିଥିଲେ । ନବଜୀବନର ସମ୍ପାଦକୀୟ ଓ ଅନ୍ୟ କେତେକ ଲେଖାରେ ତାଙ୍କ ଅନୁଭୂତିର କେତେକାଂଶ ପରିସ୍ଫୁଟ । ଏଣୁ ତାଙ୍କ ଚାକିରି ଜୀବନର ସଂକ୍ଷିପ୍ତ ଭାବରେ ସେ ଲିପିବଦ୍ଧ କରି ଯାଇଥିବା ଜୀବନାନୁଭୂତିର କିୟଦଂଶ ନେଉଛୁ ତାଙ୍କ ଡାଏରୀ ପୃଷ୍ଠାରୁ .....

ଅଦିବାସୀ ମେଳାର ତୃତୀୟ ବର୍ଷ । ମନ୍ତ୍ରୀଙ୍କ ସବୁ ସୁନ୍ଦର ଦିଶିଲା । ଗଭର୍ଣ୍ଣର ମୋତେ 'Extemely able secretary,' ବୋଲି ନିଜ ବକ୍ତୃତାରେ କହିଲେ । ସ୍ୱାଦ୍ଵାରା ଆତ୍ମର ଶକ୍ତି ସୃଷ୍ଟି ହେବେ । ଆଜର ଅନୁଷ୍ଠାନଟି ଦେଖି, ନିଜ ବିଷୟରେ ମନର ସାହସ ଆତ୍ମର ବଢ଼ିଲା । ଦରକାର ହେଲେ ସ୍ୱକୀୟ ଛାଡ଼ି ମଧ୍ୟ କିଛି କରିପାରିବି ବୋଲି ବିଶ୍ୱାସ ହେଲା ।

ଏ ଥରର ପ୍ରଦର୍ଶନୀ ଆର ବର୍ଷଠାରୁ ଭଲ ହେଲା । ଆତ୍ମର ଅନେକ କଥା ହେବାକୁ ବାକୀ ଅଛି । ଆସନ୍ତା ବର୍ଷକୁ ଏଇ ଉତ୍ସାହ ରହିଲେ, ଦେଖାଯିବ । ସହକର୍ମୀ-ମାନଙ୍କର ମନ କାର୍ଯ୍ୟ ପ୍ରତି ଓ ତାହିଁ ସଙ୍ଗେ ମୋ ପ୍ରତି ଆକୃଷ୍ଟ ଥିବାର ପ୍ରମାଣ ମିଳିଲା ।

ମନ୍ତ୍ରୀ ମୋର ପରାମର୍ଶ ଅନୁସାରେ ନିଜ ସ୍ତ୍ରୀକୁ ୯ଶ ସାନ୍ତାଳ-ମେଣ୍ଟରେ ବାହାରିଲେ । ଦେଶ ଆଗରେ ଏହା ଗୋଟାଏ ବଡ଼ ଆଦର୍ଶ । ବଡ଼ ଦୁଃଖର ବିଷୟ ତାଙ୍କର କେତେକ ସହକର୍ମୀ ମଧ୍ୟ ଏଇ କାର୍ଯ୍ୟର ମର୍ମ ବୁଝିବାକୁ ସମର୍ଥ ହେଲେ ନାହିଁ ।

( ୨୭ । ୧ । ୧୯୫୩ )

ଆଜି ବରପାଲିରେ ଲୋକ ମଙ୍ଗଳ କାର୍ଯ୍ୟ କରୁଥିବା ସାହେବମାନେ ଆସି ମୋ ପାଖେ ପହଞ୍ଚିଲେ ।' ହିନ୍ଦୁ ଧର୍ମ ବିଷୟରେ ଆଲୋଚନା ହେଲା । ସେମାନଙ୍କୁ କ'ଣ ଲାଗିଥିବ କେଜାଣି, ମୁଁ ବୁଝାଇବାକୁ ଚେଷ୍ଟା କଲି ଯେ, ହିନ୍ଦୁ ଧର୍ମ ଖ୍ରୀଷ୍ଟିଆନ ଧର୍ମ ପରି ଈଶ୍ୱରଙ୍କ ବିଷୟରେ କେତେଗୁଡ଼ିଏ ବିଶ୍ୱାସ ବା ଧାରଣାରେ ପର୍ଯ୍ୟବସିତ ନୁହେଁ । ଈଶ୍ୱର ଅଛନ୍ତି କି ନାହିଁ, ଦେବତା ଜଣେ ନା ତେତିଶ କୋଟି, ଈଶ୍ୱର ଆମ ବାପା ନା ଗୁରୁ ନା ଭଉଣୀ, ଏଥିରେ କିଛି ଯାଏ ଆସେ ନାହିଁ । ଈଶ୍ୱର କିଏ ସେଥିରେ ମୁଣ୍ଡ ନଘୂରାଇ, ଈଶ୍ୱର କ'ଣ ଚାହାନ୍ତି ସେଇ ବିଷୟରେ ହିନ୍ଦୁ ମୁଣ୍ଡ ଘୂରାଏ—କହେ "ପ୍ରଭୁ ତୁମର ଇଚ୍ଛା ପୂର୍ଣ୍ଣ ହେଉ ।" ଯେ ଇଚ୍ଛାଟା କ'ଣ ସେ ନିଜର ବିବେଚନାରେ ନିଜେ ସ୍ଥିର କରେ ।

( ୧୨ । ୩ । ୧୯୫୩ )

**ମହତାବ :**

ଆଜି ସନ୍ଧ୍ୟାରେ ମହତାବଙ୍କ ସଙ୍ଗେ ଦେଖା ହେଲା । ତାଙ୍କଠାରୁ ମୁଁ ଯେଉଁ ଶ୍ରଦ୍ଧା ଓ ସହାନୁଭୂତି ପାଇଥିଲି ତାହା ଅନ୍ୟ କାହାଠାରୁ ଆଜିପର୍ଯ୍ୟନ୍ତ ପାଇନାହିଁ ବୋଧହୁଏ । ପଣ୍ଡିତ ନୀଳକଣ୍ଠଙ୍କ ସଙ୍ଗେ ଏକ ସମୟରେ ଖାପ୍ ଖାଉ ଥିଲା । କିନ୍ତୁ ସବୁବେଳେ ମନେ ହେଉଥିଲା, ମୁଁ ତାଙ୍କର ଉପକାରରେ ଲାଗିବି ବୋଲି ସେ ମୋ ସଙ୍ଗେ ସଦ୍‌ଭାବ ରଖିଥିଲେ । ମୋ ଦ୍ୱାରା ତାଙ୍କର କେତେ ଲାଭ ହେଉଛି, ତାହା ତାଙ୍କ ଶ୍ରଦ୍ଧା ଅଶ୍ରଦ୍ଧାର ମାପକାଠି ଥିଲା । ଅନ୍ତତଃ ଏ କଥା ବୁଝିବାକୁ ମୁଣ୍ଡ ଘୂରେଇବା ଦରକାର ହେଉନଥିଲା । ମହତାବ୍ ଯଦି ବା ସ୍ୱାର୍ଥ ଦୃଷ୍ଟିରେ ପରର ମଙ୍ଗଳ କରୁଥିବେ, ସେ କଥା ସହଜରେ ଜାଣି

ହୁଏ ନାହିଁ । ସନ୍ଦେହ ହେଲେ ତାହା ଦୂର କରିବାକୁ ସେ ଖୁବ୍ ଚେଷ୍ଟା କରନ୍ତି । ଅନ୍ତତଃ ପକ୍ଷେ ପଣ୍ଡିତ ନୀଳକଣ୍ଠଙ୍କଠାରୁ 'ସ୍ୱାଙ୍କର ଦୂରଦୃଷ୍ଟି ବେଶୀ ବୋଲି ମୋର ମୋଟାମୋଟି ଧାରଣା । ଆଜି ସେଥିରେ ଟିକିଏ ସନ୍ଦେହ ହେଲା, ବର୍ତ୍ତମାନ୍‌ର ସରକାର ପ୍ରତି ତାଙ୍କର ଭାବ ଦେଖି । ନବବାବୁ ଓ ଆଉ ସମସ୍ତଙ୍କୁ ବଡ଼ ମୂଳବାନ୍ଧିଆ ସମାଲୋଚନା କରୁଛନ୍ତି । ଗାଳି ଦେଇ ଉପରେଇ କୌଣସି କଥାର ସୁ ସମାଧାନ ସଂଭବ ନୁହେଁ ବୋଲି ମୁଁ ବୁଝାଇବାକୁ ଚେଷ୍ଟା କଲି । ବୋଧହୁଏ ବୁଝିଲେ, କିନ୍ତୁ କହିଲେ, ଏଇପରି ସମାଲୋଚନା କଲେ ବଳେ ବାଟକୁ ଆସିଯିବେ । ସହଯୋଗ ଓ ସାହାଯ୍ୟ ସାଙ୍ଗେ ଟିକିଏ ତାଡ଼ନା ଓ ଭର୍ତ୍ସନା ଦରକାର ହୁଏ ; କିନ୍ତୁ ତା'ର ମାତ୍ରା ଠିକ୍ ରଖି ଚଳି ପାରିଲେ ଲୋକ କର୍ମକୁଶଳ ବୋଲି ବିବେଚିତ ହୁଏ । ସେ କୁଶଳତା ମହତାବଙ୍କ ଧାତରେ ନାହିଁ ବୋଲି ତାଙ୍କର ଭାରତ ସରକାରରେ ବିପର୍ଯ୍ୟୟକୁ ଦେଖି ମନେ ହୁଏ । ଅତି ଦେପଣିଆ ଭାବରେ କାର୍ଯ୍ୟ କରିବାକୁ ଯାଇ, ଇଟା କାନ୍ଥରେ ତାଙ୍କର ମୁଣ୍ଡ ଫାଟିଲା । ବର୍ତ୍ତମାନ୍ ପୁଣି ତାହାହିଁ ନ ହେଲେ ରକ୍ଷା । ସେ ଯାହାସବୁ କହୁଛନ୍ତି ସେଥିରେ ଅନେକ ସତ୍ୟ ଅଛି । କିନ୍ତୁ ସତ୍ୟ କହି ଅବସ୍ଥାକୁ ନେଇ ଆଣି ଥୋଇ ପାରିଲେ ଯିନା ହେବ । ମୋର ପୂର୍ଣ୍ଣ ବିଶ୍ୱାସ ନୀଚ ସ୍ୱାର୍ଥ ମହତାବ୍‌ଙ୍କ ଠାରେ ନାହିଁ । ସେ ଖାଲି ନିଜ ପାଇଁ କିଛି କରନ୍ତି ନାହିଁ । ପିଲାଟିଲା ତ ନାହାନ୍ତି—ଯେଉଁମାନଙ୍କ ସଙ୍ଗେ ସେ ଚଳନ୍ତି, ସେମାନଙ୍କ ସହିତ ତାଙ୍କର ସମ୍ପର୍କ ହୁଏତ ରାଜନୀତିକ, ନ ହେଲେ ସାମାଜିକ । ବନ୍ଧୁ ବାନ୍ଧବ ନ ହୋଇଥିବା ଲୋକଙ୍କୁ ସାହାଯ୍ୟ କରିବାରେ ସ୍ୱାର୍ଥ ନ ଥାଉ ପଛକେ, ମାତ୍ରା ବଢିଗଲେ ଲୋକେ ନାନା ପ୍ରକାର କଦର୍ଥ ଚିନ୍ତା କରିବା ସ୍ୱାଭାବିକ ।

( ୨୮ । ୩ । ୧୯୫୩ )

## ମାଳତୀ ଚୌଧୁରୀ

ଆଜି ଶ୍ରୀମତୀ ଚୌଧୁରୀଙ୍କ ସଙ୍ଗେ ବହୁତ ସମୟ କଥାବାର୍ତ୍ତା ହେଲା । ସେ ମଧ୍ୟ ଯେହ୍ୱପର ହାହ୍ୱତୋର୍ପି—କିନ୍ତୁ ତାଙ୍କ ମନରେ ଟିକିଏ ଆତ୍ମ ବିଶ୍ୱାସ ଅଦ୍ୟାପି ଅଛି । ସେ ଆଶା କରୁଛନ୍ତି, କଂଗ୍ରେସ ଯେଉଁ ଶାସନ ମୋହରେ ପଡ଼ିଯାଇଛି, ତାକୁ ଛାଡ଼ି କିଛି ଦିନ ବିରୋଧୀ ଦଳକୁ ଚାଲିଗଲେ ତା'ର ନିଜର ସାମର୍ଥ୍ୟ ବଢ଼ନ୍ତା ଓ ଲୋକେ କଂଗ୍ରେସକୁ ପୁଣି ଫେରନ୍ତେ । ଗଠନ ମୂଳକ ଓ ରାଜନୀତିକ ଉଭୟ ଦିଗରୁ ଏପରି ଗୋଟିଏ ପନ୍ଥାରେ ସେ ବିଶ୍ୱାସ କରୁଛନ୍ତି । ଏ ଯୁକ୍ତିରେ ଅନେକ ଯାଥାର୍ଥ୍ୟ ଅଛି ; କିନ୍ତୁ ଏଇଟା ହେଉଛି ବୈପ୍ଳବିକ ମନୋବୃତ୍ତିର ଲକ୍ଷଣ । ଆଜି ଏଇ ମଇଳା ଘରକୁ ଯଦି ଆମେ ସଫା ନ କରି ପାରିବା, ଏ ଘର ପୋଡ଼ି ଯେଉଁ ଭଲ ଘର ତିଆରି କରିବା ସେ ମଇଳା ହେଲେ କ'ଣ କରିବା ?

( ୨୮ । ୪ । ୧୯୫୩ )

## ସୁନ୍ଦରଗଡ଼ ଗସ୍ତ

ଆଜି ସୁନ୍ଦରଗଡ଼ ଅଭିମୁଖରେ ଗସ୍ତରେ ବାହାରିଲି । ଦିନତମାମ କାମ କରିଛୁ, ସନ୍ଧ୍ୟାରାତ୍ରା କରିଛୁ । ସକାଳେ କାଠଗଡ଼ା ·ସେବାଶ୍ରମ ସ୍କୁଲ ଦେଖି ବଡ଼ ଆନନ୍ଦ ଲାଗିଲା । ମୋତେ ପ୍ରତ୍ୟୟ ହେଲା, ମୁଁ ଯେଉଁ କାମଟି ହାତରେ ନେଇଛୁ ବୋଧହୁଏ ତାହା ଆଖିକୁ ଦିଶିଲା ପରି ହେବ । ସ୍କୁଲଟି ସର୍ବାଙ୍ଗୀନ ଉନ୍ନତି କରିବ ବୋଲି ମନେ ହେଲା । ମୋର ମତ ଓ ନିର୍ଦ୍ଦେଶକୁ ସହକର୍ମୀମାନେ ନିଷ୍ଠା ଓ ସମ୍ମାନ ଦେଖାଉଛନ୍ତି । ମୁଁ ଯାହା ବିଶ୍ୱାସ କରୁଛୁ ତାହା କରିବାକୁ ସେମାନେ ଅନୁପ୍ରାଣିତ ହେଉଛନ୍ତି । ଖାଲି ଯେ ମୁଁ ଉପରିସ୍ଥ କର୍ମଚାରୀ ବୋଲି ଏପରି ହେଉଛୁ, ତାହା ନୁହେଁପରି ! ଟଙ୍କା ଓ ତାଙ୍କ ସହକର୍ମୀମାନେ ମୋତେ ଗୁରୁପରି ମାନୁଛନ୍ତି । Public Relation Department କର୍ମୀମାନେ ଠିକ୍ ସେହି ପରିମାଣରେ ଅନୁପ୍ରାଣିତ ହେଉଛନ୍ତି ବୋଲି ଏ ପର୍ଯ୍ୟନ୍ତ ବିଶ୍ୱାସ ହେଉନାହିଁ । ବିଜୟ ଜବାବ୍ କରିଛନ୍ତି ମୁଁ ଫେରିଲା ବେଳକୁ ୨୦୦ଗ୍ରାହକ ଦେବେ । ଦେଖିବା, ଏ ଦିଗରେ ସେ କିପରି ଉଦ୍ୟମ କରୁଛନ୍ତି । ସୁଧୀର ବାବୁ, ରାଧାଶ୍ୟାମ ବୋଧହୁଏ କାମ କରିବାକୁ ବ୍ୟାକୁଳ ।

ଆଜି ରାତିଟି ଜୁଜୁମରା ଡାକବଙ୍ଗଳାରେ ମୁଢ଼ୀ ଭୋଜନରେ କଟିଲା ।

( ୨୫ । ୭ । ୧୯୫୩ )

## କବି ଗଙ୍ଗାଧରଙ୍କ ପଦ୍ୟାବୃତ୍ତି ଓ ପୁରସ୍କାର

ଆଜି ସୁଧୀର ବାବୁଙ୍କ ଯତ୍ନରେ ସମ୍ବଲପୁର Reading Roomରେ ଗୋଟାଏ ଛାତ୍ର ସଭା ହୋଇଥିଲା । ବିଶେଷ କରି ଏ ଜିଲ୍ଲାରେ ପ୍ରଚାର ବିଭାଗର ଯେପରି ଦୁର୍ନାମ ସେଥିରେ ଆମ ଉଦ୍ୟମରେ ଏତେ ବଡ଼ ସଭାଟିଏ ହୋଇ ପାରିଲା ବୋଲି ଟିକିଏ ଆତ୍ମପ୍ରସାଦ ଅନୁଭବ କରିବାର କଥା । କଲେଜ, ବାଳକ ଓ ବାଳିକା ହାଇସ୍କୁଲରୁ ପ୍ରାୟ ୨୦୦ରୁ ଅଧିକ ଛାତ୍ରଛାତ୍ରୀ ଯୋଗ ଦେଇଥିଲେ । ବିଷୟ ଥିଲା ଗଙ୍ଗାଧର ମେହେରଙ୍କର ପଦ୍ୟର ଆବୃତ୍ତି । ଯେଉଁମାନେ ପଦ୍ୟ କଣ୍ଠସ୍ଥ କରିଛନ୍ତି, ତା'ର ଛନ୍ଦରେ ଗାଇପାରୁଛନ୍ତି, ଓ ଭାବରେ ଅନୁପ୍ରାଣିତ ହେଲାପରି ଜାଉଛନ୍ତି ସେମାନଙ୍କୁ କିଛି ପୁରସ୍କାର ଦେବାର ବ୍ୟବସ୍ଥା ହୋଇଥିଲା । ପିଲାମାନେ ସଭାର କାର୍ଯ୍ୟରେ ଯୋଗ ଦେବାରେ ଖୁବ୍ ଉତ୍ସାହିତ ହୋଇଥିଲେ । କେତେକ ନିଜର କେତେ ମନେ ଅଛି ସେ କଥାର ଅବଧାରଣା ନ କରି ଆସି ବୋଲିବାକୁ ବି ଠିଆ ହୋଇ ଅପଦସ୍ତ ହେଲେ । ପଦେ ଦୁଇ ପଦ ବି ଗୀତ ମନେ ରଖିଥିବା ପିଲା ୮ । ୧୦ ଜଣରୁ ବେଶୀ ବାହାରିଲେ ନାହିଁ । ଏତିକି ଭଲ ହେଲା, ଛାତ୍ର ଓ ଶିକ୍ଷକ ଉଭୟେ ଏ ବିଷୟରେ ଦୁର୍ବଳତାଟା ହୃଦୟଙ୍ଗମ କରିପାରିଲେ । ପିଲାମାନେ ପାଠ ପଢ଼ିବା ସମୟରେ ନିଜ ଜାତିର କବିମାନଙ୍କର କବିତାରୁ ଭଲ ଭଲ ଅଂଶ ଘୋଷିବାର ପ୍ରୟୋଜନୀୟତା ବିଷୟରେ ସମସ୍ତେ ଏକମତ ହେଲା ପରି ଜଣାଗଲା । ଆଉନ୍ତା ଶ୍ରାବଣ

ପୂର୍ଣ୍ଣିମା ଦିନ ଭକ୍ତ ଗଙ୍ଗାଧରଙ୍କ ଜୟନ୍ତୀ ବେଳକୁ ଏହି କାର୍ଯ୍ୟକ୍ରମ ବଡ଼ଧରଣରେ କରିବା ପାଇଁ ପ୍ରସ୍ତାବ ହେଲା । ପାରିଲେ ସବୁ ଜିଲାରେ ଏହିପରି ଉଦ୍ୟମ ଆରମ୍ଭ କରିବାକୁ ଆମେମାନେ ସଂକଳ୍ପ କଲୁ ।

( ୩୨ । ୭ । ୧୯୫୩ )

**ଅଣ-I. A. S. ସେକ୍ରେଟାରୀ ବନିବେନ :**

ଆଜି ସକାଳେ ସମ୍ବଲପୁର ଠାରେ ଡକ୍ଟର ହରିବନ୍ଧୁ ମହାନ୍ତିଙ୍କ ସଙ୍ଗେ କଥାବାର୍ତ୍ତା ହେଲା । ସେ ଓ ମୁଁ ସେକ୍ରେଟାରୀ ରହି ପାରିବୁ କି ନାହିଁ । ସେଇ ପୁରୁଣା କଥା । ଆମ ଯୋଗ୍ୟତା ଅଯୋଗ୍ୟତା ବିଷୟ ବିଚାର ହେଉନାହିଁ, ଖାଲି ସେଇ ଏକ କଥା ଆମେ I. A. S. ନ ହୋଇଥିବାରୁ ଆମେ ସେକ୍ରେଟାରୀ ରହି ପାରିବୁ ନାହିଁ । ଆଜିକାଲି ସମସ୍ତରେ ମଧ୍ୟ ଏଇ କଥା ଉପରେ ଏତିକି ଘାଣ୍ଟାଘାଣ୍ଟି ଲାଗିଛି, ଏ କଥା ବିଚାରିଲେ ବାସ୍ତବିକ୍ ଆମ ଶାସକଙ୍କ ପ୍ରତି ଅନୁକଂପା ହୁଏ ! ମୁଁ ଗତ ୪ ବର୍ଷ ହେଲା ସେକ୍ରେଟାରୀ ରହିଲିଣି, ମନ୍ତ୍ରୀମାନେ ସ୍ୱୀକାର କରିଛନ୍ତି ସେ ମୋର କାମ ଭଲ ହୋଇଛି । ଜେନାବ୍ ଆଜଫ ଅଲ୍ଲୀ ଓ ବର୍ତ୍ତମାନର ଗଭର୍ଣ୍ଣର ଉଭୟେ ମୋତେ ଦକ୍ଷ ଓ ଅସାଧାରଣ ଭାବରେ ଦକ୍ଷ ସେକ୍ରେଟାରୀ ବୋଲି ସାଧାରଣ ବକ୍ତୃତାରେ କହିଛନ୍ତି । ତଥାପି କେବଳ B. Mukherjee ମୋତେ ସୁଖ ପାନ୍ତି ନାହିଁ ବୋଲି ମୋ ଉପରେ ଥରକୁ ଥର ବାଧା ପଡ଼ୁଅଛି । ତାଙ୍କ କଥା ଉପରେ ପଦେ କହିବାକୁ ନବବାବୁଙ୍କର ବଳ ନାହିଁ, ଏଥିରେ ଭାବି ହେଲେ ଫଳ କ'ଣ ? ଡକ୍ଟର ମହାନ୍ତିଙ୍କୁ ପରିଷ୍କାର କହିଦେଲି, "ତାଙ୍କ ହାତରେ ବର୍ତ୍ତମାନ ସବୁ କ୍ଷମତା —ଓଡ଼ିଶାର ସେ ଭାଗ୍ୟବିଧାତା—ତାଙ୍କର ଯଦି ଆମ କାମ ମନକୁ ନ ପାଇଲା ସେ କହିଦେଲେ ଆମେ ବାହାରି ଯିବା—ଗୋବର ଗୋଟେଇ ଯା ବୋଲି ନ କହି, ଗାଣ୍ଡିଆ ଫୋପାଡ଼ିଦେଲେ ବି ନିଜ ମହତ ନିଜେ ରଖି ଚାଲିଯିବା । ଆମେ ରହିବାକୁ ଯେତେ ଲାଳାୟିତ ହେବା ତାଙ୍କର ଆମ ପ୍ରତି ବେଖାତିର ସେତିକି ବଢ଼ିବ ।" ଡକ୍ଟର ମହାନ୍ତି ମୋ ମତରେ ଓପର ଠାଉରିଆ ହୋଇ ହଁ ଭରିଲେ । ଯୋଗାଡ଼ ଯନ୍ତ୍ର କରି ଲାଗି ରହିବାକୁ ତାଙ୍କର ଆନ୍ତରିକ ଇଚ୍ଛା । ତୁଣ୍ଡରେ ଟିକିଏ ଫଂଟାଣୀ ବାହାର କରୁଛନ୍ତି ମାତ୍ର । ମୁଁ ବି ଶୁଣିଛି ସେ ଏଣେ ଆମ ଆଗରେ ନବବାବୁଙ୍କୁ ସମାଲୋଚନା କରୁଛନ୍ତି, ଓ ତେଣେ ତାଙ୍କ ପଛରେ ଲେଙ୍ଗେଡ଼ିଛନ୍ତି । ଖାଲି ସେ ନବବାବୁଙ୍କର ଯେ ପିଚ୍ଛ ଧରିଛନ୍ତି ତା'ନୁହେଁ, ମାଲତୀ ଦେବୀଙ୍କୁ ଖୁସି କରିବାକୁ ମଧ୍ୟ କମ୍ ପରିଶ୍ରମ କରୁନାହାନ୍ତି । ତାଙ୍କର ଡ୍ରାଇଭର ଠାରୁ କାରଣ ଶୁଣିଥିଲି. ସେ ଏଥର ସମ୍ବଲପୁର ଆସିବା ବାଟରେ ମାଲତୀ ଦେବୀଙ୍କୁ ଭଲପ କରି ଆସିଛନ୍ତି । ଏଭଳି ଲୋକଙ୍କ ଯାଙ୍ଗ ବା ଏମାନଙ୍କ ଢଙ୍ଗ ମତେ ପାଇବ ନାହିଁ । ମୋ ହାତରେ ଖୁସାମତି ଚଳୁନାହିଁ , ଠିକ୍ ଯେ ଚଳୁନାହିଁ ତାହା ନୁହେଁ, ମୋ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ରହିଲେ ଯାଇ ମୁଁ ଖୁସାମତି କରିବା ଆରମ୍ଭ କରିବି । ଖୁସାମତି କରି ଜଣକୁ ମୋ ଆଡ଼କୁ ଟାଣିବା ହୋଇ ପାରୁନାହିଁ । ହରିବନ୍ଧୁ ବାବୁଙ୍କ ଖୁସାମତି ଫଳପ୍ରଦ ମୋ'ର

ବନ୍ଧ୍ୟା । ସେ ଯାହା ହେଉ ଆମର କପାଳରେ ଯାହା ନାହିଁ ସେଥିପାଇଁ ଚନ୍ତା କରିବାର କିଛି ନାହିଁ । ଏଠାରୁ ମାସ୍ୱା ଗୁଡ଼ି ପ୍ରତିଦିନ ଘରକୁ ଫେରିବାକୁ ପ୍ରସ୍ତୁତ ରହିବା ଦରକାର ହେଉଛି । ବର୍ତ୍ତମାନ ତ ମନ ହେଉଛି, ଘରକୁ ବୋଇଲେ ଠିକ୍ ଘରକୁ ଫେରିବା । କିନ୍ତୁ ଅନେକେ କହୁଛନ୍ତି ମୁଁ ଘରେ ରହି ପାରିବି ନାହିଁ । ହୁଏତ ଖବର କାଗଜ ଚଳାଇବାରେ ଲାଗିବ, କିମ୍ବା ରାଜନୀତିରେ ଯୋଗ ଦେବ । ଦେଖାଯାଉ କ'ଣ ହେଉଛି । ମୋର ଏତିକ ବିଶ୍ୱାସ ହେଉଛି ଯେ ଭବିଷ୍ୟତରେ ଯାହା ହେବ, ଯାହା ଆସିବ, ସେଥିରେ ମୋର ଭଲ ହେବ ।

## ମୋ ଦେହ ପଛକୁ ଟାଣୁଛି

ଆଜି ଦିନଯାକ ଭୁବନେଶ୍ୱରରେ ରହିଲି । ସବୁ କାମ ସାରି ପାରିଲି ନାହିଁ । କାମରେ ପୂର୍ଣ୍ଣ ଉତ୍ସାହ ଆସିଲା ନାହିଁ । ତାହାର ଏକମାତ୍ର କାରଣ ମୋର ଦେହ ଭଲ ଲାଗୁନାହିଁ । ୬।୭ ଘଣ୍ଟା କାହିଁକି ଠିକ୍ ସାଢ଼େ ଦଶଟା ଠାରୁ ସାଢ଼େ ଦୁଇଟା ପର୍ଯ୍ୟନ୍ତ ଅଫିସରେ ଏକାଦିକ୍ରମେ ବସି କାମ କରିବାରେ ହେଲା ନାହିଁ ; କିନ୍ତୁ କାମରେ ଉତ୍ସାହ ନ ଆସୁଥିବାରୁ କିଛି ନୂଆ କାମରେ ହାତ ଦେବାକୁ ମନ ହେଉନାହିଁ । କଥା ବାର୍ତ୍ତାରେ ଓ ନିଜ ଚନ୍ତାରେ ଯେଉଁ ନୂଆ କାମ ବିଷୟ କଳ୍ପନା କରୁଛି, ତାହା କାର୍ଯ୍ୟରେ କରିବାକୁ ଉତ୍ସାହ ନ ଆସିବାରୁ ଗତାନୁଗତିକ ଗତିରେ ସବୁ ଚାଲିଛି । ମୋର ଉତ୍ସାହ ସାଧାରଣତଃ ସଂକ୍ରାମକ ବ୍ୟାଧିପରି ଅନ୍ୟ ସମସ୍ତଙ୍କୁ ଘୋଟେ, କିନ୍ତୁ ଆଜିକାଲି ବୋଧହୁଏ ସେପରି ହେଉ ନାହିଁ । ଏହା ଭଲ ଲକ୍ଷଣ ନୁହେଁ । ଆଜିକାଲି ଯେଉଁମାନେ ଓଡ଼ିଶାରେ ବଡ଼ ବଡ଼ ଆସନ ମାଡ଼ି ବସିଛନ୍ତି, ସେମାନେ ସମସ୍ତେ ନିଜର କାର୍ଯ୍ୟଦକ୍ଷତା ଯୋଗୁ ରହି ନାହାନ୍ତି । ସେମାନେ ନିଜର ଭଲ ପାସ୍ ବା ଧରାଧରି ଯୋଗ୍ୟତା ବଳରେ ଆଇ.ଏ. ଏସ୍. ହୋଇଛନ୍ତି । ସେମାନଙ୍କର କାମ ନ କଲେ ବି ଚାକିରରେ ଆଞ୍ଚ ଆସିବ ନାହିଁ । ମୋର ସେମାନଙ୍କ ଭିତରେ ରହିବାର ଏକମାତ୍ର କାରଣ, ମୋ'ର ଦକ୍ଷତା । ତାହା ଲୋପ ପାଇଗଲେ ମୋତେ ସେମାନେ କାହିଁକି ରଖିବେ ? ଯଦିବା ପୂର୍ବରେ ଭଲ କରିଥିଲି ବୋଲି ସେମାନେ ରଖନ୍ତି ତେବେ ମୁଁ ବା କାହିଁକି ରହିବ ? ଦେହ ଭଲ ନ ହେଲେ, ପୂର୍ବ ଉତ୍ସାହ ନ ଫେରିଲେ ମାନେ ମାନେ ବାହାରି ଯିବା ଭଲ ।

( ୩ । ୮ । ୧୯୫୩ )

## ଚାକିରିରେ ରହି ହେବନି

ଆଜି ରାତିରେ ନୀଳମଣିବାବୁ (ଉପମନ୍ତ୍ରୀ) ଟେଲିଫୋନରେ ଜଣାଇ ଦେଲେ ଯେ ଚିଫ୍ ସେକ୍ରେଟାରୀଙ୍କଠାରୁ ତାଙ୍କ ପାଖକୁ ଫାଇଲ୍ ଆସିଛି ଯେ ମୁଁ ଆଉ ସେକ୍ରେଟାରୀ ରହି ପାରିବି ନାହିଁ । ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିସନ୍ ମୋର ସେକ୍ରେଟାରୀ ହୋଇ ରହିବାକୁ ପସନ୍ଦ କରୁନାହାନ୍ତି । ମୋର Character Roll ରେ ମନ୍ତ୍ରୀମାନେ ଭଲ ଲେଖିବାର ମୁଁ ଜାଣେ ; ପ୍ରାଣନାଥ ବାବୁ, ଶ୍ରୀଯୁକ୍ତ ମୁଖାର୍ଜ୍ଜି ଓ ଶ୍ରୀଯୁକ୍ତ ନୀଳମଣି ସେନାପତି ଖରାପ ଲେଖିବାର ବି ଜାଣେ । ବୋଧହୁଏ ୟୁନିଅନ୍ ପବ୍ଲିକ୍ ସର୍ଭିସ କମିସନ୍ ଏଇମାନଙ୍କ ମତରେ ଚାଳିତ ହୋଇ ମନ୍ତ୍ରୀମାନଙ୍କ ମତକୁ ଗୌଣ ମନେ କରିଛନ୍ତି । ଦେଖାଯାଉ ମନ୍ତ୍ରୀମାନେ

ଏ ବିଷୟରେ ଲଢ଼ିବେ ନା ମୁଖାର୍ଜିଙ୍କ ମତ ଦ୍ୱାରା ଚାଳିତ ହେବେ । ଯଦି ହୁଅନ୍ତି ତେବେ ମୋତେ ଯୋଡ଼ିଏ ବାଟରୁ ଗୋଟିଏ ଧରିବାକୁ ହେବ—ମୁଣ୍ଡ ପୋତି ରହିଯିବି, ନଚେତ ପ୍ରଭିଡେଣ୍ଟ୍ ଫଣ୍ଡ୍ ଟଙ୍କାତକ ଧରି ପେଟ ପୋଷିବାର ଅନ୍ୟ ଫନ୍ଦା ଧରିବାକୁ ଦାଣ୍ଡକୁ ଯିବି ।

(୪ । ୮ । ୧୯୫୩)

## ଆଦିବାସୀ ଚିନ୍ତା

ଆଜି ଦିନମାନ ଭୁବନେଶ୍ୱରରେ ରହିଲି, ଅଫିସ କାମ ସାରି । ମନ୍ତ୍ରୀଙ୍କ ପାଇଁ "ଆଦିବାସୀମାନଙ୍କର ସମାଜ ଓ ସଂସ୍କୃତିର ଉନ୍ନତି" ବିଷୟରେ ଗୋଟିଏ Radio talk ଲେଖିଲି । ଆଦିବାସୀଙ୍କର ସଂସ୍କୃତି ଆମ ସଂସ୍କୃତିଠାରୁ ସ୍ୱତନ୍ତ୍ର । ସେ ଆମଠାରୁ ଗୋଟିଏ ଅଲଗା ଜାତି—ଏଇ ଧାରଣା ଆମମାନଙ୍କ ଭିତରେ ପ୍ରବେଶ କରିଛି । ସେଇ ଧାରଣାଟା ଯଥାର୍ଥ ନୁହେଁ ବୋଲି ମୁଁ ଦେଖାଇବାକୁ ଚେଷ୍ଟା କରିଛି । ମୋତେ ବୋଧ ହେଉଛି ଆଦିବାସୀର ବର୍ତ୍ତମାନ ଯେଉଁ ସଂସ୍କୃତି ଅଛି, ତାହା ଅଭାବ ଓ ଅବହେଳାରେ ପୀଡ଼ିତ ହୋଇଥିଲେ ମଧ୍ୟ ଭାରତର ମୌଳିକ ସଂସ୍କୃତିର ଅବଶେଷ—ବର୍ତ୍ତମାନ ଆମେ ଯେଉଁମାନେ ସ୍ୱତନ୍ତ୍ର ସଂସ୍କୃତିର ବଡ଼େଇ କରୁଛେ, ସେମାନେ ମୌଳିକ ସଂସ୍କୃତିରେ ବାହାରର ପ୍ରଭାବ ମିଶାଇ ବର୍ତ୍ତମାନ ନକଲି ସଂସ୍କୃତି ନିଜସ୍ୱ ବୋଲି ଦେଖାଇ ହେଉଛନ୍ତି । ପୁଣି ଆଜି ଯେଉଁମାନେ ଅଣ ଆଦିବାସୀ ବୋଲାଉଛନ୍ତି ସେମାନେ କ'ଣ ପ୍ରକୃତରେ ଅଣ ଆଦିବାସୀ—ଖାଲି ମାଲି, ସୁଣ୍ଡି, ଚଷା ନୁହେଁ, ତଥାକଥିତ ଅଧିକାଂଶ ଉଚ୍ଚଜାତିଙ୍କ ଭିତରେ ଅନେକ ଆଦିବାସୀ ଅଛନ୍ତି । ବର୍ତ୍ତମାନ ଏଇ ଧାରଣା ଧରି ଆଦିବାସୀଙ୍କ ଆଡ଼କୁ ଗଲେ ସମସ୍ୟାର ସୁ ସମାଧାନ ସମ୍ଭବ ହେବ ।

(୭ । ୮ । ୧୯୫୩)

## ଛତପୁର ଗସ୍ତ

ସକାଳୁ ଛତପୁର ହାଇସ୍କୁଲର ଗୋଟିଏ ହରିଜନ ପିଲା ଆସି କହିଲା ଏ ଓଳି ତା'ର ମିଲ ବନ୍ଦ ହୋଇଛି, ସେ କ'ଣ କରିବ । ଆମର ତାକୁ ବୃତ୍ତି ଦେବାର କଥା । ଜିଲ୍ଲା ମଙ୍ଗଳ କମିଟିର ବୈଠକ ହୋଇ ନ ଥିବାରୁ ମିଳିବାରେ ଡେରି ହେଉଛି । D. W. O.ଙ୍କୁ ଆଦେଶ ଦେଲି ହେଡ଼ ମାଷ୍ଟରଙ୍କ ହାତରେ ଏହିପରି ସ୍ଥଳରେ ଦେବା ସକାଶେ କିଛି ଆଗତୁରା ଦେବାକୁ । ପରେ ପ୍ରତ୍ୟେକ ଗ୍ରହିତାର ବୃତ୍ତି ଟଙ୍କା ନିର୍ଣ୍ଣିତ ହୋଇଗଲା ପରେ ଏହି ଅଗ୍ରିମ ଟଙ୍କା ଭରଣା ହୋଇ ପାରିବ । ଏପରି କାହିଁକି କରିନାହିଁ ବୋଲି ତାଙ୍କୁ ଦୋଷ ଦେଲି । ସେ ଯାହା କୈଫିତ ଦେଲେ ତାହା ଯଥାର୍ଥ । ହୁଏତ ଜିଲ୍ଲା ମାଜିଷ୍ଟ୍ରେଟ ଓ ଜିଲ୍ଲା ମଙ୍ଗଳ କମିଟି ଏଥିରେ ଆପତ୍ତି ଉଠାଇ ପାରନ୍ତି । କିନ୍ତୁ ପ୍ରକୃତ ସେବାଭାବ ରହିଲେ ଏପରି ଆପତ୍ତି ହୁଅନ୍ତା ନାହିଁ ଓ ଏପରି ଆପତ୍ତିକୁ ଭୟ ହୁଅନ୍ତା ନାହିଁ । D. W. O. ମନ ଦେଇ ନିଜ କାର୍ଯ୍ୟ କରୁନାହାନ୍ତି । ନ ହେଲେ ତାଙ୍କ ଘରେ ପିଲାଙ୍କ ବହି ସିଲଟ୍ ଯେପରି ଜମା ହୋଇ ରହିଛି ସେପରି ନ ହୋଇ ଏଥି ପୂର୍ବରୁ ବଣ୍ଟା ହୋଇ ସାରନ୍ତାଣି ।

ଆଜ ଭୁବନେଶ୍ୱରକୁ ଫେରିବା ବାଟରେ ଖଲ୍ଲିକୋଟଠାରୁ ଅଳ୍ପ ଦୂରରେ ଗୋଟିଏ ବୁଢ଼ା ବର୍ଷାରେ ଥରନ୍ତ ଥରନ୍ତ ବଡ଼ କଷ୍ଟରେ ଯାଉଥିବାର ଦେଖିଲି । ବୁଢ଼ାଟି ବ୍ରାହ୍ମଣ । ଦୈବାତ୍ ତାଙ୍କୁ ଦେଖି ମଟରରେ କିଛି ବାଟ ନେବାକୁ ମନ ହେଲା । ପ୍ରାୟ ଦେଢ଼ ମାଇଲ ବାଟ ଫେରି ତାଙ୍କୁ ଆଣିଲୁ । ତାଙ୍କ ଇତିହାସ ଶୁଣି ତାଜୁବ୍ ହେଲି । ତାଙ୍କର ଗୋଟିଏ ପୁଅ ବି. ଏ. ପରୀକ୍ଷା ଦେଇଛି । ଇଂରେଜୀ ଖାତା ଖଲ୍ଲିକୋଟ କଲେଜ ପ୍ରିନ୍‌ସିପାଲଙ୍କ ପାଖେ ଅଛି । ସେ ଆସିଛନ୍ତି ପ୍ରିନ୍‌ସିପାଲଙ୍କୁ କହି କେତେ ନମ୍ବର ଅଧିକ କରାଇ ପୁଅକୁ ପାସ କରାଇବେ । ବେଶୀ ବିଚିତ୍ର କଥା ସେ ସେ କଟକର ବହୁତ ବଡ଼ ଲୋକଙ୍କୁ ଚିହ୍ନନ୍ତି, ଓ ସେମାନଙ୍କଠାରୁ ସୁପାରିଶ ପତ୍ର ମଧ୍ୟ ଆଣିଛନ୍ତି । (୧୧ । ୮ । ୧୯୫୩)

## ନବବାବୁ ଓ ଗଡ଼ଜାତ ରଜା

କାଲି ମୁଁ ଯାହା ଆଶା କରିଥିଲି ତାହା ବ୍ୟର୍ଥ ହେଲା । ମନ୍ତ୍ରୀମଣ୍ଡଳ ବୈଠକରେ କ୍ୟାବିନେଟ ଡିପାର୍ଟମେଣ୍ଟର ଆଉ ଗୋଟିଏ ବିଷୟ ବିଚାରକୁ ଅଣା ହୋଇଥିଲା, ଯେ ଡେଭଲପମେଣ୍ଟ କମିଶନର (ଅନ୍ୟ ନାମରେ ସେଇ ଚିଫ୍ ସେକ୍ରେଟାରୀ) ଅନ୍ୟ ଡିପାର୍ଟମେଣ୍ଟର ତଲିଆ କର୍ମଚାରୀମାନଙ୍କ ଉପରେ କର୍ତ୍ତୃତ୍ୱ ଜାହିର କରିବେ । ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱାସ ଏପରି କଲେ ଆମର ଲୋକ ମଙ୍ଗଳ କାର୍ଯ୍ୟ ଭଲ ଚାଲିବ । ବଡ଼ ହସ ମାଡୁଛି, ଏପରି କଥା ନବବାବୁଙ୍କର କିପରି ମନୋନୀତ ହେଉଛି, ମୁଖର୍ଜିଙ୍କ ପରି ଜଣେ ପୋଚପଣିଆଙ୍କ ଉପରେ ତାଙ୍କର କିପରି ଏପରି ବିଶ୍ୱାସ ହେଉଛି—ପିଲାଙ୍କୁ ପୋଚପଣିଆ ଭଲ ଲାଗେ ।

ଏଇ ପ୍ରସ୍ତାବ ଉପରେ ଘମାଘୋଟ ଲଢ଼େଇ ହେଲା । ଶୁଣିଲି, ଶେଷରେ ସ୍ଥିର ହେଲା, ରେଭିନ୍ୟୁ ବୋର୍ଡ଼ ମେମ୍ବରଙ୍କ ମତ ମିଳିବା ପରେ ଏ ବିଷୟର ଶେଷ ନିଷ୍ପତ୍ତି ହେବ । ଏହା ଭଲ ବିଚାର । ରେଭିନ୍ୟୁ ବୋର୍ଡ଼ରେ ଆମର ସବୁଠାରୁ ବଡ଼ ପାହିଆ ଅଫିସର ଅଛନ୍ତି । ସେ ମଧ୍ୟ ଏ ବିଷୟରେ ମତ ଦିଅନ୍ତୁ । ସମସ୍ତେ ବସି ଯାହା ଭଲ ବୋଲି ବିଚାରିବେ ତାହା ହେବା ଉଚିତ; ବ୍ୟକ୍ତିବିଶେଷଙ୍କୁ ଏହା ସୁଖ ଲାଗୁ ବା ନ ଲାଗୁ । ବର୍ତ୍ତମାନ ଚିଫ୍ ସେକ୍ରେଟାରୀ ବଡ଼ିବାଟ ପଟେ ଯେପରି ନବବାବୁଙ୍କୁ ଫୁସୁଲାଇ ନିଜେ ବଡ଼ ହେବାକୁ ଚେଷ୍ଟା କରୁଛନ୍ତି, ତାହା ଗଡ଼ଜାତରେ ଅନ୍ଧାର ମୂଳକ ଶାସନ । ଗଡ଼ଜାତ ରଜାଙ୍କୁ ବିଦାୟ ଦେବା ପରେ ପରେ ନବବାବୁଙ୍କ ପରି ଆଜନ୍ମ ଆନ୍ଦୋଳନକାରୀ ଗଡ଼ଜାତ ରଜା ହେବାକୁ ଚେଷ୍ଟା କରିବା ଗୋଟିଏ ଦେଖିବାର ସାମଗ୍ରୀ ।

(୧୪ । ୮ । ୧୯୫୩)

## ଟାଉଟନ୍ତା

ଆଜ ଧନକ ବାଙ୍କୀ ପଣ୍ଡିତଙ୍କୁ ଉସ୍ତୃଷ୍ଟ ହେଲା । ସେ ଆଜ ସକାଳେ ପ୍ରାୟ ୧୦ଟା ବେଳେ ଆସିବେ ବୋଲି ଖବର ପାଇଥିଲି । ୧୦ଟା ବେଳୁ ତାଙ୍କୁ ଅପେକ୍ଷା କରି କରି ସେ ଦୁଇଟା ବେଳେ ଆସି ପହଞ୍ଚିଲେ, ସାଙ୍ଗରେ ୮ ଜଣ ଭଦ୍ରଲୋକ—ଆମେ

ଧାରେ ଅପେକ୍ଷା କରୁଥିଲୁ ୪।୫ଜଣ—ପଛରେ ଲିଙ୍ଗରାଜବାବୁ ଓ ମୃତ୍ୟୁଞ୍ଜୟ ବାବୁ ଆସି ଯାଇଥିଲେ । ଆସିବାର ଘଣ୍ଟାକ ଭିତରେ ଖାଇସାରି ସେ ଏକାଦଶ ସ୍କନ୍ଧରୁ ଗୋଟିଏ ଅଂଶ ବାହାର କରି ବୋଲିଲେ ପ୍ରାୟ ୨ଘଣ୍ଟାରୁ ବେଶୀ । ଆମେ ସମସ୍ତେ ବସି ଶୁଣୁଥାଉ । ତାଙ୍କର ସ୍ୱର, ଓ ଆମର ଜ୍ଞାନ ଯେ ଭାଗବତରେ ଯେପରି ଉପଦେଶ ଦିଆଯାଇଛି, ସେ ଠିକ୍ ସେଇପରି ଚାଲୁଛନ୍ତି—ଏଥିଯୋଗୁଁ ଶୁଣିବାକୁ ବଡ଼ ଆନନ୍ଦ ଲାଗୁଥାଏ । କଟକର ଓ ଅନ୍ୟାନ୍ୟ ଜାଗାର ହଜାର ହଜାର ଲୋକ ତାଙ୍କର ଭକ୍ତ—ସେ ଭିତରେ ବହୁତ ବଡ଼ ଧନୀ ଲୋକ ବି ଅଛନ୍ତି—ପଣ୍ଡିତେ ଯାହାକୁ ଯାହା କହିବେ ସେ ତାହା ନିଶ୍ଚୟ କରିବେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ପଣ୍ଡିତଙ୍କର ଦୁଇ ଏକର ଜମି ଓ ଘର ଉନ୍ନ ବଖରେ । ଏଇ କଥା ମୋ ମନରେ ତାଙ୍କ ପ୍ରତି ଅଡ଼ଶସ୍ୱ ଶ୍ରଦ୍ଧା ଓ ସମ୍ମାନ ଜାତ କରିଛି । ସେ ସାଢ଼େ ନଅଟା ପର୍ଯ୍ୟନ୍ତ ଆମ ଘରେ ରହିଲେ, ଆମେ ୧୨।୧୩ଜଣ ପଦେ କଥା ନ କହି ଖାଲି ତାଙ୍କ କଥା ଶୁଣୁ ଥାଉ । ସେ ଏତେ କହି ଟିକିଏ ହେଲେ ହାଲିଆ ହୋଇ ନ ଥାନ୍ତି, ଓ ଏତେ ସମୟ ଭିତରେ ସେ ଏପରି ପଦେ କଥା କହି ନ ଥାନ୍ତି, ଯାହାକି ମତେ ସୁଖ ନ ଲାଗିଛି । ଆଜି ପ୍ରକାଶ କରି କହିଲି ଯେ ମୁଁ ତାଙ୍କୁ ଗୁରୁ କରିବାକୁ ସଂକଳ୍ପ କରିଛି । ସେ ସମ୍ମତ ହୋଇଛନ୍ତି । (୧୭।୮।୧୯୫୩)

## ମନର ଶାନ୍ତି ଓ ଜୀବନ ଯାତ୍ରା

'Happiness and a headfull of ideas' ମନର ଶାନ୍ତି ଓ ଅବସ୍ଥା ଚକ୍ରରେ ପଡ଼ିଲେ ଉପାସ୍ୟାନ୍ତର ଖୋଜ କୌଣସି ମତେ ମନର ସେଇ ଶାନ୍ତିକୁ ଜୀବିତ ରଖିବା—ଏଇ କଥାଟି ମୋ'ମନକୁ ଖୁବ୍ ପାଇଲା । ମୁଁ ମୋ ଜୀବନ ଯାକ ଏଇ ସୂତ୍ର ଧରି ଚାଲିଛି । ପିଲାଦିନେ ନନା ମରିଗଲେ, ମାସେ ଖଣ୍ଡେ ଗୃହ ଆଡ଼ ଅନ୍ଧାର ଦିଶିଲା —କିନ୍ତୁ ତା' ପରେ କିଛି ନାହିଁ । ବର୍ଷକ ଭିତରେ ସ୍ଥାବର ଅସ୍ଥାବର ସମ୍ପତ୍ତି ଗୁଡ଼ିଲଗଲା— ତାହା ମଧ୍ୟ ଜୀବନର ଗତିକୁ ରୋକି ପାରିଲା ନାହିଁ । ସମାଜ ଅଫିସ, ଆଶା ଅଫିସ୍ ଛାଡ଼ିଲା ପରେ ସିମିତି ମାସେ ଖଣ୍ଡେ ଅଡ଼ୁଆ ଲାଗିଲା । ଭାସ୍କର ବାବୁଙ୍କ ଘର ଗୁଡ଼ିଲା ପରେ ସେହିପରି—ତା'ପରେ ନବଭାରତ ପ୍ରେସ । ସ୍ତ୍ରୀକୁ ମଧ୍ୟ ଗୁଡ଼ିଲା ପରେ ମାସେ ଖଣ୍ଡେ ମାତ୍ର ଅଡ଼ୁଆ ଲାଗିଲା । ମୋ ଜୀବନ ତମାମ ମୋ ସଙ୍ଗେ ଶତ୍ରୁ ଲାଗିଛନ୍ତି ; ବେଳେ ବେଳେ ସେମାନେ ଜିଣିଛନ୍ତି—କିନ୍ତୁ ତାଙ୍କ ଜିଣିବା ଫଳରେ ମୋର ମଙ୍ଗଳ ହେଉଛି ପଛେ ଅମଙ୍ଗଳ ହେଉନାହିଁ— ଏଥର ଗୋଟାଏ ଦଳ ବାହାରିଛନ୍ତି, ଏକା ଥରକେ, ଠିକ୍ ଯେପରି ୧୨ବର୍ଷ ପୂର୍ବେ ପଣ୍ଡିତ ନୀଳକଣ୍ଠ ସଦଳ ବଳେ ମୋ ବିରୁଦ୍ଧରେ ବାହାରିଥିଲେ । ଆଜି ସେମାନେ ସମସ୍ତେ ମୋର ବନ୍ଧୁତା ଲୋଡ଼ୁଛନ୍ତି । ସେଇପରି ଆଜି ନବଚୌଧୁରୀ ଓ ତାଙ୍କ ବଙ୍ଗାଳୀ ସହକର୍ମୀମାନେ ଯେ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି, ସେମାନେ ବର୍ତ୍ତମାନ ଜିଣିବା ପରେ ପୁଣି ମୋତେ ଲୋଡ଼ିବା ଅସଂଭବ ନୁହେଁ । ତେଣୁ ବର୍ତ୍ତମାନ

ଅପର୍ଯ୍ୟସ୍ତ ହେଲେ ପୁଣି ଅଭ୍ୟୁଦୟ ଭବିଷ୍ୟତରେ ଅଛି— ଆଶାକୁ ବଳବତ୍ତର କରିବାକୁ ହେବ ।                                   (୧୮ । ୮ । ୧୯୬୩

## ନିଜ ବିରୁଦ୍ଧରେ ବିଦ୍ରୋହ

ଜୁଲାଇ ମାସ ଶେଷ ସୁଦ୍ଧା ଗସ୍ତଖର୍ଚ୍ଚ । ବିଲ୍ ଆଜି ମିଳିବ । ତାହା ହିସାବ କରି ଦେଖିଲି ବେଳକୁ ମୋର ଅତି ଜରୁରି ଯାହା ଦେୟ ଅଛି ତାହା ପୂରଣ କରିବାକୁ ଯଥେଷ୍ଟ ନୁହେଁ । ଜୀବନ ଆରମ୍ଭରୁ ଆଜି ପର୍ଯ୍ୟନ୍ତ ଦେଖୁଛି, ମୋର ଯାହା ଦରକାର ସେଥିପାଇଁ ଟଙ୍କା ଯଥେଷ୍ଟ ମିଳୁନାହିଁ । ଅର୍ଥାତ୍ ଯେତେ ମିଳୁଛି ମୁଁ ତହିଁରୁ ଅଧିକ ଖର୍ଚ୍ଚ କରୁଛି । ଏଥିପାଇଁ ଆଉ ଶୋଚନା କରିବାକୁ ହେବ ନାହିଁ ବୋଲି ଆଜି ସଂକଳ୍ପ କଲି । ମୋର ଖର୍ଚ୍ଚରେ କିଛି ବଦ୍‌ଖର୍ଚ୍ଚ ନାହିଁ କହିଲେ ଚଳେ । ନିଜର ଖିଆ ପିଆ ଓ ବେଶ-ଭୂଷାରେ କିଛି ବିଳାସ ତ ନାହିଁ—ସ୍ତ୍ରୀ ଓ ପିଲାମାନଙ୍କର ବିଳାସ ପାଇଁ କୌଣସି ସ୍ପୃହା ନାହିଁ । ତଥାପି ଅଧିକ ଖର୍ଚ୍ଚ ହେବାର କାରଣ, ଯାହା ଆସୁଛି ସେତକ ସବୁ ଦିବାରେ ଯେପରି ଆନନ୍ଦ ଅନୁଭୂତ ହେଉଛି, ଅର୍ଥୀ ଜଣେ ହାତକୁ ଆସିଲେ ତାକୁ ନ ଦେଇ ପାରିଲେ ଦୁଃଖ ହେଉଛି । ଅନେକ ସମୟରେ ଆଉ ଉଧାର କରି ମଧ୍ୟ ଦାନ ଓ ଉଧାର ଦିଆ ଯେପରି ହେଉଛି । ଏ ସ୍ୱଭାବ ଆଜି ବଦଳିବା ସମ୍ଭବ ନୁହେଁ । ଉଚିତ ବୋଲି ମଧ୍ୟ ମନେ ହେଉନାହିଁ । ପଇସା ଉପରେ ଯୋର ଦେଲେ ମନର ଶାନ୍ତି ଦୂର ହେବ, ଉଚ୍ଚ ଚିନ୍ତା କରିବାକୁ ଅବସର ମିଳିବ ନାହିଁ ଓ ହୁଏତ ନାନା ପ୍ରକାର ଦୁର୍ନୀତି କରି ପଇସା ସଂଗ୍ରହ କରିବାକୁ ମନ ହେବ । ଜୀବନରେ କେବେ ଅନ୍ୟାୟ କରିନାହିଁ ବୋଲି ମୁଁ ସାହସ କରି କହି ପାରିବି ନାହିଁ । ଗତ ଦଶ ବର୍ଷର ଚାକିରି କାଳ ଭିତରେ ମଧ୍ୟ କେବେ କମିତ ଜାଣିକରି ଅନ୍ୟାୟ କରିଛି ଓ ନ ଜାଣିକରି ବି କରିଥିବି । କିନ୍ତୁ ଏତକ ସାହସ କରି କହିପାରେ ଯେ ଥରେ ଅନ୍ୟାୟ କଲେ ମୋ ନିଜ ବିରୁଦ୍ଧରେ ମୋ ମନରେ ବିଦ୍ରୋହ ଜାତ ହେଉଛି, ଓ ଭବିଷ୍ୟତରେ ଆଉଥରେ ଅନ୍ୟାୟ କରିବାର ପ୍ରବୃତ୍ତି କମିଯାଉଛି । ମୋପରି ଲୋକଙ୍କ ପାଇଁ ତାହାହିଁ ଶ୍ରେୟସ୍କର ପନ୍ଥା ।

(୧୯ । ୮ । ୧୯୬୩)

## ମହତାବଙ୍କ ପକ୍ଷ ବୋଲି ନବବାବୁ ବିମନା

କେତେକଙ୍କ ଠାରୁ ଶୁଣିଛି, ମୁଁ ମହତାବଙ୍କର ପକ୍ଷ ବୋଲି ନବବାବୁ ବିମନା । ଖାଲି ଏତିକରେ ବିମନା ହେଲେ ମୁଁ ନାଚାର । ପ୍ରକୃତରେ ମୁଁ ବିଶ୍ୱାସ କରୁଛି, ମଲ୍ଲିକ୍ରୁ, ନବବାବୁଙ୍କ ଅପେକ୍ଷା ମହତାବ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବାକୁ ବହୁ ଗୁଣରେ ଯୋଗ୍ୟ । ଏଇ ଧାରଣା ରଖିବା ଯୋଗୁଁ ମୋ ଉପରେ ବିଗିଡ଼ିବାର କୌଣସି କାରଣ ନାହିଁ । ଅବଶ୍ୟ ମୁଁ ଯଦି ମୋ ଧାରଣା ଅନୁସାରେ କୌଣସି କାର୍ଯ୍ୟ କରୁଥାନ୍ତି ତେବେ ସ୍ୱତନ୍ତ୍ର କଥା । ସରକାରୀ ଚାକିରି କରିଥିବାରୁ ମୁଁ କିଛି ନ କରି, ଖାଲି ମୋର ମତଟି ପୋଷଣ

କରୁଛି । ଅନ୍ୟମାନଙ୍କ ପରି ମୁଁ ସାଙ୍ଗ ମେଳ ଖୋଜେ ନାହିଁ । କ୍ଲବକୁ ବା ଅନ୍ୟ ଅଫିସରମାନଙ୍କ ଘରକୁ ବିଶେଷ ଯିବା ଆସିବା କରେ ନାହିଁ—ବିଶେଷ କାହିଁକି କେବେ ଯାଏ ନାହିଁ । ତେବେ ମୋ ପାଖକୁ ଯେଉଁମାନେ ତ୍ରଟ ହନ ଆସନ୍ତି, ମୋର ଅନ୍ତରଙ୍ଗ, ସେଇମାନଙ୍କ ଆଗରେ ମୁଁ ମୋର ମତ ପରିଷ୍କାର କରି କହେ ଯେ, ଆଉ ନବବାବୁ ସମ୍ଭାଳି ପାରିବେ ନାହିଁ । ନିଜର ମାନ ଜଗି ସେ ଗୁଡ଼ି ଦେବା ଉଚିତ । ତାଙ୍କରି ଭିତରୁ କେହି ଯଦି ନବବାବୁଙ୍କ ଆଗେ ଫୋଡ଼ି ଥିବ ତେବେ ଉପାୟ ନାହିଁ, ଶୋଚନା କରିବାର ବି ନାହିଁ । ମୋତେ ନିଜେ ନ ପଗ୍ଭରି ଚୁନୁଲୁଆଙ୍କ କଥାରେ ସେ ଯଦି ମୋ ଉପରେ ରାଗ ରଖିବେ ତେବେ ତାକୁ ବଦଳାଇବାକୁ ଯାଇ ଆବୁଡ଼ା ପଡ଼ିବା ବୃଥା । ହୁଏତ ରାଜନୀତି କ୍ଷେତ୍ରରେ ତାଙ୍କର ମୋର ପୂର୍ବେ ଯେଉଁ ବିରୋଧ ଥିଲା, ତାହା ତାଙ୍କର ଓ ତାଙ୍କ ସ୍ତ୍ରୀଙ୍କର ପାସୋରି ହୋଇନଥିବ ।

(୨୨ । ୮ । ୧୯୫୩)

## ନିଆଁଖୁଣ୍ଟା ଓ ନିଜ ମତ

ନବବାବୁ ଓ ମାଳତୀ ଦେବୀଙ୍କ ବିରୁଦ୍ଧରେ ଲୋକମତ ଯେପରି ତେଜିଉଠୁଛି ତାହା ଫଳରେ କ'ଣ ହେବ ସେ ବିଷୟରେ ନାନା ଲୋକେ ନାନା ପ୍ରକାର କଳ୍ପନା ଜଳ୍ପନା କରୁଥିବାର ନଜରକୁ ଆସୁଛି । ନିଆଁଖୁଣ୍ଟା ତ ଦି' ଜଣଙ୍କୁ ଇଚ୍ଛାତସରି କରି ଗାଳିଦେଉଛି । ନିଆଁଖୁଣ୍ଟାର ଭାଷା ଅତି ଚମତ୍କାର—ଓଡ଼ିଆ ସାହିତ୍ୟରେ ଅନ୍ଧା ଓ ପରିହାସ ସ୍ଥାଠୁ ବଳି ଆଉ କେହି କରୁଥିବାର ମନେ ହୁଏ ନାହିଁ । କିନ୍ତୁ ଲେଖାରେ ଖାଲି ଅସୂୟା ଭର୍ତ୍ତି । ଲକ୍ଷ୍ୟ କିଛି ନାହିଁ---ସେ ଖବର ସମାଲୋଚନା ନ କରି ବିଶେଷ କରି ବ୍ୟକ୍ତିର ସମାଲୋଚନା କରୁଛନ୍ତି—ଖାଲି ବିଭିନ୍ନ ଭାବରେ ଗାଳି ଦେଉଛନ୍ତି । ଅଶ୍ଳୀଳତା ଅତି ମାତ୍ରାରେ ଭର୍ତ୍ତି କରୁଛନ୍ତି ଓ ତହିଁରେ ଅତିମାତ୍ରାରେ ଭେସିଡ଼ି ଆନନ୍ଦ ଉପଲବ୍ଧି କରୁଛନ୍ତି । ସ୍ୱାଫଳରେ ନିଆଁଖୁଣ୍ଟା ଲେଖାର କୌଣସି ପ୍ରଭାବ ନବବାବୁଙ୍କ ଉପରେ ବା ଆସେମ୍ବ୍ଲି ମେମ୍ବରଙ୍କ ଉପରେ ପଡ଼ିବ ବୋଲି ମନେ ହୁଏ ନାହିଁ । ତେବେ ସ୍ଥା ବି ଚିନ୍ତା କରିବାର କଥା ଯେ, ଆଜି ଯେଉଁମାନେ ମନ୍ତ୍ରୀ ହୋଇଛନ୍ତି ବା ଅନ୍ତତଃ କଂଗ୍ରେସ ଦଳର ଆସେମ୍ବ୍ଲି ମେମ୍ବର ହୋଇଛନ୍ତି ତାଙ୍କ ଭିତରୁ ଅଧିକାଂଶ ସେପରି ଉଚ୍ଚକୋଟିର ଲୋକ ନୁହନ୍ତି । ସେମାନେ ଏ ଲେଖା ଦ୍ୱାରା ପ୍ରଭାବିତ ହେବାର ସଂଭାବନା ଅଛି । ନବବାବୁ ଯେଉଁ ଶ୍ରେଣୀର ଲୋକ, ସେ ତ ଏ ଲେଖା ପଢ଼ିଲେ ବାସ୍ତା ହୋଇଯାନ୍ତେ । ସେ ତାଙ୍କ କାର୍ଯ୍ୟକଳାପରେ ଯେଉଁ ଅସହିଷ୍ଣୁତା ଦେଖାଉଛନ୍ତି ତାହାହିଁ ତାଙ୍କ ପତନର ପ୍ରଧାନ କାରଣ ହେବ ।

( ୨୩ । ୮ । ୧୯୫୩ )

କାଲ ରାତି ଅଧ ପର୍ଯ୍ୟନ୍ତ Pictorial Orissa ବହି ପାଇଁ ଅଧେ ଲେଖା ସରିଥିଲି । ବାକୀ ଆଜି ସକାଳୁ ଆରମ୍ଭ କଲି । ୯ଟା ପର୍ଯ୍ୟନ୍ତ କାମ କରି ଭାଇର ଲେଖିବାକୁ ବସିଛି, ଆସିଲା ଜର । ସେଇ ଅଫିସ୍ ରୁମ୍‌ର ଖଟ ଉପରେ ଶୋଇପଡ଼ିଲି । ନିଦରେ ଶୋଇବାର ଉପାୟ ନ ଥିଲା । ଆଜି Supplementary Budget ପାଇଁ ନୂଆ ପ୍ରସ୍ତାବ ହେବାର ଶେଷ ତାରିଖ । ପ୍ରାୟ ଷୋଳଟି ଫାଇଲ୍ ନିଷ୍ପତ୍ତି କରିବାକୁ ହେବ । ଅଧିକାଂଶରେ ପୁଣି ନିଜେ ନୋଟ୍ ଦେବାର ଦରକାର ପଡ଼ିଲା । ସେତିକି ସରିଲା ବେଳକୁ କାଶୀବାବୁ ଡାକ୍ତର ଆସି ପରୀକ୍ଷା କଲେ । ଯକୃତ୍ ବଢ଼ିବା କୋପରେ ପେଟ ଦରଜ, ମୁଣ୍ଡ ବ୍ୟଥା ଓ ଜର । ସେ ଔଷଧ ଦେଇ ଗଲେ । ରାତିଟି କଷ୍ଟରେ କଟିଲା ।

(୨୫ । ୮ । ୧୯୫୩)

## ବେକାର ସମସ୍ୟା

ବେକାର ସମସ୍ୟାର ମୂଳ ଆମ ଶିକ୍ଷା ପଦ୍ଧତିରେ । ଚାକିରି ବ୍ୟତୀତ ଆଧୁନିକ ଶିକ୍ଷା ଆଗରେ ଆଉ କିଛି ଲକ୍ଷ୍ୟ ନାହିଁ । ଅଥଚ ଚାକିରି ପାଇଁ ପରୀକ୍ଷାରେ ମେଣ୍ଟ୍ ଯୋଗ୍ୟତା ଖୋଜା ଯାଉଛି ତାହା ଶହେରେ ଜଣେ ହାସଲ କରିବା ସହଜ ନୁହେଁ ! ଖାଲି First Division ନୁହେଁ, ୟୁନିଭରସିଟିରେ ଫର୍ଷ୍ଟ କରିଥିବ, ଏଇପରି ଲୋକଟିଏ ବଡ଼ ଚାକିରି ପାଇବ—ଯହୁଁଠାରୁ ବଡ଼ ଚାକିରି I. A. S. ବା I. P. S. ହେବାକୁ ହେଲେ ଏ ସବୁ ପରୀକ୍ଷା ଉପରେ ଆଉ ଅନ୍ୟ କମ୍ପିଟିଟିଭ ପରୀକ୍ଷାରେ ପାସ୍ କରିବାକୁ ହେବ । ଏ ଶେଷୋକ୍ତ ପରୀକ୍ଷାର ଲକ୍ଷ୍ୟ ହେଲା ଯୋଗ୍ୟ ଲୋକ ବାଛିବା ନୁହେଁ, ଯେତେ ଜଣଙ୍କୁ କଟା ଯାଇ ପାରେ ସେତେ ଜଣଙ୍କୁ କାଟିବା । ବଡ଼ ବଡ଼ ଚାକିରି ବାଦ୍ ଅଉ ଯେଉଁ ସବୁ ଚାକିରି ରହିଲା ତାହାର ଦରମା ଅତି କମ୍, ଯେ ପାଇଲା ସେ ସେତିକି ଅସନ୍ତୁଷ୍ଟ, ଯେ ନ ପାଇଲା ସେ ବି ସେତିକି । ଏ ତ ଗଲା ବଡ଼ ପରୀକ୍ଷାରେ ପାସ୍ କରିଥିବା ଲୋକଙ୍କ ଅବସ୍ଥା । ଯେଉଁମାନେ ସାନ ସାନ ପରୀକ୍ଷାରେ ପାସ୍ କରିଛନ୍ତି ବା B.A. M. A. ଫେଲ୍ ହୋଇଛନ୍ତି ସେମାନଙ୍କ ଦୁର୍ଦ୍ଦଶା କହିଲେ ନ ସରେ । ପାନ ଦୋକାନୀ ଆଗରେ ଯେତେ ଆଶା ଓ ଉତ୍ସାହ ଅଛି— ଏମାନଙ୍କର ସେତିକି ବି ନାହିଁ । ଚାରିଆଡ଼େ ସ୍କୁଲ୍ କଲେଜ ବଢ଼ିବାରେ ଲାଗିଛି ଆଖିବୁଜା—ପ୍ରତି ବର୍ଷ ହଜାର ସଂଖ୍ୟାରେ ବେକାର ଯୁବକଙ୍କର ଉତ୍ପାଦନ ଚାଲିଛି । ଏହାର ଏକ ମାତ୍ର ଶେଷ ଫଳ ବିପ୍ଳବ । ଏହାକୁ ରୋକିବାକୁ ହେଲେ ଶିକ୍ଷାନୀତିର ମୌଳିକ ପରିବର୍ତ୍ତନ ହେବା ଦରକାର । ସେକେଣ୍ଡାରୀ ଶିକ୍ଷା ବୋର୍ଡ଼ ଯାହା ସୁପାରିସ କରିଛନ୍ତି ସେଇ ରୀତିରେ, କିନ୍ତୁ ସେ ଆନ୍ତରିକତାରେ ନୁହେଁ । ଶିକ୍ଷକମାନଙ୍କର ମାନସିକ ବିପ୍ଳବ ନ ହେଲେ ଏ ନୂତନ ଆଭିମୁଖ୍ୟ ଆସିବା ସମ୍ଭବ ନୁହେଁ । ଏଇ କଥା ମୁଁ କାଲି ସଭାରେ କହିଲି, ସମସ୍ତେ ଶୁଣିଲେ ; କିନ୍ତୁ କାହା ମନକୁ ପାଇଲା ପରି ଜଣାଗଲା ନାହିଁ ।

(୪ । ୯ । ୧୯୫୩)

## ମାଳତୀ ଦେବୀ ଓ ନବବାବୁଙ୍କର ଗାର୍ହସ୍ଥ୍ୟ ଜୀବନ

ଅଜି ସଂଧ୍ୟାବେଳେ ପ୍ରସ୍ତୁତ ଶତାବ୍ଦୀର କାର୍ଯ୍ୟକ୍ରମ ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଆଲୋଚନା କରିବାର ସ୍ଥିର ହୋଇଥିଲା । ଉପମନ୍ତ୍ରୀ ଯୋଗ ଦେବାର କଥା । ୪ଟା ବେଳକୁ ସେ ତାଙ୍କର ଜର ବୋଲି ଟେଲିଫୋନ୍ କଲେ । ନିଜେ ଟେଲିଫୋନ ନ କରିଥିଲେ ହୋଇଥାନ୍ତା । ତାଙ୍କ ସ୍ୱରରୁ ଜଣା ପଡ଼ିଗଲା, ସେ ଆଜି ବହୁତ ଲୁଚାଏ ମଦ ପିଇ ଦେଇଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯଦି ଟେଲିଫୋନ କରିଥିବେ ତେବେ ବଡ଼ ଖରାପ ହେବ ବୋଲି ଆଶଂକା କରୁଥିଲି । ମୁଁ ଟେଲିଫୋନ୍ ଥୋଇ ଦେବା ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀ ଟେଲିଫୋନ କଲେ । ତାଙ୍କଠାରୁ ଶୁଣିଲି ଯାହା ଯେ ସେ ତାଙ୍କ ପାଖକୁ ଟେଲିଫୋନ କରିଛନ୍ତି ତାହା ନୁହେଁ, କ୍ୟାବିନେଟ୍ ଡିପାର୍ଟମେଣ୍ଟର ଶ୍ରୀ ଡାଭେଙ୍କ ପାଖକୁ ମଧ୍ୟ ଟେଲିଫୋନ କରି ତାଙ୍କୁ ଲୁଚାଏ କ'ଣ ଧମକାଇଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଅନୁପ ସିଂହଙ୍କର ଅବସ୍ଥା ଦେଖି ଦୁଃଖ କଲେ । ତାଙ୍କର ସନ୍ଦେହ, ନୈରାଶ୍ୟ ଓ ଭବିଷ୍ୟତର ଅନ୍ଧକାରମୟ ପରିସ୍ଥିତିର ଆଶଂକାରେ ସେ ଲଗାମ ଛାଡ଼ି ମଦ ପିଉଛନ୍ତି । ଅବଶ୍ୟ ତାଙ୍କର ଜମିଦାରୀ ଯାଇଛି । କିନ୍ତୁ ତାଙ୍କ ପରି ଲୋକ ଉପମନ୍ତ୍ରୀ ହେବାର କଥା ନୁହେଁ । ଯେଉଁଥିରେ ଆଗ୍ରହୀ ହୋଇ ଜମିଦାରୀ ଗଲେ ବି ସେ ରାଜନୀତିକ ଆଶା ଆକାଂକ୍ଷାରେ ଉଦ୍‌ବୁଦ୍ଧ ହେଲେ ସେ ନିଜ ଗତି ନିୟନ୍ତ୍ରଣ କରି ପାରନ୍ତେ । ସେଥିପାଇଁ ସେ ପରାମର୍ଶଦାତା ପାଇନାହାନ୍ତି ; ଯେଉଁ ଶ୍ରେଣୀର ଲୋକଙ୍କ ସଙ୍ଗେ ସେ ଚଳିଗଲେଣି, ତାଙ୍କୁ ଛାଡ଼ି ନୂଆ ପରାମର୍ଶଦାତାଙ୍କୁ ଗ୍ରହଣ କରିବା ବର୍ତ୍ତମାନ ଆଉ ତାଙ୍କ ପକ୍ଷରେ ସଂଭବ ନୁହେଁ ବୋଲି ମୋର ସନ୍ଦେହ । ବର୍ତ୍ତମାନ ଗୁଜବଗୁଡ଼ିକ ମହଲରେ ଯେଉଁ ଯେପରି ପ୍ରଚାର ହେଉଛି ସେଥିରେ ତାଙ୍କୁ ରଖିବାକୁ ପ୍ରଭାବ କେଉଁ ଆଡ଼ରୁ ପଡ଼ିବ ? ଅନୁପ ସିଂହଙ୍କର ପତନ ଅବଶ୍ୟଂଭାବୀ, ତାଙ୍କ ସଙ୍ଗେ ସେ ତାଙ୍କ ସହକର୍ମୀମାନଙ୍କୁ ଟାଣିନେବାର ସଂଭାବନା ଯଥେଷ୍ଟ ।

ନବବାବୁଙ୍କ ପାରିବାରିକ ଅସୁବିଧାରେ ସରକାରୀ କଥାବାର୍ତ୍ତା ସଂଭବ ହେଲା ନାହିଁ । ତାଙ୍କ ନାତି ନାତୁଣୀ ଯୋଡ଼ିକ ଯାକ ବେମାର ପଡ଼ିଛନ୍ତି । ସାନ ଝିଅଟିକୁ ମଧ୍ୟ ଜର । ନାତିର କାନରେ ସେ ବ୍ୟସ୍ତ ହେଉଛନ୍ତି । ବଡ଼ ଝିଅଟି ପିଲା ଦୁଇଟିକୁ ଧରି ବସିଥାଏ । ମାଳତୀ ଦେବୀ ଅନୁଗୁଳରେ । ସେଠାରୁ ଆଦିବାସୀ ଅଂଚଳ ବୁଲିବାକୁ ଯିବେ ବୋଲି ପ୍ରୋଗ୍ରାମ କରିଛନ୍ତି । ନିଜର ସ୍ୱାଧୀନ ପ୍ରୋଗ୍ରାମ ନ କରି, ନବବାବୁଙ୍କ ଉପରୁ ସଂସାରର ଭାର ଲଘବ କରି ପାରିଲେ ସେ ବୋଧହୁଏ ନିଜ କର୍ତ୍ତବ୍ୟ କରନ୍ତେ । ତା ପରିବର୍ତ୍ତରେ ସେ ନିଜେ ସ୍ୱାଧୀନ କର୍ମପନ୍ଥା ଧରିବେ ବୋଲି ସଂସାରର ବୋଝ ନବ ବାବୁଙ୍କ ଉପରେ ଲଦି ଦେଇ ଯିବା ଫଳରେ ନବ ବାବୁଙ୍କର କାର୍ଯ୍ୟକ୍ଷମତା ହ୍ରାସ କରୁଛନ୍ତି । ନିଜର କାର୍ଯ୍ୟର ମୂଲ୍ୟ ନବବାବୁଙ୍କ କାର୍ଯ୍ୟଠାରୁ ଗୁରୁତର ହୋଇଥିଲେ ଆପତ୍ତି କରିବାର ନ ଥିଲା । କିନ୍ତୁ ତାଙ୍କର କାର୍ଯ୍ୟ ଖୁସିବାସି କାର୍ଯ୍ୟ । ସେ ନିଜ କାର୍ଯ୍ୟରେ କୃତିତ୍ୱ ଅର୍ଜନ ନ କରି ପାରିଲେ ପୁଣି ନବ ବାବୁଙ୍କର ଦୋଷ ହେବ ; କାରଣ ନବବାବୁ ରାଜ୍ୟର ମୁଖ୍ୟମନ୍ତ୍ରୀ ପୁଣି ନିଜର

ସ୍ୱାମୀ । ଅଧିକାର ଦାବୀ କଲାବେଳକୁ ସ୍ୱାମୀ ପାଖରେ, କିନ୍ତୁ କର୍ତ୍ତବ୍ୟ ନିର୍ଣ୍ଣୟ କରିବାରେ, ସ୍ୱାମୀ ବିଚରା ଅଛି ବୋଲି ମନେ ପଡ଼ୁନାହିଁ !

ଏ ମନୋବୃତ୍ତି ହେଲା କିପରି ? ସେ ବିଷୟରେ ମୁଁ ଅନେକ ସମୟରେ ଭାବେ । ଖାଲି କ'ଣ ଆଧୁନିକ ଶିକ୍ଷା ଓ ଶାନ୍ତିନିକେତନର ପ୍ରଭାବରେ ଏପରି ହୋଇଛି ? ବୋଲି ସନ୍ଦେହ ହେଉଥିଲା । ଆଜି ଦେଖିଲି ମାଲତୀ ଦେବୀଙ୍କ ଉପରେ ନିଜ ମା'ଙ୍କ ପ୍ରଭାବ ପଡ଼ିଛି । ସେ ମହାଶୟା ଆଜି ନବ ବାବୁଙ୍କ ଘରେ ରୋଗୀ—ଆବର୍ତ୍ତ । ନାତୁଣୀ ଓ ପଣନାତୁଣୀଙ୍କର ବେମାର ବିଷୟରେ ନିଜର ସେତେ ଚିନ୍ତା ନାହିଁ, ସେତେ ଅଛି ନିଜର ଦେହ ଉପରେ । ବ୍ୟସ୍ତ ହେଉଛନ୍ତି ଯେ ତାଙ୍କର ଯାହା ଖାଇବାକୁ ଇଚ୍ଛା ହେଉଛି ସେ ତାହା ପାଇ ପାରୁ ନାହାନ୍ତି । ସେ କିପରି ଶୀଘ୍ର ଭଲ ହେବେ । ଭଲ ହେଲେ ବୋଧହୁଏ ଆଉ ଥରେ ସଂସାର କରନ୍ତେ ! ଭଦ୍ର ମହିଳାଙ୍କ ଦିଗ୍‌ବଳୟରେ ଈଶ୍ୱର କେଉଁଠି ନାହାନ୍ତି । ସବୁ ନିଜେ. ଘୋର ଅଶାନ୍ତିର ସଂସାରରୁ ଯିବେ, ଓ ଯିବା ପୂର୍ବରୁ ଆମମାନଙ୍କୁ ଯେତେ ଘାଣ୍ଟି ପାରିବେ ଘାଣ୍ଟିବେ । (୬ । ୯ । ୧୯୫୩)

## ନୀଳକଣ୍ଠଙ୍କ ମୃତ୍ୟୁ ନେଇ ମିଥ୍ୟା ସମ୍ବାଦ

ଆଜି ସଂଧ୍ୟାବେଳେ ଗୋବିନ୍ଦ ମିଶ୍ରେ ଆସି ପହଞ୍ଚିଲେ । ଠିକ୍ ସେତିକି ବେଳକୁ ପ୍ରଜାତନ୍ତ୍ର ଅଫିସରୁ ଗୋଟିଏ ଟେଲିଫୋନ୍ ଆସିଲା ଯେ ପଣ୍ଡିତ ନୀଳକଣ୍ଠ ଦାସ ପୁରୀରେ ବେମାର ଥିଲେ, ସେ ମରିଯିବାର ସଂବାଦ ଆସିଛି । ମୁଁ ବଡ଼ ବିବ୍ରତ ହୋଇଗଲି । ତାଙ୍କର ସାମାନ୍ୟ ଦେହ ଖରାପ ହୋଇଛି ବୋଲି ମୁଁ ଶୁଣିଥିଲି, କିନ୍ତୁ ଏପରି ସଂବାଦ ପାଇଁ ମୁଁ ପ୍ରସ୍ତୁତ ନ ଥିଲି ; ଏ ସଂବାଦ ଠିକ୍ କି ନୁହେଁ, ଭଲକରି ନ ବୁଝି ଆଉ କାହାକୁ କହିବା ଠିକ୍ ହେବ ନାହିଁ ବୋଲି ମନେକରି, ଅଶୋକ ପାଖକୁ ଟେଲିଫୋନ୍ କଲି, ସେ ମୋ ପାଖକୁ ଆସିବାକୁ—ଉଦ୍ଦେଶ୍ୟ ସାଙ୍ଗ ହୋଇ ପୁରୀ ଯିବା—ସେ କଟକରୁ ପୁରୀକୁ ଟ୍ରଙ୍କ୍‌ଫୋନ୍ କରିଲା । ମୁଁ ବି ପୁରୀର ସିଭିଲ୍ ସର୍ଜନଙ୍କ ପାଖକୁ ଟେଲିଫୋନ୍ କରିଥିଲି । ଉତ୍ତର ମିଳୁ ମିଳୁ ଘଣ୍ଟେ ଲାଗିଲା । ସେ ଘଣ୍ଟାକ କଷ୍ଟ କରି ପାରିଲି ନାହିଁ । ଅତି ବ୍ୟଗ୍ରତାରେ ଫୋନ ପାଖେ ବସିଥାଏ । ଖାଲି ଭାବୁଥାଏ, ବିଚରା ବୁଢାଟି ଜୀବନ ତମାମ ଖାଲି ଯତ୍ରୁଥିରେ ବ୍ୟର୍ଥ ହୋଇ ଅଜଣା ଅଶୁଣା ଚାଲିଗଲେ । ପୁଅ ଓ ଝିଅଜ୍ୱାଇଁ ହୋଇ ୧୦ ଜଣଙ୍କ ଭିତରୁ କେବଳ ଦ୍ୱାରି ଓ ରମା ଓ ହୁଏତ ବଙ୍କମର ସ୍ତ୍ରୀ ପାଖରେ ଥିବେ । ତାଙ୍କୁ ମୁଁ ବହୁବାର ରହସ୍ୟରେ କହିଛି, ତାଙ୍କର ଯେତେ ତୃଷ୍ଣା ସେଥିରୁ ଜଣାପଡ଼ୁଛି ଯେ ଅମର ହେବେ, ଅନ୍ତତଃ ପକ୍ଷେ ମୁଁ ଓ ତାଙ୍କର ପୁଅମାନଙ୍କର ମୃତ୍ୟୁ ପରେ ମରିବେ । କୌଣସି ଲାଳସା ଚରିତାର୍ଥ ହେବା ପୂର୍ବରୁ ସେ ମରିଗଲେ ବୋଲି ବଡ଼ ମନ ଦୁଃଖ ହେଲା ।

ଟେଲିଫୋନ୍ ଆସିଲା ପୁରୀରୁ ଓ ଅଶୋକଠାରୁ ଯେ ସେ ଭଲ ଅଛନ୍ତି । ଘୋର ବିବ୍ରତ ହେବା ଯୋଗୁଁ ଅଶୋକ ମୋତେ ଥଟ୍ଟା କଲା । ସେ ନିଜେ ବିବ୍ରତ ହେଲା କି ନାହିଁ କେଜାଣି ? (୮ । ୯ । ୧୯୫୩)

## ନବ ବାବୁଙ୍କ ସ୍ବୀକାର କରଣ ନ କହିବା

ଆଜି ସକାଳେ ନବ ବାବୁଙ୍କ ସଙ୍ଗେ ଦେଖା କରିବାକୁ ଗଲି । ତାଙ୍କୁ ପରିଷ୍କାର କହିଲି, ମୁଁ ଆଉ ସ୍ୱୀକାର କରିବାକୁ ଚାହେଁ ନାହିଁ । ମୋ ପ୍ରତି ସେ ଓ ତାଙ୍କ ପ୍ରଶ୍ରୟ ପାଇ ଅନ୍ୟ ଅଫିସରମାନେ ଯେଉଁ ଅନ୍ୟାୟ କରୁଛନ୍ତି ତାହାର ପ୍ରତିବାଦ କରି ମୁଁ ମାନେ ମାନେ ବାହାରିଯିବା ଉଚିତ ହେବ ବୋଲି ଜଣାଇ ଦେଲି । ସେ ଏ କଥାରେ ବିଶେଷ ଗୁରୁତ୍ୱ ଦେଲେ ନାହିଁ । କହିଲେ, "ତୁମର ଦେହ ପ୍ରାୟ ଖରାପ ହୁଏ ନାହିଁ । ଏବେ ଖରାପ ହୋଇଥିବାରୁ ତୁମେ ବିଚଳିତ ହୋଇ ଯାଇଛ ! ଆଗ ଦେହ ଭଲ କର, ତା' ପରେ ଅନ୍ୟ ବିଷୟ ବିଚାର କରିବା ।" ଏହା ଶୁଣି ତାଙ୍କର ସଦିଚ୍ଛା ବିଷୟରେ ବିଶ୍ୱାସ ହେବାର କଥା । କିନ୍ତୁ ତାଙ୍କର ମୋ ବିଷୟରେ ମତାମତର ଯେଉଁ ପ୍ରମାଣ ମୁଁ ପାଇଛି ସେଥିରେ ଏ କଥାରେ ମୁଁ ଆଶ୍ୱସ୍ତ ହୋଇ ପାରିଲି ନାହିଁ । ହୁଏତ ସେ ଖୁବ୍ ବୁଡ଼ିବୁଡ଼ି ପାଣି ପିଉଛନ୍ତି ବା ଅତି ଅବ୍ୟବସ୍ଥିତ ଓ ଶାସନର ନିୟମ କାନୁନ୍ କିଛି ନ ବୁଝି, ଖାଲି ଦୁର୍ମନ୍ତ୍ରୀମାନଙ୍କ ପରାମର୍ଶରେ ଯେତେବେଳେ ଯାହା ଆସୁଛି ତାହା କହିଦେଉଛନ୍ତି ଓ କରୁଛନ୍ତି । ସେ ଦିଲ୍ଲୀରୁ ଫେରିବା ପର୍ଯ୍ୟନ୍ତ ମୁଁ ହଠାତ୍ କିଛି ସିଦ୍ଧାନ୍ତ ନ କରି ଅପେକ୍ଷା କରିବାକୁ ସେ ମୋତେ କହିଲେ । ଏଣେ ସୁନାରାମ ବାବୁଙ୍କର ଇଚ୍ଛା ନୁହେଁ ମୁଁ ସ୍ୱୀକାର ଛାଡ଼ିଦେବା ବା ଲମ୍ବା ଛୁଟିରେ ଚାଲିଯିବା । ଭିତରେ ରହି ନିଜ ପ୍ରତି ହେଉଥିବା ଅନ୍ୟାୟର ପ୍ରତିବିଧାନ କରିବା ସଙ୍ଗେ ସଙ୍ଗେ ଶାସନକୁ ସୁଧାରିବା ବା ବାହାରକୁ ଯାଇ ଶାସନକୁ ସୁଧାରିବା—ଏଇ ଦୁଇ ବିଷୟରୁ ଗୋଟିଏ ଶୀଘ୍ର ବାଛି ନେବାକୁ ହେବ । ଆସନ୍ତା ୧୫ ଦିନ ଭିତରେ ଅନ୍ୟ ମନ୍ତ୍ରୀ ଉପମନ୍ତ୍ରୀଙ୍କ ସହିତ ଦେଖା କରି କର୍ତ୍ତବ୍ୟ ସ୍ଥିର କରିବାକୁ ହେବ ।

( ୧୬ । ୯ । ୫୩ )

## ନେହରୁଙ୍କ ନୀତି

ଭାରତର ଏକତା ରଖି ପାରିବ । ଇଂରେଜ ଦିନେ ଏଇ ସମସ୍ୟାରେ ପଡ଼ିଥିଲେ ; ଭାରତ ସରକାର ସେଇ ସମସ୍ୟାରେ ପଡ଼ିବେ । ସୁଚାରୁ ରୂପେ ସ୍ଥାୟୀ ଶାସନ ଚଳାଇବାକୁ ହେଲେ ଭାରତକୁ ନିରୋଳା ଫେଡେରେସନ ହେବାକୁ ପଡ଼ିବ । ୟୁନିଅନ ଓ ଫେଡେରେସନ ସମ୍ମିଶ୍ରଣ ରଖିବାକୁ ଯେଉଁ ଉଦ୍ୟମ ହୋଇଛି ତାହା ଫଳରେ ଗୋଳମାଳ ଓ ଅସନ୍ତୋଷ ଲାଗି ରହିବ ଓ କୌଣସି ଦିଗରେ ଅଗ୍ରଗତିର କିଛି ବାଟ ରହିବ ନାହିଁ ।

ପଣ୍ଡିତ ଜବାହରଲାଲ ନେହରୁ ଖାଲି ଆନ୍ତର୍ଜାତିକ ପରିସ୍ଥିତିରେ ବ୍ୟସ୍ତ ରହି ଭାରତର ଆଭ୍ୟନ୍ତରୀଣ ଅବସ୍ଥା ଯେପରି ଜଟିଳ ଆକାର ଧାରଣ କରୁଛି ସେଥିପାଇଁ ଦୃଷ୍ଟି ଦେଉନାହାନ୍ତି । ଲୋକଙ୍କ ହୃଦୟ ଦେଖି ସେମାନଙ୍କୁ ହାତରେ ରଖିବାକୁ ଉଦ୍ୟମ ନ କରି ଧମକେଇ ଚପେଇ ରଖିବାର ଚେଷ୍ଟା କରୁଛନ୍ତି । ତାହାର ଫଳରେ କମ୍ୟୁନିଷ୍ଟ ଗଡା ହେଲେ, P. S. P. ହେଲେ ଦୁଇତିନିବର୍ଷ ଭିତରେ ବର୍ତ୍ତମାନ୍ କଂଗ୍ରେସରେ

ମେଉଁ rump ଟା ଅଛି, ସେଥିରୁ ବି ଲୋକ ବାହାରି ଯିବେ । କଂଗ୍ରେସ ଦଳ ଏହିପରି ସ୍ଥୁଲୁଣିରେ ଚଲାଇ ହୋଇହୋଇ ଯେଉଁମାନେ ସାନସାନ ଅର୍ଥାତ୍ ଦୁର୍ନୀତି ଅପହଞ୍ଚ ଲୋଭ ଓ ମାତ୍ସର୍ଯ୍ୟରେ ଯେଉଁମାନେ ସାନ ଯେଉଁମାନଙ୍କ ମନରେ ଦେଶପ୍ରାଣତା ଅଳ୍ପ ବହୁତ ରହିଛି ସେମାନେ ଅଲଗା ଅଲଗା ଦଳ ଗଢ଼ିବେ । ସ୍ଥୁଲୁଣିରେ ଶେଷକୁ ଯେଉଁ ବଡ଼ ଗୋଡ଼ି ସବୁ ରହିବ, ସେଗୁଡ଼ିକ ସ୍ରୋତା କଡ଼କୁ ଫୋପଡ଼ା ହୋଇଯିବ—ସଂଖ୍ୟାରେ ଅଳ୍ପ ହୋଇଥିବାରୁ ଓ ସୁନଫର ନୀତି ନ ଥିବାରୁ କୋଠା ତିଆର କରିବାକୁ ମଧ୍ୟ ତାକୁ କେହି ଛୁଇଁବେ ନାହିଁ । ରାଜନୀତିକ ନେତାର ଯେଉଁ ସହିଷ୍ଣୁତା ରହିବା ଦରକାର ସେ କଥା ଜହରଲାଲଙ୍କଠାରେ ନାହିଁ । ଏଥିପାଇଁ ତାଙ୍କର ଗାର୍ହସ୍ଥ୍ୟ ଜୀବନ ଦାୟୀ—ବାପର ଏକମାତ୍ର ପୁଅ ପୁଣି ବହୁ ଭଉଣୀ ମଧ୍ୟରେ ଗେହ୍ଲା ହୋଇ ବଢ଼ିଲେ, ଗୋଟିଏ ବୋଲି ଝିଅ । ସ୍ତ୍ରୀ ମରିବା ଫଳରେ ସେ ବି ବାପଙ୍କୁ ଗେହ୍ଲା କରୁଛି । ଗାନ୍ଧୀ ବି ଅତିଶୟ ତାଙ୍କୁ ଗେହ୍ଲା କରିଥିଲେ । (୧୯ । ୯ । ୧୯୫୩)

## ନୀଳକଣ୍ଠଙ୍କ ସ୍ୱଭାବ ଓ ଲେଖା

କାଲି ସନ୍ଧ୍ୟାରେ ପଣ୍ଡିତ ନୀଳକଣ୍ଠ ଦାସ ମୋତେ ଦେଖା କରିବାକୁ ଡାକିଥିଲେ । ମୁଁ ବି ତାଙ୍କୁ କହିଥିଲି ଆଜି ସକାଳେ ତାଙ୍କ ପାଖକୁ ଯିବାକୁ । କିନ୍ତୁ ମନ ହେଲା ନାହିଁ । ଅବଶ୍ୟ ଦେହ ଖରାପ ହୋଇଁ ବେଶୀ ବୁଲା ଚଲା କରିବାକୁ ମନ ହେଉ ନାହିଁ ; କିନ୍ତୁ ସେପରି ବେଶୀ ମନ ହୋଇଥିଲେ ନିଶ୍ଚୟ ଯାଇଥାନ୍ତି । ପଣ୍ଡିତ ନୀଳକଣ୍ଠଙ୍କ ପାଖକୁ ଯିବାକୁ ଆଉ ମନ ଡାକୁ ନାହିଁ । ସେ ମୋ ସାଙ୍ଗେ ଭାବ କରିବାକୁ ଖୁବ୍ ଲାଳାୟିତ—ବହୁ କାଳ ତାଙ୍କ ସଙ୍ଗେ ରହିଥିବାରୁ ତାଙ୍କ ଦୋଷଗୁଡ଼ାକ ଆଖିରେ ନ ପଡ଼ି ତାଙ୍କ ସ୍ନେହପ୍ରବଣ ମନ ଆକୃଷ୍ଟ ହୁଏ । କିନ୍ତୁ ଖାଲି ଆନ୍ତରିକତା ରଖିବାକୁ ଯଦି ସେ ପାରନ୍ତେ ତେବେ ମୁଁ କାହା କଥାକୁ ଭ୍ରୂକ୍ଷେପ ନ କରି ତାଙ୍କ ସଙ୍ଗେ ଭାବ ରଖନ୍ତି । କିନ୍ତୁ ତାଙ୍କର ସବୁ କଥାରେ ସ୍ୱାର୍ଥ । ୪ ଦିନ ତାଙ୍କ ସଙ୍ଗେ ଭାବ କରିବ ତ ସେ ଖୋଜିବେ ଆମ ଠାରୁ କିଛି ଗୋଟାଏ ଲାଭ ଉଠାଇବାକୁ । ତୁମର ଯାହା ହେଉ ପଛେ ତାଙ୍କର ଲାଭ ହେଲେ ଗଲା । ଆଉ ବର୍ଷେ ସେଇପରି ଟିକିଏ ଯିବା ଆସିବା ସ୍ଥୁଲୁସ୍ଥୁଲୁ ସେ ତାଙ୍କ ବହିଗୁଡ଼ାଏ ମୋ ଉପରେ ଲଦିଦେଲେ । ଅବଶ୍ୟ ତାଙ୍କର ଗ୍ରନ୍ଥକାର ହିସାବରେ ନାମ ଅଛି । ତାଙ୍କ ବହି କିଣିଲେ କେହି ଠକିପାରିବେ ନାହିଁ । କିନ୍ତୁ ମୁଁ ଯଦି ତାଙ୍କ ବହିକୁ ଭଲ କରି ପଢ଼ି ଜାଣିଥାନ୍ତି, ତାହାହେଲେ ଯେତେ ସଂଖ୍ୟାରେ କିଣିଲି ସେତେ କେବେ ହେଲେ କିଣି ନ ଥାନ୍ତି । ତାଙ୍କର ସବୁ ବହି ଯେପରି ଏ ବି ସେହିପରି, ଅଯଥା କଲେବର ବୃଦ୍ଧି, ବିଷୟର ନିରପେକ୍ଷ ଚର୍ଚ୍ଚାର ଅଭାବ, ଓ ଅଶ୍ଳୀଳତାରେ ନିରତିଶୟ ଆଗ୍ରହ । ସାହିତ୍ୟର କ୍ରମ ପରିଣାମ ବିଷୟ ଲେଖୁ ଲେଖୁ ତାଙ୍କୁ ଯାହା ଜଣା ସବୁ ଭର୍ତ୍ତି କରିବାକୁ

ଚେଷ୍ଟା ହୋଇଛି । ନିଜକୁ ପଛରେ ରଖି ବିଷୟ ଉପରେ ଦୃଷ୍ଟି ଦେଇ ସେ ଯଦି ଲେଖିପାରନ୍ତେ, ତେବେ ସେ ଜଣେ ବଡ଼ ଲେଖକ ହୋଇପାରିଥାନ୍ତେ ।

(୨୦ । ୯ । ୫୩)

ଆଜକୁ ତିନି ଦିନ ହେଲା ମୁଁ ସକାଳୁ ଗାଧୋଇ ଆମ ଘରର ଠାକୁରାଣୀଙ୍କ ପାଖରେ ବସି ସ୍ତୋତ୍ରାଦି ପଢ଼ୁଛି । ପୁଅ ମଧ୍ୟ ମୋ ପାଖେ ଯାଇ ଦିଅଁ ବସାଉଛି ଓ ଶ୍ରୀମଦ୍ ଭଗବଦ୍ ଗୀତା ଅଧ୍ୟାୟେ ଲେଖାଏଁ ପଢ଼ୁଛି । ଗତ ୧୦ ବର୍ଷ ହେଲା ମୁଁ ଏ କାର୍ଯ୍ୟ ଛାଡ଼ି ଦେଇଥିଲି । ପିଲା ଦିନେ, ନନା ଥିଲାବେଳେ ଗାଧୋଇବା ପରେ ଚିତା କରି ଅଧ୍ୟାତ୍ମ ରାମାୟଣ ଶୁଣୁଥିଲି । ଅଳ୍ପ ଦିନ ଏପରି କରିବା ପରେ ବଲାଙ୍ଗିର ଗଲିଗଲି । ସେଠାରେ ସାଧାରଣ ହାଓଆ ଓ ବିଶେଷ କରି ଆମ ସ୍କୁଲର ହାଓଆ ରେ ଅଧ୍ୟାତ୍ମ ରାମାୟଣ ଖଣ୍ଡି ବିକା ହୋଇଗଲା । ବଲାଙ୍ଗିରରୁ ୪ ବର୍ଷ ପରେ ଯେଉଁ ସଂସ୍କୃତି ଘେନିକରି ଆସିଲି, ସେଥିରେ ଆମ ମୌଳିକ ରୀତିର ସତ୍ତା ନ ଥିଲା । ସତ୍ୟବାଦୀ ସ୍କୁଲରେ ପୁଣି ଗାଧୋଇ ସାରି ଭଗବଦ୍ ଗୀତା ଶୁଣିବା ଆରମ୍ଭ ହେଲା । ସେଠାରେ ଖାଲି ନିୟମ ମାନିବା ଉପରେ ଭାରି ଜୋର ଥିଲା । ନିୟମ ପ୍ରତି ଆମର ସବୁ ଜପରି ଶ୍ରଦ୍ଧା ଆସିବ ସେଥିପାଇଁ କୌଣସି ଚେଷ୍ଟା ହେଉ ନ ଥିଲା । ଶିକ୍ଷକମାନେ ନିଜେ ନିୟମାନୁବର୍ତ୍ତୀ ନ ଥିବାରୁ ସକାଳ ଗାଧୁଆ, କସରତ ଓ ଉପାସନା—ସବୁ ପ୍ରହସନ ପରି ହେଉଥିଲା । ହେଲେ କ'ଣ ହେବ, ଏଇ ପ୍ରହସନ ଭିତରେ ଭଗବଦ୍ ଗୀତା ନ ବୁଝି ପଢ଼ି ପଢ଼ି ମନେ ରହିଗଲା, ଓ କାହାଠାରୁ କିଛି ନ ଘେନି ମଧ୍ୟ ଟିକିନି ସଇ ଅର୍ଥ ମନେ ରହିଗଲା । ବୋଧହୁଏ ଅର୍ଥଟା ପୁରୁଣା ବୟସରେ ମନକୁ ମନ ଆସିଗଲା । ନ ବୁଝିକରି ମଧ୍ୟ ନିୟମ ମାନି ଆବୃତ୍ତି କରିବାରେ ଲାଭ ଅଛି । ଶ୍ରଦ୍ଧାରେ କରିଥିଲେ ହୁଏତ ନିଜ ଜୀବନରେ ଭଗବଦ୍ ଗୀତାର ଛାୟା ଅଧିକ ପଡ଼ିଥାନ୍ତା । ତା' ପରେ ମଝିରେ ମଝିରେ କିଛି ଦିନ ଉପାସନା ଓ ସ୍ତୋତ୍ର ପଠନାଦି କରେ । କିଛି ଦିନ ପରେ ଛାଡ଼ିଯାଏ । ଆଜିର ପୂର୍ବେ ଯେଉଁ ଥର ପୂର୍ବ ରୀତିକୁ ମନ ଟାଣି ହୋଇଥିଲା ତାହା ୧୯୩୯ ରେ ; ପ୍ରାୟ ଧାରାବାହିକ ଭାବେ ଏହା ୧୯୪୪ର ଆରମ୍ଭ ପର୍ଯ୍ୟନ୍ତ ରହିଲା । ସ୍ୱୀକାର କରିବାକୁ ଆସି ଭାଗବତ ଓ ଭଗବଦ୍ ଗୀତା ସବୁ ଛାଡ଼ି ଦେଇଥିଲି । ବର୍ଷେ ହେଲା ସେ ଆଡ଼କୁ ପୁଣି ମନ ଟାଣିଲା ; କିନ୍ତୁ ଧାରାବାହିକ ଭାବେ କିଛି ପଢ଼ିବାକୁ ପ୍ରବୃତ୍ତି ଏବେ ତିନିଦିନ ହେଲା ଆସିଛି । ମୁଁ ଦିଅଁଙ୍କ ଘରକୁ ଯିବାରୁ ପୁଅକୁ ନେବାରେ ବେଶୀ ପରିଶ୍ରମ ପଡ଼ିଲା ନାହିଁ । ପୁଅର ଯଦି ଏଇ ରୀତି ରହେ ତେବେ ଧାରା, ଚରିତ୍ର ଓ ଆଚରଣ ଠିକ୍ ରହିବ । ଯଦିବା କେବେ ସ୍ଖଳନ ହେବ, ଠିକ୍ ରାସ୍ତାକୁ ଆସିବା ପାଇଁ ମନ ନିଜେ ନିଜେ ଟାଣି ହୋଇଯିବ ।

(୨୧ । ୯ । ୧୯୫୩)

## ମାସିକ ପତ୍ରିକା ଓ ଚଣ୍ଡୀପାଠ

ଆଜି ସୁଧୀର ବାବୁ ଦିଲ୍ଲୀରୁ ଫେରି ସକାଳ ୧୦ଟା ବେଳକୁ ମୋ ପାଖକୁ ଆସିଲେ । ତାଙ୍କୁ ଦେଖିବା ମାତ୍ରେ ମନେ ହେଲା, ମୁଁ ନ ଯାଇ ତାଙ୍କୁ ପଠାଇବାକୁ ଦେବା ବଡ଼ ଠିକ୍ ହୋଇଛି । ଦିଲ୍ଲୀରେ ଯାଇ ଡିରେକ୍ଟରଙ୍କ ସମ୍ମିଳନୀରେ ଯୋଗ ଦେଇ ସେ ଖୁବ ଖୁସ୍ । ପୁଣି ସେଠାରେ ଯାହା ସବୁ ଦେଖି ଆସିଛନ୍ତି ତା' ଫଳରେ ତାଙ୍କର କାର୍ଯ୍ୟରେ ଟିକିଏ ଅଧିକ ଶୃଙ୍ଖଳା ଆସିବ ବୋଲି ମନେହୁଏ । ସେ ଯେବେ କହିଲେ ନାହିଁ, ମୁଁ ଯାଇଥିଲେ ଭଲ ହୋଇଥାନ୍ତା ବୋଲି । ମନରେ ପୂର୍ବ ଆତ୍ମ ବିଶ୍ୱାସ ହୋଇଛି ଯେ, ଯାହା କରିବାର କଥା ସେ ସବୁ କରିଛନ୍ତି । ଏପରି ବିଶ୍ୱାସ ମନ୍ଦ ନୁହେଁ । ଅଧିକାଂଶ ସମୟରେ ଏହାଦ୍ୱାରା ନିଜର ଦକ୍ଷତା ବଢ଼େ । ସୁଧୀର ବାବୁଙ୍କର ଭିତ ମଧ୍ୟରେ ଦକ୍ଷତା ବଢ଼ିଛି । କାହା ଯୋଗୁଁ ବଢ଼ିଛି ସେତକ ମନରେ ରଖି ଯଦି ଚଳିବେ ତେବେ ତାଙ୍କର ଭଲ । ''ସୁକୃତ ବିନୟମ୍'' ଏଇ ମତଟି ବଡ଼ ମହତ୍ ।

ଶ୍ରୀ ସୋମନାଥ ରଥେ ଆଜି ଦିପହରେ ଆସି ପହଞ୍ଚିଲେ । ତିନି ଦିନ ଚଣ୍ଡୀ କରିବେ ଆମର ଠାକୁରାଣୀଙ୍କ ଆଗରେ । ବୋଧହୁଏ ମୁଁ ଲାଭ ଆଶାରେ, ମୋ'ର ଶତ୍ରୁ ଦମନ ଆକାଂକ୍ଷାରେ ଏହା କରାଉଛି । କିନ୍ତୁ ଅନ୍ତତଃ ଏତିକି କହିପାରେ ସବୁବେଳେ ଚେଷ୍ଟା କରୁଛି, ଅନ୍ୟର କୌଣସି ଅନିଷ୍ଟ ନ ହୋଇ ମୋ କାର୍ଯ୍ୟଟି ହୋଇଯାଉ । ମୋର କାର୍ଯ୍ୟଟି ପୁଣି କ'ଣ ସେ ବିଷୟରେ ମନରେ ବି ସ୍ଥିର ଧାରଣା ନାହିଁ । ମୋର ବେଳେ ବେଳେ ମନ ହେଉଛି ଏଠାରୁ ଛାଡ଼ି ମୁଁ ଯେଉଁ ମାସିକ ପତ୍ରିକା ଓ ଲେଖାପଢ଼ା ଯୋଜନା କରିଛି ତାହା ବୋଧହୁଏ ଶ୍ରେୟସ୍କର ହେବ । (୨୪ । ୯ । ୧୯୬୩)

## ନେହରୁଙ୍କ ଖଦଡ଼ ଚିନ୍ତା ଓ ମୁଁ

ଆସନ୍ତା ଅକ୍ଟୋବର ମାସରୁ ନିୟମିତ ଖଦଡ଼ ପିନ୍ଧିବାକୁ ମୁଁ କେତେ ଦିନ ହେଲା ଭାବୁଛି । ଥରେ ୧୯୨୧ରେ ଖଦଡ଼ ପିନ୍ଧିଥିଲି ଯେ, ୧୯୨୫ରେ ଛାଡ଼ିଲି—ପୁଣି ୧୯୨୯ରୁ ଆରମ୍ଭ କଲି । ମଝିରେ ଭାସ୍କର ମହାପାତ୍ରଙ୍କ ଘରେ ୭ ମାସ ଛାଡ଼ିଥିଲି । ୧୯୩୩ଠାରୁ ୧୯୪୪ ପର୍ଯ୍ୟନ୍ତ ନିୟମିତ ଖଦଡ଼ ପିନ୍ଧୁଥିଲି । ତା'ପରେ ଧୀରେ ଧୀରେ ଛାଡ଼ିଲି ଯେ ୧୯୫୭ ପର୍ଯ୍ୟନ୍ତ ଖଣ୍ଡିଏ ସୂତା ଖଦଡ଼ କିଣିନାହିଁ । ଆଉ ବର୍ଷେ ମନ ହେଲା ଖଣ୍ଡେ ଖଣ୍ଡେ ପିନ୍ଧିବାକୁ । ବର୍ତ୍ତମାନ କେତେ ଖଣ୍ଡ ଲୁଗା, କାମିଜ୍ ଓ ପ୍ୟାଣ୍ଟ କୋଟ ଅଛି । କିନ୍ତୁ ସହଜରେ । ମୂଳରୁ କୌଣସି ସମୟରେ ଖଦଡ଼ ପିନ୍ଧିବା ଗୋଟାଏ କିଛି ନୈତିକ କାର୍ଯ୍ୟ ବୋଲି ମୁଁ ବିଶ୍ୱାସ କରିନାହିଁ । କଂଗ୍ରେସରେ ରହିବାକୁ ହେଲେ ଖଦଡ଼ ପିନ୍ଧିବା ଦରକାର, ଏଥି ଯୋଗୁଁ ମୁଁ ପିନ୍ଧୁଥିଲି । ଏବେ ବର୍ଷେ ହେଲା ଯାହା ଖଣ୍ଡେ ଖଣ୍ଡେ ପିନ୍ଧୁଛି ତାହା ଗାନ୍ଧି ଆଶ୍ରମ ସ୍କୁଲରେ ଆମେ ସୂତାକଟା ଚଳାଉଛୁ, ଏହି କାରଣରେ ।

ଏଇ ମାସ ମଝିରେ ମୋର ମନରେ ପରିବର୍ତ୍ତନ ଆଣିବାକୁ ଗୋଟିଏ କାରଣ ଘଟିଲା । ଆମ ସରକାର ଓ ଭାରତ ସରକାର କୁଟୀର ଶିଳ୍ପର ଉନ୍ନତି ପାଇଁ ଏଇ ବର୍ଷ ନଜର ଫେରାଇଛନ୍ତି । ପଣ୍ଡିତ ଜବାହରଲାଲ ନେହରୁ ୧୯ତାରିଖରେ ଗୋଟିଏ ବିବୃତି ଦେଇ ସରକାରୀ ଓ ବେସରକାରୀ ସମସ୍ତଙ୍କୁ ଖଦଡ଼ ପିନ୍ଧିବାକୁ ଆହ୍ୱାନ କଲେ । ତା'ର କିଛି ଦିନ ପରେ କୃଷି ମନ୍ତ୍ରୀଙ୍କ ସମ୍ମିଳନୀରେ ଭାଷଣ ଦେଇ ସେ କହିଛନ୍ତି, ସରକାରୀ କର୍ମଚାରୀମାନେ ଯଦି ପ୍ୟାଣ୍ଟ ନେକ୍‌ଟାଇର ଫେସନ ଛାଡ଼ିବେ ତେବେ ଯାଇ ଲୋକଙ୍କ ସଙ୍ଗେ ସେମାନେ ସମ୍ପର୍କ ରଖିବାକୁ ସମର୍ଥ ହେବେ । ଏଇ ଦୁଇଟି ଯୁକ୍ତି ମୋ ମନକୁ ପାଇଲା ।

ସ୍ୱାଧୀନତା ମିଳିବା ଯୋଗୁଁ ଓ ଯେଉଁମାନେ ସରକାର ଗଢ଼ିଲେ ସେମାନେ ନିଜ ମନରୁ ଗୌରାଙ୍ଗ ମନୋବୃତ୍ତି ଛାଡ଼ି ନ ପାରିବାରୁ ଇଂରେଜ ଅମଳରେ ସରକାରର ଯେଉଁ ଇଜ୍ଜତ ଥିଲା ତାହା ଆଜିକାଲି ବହୁ ପରିମାଣରେ ଖର୍ବ ହୋଇଯାଇଛି । ପଣ୍ଡିତ ଜବାହରଲାଲ୍ ଆଜି ସ୍ୱାଧୀନ ଭାରତ ସରକାରର ସର୍ବମୟ କର୍ତ୍ତା । ପୂର୍ବେ ଜଣେ ଗଭର୍ଣ୍ଣର ବା କମିଶନର୍ ଏହିପରି ଗୋଟାଏ ଆହ୍ୱାନ ଦେଇଥିଲେ, ସରକାରୀ କର୍ମଚାରୀମାନେ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ବ୍ୟାକୁଳ ହୋଇ ଖଦଡ଼ ପିନ୍ଧିପକାଇଥାନ୍ତେ । ଆଜି କିନ୍ତୁ ପଣ୍ଡିତ ଜବାହରଲାଲଙ୍କ ଆହ୍ୱାନରୁ କେହି କାନଦିଉ ନାହାନ୍ତି । ଏପରିକି ଆମ ପ୍ରାଦେଶିକ ସରକାର ତରଫରୁ ବା ବ୍ୟକ୍ତିଗତ ଭାବରେ ମୁଖ୍ୟମନ୍ତ୍ରୀଙ୍କ ଆଡ଼ୁ ଜବାହରଲାଲଙ୍କ ଆହ୍ୱାନ ଶୁଣାଇବା ପାଇଁ କିଛି ଉଦ୍ୟମ ହେଲାନାହିଁ । ରାଷ୍ଟ୍ରପତି ମଧ୍ୟ ପଣ୍ଡିତଜୀଙ୍କ କଥାକୁ ଦୋହରାଇ ଗୋଟିଏ ଘୋଷଣା କଲେ । ଅନ୍ୟ କୌଣସି କାରଣ ନ ଥାଉ ପଛେ ସରକାରୀ ଚାକିରିଆ ଭାବରେ ସରକାରର ଶ୍ରେଷ୍ଠ କର୍ତ୍ତାଙ୍କ ଆଦେଶ ଶିରୋଧାର୍ଯ୍ୟ କରିବା କର୍ତ୍ତବ୍ୟ ବୋଲି ମୁଁ ମନେ କଲି ।

ଖଦଡ଼ ପିନ୍ଧିବା ସପକ୍ଷରେ ଜବାହରଲାଲ ଯେଉଁ ଯୁକ୍ତିଟି ଦେଲେ ତାହା ମଧ୍ୟ ମୋତେ ଚିନ୍ତାରେ ପକାଇଲା । ପ୍ୟାଣ୍ଟ କୋଟ ପିନ୍ଧିଲେ ଲୋକଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରହି ପାରିବ ନାହିଁ ବୋଲି ମୋର ବିଶ୍ୱାସ ହୁଏ ନାହିଁ । ମୁଁ ନିଜେ ପରୀକ୍ଷା କରି ଦେଖିଛି, ମୁଁ କଣ ପିନ୍ଧିଛି ତାହା ଲୋକଙ୍କ ଆଖିରେ ପଡ଼େନାହିଁ । ମୋ ମୁହଁକୁ ଚାହିଁ ଓ ମୋ'ଠାରୁ ପଦେ ହସ କଥା ଶୁଣି ଲୋକେ ମୋ ପାଖରେ ତୃପ୍ତ ହୋଇଯାନ୍ତି । ବର୍ତ୍ତମାନ ମୁଁ ବିଚାର କରିବାକୁ ଆରମ୍ଭ କଲି, ମୋ କଥା ଯାହା ହେଉ ସାଧାରଣ କର୍ମଚାରୀଙ୍କ ଅବସ୍ଥା ବର୍ତ୍ତମାନ୍ କ'ଣ ହୋଇଛି ? ସ୍ୱରାଜ୍ୟ ହେବାଦିନୁଁ ଆମ ଅଫିସରଙ୍କ ଭିତରେ ମଦ ଖିଆ ଓ ପ୍ୟାଣ୍ଟ୍ କୋଟ୍ ଆଦି ପିନ୍ଧିବାର ସୌଖିନ ବିଶେଷ ଭାବେ ବଢ଼ି ଯାଇଛି । ଇଂରେଜୀ ଭାଷା ପ୍ରତି ପକ୍ଷପାତ ବି ବିଶେଷ ଭାବେ ବଢ଼ିଯାଇଛି । ମାଇନର୍ ପାସ୍ କରିବା ପିଲେ ବି କଥା ଭିତରେ ଇଂରାଜୀ ଶବ୍ଦ କହିବା ଆରମ୍ଭ କଲେଣି । ଏହି ମନୋବୃତ୍ତିକୁ ବଦଳାଇବାକୁ ହେଲେ ଜୋର୍ କରି ମୁହଁଟାକୁ ବୁଲାଇ ଦେବାକୁ ହେବ । ମହାତ୍ମା ଗାନ୍ଧିଙ୍କ ପରି ଜଣେ

ବରିଷ୍ଠ ବ୍ୟକ୍ତି ଏଥିପାଇଁ ଲୋଡ଼ା । ଗଡ଼ଜାତର ଦୁର୍ଭାଗ୍ୟ, ବର୍ତ୍ତମାନ୍ ଦେଶତମାମ ଏପରି ଜଣେ ବରିଷ୍ଠ ବ୍ୟକ୍ତି ଦିଶୁନାହାନ୍ତି । ରାଜଗୋପାଳାଚାରୀଙ୍କ ପରି ଲୋକେ ଅଛନ୍ତି । କିନ୍ତୁ ବର୍ତ୍ତମାନର ଜଳବାୟୁରେ ସେ ମହାଶୟ ମାନ୍ଦ୍ରାଜରେ ଏକଘରକିଆ ହୋଇ ପଡ଼ିଛନ୍ତି । ସେଠାରୁ ମଧ୍ୟ ତାଙ୍କୁ ତଡ଼ିବାକୁ ଲୋକର ଅଭାବ ନାହିଁ । ସରକାରୀ କର୍ମଚାରୀଙ୍କୁ ବାଧ୍ୟ କରି ସେମାନଙ୍କ ଫେସନ୍ ବଦଳାଇଦେଲେ ସାଙ୍ଗେ ସାଙ୍ଗେ ମନଟା ବଦଳି ଯିବ ବୋଲି ଆଶା କରିବା ସଂଭବ ନୁହେ । କିନ୍ତୁ ଖଦଡ଼ଦ୍ୱାରା ଆବୃତ୍ତ ମନ ଯେତେ ଶୀଘ୍ର ବଦଳିବା ସଂଭବ ମିଲ୍ ଲୁଗାର ଚାକଚକ୍ୟ ଭିତରୁ ମନ ସେତେ ଶୀଘ୍ର ବଦଳିବ ବୋଲି ଆଶା କରାଯାଏ ନାହିଁ । ଏଇପରି ଭାବି ଆଜି ମୋ ଅଧୀନ ଦୁଇଟିଯାକ ଡିପାର୍ଟମେଣ୍ଟର (ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗ ଏବଂ ଲୋକସମ୍ପର୍କ ବିଭାଗ) ସଭା କରାଇଲି । ବଡ଼ ସୁଖର କଥା ୧୦।୧୨ ଜଣ ନିୟମିତ ଖଦଡ଼ ପିନ୍ଧିବାକୁ ସଂକଳ୍ପ କଲେ ଓ ବାକି ପ୍ରାୟ ସମସ୍ତେ ଖଣ୍ଡିଏ ଖଣ୍ଡିଏ ଲୁଗା ଓ ଖଣ୍ଡିଏ କାମିଜ କିଣିବାକୁ କହିଲେ । ଶୁକ୍ରବାର ଦିନ ଦୁଇ ଡିପାର୍ଟମେଣ୍ଟର ସମସ୍ତେ ଖଦଡ଼ ପିନ୍ଧି ଆସିବେ ବୋଲି ସ୍ଥିର ହୋଇଛି ।

(୩୦ । ୯ । [illegible])

## ନେହରୁଙ୍କ ଜୀବନୀ ଲେଖା

ଆଜି ପଣ୍ଡିତଙ୍କ (ପଣ୍ଡିତ ଆକୁଳ ମିଶ୍ର) ସଙ୍ଗେ ବହୁ ବିଷୟରେ ଆଲୋଚନା କରିବାକୁ କଟକ ଯାଇଥିଲି । ପିଲାଙ୍କ ପାଇଁ ପଣ୍ଡିତ ଜବାହରଲାଲ ନେହରୁଙ୍କ ଜୀବନୀ ଖଣ୍ଡିଏ ଲେଖିବାକୁ ସେ କହିଲେ । ମୁଁ ବି ରାଜି ହେଲି । ଟେଲିଫୋନରେ ତାଙ୍କଠାରୁ ବରାଦ ପାଇ ଦୁଇଟି ପରିଚ୍ଛେଦ ଲେଖିଥିଲି, ତାହା ପଢ଼ା ହେଲା । ସେ ପସନ୍ଦ କଲେ ଓ ଏଇପରି ପୁସ୍ତକ ତାଙ୍କର ଦରକାର ବୋଲି ସେ କହିଲେ । ମୁଁ ପରିଷ୍କାର କହିଦେଲି, ଆଜି କାଲି ପାଠ୍ୟ ପୁସ୍ତକ ଯେପରି ବଛାଯାଉଛି ସେଥିରେ ମୋ ପୁସ୍ତକ ଗୃହୀତ ହେବ ବୋଲି ଆଶା ଖୁବ୍ କମ୍ । ଯେଉଁମାନେ ନିର୍ବାଚକ ସେମାନଙ୍କର ଏ ବିଷୟରେ ସ୍ପଷ୍ଟ ଧାରଣା ନାହିଁ । ଡିରେକ୍ଟର ମଧ୍ୟ ଏ ବିଷୟରେ ନିଜ ମୁଣ୍ଡ ଘୂରାଇବାକୁ ଯୋଗ୍ୟ ନୁହନ୍ତି । ପିଲାଙ୍କୁ କ'ଣ ପଢ଼ାଇବା ସେ କଥା ନିର୍ଦ୍ଦିଷ୍ଟ ଭାବେ ନିର୍ଣ୍ଣୀତ ହେଉନାହିଁ । ଓଡ଼ିଆ ଭାଷାଟା କିପରି ହେବ ସେ ବିଷୟରେ ମଧ୍ୟ ଶିକ୍ଷା ବିଭାଗ କର୍ତ୍ତାମାନଙ୍କର ନାନା ମତ । ହାସ୍ୟାସ୍ପଦ କାରଣରେ ପୁସ୍ତକ ଯେପରି କଟିଯାଉଛି ସେଥିକୁ ସନ୍ଦେହ ହେଉଛି, ସେ ବହିର ଉପଯୋଗିତା ବିଷୟ ସେତେ ବିଚାର କରାଯାଉ ନାହିଁ. ପ୍ରିୟାପ୍ରୀତି ତୋଷଣ ନୀତି ତହିଁରୁ ଅଧିକ ଚାଲିଛି । ଆଦିବାସୀ, ହରିଜନ ଓ ଅନୁନ୍ନତ ଲୋକଙ୍କ ପାଇଁ ବେଶୀ ସ୍କୁଲ ବଢ଼ାଇବାକୁ ସରକାର ସ୍ଥିର କରିଛନ୍ତି ; କିନ୍ତୁ ସେ ପିଲାଙ୍କ ହାତରେ ଯେଉଁ ବହି ଦିଆଯାଇଛି ତାହା ସହରିଆ ପିଲାଙ୍କ ପାଇଁ ଉପଯୁକ୍ତ ହୋଇପାରେ, ଦୂର ମଫସଲର ପିଲାଙ୍କ ପାଇଁ ତାହା ଏକାବେଳକେ ଅନୁପଯୁକ୍ତ । ଗୋଟିଏ ଆଦିବାସୀ ସେବାଶ୍ରମରେ ଖଣ୍ଡିଏ ପାଠ୍ୟ ପୁସ୍ତକ ଦେଖିଥିଲି—

ସେଥିରେ ଏପରି ଗୋଟିଏ ବିଷୟ ନ ଥିଲା ଯାହାକ ଆଦିବାସୀ ପିଲାଙ୍କର ଜାଣିଥିବା ବିଷୟ । କୋଣାର୍କ, ଚିଲିକା, ରେଡ଼ିଓ, ଟେଲିଫୋନ, ରେଲଗାଡ଼ି ବିଷୟରେ ଯେଉଁ ପାଠ ଲେଖା ହୋଇଛି ତାହା ତାଙ୍କୁ ନୂଆ । ଏଣେ ଓଡ଼ିଆ ଭାଷା ମଧ୍ୟ ତାଙ୍କୁ ନୂଆ । ଏ ପାଠରେ ସେ ଯେ ଆମ ପିଲାଙ୍କ ସମକକ୍ଷ ହୋଇ ପାରିବେ ନାହିଁ, କହିବା ବାହୁଲ୍ୟ । ଏହାର ପ୍ରତିକାର ରାଧାନାଥ ବାବୁଙ୍କ ପରି 'ଜ୍ଞାନଲବ ଦୁର୍ବିଦଗ୍ଧ' ମନ୍ତ୍ରୀଙ୍କ ଅମଳରେ କେତେ ଦୂର ହେବ କେଜାଣି । ପୁସ୍ତକ ପ୍ରକାଶକଙ୍କ ପ୍ରତିନିଧି କେହି ଏ ଦିଗରେ ଉଦ୍ୟମ ଆରମ୍ଭ କରିବ । (୭ । ୧୦ । ୧୯୬୩)

### ବିଜ୍ଞାନ ଓ ପ୍ରୟୋଗ ବିଜ୍ଞାନ

ଆଜି ବୈଦ୍ୟନାଥଙ୍କ ସଙ୍ଗେ ଭର୍ତ୍ତୃହରି ନୀତି ଶ୍ଳୋକ କେତୋଟି ଆଲୋଚନା କଲି । କବିତାର ଶୈଳୀ ଓ ଭାବକୁ ସେ ପସନ୍ଦ କଲେ । ଏତେ ସୁନ୍ଦର ଭାବରେ ସାଧାରଣ ଜୀବନର ଅନୁଭବ୍ୟ କଥା ଗୁଡ଼ିକ ଅନ୍ୟ କୌଣସିଠାରେ ମୁଁ ଦେଖିନାହିଁ ବୋଲି କହିଲି । ସେ ତୁନି ରହିଲେ । ମନରୁ ବୋଧହୁଏ ଆମେରିକାର ମୋହ ତୁଟି ନାହିଁ, ଶୀଘ୍ର ତୁଟିଯିବ ବୋଲି ଆଶା କରିବାର ନୁହେଁ । ସେ ଯେଉଁ ବିଷୟଟି ଧରିଛନ୍ତି ସେ ବିଷୟରେ ସେ ବିଶେଷ ଜ୍ଞାନ ଅର୍ଜନ କରିଛନ୍ତି । ତାହାର ଦର୍ପ ମନ ଭିତରେ ଲୁଚି ରହିଥିବ । ତାଙ୍କ ପରି ବିଶେଷଜ୍ଞ-ମାନଙ୍କର ମତ ଯେ, ସବୁ ବିଷୟରେ ଜ୍ଞାନ ଅର୍ଜନ କରିବା ତାଙ୍କଠାରୁ ଆଶା କରାଯାଏ ନାହିଁ । କିନ୍ତୁ ତାଙ୍କ ବିଶିଷ୍ଟ ବିଷୟର ବିଶ୍ଳେଷଣ ନିମନ୍ତେ ଅନ୍ୟ ଶାସ୍ତ୍ରର ଉଦାହରଣ ଦରକାର । ମୁଁ ଏଥି ପୂର୍ବେ ତାଙ୍କୁ କହିଥିବା ଗୋଟିଏ ଶ୍ଳୋକର ବିଷୟବସ୍ତୁ ସେ ତାଙ୍କ ଅର୍ଥନୀତି ଶାସ୍ତ୍ର କ୍ଲାସରେ ପିଲାଙ୍କୁ କହିଥିଲେ । ନିଜ ବିଷୟଟି ପିଲାଙ୍କୁ ବୁଝାଇବା ନିମନ୍ତେ ଅନ୍ୟ ବିଷୟର ଉଦାହରଣ କେତେଦୂର ଦରକାର ସେ କ୍ରମେ ବୁଝିବେ । ତା'ପରେ, ଆମ ସଂସ୍କୃତିର ପରାକାଷ୍ଠା ତ୍ୟାଗରେ । ସେଇ ତ୍ୟାଗର ପ୍ରତିମୂର୍ତ୍ତି ପୁଣି ଆଇନଷ୍ଟାଇନ୍ । ତାଙ୍କୁ ସେ ଆମେରିକାରେ ଦେଖିଛନ୍ତି । ବିଜ୍ଞାନ ଓ ପ୍ରୟୋଗ ବିଜ୍ଞାନ ଏ ଦୁଇଟିର ପାର୍ଥକ୍ୟ ତାଙ୍କର ବୁଝିବାକୁ ବାକି ଅଛି । ଯେ ସତ୍ୟର ଅନୁସନ୍ଧାନ କରୁଛି, ସେ ସାଧକ, ଯେ ସତ୍ୟର ପ୍ରୟୋଗ କରି ବୈଷୟିକ ସଂବୃଦ୍ଧି ଖୋଜୁଛି ସେ ଏକରକମ କଳାପୋଡେଇ କରୁଛି । ବୋଧହୁଏ ପୃଥିବୀର ବର୍ତ୍ତମାନର ସମସ୍ୟା ହେଉଛି ଏଇ ଶେଷୋକ୍ତ ଦଳ ଯୋଗୁଁ । ଜ୍ଞାନୀମାନେ ଯେଉଁ ଜ୍ଞାନର ଆବିଷ୍କାର କରୁଛନ୍ତି, ତାକୁ ଅବିମୃଶ୍ୟକାରୀ ଦଳ ଯେପରି ବ୍ୟବହାର କରୁଛନ୍ତି ତାହାରି ଯୋଗୁଁ ସଂସାରର ଯାବତୀୟ ସମସ୍ୟା । ଏମାନଙ୍କ ଯୋଗୁଁ ସମାଜର ସମସ୍ତେ ଜ୍ଞାନର ଉପକାର ପାଇ ପାରୁ ନାହାନ୍ତି । ଗୋଟିଏ ଦେଶର ସମସ୍ତେ ଏ ଜ୍ଞାନ ପାଇବେ ବୋଲି କଳ୍ପନା କରାଯାଇ ପାରେ ; କିନ୍ତୁ ଅନ୍ୟ ଦେଶ ପାଇବ କିପରି ?

(୮ । ୧୦ । ୧୯୬୩)

ସକାଳୁ ଶ୍ରୀକାନ୍ତଙ୍କ ସଙ୍ଗେ ଦେଖା କରିବାକୁ କଟକ ଗଲି । ସେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସଙ୍ଗେ ଦେଖା କରୁଛନ୍ତି ଶୁଣି ମୁଁ ବି ସେଠାକୁ ଗଲି । ସେଠାରେ ରାଧାନାଥ ବାବୁ ମଧ୍ୟ ଥିଲେ । ଲିଙ୍ଗରାଜ ବାବୁ ଓ ରାଧାନାଥ ବାବୁ ମିଶି ଶ୍ରୀକାନ୍ତଙ୍କ ଙ୍କୁ ସ୍ୱରାମତ କରି ଦଣ୍ଡାସି-ମାନଙ୍କ ପାଇଁ ମିଳିଥିବା ଲକ୍ଷେ ଟଙ୍କା ନେବା ନିମନ୍ତେ ଯୋଗାଡ଼ କଲେ । ସେମାନଙ୍କର ଦାବୀ, ପୂର୍ବରୁ ଦାଙ୍ଗୀ ଜାତି ବୋଲି ଥିବା ଜାତିଙ୍କ ପାଇଁ ଭାରତ ସରକାର ଯେଉଁ ଟଙ୍କା ଲକ୍ଷେ ଦେଇଛନ୍ତି, ସେତକ ଲୋକ ସେବକ ମଣ୍ଡଳ ଜରିଆରେ ଖର୍ଚ୍ଚ କରିବାକୁ ଦେବେ । ଶ୍ରୀକାନ୍ତଙ୍କର ଆପତ୍ତି, ଲୋକ ସେବକ ମଣ୍ଡଳରେ ଏପରି କିଏ ଅଛି, ଯେ ସବୁ ସମୟ ଦେଇ ଏ କାମ କରିବ । ଏ ଯୁକ୍ତି ଉପରେ ଯୋର ଦେଇ ଥିଲେ ଲିଙ୍ଗରାଜ ବାବୁଙ୍କର ଆଉ କହିବାକୁ କିଛି ନ ଥାନ୍ତା । କିନ୍ତୁ ଅର୍ଥମନ୍ତ୍ରୀ ତ ସୁପାରିସ କରୁଛନ୍ତି । ଶ୍ରୀକାନ୍ତଜୀ କହିଲେ, ଓଡ଼ିଶା ସରକାର ଯଦି ସୁପାରିସ୍ କରୁଛନ୍ତି ତେବେ ସେ ଆପତ୍ତି କାହିଁକି କରିବେ ? ତା'ପରେ ଯୋଜନାର ରୂପରେଖ ବିଷୟ ଆଲୋଚନା ହେଲା । ସେଥିରେ ଶ୍ରୀକାନ୍ତଜୀ ବହୁତ ଦୋଷ ଦେଖାଇଲେ, କିନ୍ତୁ ଉପାୟ କଣ ? ଶେଷକୁ ରାଜି ହେଲେ, ଏଥିରୁ ଟିକିଏ କାଟ ଛାଣ୍ଟ କରିଦେଲେ ଚଳିବ ।

( ୧୮ । ୧୦ । '୧୯୫୭ )

### ଅସଲ ଯୋଗ୍ୟତା

ଆଜି ଆନନ୍ଦ ଦେଖିବାକୁ ଆସିଥିଲେ (ଗୋଡ଼ର ପାଦ ହାଡ଼ ଭାଙ୍ଗି ପ୍ଲାଷ୍ଟର ହୋଇଥିଲା) । ତାଙ୍କଠାରୁ ଶୁଣିଲି, ସରକାର ତାଙ୍କ ଲାଇନ୍‌ଟି ହାତକୁ ନେଇ ଯାଉଛନ୍ତି । ବାଙ୍କୀ କଟକ ଲାଇନ୍‌ରେ ଚାଲୁଥିବା କେତେଖଣ୍ଡି ମଟରରେ ସେ ପରିଚାଳକ-ହେଡ଼୍‌କ୍ଟାଗ୍ରା ହୋଇ ବୃତ୍ତି କରିଆସୁଥିଲେ । Private Business ପାଇଁ ତାଙ୍କର ଖୁବ୍ ଯୋଗ୍ୟତା ଅଛି । ସେ ବଡ଼ ଚତୁର ଲୋକ, ଉତ୍ସାହୀ ଓ କେତେବେଳେ କ'ଣ କରିବା ଦରକାର ସେ ବିଷୟ ଠିକଣା କରିବାରେ ଧୂରୀଣ । ସେପରି ଲୋକ ସରକାରଙ୍କ ମଟର କମ୍ପାନୀରେ ଖୁବ୍ କାମ ଦିଅନ୍ତେ । କିନ୍ତୁ ସରକାରଙ୍କର ଲୋକ ବାଛିବାର ରୀତି ସ୍ୱତନ୍ତ୍ର । ସେ ଯୋଗ୍ୟତା ବୋଲି ଯାହା ଖୋଜୁଛନ୍ତି ତାହା କେବଳ ଜ୍ଞାନ । ଖାଲି ଜ୍ଞାନରେ ଅସଲ ଯୋଗ୍ୟତା ପ୍ରକାଶ ପାଏ କି ନାହିଁ ସେ କଥା ସରକାରର ଚାଳକମାନେ ମନ ଦେଇ ଚିନ୍ତା କରିବାକୁ ଆରମ୍ଭ କରି ନାହାନ୍ତି । ବେଳେ ବେଳେ ଭାଳିବାଲେଇଲା ପରି କେହି କେହି କହି ଦେଉଛନ୍ତି ମାତ୍ର । ଉପରବାଲା ଯଦିବା ଏ ବିଷୟ ଚିନ୍ତା କରିବାକୁ ଆରମ୍ଭ କରିଛନ୍ତି, ତଳ ବାଲାଙ୍କ ପାଏ ଏହା ଆସି ପହଞ୍ଚି ନାହିଁ । ବାଙ୍କୀ ଲାଇନ୍ ପାଇଁ ଯେଉଁ ବ୍ୟବସ୍ଥା ସରକାର କରିବେ ସେଥିରେ ଆନନ୍ଦଙ୍କୁ କାମ ମିଳିବ କି ନାହିଁ କେଜାଣି । ହୁଏତ Technical qualification ନାମରେ ବାହାର ଲୋକ ଆସିବେ, ଓ ଯେଉଁମାନେ ଏ କାର୍ଯ୍ୟଟି ଏ ପର୍ଯ୍ୟନ୍ତ ପୂର୍ବରୁ ରୂପେ ଚଳାଉଥିଲେ ସେମାନେ ବେକାର ହୋଇଯିବେ ।

( ୨ । ୧୧ । ୧୯୫୭ )

**କ୍ରୋଧ**

ଦେହରୁ ରାଗଟାକୁ ଶାନ୍ତ କରିବାକୁ ଯେତେ ଚେଷ୍ଟା କରୁଛି ଏ ପର୍ଯ୍ୟନ୍ତ ପୂର୍ଣ୍ଣ ସଫଳ ହୋଇ ପାରୁନାହିଁ । ରାଗର ବହିଃପ୍ରକାଶ ଅନେକ ପରିମାଣରେ କମିଗଲାଣି । କିନ୍ତୁ ମନ ଭିତରୁ ତାହାର ଚେର ମରିବାକୁ ଆହୁରି ବହୁତ ବାକି ବୋଲି ମନେ ହେଉଛି । ଆଜି ଗୋଟିଏ ଘଟଣା ଘଟିଲା । କେହି ଜାଣିପାରି ନାହାନ୍ତି । କିନ୍ତୁ ମୁଁ ଜାଣିଲି । ସଂଧ୍ୟା ବେଳେ ଟେଲିଫୋନ୍ କରିବାକୁ ମୋତେ ବୈଦ୍ୟନାଥ ଅଫିସ୍ ଘରକୁ ଆଣିଥିଲେ । ଟେଲିଫୋନ୍ ଠାରୁ ଖଣ୍ଡେ ଦୂରରେ ସେ ମୋତେ ଛାଡ଼ି ଟେଲିଫୋନ୍ ପାଖକୁ ଗଲେ । ମୁଁ ନିଜେ ଗାଡ଼ିଟା (ଚଉକିରେ ଚକ ଲଗି) ଘୁଞ୍ଚାଇ ଟେବୁଲ୍ ପାଖକୁ ଆସିବାକୁ ଚେଷ୍ଟା କରୁ କରୁ ପଡ଼ିଲି । ପିଠିରେ ଆଘାତ ହେଲା, ଠିକ୍ ଆଗରୁ ଯେଉଁଠି ଆଘାତ ହୋଇ ଥିଲା ତାରି ଉପରେ । ଆଗ ବୈଦ୍ୟନାଥଙ୍କ ଉପରେ ରାଗ ହେଲା, ସେ କାହିଁକି ଟେବୁଲ୍ ପାଖକୁ ନ ନେଲେ ବୋଲି; ଝିଅମାନେ ବେଗେ ଆସି କାହିଁକି ଉଠାଇଲେ ନାହିଁ ବୋଲି ତା'ପରେ ରାଗ ଲାଗିଲା । ରାଗବେଳେ ପ୍ରତ୍ୟକ୍ଷ କାହାକୁ କିଛି କହୁନାହିଁ, କିନ୍ତୁ ମୋ ପାଟି ଓ ଚିତ୍କାରରେ ଆକ୍ଷେପ ହୁଏତ ଥିବ । ୫ ମିନିଟ ପରେ ନିଜ ଦୋଷଟା ସମସ୍ତଙ୍କୁ ଜଣାଇଲି ଅପ୍ରତ୍ୟକ୍ଷ ଭାବରେ । ପିଲେ ବୁଝିଥିବେ, ତାଙ୍କ ରାଗି କିନା ଶାନ୍ତ ହେଲେ ବୋଲି ।

(୬ । ୧୧ । ୧୯୫୬)

**ଆଦିବାସୀ ମଙ୍ଗଳ ଚିନ୍ତା**

ମନକୁ ମନାଇବା ପାଇଁ ଜ୍ଞାନ ଦରକାର । ସେ ଜ୍ଞାନ ବିଜ୍ଞାନୀ ଯୋଗାଇବେ । ଲୋକେ ତାଙ୍କ ଜ୍ଞାନ ଗ୍ରହଣ କଲେ ତ କଲେ, ନ କଲେ ଭୁଲ ହୋଇ ଯିବାକୁ ହେବ । Sociology ସଙ୍ଗେ Anthropology ଯେତିକି ମିଶିଯିବ ତାହାର ଉପଯୋଗିତା ସେତିକି ବଢ଼ିବ । ଆଦିବାସୀଙ୍କ ପାଇଁ ସ୍ୱତନ୍ତ୍ର ବିଜ୍ଞାନ ବର୍ତ୍ତମାନ ପରିସ୍ଥିତିରେ କାହିଁକି ଦରକାର ମୁଁ ବୁଝିପାରୁ ନାହିଁ । ମୁଣ୍ଡ ମାପି ମଣିଷ ଅଲଗା କରିବା ଦିନ ଯାଇଛି । ଆଦିବାସୀ ତା' ସଂସ୍କୃତିରେ ପ୍ରତିବନ୍ଧ ହୋଇ ରହିବାର ଆଶା ମଧ୍ୟ ନାହିଁ । ସେ ସମସ୍ତଙ୍କ ସଙ୍ଗେ ସଂଗତି କରିବ । ପ୍ରତିବେଶୀଠାରୁ ଅଲଗା ବା ନ୍ୟୂନ ହୋଇ ସେ ରହିବ ନାହିଁ । ତାହାର ସମସ୍ୟା ଆର୍ଥିକ ହେବ । ସାଂସ୍କୃତିକ ହୋଇ ବେଶି ଦିନ ରହି ନ ପାରେ । ସାଂସ୍କୃତିକ ଅନୁସନ୍ଧାନଦ୍ୱାରା ଯଦି ତାହାର ଆର୍ଥିକ ସମସ୍ୟାର ସମାଧାନରେ ସାହାଯ୍ୟ ହେଲା ତ ଭଲ କଥା । ସେଥିପାଇଁ ମ Anthropological Bureau ଗୋଟିଏ Pilot Investigatiory Agency ହୋଇବା ଦରକାର । ସମସ୍ତ department ତାଙ୍କ ଆଗରେ ଥୋଇବ । ସେମାନେ ତାଙ୍କ ମତ ଦେବେ । ସେ ମତ ଗୃହୀତ ହୋଇପାରିବ କି ନାହିଁ ତାହା department ସବୁ ଆଜି ବିଚାର କରି ସ୍ଥିର କରିବ । ସେ ବିଚାରଟା ଅଧିକ ହେବ ରାଜନୀତିକ । ଆସେମ୍ବ୍ଲି କ'ଣ କହିବ ତାହା ଚିନ୍ତା କରି କାର୍ଯ୍ୟ ପନ୍ଥା ସ୍ଥିର କରିବାକୁ ହେବ ।

(୯ । ୧୧ । ୧୯୫୬)

## କଲିକତାରେ ପ୍ରେସ୍ କମିସନ୍‌ଙ୍କ ସହ ସାକ୍ଷାତ

ଆଜି ଜୀବନର ଗୋଟାଏ ବଡ଼ ଦିନ । ପ୍ରେସ୍ କମିସନ୍ ମୋର ସାକ୍ଷ୍ୟରେ ତୃପ୍ତ ହେଲେ । ଆମ ସରକାର ତରଫରୁ ଯେଉଁ ପ୍ରସ୍ତାବନା ଆସିଥିଲା ସେପରି ଆଉ କୌଣସି-ଠାରୁ ଆସିନାହିଁ ବୋଲି କହିଲେ । ମୋ'ର ମତାମତ ନେବାକୁ ବଡ଼ ଆଗ୍ରହ ପ୍ରକାଶ କଲେ । ପ୍ରେସ୍ ପ୍ରତି ଆମ ପ୍ରଦେଶରେ ସବୁଠାରୁ ବେଶୀ ହେଲା । କିନ୍ତୁ ପ୍ରେସ୍ କମିସନ୍ ଆମର ଆନ୍ତରିକତାରେ ବିଶ୍ୱାସ କଲେ । ପ୍ରେସ୍ ପ୍ରତିନିଧି ମାନେ ସରକାର ବିରୁଦ୍ଧରେ ଯେଉଁ ଅଭିଯୋଗ ସବୁ କରିଥିଲେ ତାହାର ଯଥାଯଥ ଉତ୍ତର ଦେଲି । ମୋତେ ଭୟ ହେଉଥିଲା । ପଣ୍ଡିତ ଜବାହରଲାଲ ସେଥିରେ ବାଛି ବାଛି ଅତି ବଡ଼ ଲୋକ ରଖିଛନ୍ତି । ରାଜ୍ୟାଧକ୍ଷ, ସି. ପି. ରାମସ୍ୱାମୀ ଆୟର, ଚଳପତି ରାଓ, ମଣି ଓ ଭଟ୍ ଅଛନ୍ତି । ପ୍ରଥମେ ମୋତେ ଜେର ମେର ଦେଖାଇବାକୁ ଆରମ୍ଭ କରିଥିଲେ । କିନ୍ତୁ ଦେଢ଼ ଘଣ୍ଟା କଥାବାର୍ତ୍ତା ପରେ ମୁଁ ଯେତେବେଳେ ଉଠିଲି ସମସ୍ତେ ଉଠିଲେ । ଚଳପତି ରାଓ କହିଲେ, ନବବାବୁଙ୍କୁ କହିବ, ତୁମ ସରକାରର ସ୍ମାରକ ପତ୍ର ଓ ସାକ୍ଷ୍ୟରେ ଆମେ ବଡ଼ ସନ୍ତୁଷ୍ଟ । ନବବାବୁଙ୍କୁ ମୁଁ କ'ଣ କହିବି ? ସେ କ'ଣ ମୋ ଯୋଗ୍ୟତାରେ ସନ୍ଦେହ କରୁଛନ୍ତି କି ? ମୋ'ର ଯୋଗ୍ୟତା ଯୋଗୁଁ ତ ସେ ମୋତେ ପଠାଇବାକୁ ତିଆର୍ । ଆଜି ମନରେ ବଳ ଆସିଲା, ସି. ପି. ରାମସ୍ୱାମୀ ଆୟାର ଦୃଷ୍ଟିରେ ଯଦି ମୁଁ ଭଲ, ନବବାବୁଙ୍କ ମତାମତ ପାଇଁ କାହିଁକି ଚିନ୍ତିତ ହେବି ? କାହିଁ ଏମାନେ, କାହିଁ ନବବାବୁ ଓ ତାଙ୍କ ପରାମର୍ଶଦାତା ମୁଖାର୍ଜି, ଶିବରମଣ । ମଣିଷ ପେଟ ଚାକିରି ପାଇଁ ଏଇ ଚଣ୍ଡାଳଙ୍କ କ୍ରୀତଦାସ ହୋଇ ରହିବ !

(୩୦ । ୧୨ । ୧୯୫୩)

## ନୂଆ ବର୍ଷ

ନୂଆ ବର୍ଷ ଭୁବନେଶ୍ୱରଠାରେ ଆରମ୍ଭ ହେଲା । ସକାଳେ ଗାଡ଼ିରୁ ଓହ୍ଲାଇ ଘରେ ପହଞ୍ଚି ଦେଖିଲି ସମସ୍ତେ ଭଲ ଅଛନ୍ତି ; ବଡ଼ ଆନନ୍ଦ ଲାଗିଲା । ଟିନୁ ଗୁରୁ ପାଞ୍ଚଦିନ ହେଲା ଗାଁକୁ ଯାଇଥିଲା । ମନୁ, କାହ୍ନୁ ଓ ଗୋବିନ୍ଦଙ୍କୁ ସେକ କାଲି ଫେରିଛି । ଗାଧୋଇ ପାଧୋଇ ପୂଣା ଚୁଣି କରି ସେଇ ଦାଦାଙ୍କ ଘରେ ସବୁ ପିଲାଙ୍କୁ ଧରି ଖାଇ ବସିଲି । ଦାଦାଙ୍କୁ ଜଣାଇଲି, ଏମାନଙ୍କ ସମସ୍ତରେ, ଏମାନଙ୍କ ଭିତରେ ଏଇପରି ସଦ୍‌ଭାବ ରହୁ । ଅନ୍ତତଃ ଆମେ ତିନି ଭାଇ ଯେପରି ରହିଛୁ, ସେଇପରି ଏମାନେ ରହନ୍ତୁ । ଆମର ପରସ୍ପର ଭିତରେ ପୂରା ସଦ୍‌ଭାବ ଅଛି ବୋଲି କହି ହେବ ନାହିଁ ; କିନ୍ତୁ ଭିନେ ହେବା କଥା ପଡ଼ିଲା ବେଳକୁ କେହି ପୂରା ତିଆରି ଥିବା ପରି ଜଣା ପଡ଼ୁ ନାହିଁ । ହୁଏତ କୁନି ଭିନେ ହେବାକୁ ମନ କରିପାରେ ; କିନ୍ତୁ ନୀଲ ମୋ ଠାରୁ ଅଲଗା ରହିବାକୁ ମଙ୍ଗିବ ନାହିଁ ।

ଖାଇଲା ବେଳେ ସ୍ଥିର କଲି ଏ ବର୍ଷ କଦଳୀ ପତ୍ରରେ ଖାଇବି । ଖୁବ୍ ଦରକାର ହେଲେ ଚଣା, କାଚ ବା ପଥର ଚଳିପାରେ । ଦୁଇପହରେ ମଟର ଜନସ 'ନେଇ ମିଶ୍ରଙ୍କ କାରଖାନାରେ ଦେଇ ଆସିଲି, ସେ କହିଛନ୍ତି ୭ ତାରିଖ ଦିନ ଗାଡ଼ି ଦେବେ ।

ନବବାବୁଙ୍କ ସଙ୍ଗେ ଦପ୍ତରରେ ଥରେ କଥାବାର୍ତ୍ତା ହୋଇଥିଲା । ଅଳ୍ପ ସମୟ ପାଇଁ ଗାଡ଼ିରେ ପୁଣି ଦେଖା ହେଲା । ସେ ପ୍ରେସ୍ କମିସନ୍ ବିଷୟ ନଜ ଆଡ଼୍ ପ୍ରଶଂସା ଶୁଣିଲେ । ରାମସ୍ୱାମୀ ଆୟାର୍ ଟ୍ରିବ୍ୟୁନ୍‌ରେ ଯେଉଁ ଗୁଣ ପଢ଼ିଥିଲେ ତାହା ପଢ଼ିଲା । ସେ କହି ପକାଇଲେ, ପ୍ରେସ୍ କମିସନ୍‌କୁ ମୁଁ ନ ଯାଇଥିଲେ, ଆଉ କେହି ସେ କାମ ଚଳାଇ ପାର ନ ଥାନ୍ତେ । ସବୁବେଳେ ଏ ମନ ରହୁ ନାହିଁ କାହିଁକି ! (୧ । ୧ । ୧୯୫୪)

ଆଜି ଅଫିସ୍ କାମରେ ସମସ୍ତ ଗଲା ୪ଟା ପର୍ଯ୍ୟନ୍ତ । ଲକ୍ଷ୍ମଣ ମିଶ୍ରେ ଓ ଶଙ୍କର ମିଶ୍ରେ ପଣ୍ଡିତେ ୪ଟାରେ ଆସି ପହଞ୍ଚିଲେ । ତାଙ୍କ ସଙ୍ଗେ ଆଳାପ କରିବାରେ ବଡ଼ ଆନନ୍ଦ ଲାଗିଲା । ଗୋପୀକୃଷ୍ଣ ବାବୁ ଓ ଦେବୀବାବୁ ଆସି ଜୁଟିଲେ, ଅଫିସରୁ ବାହାର ପ୍ରଦର୍ଶନୀ ଆଡ଼କୁ ମୁହାଁଇଲା ବେଳକୁ କୃପାସିନ୍ଧୁ ହୋତାଙ୍କୁ ଦେଖିଲି, ଅବନୀ ବାବୁଙ୍କ ଘରେ । ପୂର୍ବେ ସେ ମୋ ବସାରେ ରହୁଥିଲେ । ଏଥର କାହିଁକି ଆସିଲେ ନାହିଁ ବୋଲି ମନରେ ଟିକିଏ କାନ୍ଦି ପଶିଲି । ପୁଣି ମନକୁ ବୋଧ ଦେଲି, ସେ ସମସ୍ତଙ୍କର ; ଗୋଟାଏ ଜାଗାରେ କାହିଁକି ମୁହିଁ ମାଡ଼ି ରହନ୍ତେ । ଯାହା ହେଉ ସେ ପ୍ରଦର୍ଶନୀ ଆୟୋଜନ ଦେଖି ବଡ଼ ଖୁସି ହେଲେ ।

ଗୋପୀବାବୁ ଓ ଦେବୀବାବୁଙ୍କୁ ଘରକୁ ଆଣି ଭାଗବତ ଚର୍ଚ୍ଚା କଲି । ସେମାନେ କ'ଣ ମନେ କରିଥିବେ କେଜାଣି ? ସାଢ଼େ ଦଶଟା ପର୍ଯ୍ୟନ୍ତ ତ ବସି ଶୁଣିଲେ । ସମସ୍ତେ ମତେ କ'ଣ ବୋଲି ଭାବୁଥିବେ ନ ବିଚାରି ମୁଁ ନିଃସଙ୍କୋଚରେ ସମସ୍ତଙ୍କୁ ମୋ କଥା ଶୁଣାଉଛି । ଭାବଧାରା ନୂଆ ବୋଲି ସମସ୍ତେ କହୁଛନ୍ତି । ମୋ ମନ ନେବାକୁ ନା ପ୍ରକୃତରେ ସମସ୍ତେ ସେପରି ବିଚାରୁଛନ୍ତି କେଜାଣି ?

ଆଜି ଉଡ଼ାଖବର ଶୁଣିଲି ମହତାବ୍ ବାବୁ ଆସିବେ, ନବ ଚଉଧୁରୀ ଛାଡ଼ିବେ । ଏହିପରି କେତେଥର ଶୁଣା ଗଲାଣି । ପୁରା ବିଶ୍ୱାସ କରି ହେଉନାହିଁ । ମୋର ମନେହୁଏ ଯଦି ନବ ଚଉଧୁରୀ ଯିବାକୁ ବାହାରିବେ, ମାଳତୀ ଦେବୀ ଏ ବିଭବ ଛାଡ଼ିବାକୁ ପ୍ରସ୍ତୁତ ହେବେ ନାହିଁ । ମହତାବ ଆସିଲେ ମାଳତୀଙ୍କ ଦେବୀତ୍ୱ ବହୁ ପରିମାଣରେ ହ୍ରାସ ହୋଇଯିବ । (୨ । ୧ । ୧୯୫୪)

ପ୍ରାୟ ୧ଟା ବେଳେ କଟକ ବାହାରିଲି । ୨ଟା ବେଳେ ଆର୍ତ୍ତବାବୁଙ୍କ ବସାରେ ପ୍ରଶାସନ ଶବ୍ଦ କୋଷ କମିଟିର ବୈଠକ ହେଲା । ସେକ୍ରେଟାରିଏଟ୍‌ରେ ପ୍ରଚଳିତ ଇଂରାଜି ଶବ୍ଦମାନଙ୍କର ଓଡ଼ିଆ ଶବ୍ଦ ସଂକଳନ କରିବାର ଭାର ମୋ ଉପରେ ଦିଆ ହେଲା । ସେଠାରୁ ମଧୁସୂଦନ ମହାନ୍ତିଙ୍କ ଘରକୁ ଗଲି । ସେଠାରେ ଖେଳ ହେଲା । ଗତ ୧୦ବର୍ଷ ଭିତରେ ମୁଁ ଏଠାକୁ ମାତ୍ର ଦୁଇ ତିନି ଥର ଆସିଛି । ଏକ ସମୟରେ ଏ ସ୍ଥାନଟି ମୋର ଗୋଟିଏ ଆଡ୍ଡା ଥିଲା । ମଧୁ ସାଙ୍ଗେ ବି ଖୁବ୍ ପଡ଼ୁଥିଲା ।

ପ୍ରାୟ ସାଢ଼େ ଆଠଟା ବେଳେ ଚନ୍ଦ୍ରମାଧବ ଘର ବାଟେ ଫେରିଲି । ଫେରିଲାବେଳେ ସଦାଶିବ ବାବୁଙ୍କୁ ଡାକ୍ତରଖାନାରେ ଦେଖି ଆସିବାକୁ ଗଲି । ସୁଧୀର ବାବୁଙ୍କର ସ୍ତ୍ରୀଙ୍କର

ବି ପେଟ ଅପରେସନ ହୋଇଛି । ରାଧାକୃଷ୍ଣ ଦାସଙ୍କ ସଙ୍ଗେ ବି ଦେଖାହେଲା । ସେ ଅର୍ଶ ଅପରେସନ୍ କରାଇଛନ୍ତି ।

ଅର୍ଶ ରୋଗପାଇଁ ଲକ୍ଷ୍ମଣ ମିଶ୍ରଙ୍କର ଗୋଟିଏ ଅବ୍ୟର୍ଥ ଚୁଟ୍‌କା ଅଛି । କଦଳୀ ଭିତରେ ଓଡ଼ଣ ପୁରାଇ ଗିଳିଦେଲେ ଭଲ ହୋଇଯିବ ବୋଲି ସେ କାହାଙ୍କ-ଠାରୁ ଶିଖିଛନ୍ତି । ଏଥିରେ ଲୋକ ବି ଭଲ ହେଉଛନ୍ତି । ଓଡ଼ଣ ନାମ ଶୁଣି ରାଧାକୃଷ୍ଣ ବାବୁ ହୁରୁଡ଼ିବାର କହିଲେ । ଏ ଔଷଧ ଯେ ପ୍ରଥମେ ଆବିଷ୍କାର କଲା ସେ କିପରି କଲା ? ବାସ୍ତବିକ୍ ଚମତ୍କାର କଥା । ଏହିପରି କେତେ ଚୁଟ୍‌କା ଏ ଦେଶରେ ଚଳୁଛି । ଭାବିଲେ ତାବା ଲାଗେ । କିପରି ଏଇ ଔଷଧ ସବୁ ଏତେ ଲୋକପ୍ରିୟ ହୋଇଛି ଯେ, ଏତେ ଦିନର ଚେଷ୍ଟା ଫଳରେ ବି ଡାକ୍ତର ଏ ଔଷଧ ସବୁକୁ ଏକାବେଳକେ ଲୋପ କରାଇ ପାରି ନାହାନ୍ତି । ମୋର ଆଶା ହେଉଛି ଆଉ ସେ ଲୋପ କରାଇ ପାରିବେ ନାହିଁ । କ୍ରମେ ଏହି ଦେଶୀ ଔଷଧର ପ୍ରଚାର ବଢ଼ିବା ପରି ଦିଶୁଛି । (୩ । ୧ । ୧୯୫୪)

ଆଜି ପ୍ରଫୁଲ୍ଲ ପଟ୍ଟନାୟକ ଆସି କହି ଦେଇଗଲେ ଯେ, ମହତାବ୍ ଆସିବା ନିଶ୍ଚୟ । ନବବାବୁ ଫେବୃଆରୀ ୧୫ ତାରିଖ ସୁଦ୍ଧା ଗଲେ, ସେ ଆସିବେ । ନବବାବୁ ନିଜ ଆଡୁ ଏ କଥା କଟକରେ ବନ୍ଧୁମେଳରେ ମହତାବଙ୍କ ଆଗରେ ପ୍ରକାଶ କରିଛନ୍ତି । ବିଲୁଆ ବାଘର ଲୁହେଁ ତ ! ବିଶ୍ୱନାଥ ଦାସ ଓ ରାଧାନାଥ ରଥ—ଉଭୟଙ୍କର ବି ମତ । ଦୋଷେଇ ପଡ଼ିଲେ ହୁଏତ ନବବାବୁଙ୍କ ରହିବାର ସିଦ୍ଧାନ୍ତ ହେବ । ନବବାବୁ ବୋଧହୁଏ ଏ କଥା ଅନୁମାନ କରିଛନ୍ତି । ତାଙ୍କ ବୈରାଗ୍ୟରେ ଆନ୍ତରିକତା ଥିବାର ବିଶ୍ୱାସ ହେଉନାହିଁ । ମହତାବଙ୍କର କିନ୍ତୁ ପୂରା ବିଶ୍ୱାସ । ସେ ତ ମୋଠାରୁ ନବବାବୁଙ୍କୁ ବେଶୀ ଭଲକରି ଜାଣନ୍ତି । ନବବାବୁ ଯେ ଶାସନ କରିବାକୁ ଅଯୋଗ୍ୟ ଏକଥା ବୁଝିଲେଣି ବୋଲି ମନେ ହେଉନାହିଁ । ସେ ମହତାବଙ୍କଠାରୁ କେତେକ ଗୁଣରେ ଭଲ । ସେ ଭଲ ପଣିଆଁ ଯୋଗୁଁ ହୁଏତ ସେ ନିଜ ଲୋକଙ୍କ ଗ୍ରାଡ ବଦେଶୀ ବେଳି ହୋଇ ବସିଛନ୍ତି । ହୁଏତ କୁହୁଡ଼ି ପଡ଼ିଛନ୍ତି । ସେ ଯେପରି ଢଙ୍ଗ ଧରିଛନ୍ତି, ତାହାର ଶେଷ ଫଳ ବିପଦ । ଏ ମନ୍ତ୍ରୀମାନ୍ତ ତାଙ୍କ ଦଳ ଯେ ତାଙ୍କୁ ମୁଣ୍ଡାଇଛନ୍ତି, ତାହାର କାରଣ ହୁଏତ ଦଳ ଲୋକେ ସ୍ୱାଙ୍କ ଅମଳରେ ନିଜ ଉପାୟ କରିବାରେ ବାଧା ପାଉନାହାନ୍ତି, ନଚେତ୍ ନବବାବୁଙ୍କ ଭାଗ୍ୟ ଜୋର । ମହତାବଙ୍କର ପୂର୍ବେଦୃଷ୍ଟି ଯେତେ ଉଚ୍ଚକୋଟିର ନ ହେଲେ ମଧ୍ୟ, ଟଜଣଙ୍କୁ ଭାର ଦେଇ ରଖିବାକୁ ତାଙ୍କର ଦରବେଳେ ଚେଷ୍ଟା ଥାଏ । ବିରେନ୍ ଓ ବିଜୁଙ୍କ ପରି ଅଯୋଗ୍ୟ ତାଙ୍କୁ ବିପଥଗାମୀ କରିପାରୁଛନ୍ତି । ଏହା କିନ୍ତୁ ତାଙ୍କ ପକ୍ଷରେ ପ୍ରଶଂସାର କଥା ନୁହେଁ । ଦେଖାଯାଉ କଣ ହେଉଛି, ମୁଁ ଠିକ୍ କରିଛି, ଏ ପାଳିରୁ ନିଜକୁ ବାହାରେ ରଖିବି । ମହତାବ୍ ଆସନ୍ତୁ ଏହା ମୋର ମତ । କିନ୍ତୁ ତାଙ୍କ ପାଇଁ ଚେଷ୍ଟା କରିବା ଠିକ୍ ହେବ ନାହିଁ ।

୪ଟା ବେଳେ ସୁଧୀର ବାବୁଙ୍କ ସଙ୍ଗେ କଟକ ଗଲି, କାରଖାନାକୁ ମଟର ନେଇ ପଣ୍ଡିତଙ୍କ ପାଖକୁ ଯିବାକୁ ଓ ସମ୍ଭବ ହେଲେ ତାଙ୍କୁ ଭୁବନେଶ୍ୱର ଆଣିବାକୁ । ମଟର ହୋଇ ପାରିଲା ନାହିଁ, ପଣ୍ଡିତଙ୍କ ସଙ୍ଗେ ମଧ୍ୟ ଦେଖା ହେଲା ନାହିଁ । ଶୁଣିଲି ସେ ହର ମହାପାତ୍ରଙ୍କ ଘରକୁ ଯାଇଛନ୍ତି । ସୁଧୀର ବାବୁଙ୍କ ଆଉ ଅସୁବିଧା ହେବ ବୋଲି ଅଉ ସେଠାକୁ ଯାଇ ପଣ୍ଡିତଙ୍କ ସଙ୍ଗେ ଦେଖା ହେବାକୁ ମନ ହେଲା ନାହିଁ । ନିଜର ବି ଟିକିଏ ଆପତ୍ତି ରହିଲା, ଏପରି ଗୋଡ଼େଇ ଗୋଡ଼େଇ ତାଙ୍କୁ ଖୋଜିବା ଠିକ୍ ହେବ ନାହିଁ ।

ସୁଧୀର ବାବୁଙ୍କ ସଙ୍ଗେ ଗଲାବେଳେ ଓ ଫେରିଲା ବେଳେ ନବବାବୁଙ୍କ ଇସ୍ତଫା ବିଷୟ ପୁଣି ପଡ଼ିଲା । ସୁଧୀର ବାବୁଙ୍କ ପୂର୍ଣ୍ଣ ବିଶ୍ୱାସ, ନବବାବୁ ନିଶ୍ଚୟ ଛାଡ଼ିବେ । ଜବାହରଲାଲ ନାହିଁ କଲେ ବି, ନିଜ ଦଳ ତାଙ୍କୁ ରହିବାକୁ ଅନୁରୋଧ କଲେ ବି, ସେ ନିଶ୍ଚୟ ଫେବୃଅାରୀ ୧୫ ତାରିଖରେ ଛାଡ଼ି ଚାଲିଯିବେ । ଆମେ ଫେରିଲା ବେଳେ ବୈଦ୍ୟନାଥଙ୍କ ଘରେ ଜାନକୀଙ୍କ ସଙ୍ଗେ ଦେଖା ହେଲା । ସେ କହିଲେ, ମହତାବ ନିଜେ ସ୍ଥିର କରି ପାରୁନାହାନ୍ତି, ଆସିବେ କି ନ ଆସିବେ । ତାଙ୍କର ଭୟ, ସେ ବର୍ତ୍ତମାନ ଯେଉଁ ଲୋକପ୍ରିୟତା ଅର୍ଜନ କରୁଛନ୍ତି, ତାହା ମନ୍ତ୍ରୀତ୍ୱ ଗ୍ରହଣ ଫଳରେ ନଷ୍ଟ ହୋଇଯାଇପାରେ । ଏ ହେଉଛି ପଣ୍ଡିତ ନୀଳକଣ୍ଠଙ୍କ ଚନ୍ତାଧାରା । ଦେଶର କ'ଣ ହେବ, ପାଞ୍ଚ ଜଣଙ୍କର ଭଲ ହେବ କି ନାହିଁ, ଏମାନଙ୍କର କିଛି ଯାଏ ଆସେ ନାହିଁ । ପ୍ରଧାନ କଥା ହେଉଛି, ମୋର କ'ଣ ହେବ । ନିଜର ଭଲ ହେଲେ ହେଲା । ସେଥିରେ ଅନ୍ୟମାନେ ନରକରେ ପଡ଼ନ୍ତୁ ପଛେ ।

(୮ । ୧ । ୧୯୫୦)

ମହତାବ ଡକାଇଥିଲେ

ନିର୍ଦ୍ଦିଷ୍ଟ ସମୟର ଘଣ୍ଟାକ ପରେ ମହତାବଙ୍କ ପାଖରେ ପହଞ୍ଚିଲି । ଡେରିରେ ଆସିବାକୁ ସମାଲୋଚନା ବି ହେଲା । ମୋତେ ଡକାଇବାର କାରଣ, ମହତାବ ପରାମର୍ଶ କରିବାକୁ ଚାହୁଁଥିଲେ, ସେ ମୁଖ୍ୟ ମନ୍ତ୍ରୀ ହେବେ କି ନାହିଁ, ତା'ହେଲେ ତାଙ୍କର ନିଜର ଭଲ ହେବ କି ମନ୍ଦ ହେବ । ମୁଁ ସ୍ପଷ୍ଟ ଭାବରେ ଜଣାଇ ଦେଲି ଯେ, ଏ ଚିନ୍ତାଧାରା ମୋ ମନକୁ ପାଉନାହିଁ । ଯଦି ଦେଶ ବା ଦଳର ଲାଭ ହେବା ପରି ଦିଶୁଛି ତେବେ ନିଜର ଯେତେ କ୍ଷତି ହେଲେ ମଧ୍ୟ ଚାଲୁ ପଡ଼ିବା ଉଚିତ୍ । ଆହୁରି ମଧ୍ୟ ସୂଚନା ଦେଲି ଯେ, ମନ୍ତ୍ରୀ ମଣ୍ଡଳରେ କୌଣସି ପରିବର୍ତ୍ତନ କରିବା ବା କୌଣସି ସରକାରୀ କର୍ମଚାରୀଙ୍କୁ ଦଣ୍ଡ ବା ପରିବର୍ତ୍ତନାଦି କରିବାର ଭବିଷ୍ୟତ ଚିନ୍ତା ବର୍ତ୍ତମାନ କରିବା ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ । ଦରକାର ହେଲେ ତାହା ଯଥାସମୟରେ ହେବ । ଆସେମ୍ବ୍ଲି ମେମ୍ବରମାନଙ୍କର ମାନସିକ ବୃତ୍ତି କଳୁଷିତ ହୋଇ ଗଲଣି ବୋଲି ସେ ଯାହା କହିଲେ, ତାହାର ବି ସବିନୟ ପ୍ରତିବାଦ କଲି । ମୁଁ କହିଲି, ମେମ୍ବରମାନଙ୍କ ଆଗରେ ସତ୍ ଆଦର୍ଶ ନ ଥିବାରୁ ଓ ଆବର୍ଷ ପରେ ଆଉ ଆସିବାର କୌଣସି ଆଶା ନ ଥିବାରୁ ସେମାନଙ୍କର ମନ ଆବିଳ ହୋଇ ଯାଉଛି । ସେ ବୋଧହୁଏ ବୁଝିଲେ ।

( ୧୦ । ୧ । ୧୯୫୪)

## ଗୋବରଘାଟି ଗସ୍ତ

ସକାଳ ୯ଟାରେ ଚଣ୍ଡିଖୋଲ ଆଶ୍ରମ ଦେଖି ଗୋବରଘାଟି ବାହାରିଲୁ । ବାବାଜୀ ନ ଥିବାରୁ ଚଣ୍ଡିଖୋଲ ଆଶ୍ରମ ଶ୍ରୀହୀନ ହୋଇଛି । ଗୋଟିଏ ଗୋଟିଏ ଲୋକଙ୍କ ଯୋଗୁଁ ଗୋଟିଏ ଗୋଟିଏ ଅନୁଷ୍ଠାନ ମୁଣ୍ଡ ଟେକି ଉଠେ, ସୁନ୍ଦର ଦିଶେ । ସେହି ଲୋକଟି ବାହାରି ଗଲେ ଗଲା । ଏହି ଲୋକ ପୁଣି ଶିକ୍ଷାରେ ବୁଝନ୍ତି ନାହିଁ । ମନରେ ବୁଝନ୍ତି । ଏଠା ବେଳକେ ଶିକ୍ଷା ଯେ ଦରକାର ନୁହେଁ, ତାହା କହୁ ନାହିଁ -- କିନ୍ତୁ ଶିକ୍ଷା ମିଶାଇ ମନ ଥିଲେ ଅନେକ କାର୍ଯ୍ୟ ହୋଇ ପାରେ । ମନ ନ ଥାଇ ଶିକ୍ଷା ଥିଲେ କିଛି ହେବ ନାହିଁ । ଯେପରି ଆମ ଦେଶରୁ ଇଂଲଣ୍ଡ ଆମେରିକାରେ ଶିକ୍ଷା ପାଇ ଫେରିଥିବା ଲୋକଙ୍କର ଅବସ୍ଥା ହୋଇଛି । ବାବାଜୀ କୁମ୍ଭ ମେଳାରୁ ଫେରି ପୁଣି ଅବସ୍ଥା ସଜାଡ଼ି ନେବେ, କିନ୍ତୁ ଯେତେବେଳେ ଚିରକାଳ ପାଇଁ ଯିବେ, ତା'ପରେ ଏହାର ଭାର କିଏ ନେବ ? ବହୁ କ୍ଷେତ୍ରରେ ଉପଯୁକ୍ତ ଉତ୍ତରାଧିକାରୀ ମିଳୁନାହାନ୍ତି—ବାବାଜୀଙ୍କୁ ନାହିଁ କି ପିଲା ପିଲା ବାଲିଙ୍କୁ ନାହିଁ ।

ଦି'ପହର ଗୋଟାକ ବେଳେ ଗୋବରଘାଟିରେ ପହଞ୍ଚିଲୁ । ପୂର୍ବଥର ଅପେକ୍ଷା ଏଥର ଗୋବରଘାଟି ସୁନ୍ଦର ଦିଶିଲା । ହେଡମାଷ୍ଟର ଖୁବ୍ ମନ ଦେଇ କାମ କରୁଥିବାର ଜଣାଗଲା । ଛାତ୍ରମାନଙ୍କର ସ୍ୱାସ୍ଥ୍ୟ ଓ ଚେହେରା ମୋତେ ମୁଗ୍ଧ କଲା । ମୁଁ ଅନୁଭବ କଲି ମୋର ରାଗ ଓ ଉପରସ୍ଥ-କର୍ମକର୍ତ୍ତା ଢଙ୍ଗ ଦିନକୁ ଦିନ ଯେତିକି କମି କମି ଯାଉଛି, ମୋ ଶିକ୍ଷକ ଓ ଛାତ୍ରଙ୍କ ଉପରେ ମୋର ପ୍ରଭାବ ସେତିକି ଅଧିକ ହେଉଛି । ଏହା ଦେଖି କିଏ ନବବାବୁଙ୍କ ଅନୁଗ୍ରହକୁ ସ୍ପର୍ଦ୍ଧି ରହିଥିବ ! ଭଜକୃଷ୍ଣ ମିଶ୍ରେ, ପଣ୍ଡିତ ଏ ସ୍କୁଲ୍ ଦେଖି ଖୁବ ତାଜୁବ୍ ହେଲେ । ସମସ୍ତେ ରାତି ୯ଟାରେ ଭୁବନେଶ୍ୱରରେ ଆସି ପହଞ୍ଚିଲୁ ।

(୧୩ । ୧ । ୧୯୫୪ )

## କଳାକୁଞ୍ଜ ଚିନ୍ତା

ଆଜି ଦିନଟି ତମାମ ବଡ଼ ଆନନ୍ଦରେ କଟିଲା । ଆଜି ଆମର ସମ୍ବର ଦଶମୀ । ଆଦିବାସୀ ପିଲାମାନଙ୍କର ମକର ସଂକ୍ରାନ୍ତି । ମକର ସଂକ୍ରାନ୍ତି ଆମେ ଯେ ନ ପାଳୁ ତାହା ନୁହେଁ ; କିନ୍ତୁ ବୋଧହୁଏ ସମ୍ବର ଦଶମୀଠାରୁ କମ୍ । ଏହି ସମ୍ବର ଦଶମୀ ବିଶେଷ କରି ଓଡ଼ିଶାର ବ୍ରାହ୍ମଣମାନଙ୍କ ଭିତରେ ଅଛି । ଆମର ଛୁଟିକିଆ ହୋଇଥିବାରୁ ସମ୍ବର ଦଶମୀ ମାନିଲୁନି । କିନ୍ତୁ ପିଠା ହେଲା । ଆଦିବାସୀ ମାଷ୍ଟ୍ରେ ଓ ପିଲା ଓ କେତେ ଜଣ ଅଫିସରଙ୍କୁ ଡାକି ଖୁଆଇଲୁ । ପିଲାମାନଙ୍କୁ ଓଳିଏ ଛୁଟି ମିଳିଲା ।

ଅଫିସ କାମ ଓ ବେଦାନ୍ତ ଚର୍ଚ୍ଚାରେ ରାତି ୧୦ଟା ପର୍ଯ୍ୟନ୍ତ ହୋଇଗଲା ।

ଆଜି ପ୍ରଦର୍ଶନୀ ପଡ଼ିଆକୁ ବହୁତ ଲୋକ ଦେଖିବାକୁ ଆସିଥିଲେ । କଳାକୁଞ୍ଜ ପ୍ରତି ଲୋକଙ୍କର ବିଶେଷ ଆକର୍ଷଣ ହେଲାପରି ଦେଖାଯାଉଛି । ଆଜି ମନେ ମନେ ପ୍ରସ୍ତାବ କଲି ଏଥର ଏ କଳାକୁଞ୍ଜରେ ଯାହା ଆଦାୟ ହେବ ତାକୁ ଖର୍ଚ୍ଚ କରି ଆଉ ଗୋଟିଏ କଳାକୁଞ୍ଜ

କରାଯିବ । ଏହିପରି କଳାକୁଞ୍ଜମାନଙ୍କରୁ ଯାହା ମିଳିବ ସେଥିରେ ପୁଣି କଳାକୁଞ୍ଜ ଗଢ଼ାଯିବ ଏହା ହେଲେ ଅତି ଅଳ୍ପ ପଇସା ଖର୍ଚ୍ଚରେ ବହୁତଗୁଡ଼ିଏ ଉପକାରୀ ଅନୁଷ୍ଠାନ ଦେଶର ସ୍ୱରଆଡ଼େ ବସ୍ତି ହୋଇ ଯିବ ଓ ଅନେକଗୁଡ଼ିଏ କଳାକାର କାମ ପାଇଯିବେ । ମୋର ବିଶ୍ୱାସ ସରକାର ଏଥିରେ ସମ୍ମତ ହେବେ । ( ୧୪ । ୧ । ୧୯୫୪ )

## ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ

ଆଜି ବାସନ୍ତୀକୁ ନେଇ ବୈଦ୍ୟନାଥଙ୍କ ପାଖରେ ଗ୍ରନ୍ଥ ଆସିଲି । ତାପରେ ମୁଁ ରାଧାନାଥ ବାବୁଙ୍କ ପାଖକୁ ଗଲି । ସେଠାରେ କିଛି ସମୟ ଅପେକ୍ଷା କଲା ପରେ ତାଙ୍କ ସଙ୍ଗେ ଦେଖା ହେଲା । ଖୁବ୍ ଘନିଷ୍ଠ ଭାବରେ କେତେ ଗୁଡ଼ିଏ ବିଷୟ ଆଲୋଚନା କଲି । ସେ ପଚାରିଲେ, ମହତାବ୍ ଆସିଲେ ଭଲ ହେବ କି ମନ୍ଦ ହେବ । ମୁଁ କହିଲି ଭଲ କି ମନ୍ଦ କିଛି ହେବ ବୋଲି ମୋର ବିଶ୍ୱାସ ନୁହେଁ । କୌଣସି ଜଣେ ବ୍ୟକ୍ତି ଯୋଗୁଁ ଗୋଟାଏ କିଛି ଅଘଟନ ଘଟିଯିବ ବୋଲି ମୋର ବିଶ୍ୱାସ ନୁହେଁ । ୫ ଜଣ ବସୁଥିଲେ ଯାହା ଯାହା ହେବ । ସବୁ ମନ୍ତ୍ରୀ ଏକାଠି ହୋଇ କାମ କଲେ ସୁଫଳ ଫଳିବ । ନ ହେଲେ ଖାଲି ମନ୍ତ୍ରୀ ମୁଣ୍ଡ ଗଡ଼ଉଥିବେ, କର୍ମଚାରୀ ତାଙ୍କ କାମ କରି ଚାଲିବେ । "ମାରୁଥିବେ ମହାପାତ୍ରେ ଖାଉଥିବେ ଜଳକା" । ମୋ'ର ଆଗରେ ରାଧାନାଥ ବାବୁ ମୁଣ୍ଡ ବଢ଼ାଇଲେ, ତାଙ୍କ ସେକ୍ରେଟାରୀଙ୍କୁ ଟେଲିଫୋନ କରି କହିଲେ, "ଆଗ ମନ୍ତ୍ରୀମାନେ ଇଙ୍ଗିତ ଦେଲେ ସେକ୍ରେଟାରୀ କାମ କରି ଦେଉଥିଲେ, ଏବେ କାହିଁକି ଏପରି ହେଉଛି ? ମୁଁ ଅମୁକ ବିଷୟରେ ଏତେ ଦିନ ହେଲା ଅର୍ଡ଼ର ଦେଲିଣି, ମୋର ଅର୍ଡ଼ରକୁ କେହି ଖାତିର କରୁନାହାନ୍ତି ।" ଏ ପ୍ରଶ୍ନର ଜବାବ୍ ରାଧାନାଥ ବାବୁ ନିଜେ ନିଜେ ବୁଝିଯିବା ଉଚିତ୍ । ଯେମିତି ଦିଅଁକୁ ସେପରି ପୂଜା । ଇଙ୍ଗିତ ଦେଲେ ଯେଉଁ ମନ୍ତ୍ରୀଙ୍କର କାର୍ଯ୍ୟ ହୋଇଯାଏ, ରାଧାନାଥ ବାବୁ ନିଜେ ସେଇ ମନ୍ତ୍ରୀ ନୁହନ୍ତି ବୋଲି କେବେ ବୁଝିନେବେ କେଜାଣି । (୧୫ । ୧ । ୧୯୫୪)

## ଶଶି ବୋଉ

ବଡ଼ ଆନନ୍ଦ ଲାଗିଲା ଯେ ଗାଡ଼ିଟି ସଂଧ୍ୟା ବେଳେ ଅଳ୍ପ ପଇସାରେ ଠିଆରି ହୋଇ ଆସିଲା । ମୁଁ ମନେ ଭାବିଥିଲି, ଅନ୍ତତଃ ଦୁଇଶହ ପର୍ଯ୍ୟନ୍ତ ଲାଗିବ । ଲାଗିଲା ୭୦ଟଙ୍କା । ଶହେ ତିରିଶ ଟଙ୍କା ସାଙ୍ଗେ ସାଙ୍ଗେ ଲାଭ ହୋଇ ଗଲା ପରି ଲାଗିଲା । ଶଶି ବୋଉକୁ ମଧ୍ୟ । ତା' ମନ ମୋ ମନ ସଙ୍ଗେ ଏକା ବେଳକେ ମିଳିଗଲାଣି । ପ୍ରଥମେ ଆସିଲା ବେଳେ ତାର ମୋର ପ୍ରାୟ ପ୍ରତିବାଦ ଚାଲି ଲାଗୁଥିଲା । ମତେ ଯାହା ଖରାପ ଲାଗେ, ତାକୁ ଖରାପ ଲାଗେନାହିଁ, ଖରାପ ଲାଗିଲେ ମଧ୍ୟ ମୁଁ ଯେଉଁ ପ୍ରତିକାର କରେ ତା ମନକୁ ପାଏ ନାହିଁ, କ୍ରମେ କ୍ରମେ ଦୁଇଟି ଯାକ ମନ ପରସ୍ପର ପ୍ରତି ଆକୃଷ୍ଟ ହୋଇ ହୋଇ ଆଜି ସରିକି ଠିକ୍ ଏକା ହୋଇ ଯାଇଛି—ଜ୍ୟାମିତିରେ ଯିମିତି କହନ୍ତି coincide on all parts । ଯୁବକ ଯୁବତୀ ଭିତରେ ଏକା ବେଳକେ ସ୍ୱାଭାବିକ ପ୍ରେମ ହୋଇଯାଏ ବୋଲି ଯେଉଁମାନେ କଳ୍ପନା କରନ୍ତି, ତାଙ୍କୁଇ ଖରାପ ଲାଗେ ପ୍ରଥମ ବିବାହିତ ଦମ୍ପତି ମଧ୍ୟରେ ଟିକିଏ ମନର

ଚଞ୍ଚଳତା ବା ଫାଟ ଫଟି ଦେଖାଗଲେ । ତା ଉପରେ ବେଶୀ ଯୋର ନ ଦେଇ, ସଂଶୋଧନର ମଧ୍ୟ ପନ୍ଥା ଅବଲମ୍ବନ କଲେ ସବୁ ଠିକ୍ ହୋଇଯିବ । ସଂଧ୍ୟାରେ ଅଶୋକ ଆସିଥିଲା କଟକରୁ । ଏକମାତ୍ର ଉଦ୍ଦେଶ୍ୟ ମୋ' ସାଙ୍ଗେ ଟିକଏ କଥାବାର୍ତ୍ତା ହେବ ।

(୧୯ । ୧ । ୧୯୫୪)

## ହୀରାକୁଦ ଗସ୍ତ

ବାଟରେ ଚଫ ସେକ୍ରେଟେରୀଙ୍କ ସଙ୍ଗେ ମୋ'ର ଦୁଇ ବର୍ଷରେ ନୂଆ ଯୋଜନାମାନଙ୍କ ବିଷୟରେ ଆଲୋଚନା କରିବାର ଥିଲା । ଭୁବନେଶ୍ୱରରେ ମିଟିଂ ହେବାର ସ୍ଥିର ହୋଇଥିଲା । ହଠାତ୍ ସେ ପ୍ରୋଗ୍ରାମ ବଦଳିଗଲା କଟକକୁ ।

ମୁଁ ଯାଇ ପହଞ୍ଚିଲା ବେଳକୁ ଚଫ୍ ସେକ୍ରେଟାରୀଙ୍କର ଦରବାର ବସିଛି । ତାଭେ, ଅର୍ଥ ସେକ୍ରେଟାରୀ, ଚଫ୍ ଇଞ୍ଜିନିୟରଙ୍କ ଜେରା ହେଉଛି । ମଜୁମଦାର ଦର୍ଶକ ଥିଲେ, ମୁଁ ଯାଇ ମିଶିଲି । ଘଣ୍ଟେ କାଳ କଷ୍ଟ କୁଟା ହେଲା । ୫ ମିନଟରେ ଯେଉଁ ବିଷୟର ଆଲୋଚନା ସରିଥାନ୍ତା, ତାହା ଘଣ୍ଟାକରେ ମଧ୍ୟ ସରିଲା ନାହିଁ । ମୋ କଥା ଆଉ ଦିନକୁ ରହୁ ବୋଲି କହି ମୁଁ ପଳାଇ ଆସିଲି । ଦେଖିଲି, ବହୁତ ସେକ୍ରେଟାରୀ ଓ ଡିରେକ୍ଟର ଏହି ଚଷ୍ଟକୁଟା ପାଇଁ ପଡ଼ିଆ ହୋଇ ଏଣେ ତେଣେ ଟହଲ ମାରୁଛନ୍ତି । ଆଜିକାଲିର ସରକାର ଏହିପରି ଚାଲୁଛି । ମନ୍ତ୍ରୀ ପରସ୍ପରକୁ ଆଡ଼ ପଡ଼େଇ ଅଛନ୍ତି । ସେକ୍ରେଟାରୀମାନେ ମଉଜ ମାରୁଛନ୍ତି । ପ୍ରାୟ ୭ଟା ବେଳକୁ ଭୋଜପୁର ବାହାରି ରାତ୍ର ୩ଟାରେ ସେଠାରେ ପହଁଞ୍ଚିଲୁ ।( ୨୦ । ୧ । ୧୯୫୪)

ସକାଳୁ ଭୋଜପୁରରେ ବଡ଼ ଆନନ୍ଦ ଲାଗିଲା । ସ୍କୁଲର ଉନ୍ନତ ହୋଇଛି । ପିଲାଗୁଡ଼ିକର ସ୍ୱାସ୍ଥ୍ୟ ଓ ମନୋବୃତ୍ତି ଉନ୍ନତ ହୋଇଛି । ସବୁଠାରୁ ବେଶୀ ଆନନ୍ଦ ଲାଗିଲା ବେଲର ସଂସାର ଦେଖି । ବେଲ ସ୍ୱର୍ଗୀୟ ବାଞ୍ଛାନିଧି ମିଶ୍ରଙ୍କର ସ୍ତ୍ରୀ । ଅତି ଅଳ୍ପ ବୟସରେ ବିଧବା ହୋଇଗଲା । କୋଳରେ ପୁଅଟିଏ ଝିଅଟିଏ । ଏ ପିଲା ବଡ଼ ହେବେ, ତା'ର ଦୁଃଖ ଯିବ, ଆଶା ନ ଥିଲା । ତାହା ହୋଇଛି । ତା' ପୁଅର ସୁନ୍ଦର ପୁଅଟିଏ ହୋଇଛି । ବଡ଼ ଆନନ୍ଦରେ ଆମ ସମସ୍ତଙ୍କୁ ଖାଇବାକୁ ଦେଲା । × ×

ଓପରଓଳି ଦେବଗଡ଼ ବାଟେ ସମ୍ବଲପୁର ଆସିଲୁ ।

ସକାଳ ବାରଟାରେ ହୀରାକୁଦ ଦେଖିବାକୁ ଗଲୁ । ୩ଘଣ୍ଟା ପର୍ଯ୍ୟନ୍ତ ସବୁ ଦେଖିଲି । ପଣ୍ଡିତ ମାନେ ଦେଖି ତାଜୁବ୍ ହେଉଥାନ୍ତି । ମୋର ମନେ ପଡ଼ୁଥାଏ ୧୯୪୬ ଓ ୪୭ର କଥା । ସେତେବେଳେ ମୁଁ ହୀରାକୁଦ ବନ୍ଧର ପ୍ରଚୁର କାର୍ଯ୍ୟରେ ସମ୍ବଲପୁର ଲୋକଙ୍କର ବିରୋଧର ସମ୍ମୁଖୀନ ହୋଇଥିଲି । ଥରେ ଦୁଇଥର ଲୋକେ ମୋ ଉପରେ ଅତି ଉତ୍ତ୍ୟକ୍ତ ହୋଇଯାଇଥିଲେ । ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ମନ ଗୁହ ମୋର ଜୀବନର ଆଶଂକା କରି, ପ୍ରଚୁର କାର୍ଯ୍ୟରେ ସଶସ୍ତ୍ର ପୋଲିସ୍ ଧରି ଯିବାକୁ ପରାମର୍ଶ ଦେଇଥିଲେ ; ମୁଁ ସେତେବେଳେ କହିଥିଲି, "ପ୍ରଚୁରକର ପୁଣି ପୁଲିସ୍ ସାହାଯ୍ୟ କାହିଁକି ? ଯଦି ମୁଁ ମରି ଯାଏ, ତେବେ ମୋ ସ୍ତ୍ରୀ ଯେପରି ଅନ୍ତତଃ ଟଙ୍କା ୫ହଜାର ପାଇବ, ତାହାର ବନ୍ଦୋବସ୍ତ କରିଦେବେ ।"

ମରିବାର ଆଶଂକା ମୋର ଏକାବେଳକେ ନ ଥିଲା । ଆଜି ସେହି ହାସ୍‌ପିଟାଲ ବନ୍ଧର କାମ ଯୋରସୋରରେ ଚାଲିଛି । ବରୋଧ ମୁଣ୍ଡ ଟେକି ବାହାରି ପାରୁ ନାହାନ୍ତି । ଭାରି ଆନନ୍ଦ ଲାଗିଲା । ଗୋଟିଏ କୁଲିଠାରୁ ଛଡ଼ାଇ ପଥର ବୋହିବାରେ କାନ୍ଧ ଲଗାଇଲି ।

ସମ୍ବଲପୁରରୁ ଫେରିବା ବାଟରେ ଜଗନ୍ନାଥ ବାବୁଙ୍କ ବସାରେ ଜଳଖିଆ ଖାଇ ଆସିଲି । ମିଶ୍ରାଣୀ ଖୁବ୍ ଆଗ୍ରହରେ ଖାଇବାକୁ ଦେଲେ । ବଙ୍କୁଣ୍ଠ ସଙ୍ଗେ ଦେଖା ହେଲା । ସେ ତ ମୋର ଜଣେ ଭକ୍ତ । ଗ୍ରାମ ମଙ୍ଗଳ ଓ ପ୍ରଚାର ବିଭାଗର ଖୁବ୍ ଭଲ କାମ ହେଉଛି ବୋଲି ସେ ପ୍ରଚାର କରୁଛି ।

( ୨୨ । ୧ । ୧୯୫୪ )

ଗସ୍ତରୁ ଫେରି ଆସି ଶୁଣିଲି, ସରକାରୀ ପ୍ରେସ୍ ଆମ ରିପୋର୍ଟ ଛପାଇବାକୁ ନାହିଁ କରିବାରୁ ବାମଦେବ ବାବୁ ରିପୋର୍ଟ ଛପାଇବା ପାଇଁ କଲିକତାକୁ ପଠାଇଛନ୍ତି । କଲିକତାରେ ଛପାଇଲେ ଖୁବ୍ ଅଧିକ ଖର୍ଚ୍ଚ ହେବ ବୋଲି ମନରେ ଆଶଂକା ହେଲା । ମନେ ମନେ ନିଜକୁ ଦୋଷିଲି ଯେ, ଆମେ ଠିକ୍ ସମୟରେ କାମଟି ପ୍ରେସ୍‌ରେ ନ ଦେବାରୁ ସେ ତାହା ଫେରାଇ ଦେଲେ । ସେଥି ଯୋଗୁଁ ଗୁଡ଼ାଏ ଟଙ୍କା ବୃଥାରେ ବଙ୍ଗଳାକୁ ପଠାଇ ଦେବାକୁ ଦରକାର ପଡ଼ିଲା ।

ସନ୍ଧ୍ୟାବେଳେ ଖବର ଆସିଲା, କଲିକତା ପ୍ରେସ ୯ ହଜାର ଟଙ୍କା ଚାହୁଁଛି । ସଙ୍ଗେ ସଙ୍ଗେ ନାହିଁ କରିଦେଲି । କାମ ଫେରାଇ ଆଣିବାକୁ କହିଲି । ଇଂରେଜୀରେ ସାଧା ରିପୋର୍ଟ ଖଣ୍ଡେ ଛପାଇବାକୁ ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚ ହୋଇ ପାରିବ ନାହିଁ । ଅର୍ଥ ବିଭାଗକୁ କପର ଏ ଟଙ୍କା ଖର୍ଚ୍ଚ କରିବାକୁ ଲେଖିବି । ସୁଧୀରବାବୁ କହିଲେ, ଓଡ଼ିଆ ରିପୋର୍ଟ ଛପାଇବାକୁ ଚେଷ୍ଟା କରିବେ । ବୁଝାଇ ଦେବି ଯେ, ଓଡ଼ିଆ ରିପୋର୍ଟ ଛପା ହେବା ସ୍ଥଳେ ଇଂରେଜୀ ରିପୋର୍ଟ ଛପାରେ ଟିକିଏ ଡେରି ହେଲେ କିଛି କ୍ଷତି ନାହିଁ । ଯୁକ୍ତିଟା ଶୁଣାଯିବ ବୋଲି ମନେ ହୁଏ ।

(୨୩ । ୧ ୧୯୫୪)

ଲାଟ ସାହେବ ପ୍ରଦର୍ଶନୀ ଉଦ୍‌ଘାଟନ କରିବାକୁ ଆସିବେ ବୋଲି ରାଜି ହୋଇଛନ୍ତି । ଆମେ ଯେଉଁ ଚିଠି ଦେଇଥିଲୁ, ସେଥିର ଉତ୍ତର ଆସିଥିଲା ଯେ, ସେ ଆସିପାରିବେ ନାହିଁ । ୨୬ ତାରିଖ ଦିନ ତାଙ୍କର ବହୁତ କାମ । ସେ ଭୁବନେଶ୍ୱରକୁ ଆସିବାକୁ ସମୟ ପାଇବେ ନାହିଁ । ଲାଟ ସାହେବଙ୍କୁ ମନାଇବାକୁ ଗୋଟିଏ ସୂତ୍ର ବତାଇଥିଲି । ତାହା କାର୍ଯ୍ୟରେ ଲାଗିଲା । ଲାଟ ସାହେବ ଆସିବାକୁ ନାହିଁ କରିଥିଲେ ବଡ଼ ଅଡୁଆ ହୋଇଥାନ୍ତା । ଏଣେ ନବବାବୁଙ୍କୁ ଧରିଥାନ୍ତି । ମହତାବଙ୍କୁ ଆଣିବାର ଉପାୟ ନ ଥିଲା । ତାଙ୍କୁ ଆଣି ସମ୍ମିଳନୀ ଉଦ୍‌ଘାଟନ କରାଇଥିଲେ, ନବବାବୁ ଭିତରେ ଭିତରେ ବିରକ୍ତ ହୋଇଥାନ୍ତେ । ନବବାବୁଙ୍କୁ ଆଣିଥିଲେ, ସମ୍ମିଳନୀର ମର୍ଯ୍ୟାଦାରେ ଅନେକ ହାନି ହୋଇଥାନ୍ତା । ମୁଖ୍ୟମନ୍ତ୍ରୀ ଲାଟ ସାହେବଙ୍କଠାରୁ କ୍ଷମତାଶାଳୀ ହେଲେ କଣ ହେବ, ସାଧାରଣ ଲୋକେ ଲାଟ ପଦକୁ ଅଧିକ ସମ୍ମାନ ଦେଉଛନ୍ତି । ପୂର୍ବ ଅଭ୍ୟାସ ତାହାର କାରଣ ହୋଇ ପାରେ । ଆଉ ମଧ୍ୟ

ଲାଟ ସାହେବ ପଦରେ ଯେଉଁମାନେ ଆସୁଛନ୍ତି ସେମାନେ ଆମ ଏବ ମୁଖ୍ୟମନ୍ତ୍ରୀ ବା ପୂର୍ବ ମୁଖ୍ୟମନ୍ତ୍ରୀଙ୍କଠାରୁ ଅଧିକ ଶିକ୍ଷିତ । ଶିକ୍ଷାକୁ ତ ଲୋକେ ସଂସ୍କୃତ ବୋଲି ବିଚାରୁଛନ୍ତି । ପୁଣି ବିଦେଶୀ ଲୋକ ହୋଇଥିବା ମଧ୍ୟ ଗୋଟିଏ ଗୁଣ । (ତା ୨୪ । ୧ । ୧୯୫୪)

## ପ୍ରଦର୍ଶନୀ ପୂର୍ବ ଦିନ

କାଲି ସାଧାରଣତନ୍ତ୍ର ଦିବସ । ମୋ କର୍ମଜୀବନର ଆଉ ଗୋଟିଏ ବର୍ଷ କାଲି ଆରମ୍ଭ ହେବ । ପ୍ରଦର୍ଶନୀ ମଣ୍ଡପ ବୁଲି ଟିକିଏ ସନ୍ତୁଷ୍ଟ ହେଲି—ସତେ କ'ଣ କାଲି ଠିକ୍ ସମସ୍ତଙ୍କୁ ସବୁ ହୋଇଯିବ ! ଭେଟ ମୋ'ର ଯୋଗୁରୁ ହେଉଛି ବୋଲି ନିଜକୁ ଟିକିଏ ଦୋଷିଲି । ଜୀବନ ତମାମ ମୋ'ର ଏଇ ଦୋଷଟି ରହିଲା । ସେଦିନ ଡେଲର କାର୍ଯ୍ୟ ମେଡ଼ିକ ବେଳେ ଭଣିବାକୁ ହେବ । ଆଗରୁ କରି ହେଉନାହିଁ । କଲେ ହୁଅନ୍ତା କି ନାହିଁ କେଜାଣି ? ମୋର ରିପୋର୍ଟଟି ଦେଖିଲି । ବୋଧହୁଏ ଭଲ ବୋଲି କହିବେ । କିନ୍ତୁ ଛପା ହେବା ଦରକାର । ଓପର ଓଳି ନିଜେ କଟକ ଯାଇ ସରକାରୀ ପ୍ରେସରେ ଛାପା କରାଇ ଆଣିବି ବୋଲି ବିଚାରିଲି ।

ସାଢେ ଦଶଟାବେଳେ ଚିଫସେକ୍ରେଟାରୀଙ୍କ ସଙ୍ଗେ ଆମ ଯୋଜନାମାନଙ୍କ ବିଷୟରେ ଆଲୋଚନା ହେଲା । ଲୋକଟି ବଡ଼ ଦ୍ୱନ୍ଦରେ ପଡ଼ିଲା । ମୋ କଥା ତାକୁ ଶୁଣିବାକୁ ସୁଖ ଲାଗୁଛି । କିନ୍ତୁ ଯେଉଁ ନିୟମକୁ ସେ ବେଦ ବୋଲି ବିଚାରୁଛି, ତାକୁ ବେଖାତିର କରିବା ଭଳି ମନୋବୃତ୍ତି ମୋ କଥାରେ ତାର ଜାତ ହୋଇ ପାରୁନାହିଁ । କିନ୍ତୁ ଆଜି ସ୍ୱରାଷ୍ଟ୍ର ଆସିଲା ପରି ଦିଶିଲା । ଆମ ଯୋଜନାମାନଙ୍କୁ ପାଶ୍ କରାଇବାରେ ସାହାଯ୍ୟ କରିବ ବୋଲି ଜବାବ୍ ଦେଲା, କୌଣସି ଯୋଜନା ନ ଦେଖି ।

ଓପର ଓଳି କଟକ ଯାଇ ସରକାରୀ ପ୍ରେସ୍‌ରେ ସାଠିଆ ବାବୁଙ୍କୁ ମୋର ରିପୋର୍ଟ୍ଟି ଛାପିବାକୁ ଦେଇଆସିଲି । ଷ୍ଟେସନାରୀ ପ୍ରେସ୍‌କୁ ଯାଇ ଦେଖିଲି ସେମାନେ କାଲି ଆମ ଡିପାର୍ଟ-ମେଣ୍ଟ ରିପୋର୍ଟ୍ ଛପାଇ ଦେଇ ପାରିବେ ନାହିଁ । ସେମାନଙ୍କୁ ଧମକଟେ ଦେଇ ଚାଲି ଆସିଲି ।

ପ୍ରଦର୍ଶନୀ ପଡ଼ିଆରେ ଆହୁରି ବିରକ୍ତ ହେଲି । କାମ ବହୁତ ବାକି ଅଛି । ମଣ୍ଡପ ଉପର ଛାତ ପଡ଼ିନାହିଁ । ଗ୍ୟାଲେରୀର ବି ଛାତ ପଡ଼ିନାହିଁ । ସବୁ କର୍ମୀଙ୍କୁ ଡକାଇ ବୁଝାଇ-ଦେବାରେ ସମସ୍ତେ କାମରେ ଲାଗିଗଲେ । ବେଶ୍ ଭଲଭାବରେ କାମ ଚାଲିଲା । ସନ୍ତୋଷରେ ରାତି ୩ଟା ବେଳେ ଶୋଇବାକୁ ଆସିଲି । ( ୨୫ । ୧ । ୧୯୫୪ )

## ପ୍ରଦର୍ଶନୀ ଓ ଲୋକ ସଂଗ୍ରହ

ସକାଳୁ ଟିକିଏ ଡେରି ହେବାକୁ ପଡ଼ିଲା । ଆଉ କମ୍ ଡେରି ହୋଇଥିଲେ ଭଲଥାନ୍ତା ପରି । ମୁଁ ୯ଟା ବେଳେ ଯାଇ ପ୍ରଦର୍ଶନୀ ପଡ଼ିଆରେ ପହଞ୍ଚିଲି ବେଳକୁ ବ୍ୟାଣ୍ଡ ଓ ଦେବେନ୍ଦ୍ର

ପଟ୍ଟନାୟକ ମୟୂରଭଞ୍ଜର ପିଲାଙ୍କୁ ନେଇ ପ୍ୟାରେଡ୍ କରାଉଛନ୍ତି । ଦେବେନ୍ଦ୍ର ନେକ୍‌ଟାଇ ପିନ୍ଧିଛନ୍ତି । ଖୁବ୍ ବିରକ୍ତ ହେଲି । ମୟୂରଭଞ୍ଜ ପିଲା ନିଜ ବିଭବ ଦେଖାଇଲା ବେଳେ କୁଲି ପରି ଖଟୁଥିବା ପିଲେ କ'ଣ ଭାବୁଥିବେ । ଏହି କଥା ବସୁଙ୍କ ଭାରି ଖରାପ ଲାଗିଲା । ରାଗ ହେବାର ଫଳ ଭଲ ହେଲା । ଖୁବ୍ ଶୀଘ୍ର ଶୀଘ୍ର ସବୁ କାମ ଚାଲିଲା । ଲାଟ ସାହେବ ୨ । ୪୫ମିନିଟ୍‌ରେ ଆସିବାର କଥା । ୨ଟା ବେଳକୁ ଆମେ ତାଙ୍କୁ ସ୍ୱାଗତ କରିବାକୁ ପ୍ରସ୍ତୁତ ହୋଇଗଲୁ ।

ଠିକ୍ ୨।୪୫ମିନିଟ୍‌ରେ ଲାଟ ସାହେବ ଆସିଲେ, ମୋର ରିପୋର୍ଟ୍ ତାଙ୍କର ପସନ୍ଦ ହେଲା । ପ୍ରଦର୍ଶନୀର ଆୟୋଜନରେ ସେ, ନବବାବୁ ଓ ମହତାବ ସମସ୍ତେ ଭାରି ଖୁସି ହେଲେ । ଲାଟ ସାହେବ ଖୁବ୍ ପ୍ରଶଂସା କଲେ । କର୍ମୀମାନଙ୍କର ଆନ୍ତରିକତାରେ ମୁଁ ଋଣୀ ହୋଇଗଲି । ଆଜି ମନରେ ଗୋଟିଏ ବଡ଼ ସାହସ ଆସିଲା, କଳାକୁଞ୍ଜର ଲୋକପ୍ରିୟତା ଦେଖି । ବହୁତ ଲୋକ ଦେଖିବାକୁ ଆସିଲେ । ନୃତ୍ୟ ଗୀତ ବେଳେ ନବବାବୁ ବଡ଼ ଆନ୍ତରିକତା ସହିତ କଥାବାର୍ତ୍ତା ହେଲେ ।

( ୨୭ । ୧ । ୧୯୫୪ )

## ମନ୍ତ୍ରୀମଣ୍ଡଳ ବୈଠକରେ

କାଲି ରାତିରେ ଟିକିଏ ସମୟ ପାଇଁ ମନ୍ତ୍ରୀ ମଣ୍ଡଳ ସଭାକୁ ଯାଇଥିଲି । ଆଜି ସକାଳ ୧୦ଟା ଠାରୁ ଉପରଓଳି ୪ଟା ପର୍ଯ୍ୟନ୍ତ ସେଇଠାରେ କଟିଲି । ଦିନ ୧ଟା ପର୍ଯ୍ୟନ୍ତ ଆମ ବିଭାଗର କଥା ପଡ଼ି ନ ଥିଲା । ଏହି ୩ଘଣ୍ଟା ଅନ୍ୟ ବିଭାଗର ଯୋଜନାମାନଙ୍କ ଉପରେ ଯେଉଁ ଆଲୋଚନା ହେଲା ତାହା ଶୁଣିବାକୁ ଯେପରି ମଉଜ ସେଇପରି ଦୁଃଖ ଦାୟକ । ପରିଷ୍କାର ଜଣାପଡ଼ିଲା, ବିଭାଗ ମାନେ ଯେଉଁ ଯୋଜନା ମାନ କରୁଛନ୍ତି ସେ ବିଷୟରେ ସେମାନଙ୍କର ଆନ୍ତରିକତା ନାହିଁ । ପ୍ରତ୍ୟେକ ଯୋଜନାର ସବିଶେଷ ବିସ୍ତର ନ ହୋଇ ସେ ସବୁ ଆଗତ କରାଯାଉଛି, ଗୋଟିଏ ଯୋଜନା ବିଷୟରେ ଗୋଟିଏ ତଥ୍ୟ ବିଭାଗର ଉପମନ୍ତ୍ରୀଙ୍କୁ ପଚାରିବାରେ ସେ ସେକ୍ରେଟାରୀଙ୍କୁ ଚାହିଁଲେ, ସେକ୍ରେଟାରୀ ଡିରେକ୍ଟରଙ୍କୁ ଡକାଇଲେ ; ଡିରେକ୍ଟର ନିଜ ସହକାରୀଙ୍କୁ ଡକାଇ ତଥ୍ୟଟି ବୁଝି ମନ୍ତ୍ରୀମଣ୍ଡଳରେ ଜଣାଇଲେ । ଆହୁରି ଦେଖିଲି, ମନ୍ତ୍ରୀମାନଙ୍କ ନିଜ ଭିତରେ ଯୋଗାଯୋଗ ନାହିଁ ; ଗୋଟିଏ ବିଭାଗର ଯୋଜନାକୁ, ଅନ୍ୟ ବିଭାଗର ମନ୍ତ୍ରୀ ତାଚ୍ଛଲ୍ୟରେ ସମାଲୋଚନା କରୁଛନ୍ତି । ଚିଫ ସେକ୍ରେଟେରୀ ଓ ଡାଭେ ଛେଳିକୁ ପାଣିକୁ ଓଟାରିଲା ପରି ଆଲୋଚନାରେ ଯୋଗ ଦେଉଛନ୍ତି । ଦୁହିଁଙ୍କର ବିଲାତି ପୋଷାକ ସାଙ୍ଗକୁ କୋଟ୍‌ରେ ଗୋଟିଏ ଗୋଟିଏ ଫୁଲ ଖୋସାହୋଇଛି । କୌଣସି ସାହେବ ଅଫିସ୍ କାର୍ଯ୍ୟରେ ମନ୍ତ୍ରୀଙ୍କ ପାଖରେ ଥିବାବେଳେ, ବା ଲାଟ ସାହେବଙ୍କ ପାଖରେ ଥିଲାବେଳେ, ଫୁଲ ଖୋସି ଆସିଥିବାର କେବେ ଦେଖି ନ ଥିଲି । ଯାହା ହେଉ ଏ ପରିସ୍ଥିତିରେ ମୋ କାମ ବଡ଼ ସୁରୁଖୁରୁରେ ଚାଲିଗଲା । ମୁଁ ଭଲ ଓକିଲାତି କଲି ବୋଲି ମନ୍ତ୍ରୀମାନେ କୁହାକୁହି ହେଲେ । (୩୦ । ୧ । ୫୪)

କାଲି ସଂଧ୍ୟାରେ ମନ୍ତ୍ରୀମାନେ ପ୍ରଦର୍ଶନୀ ମଣ୍ଡପକୁ ଆସିଥିଲେ । ଆମ ଛାତ୍ରଙ୍କର କାମ ଦେଖି ସମସ୍ତେ ଖୁବ ଖୁସି ହେଲେ । ରାଧାନାଥ ବାବୁ ତାଙ୍କ ବକ୍ତୃତାରେ ପ୍ରଶଂସା ବାଣୀ ଶୁଣାଇଲେ । ଏହା ଏ ପର୍ଯ୍ୟନ୍ତ ହୋଇ ନ ଥିଲା । ଅନ୍ୟ ବନ୍ଧୁଙ୍କ ସମସ୍ତଙ୍କର ମନରେ ଗୋଟାଏ ଭାବ ଥିଲା, ଗ୍ରାମମଙ୍ଗଳ ବିଭାଗ ଖାଲି ପାଷ୍ଟିରୁଣ୍ଡ କରି ନିଜକୁ ବଞ୍ଚାଇ ରଖିଛୁ ।

ସକାଳୁ ଖବର ପାଇଲି ଦିନ ତମାମ ସୁନାରାମ ବାବୁ ନିଜ ଘରେ ନାଚ କରି ଫିଲ୍ମ ଉଠାଉଛନ୍ତି । ପ୍ରଚାର ବିଭାଗ ମୋ ହାତରେ ଥିବାରୁ ସେ ଅନଧିକାର ଚର୍ଚ୍ଚା କରୁଛନ୍ତି । ପ୍ରଦର୍ଶନୀ ମଣ୍ଡପରେ ମଧ୍ୟ ତାଙ୍କର ଗୁଡ଼ାଏ ଫିଲ୍ମ ଉଠାଇବାକୁ ପଡ଼ିଲା । ମନ୍ତ୍ରୀ ନାଚିବା-ଦ୍ୱାରା, ସାଧାରଣ ଲୋକଙ୍କ ସାଙ୍ଗେ ତାଙ୍କର ସଂପର୍କ ସ୍ଥାପିତ ହେଲା । ଭଲ କଥା, କିନ୍ତୁ ଅତି ସବୁକିଛି ବାଧିଲେ । ଗୁଡ଼ାଏ ଟେଲିଭ ଫଳରେ, ଓ ନାଚ ବେଳେ ନିଜର ମର୍ଯ୍ୟାଦାକୁ ଏକା ବେଳକେ ଭୁଲି ଯିବା ଫଳରେ ସେ ନିଜକୁ ଶ୍ରେଷ୍ଠ କରିଦେଲେ । ତାଙ୍କର ଆଉଗୋଟିଏ ଦୋଷ ଆଖିକୁ ବଡ଼ କଷ୍ଟଦାୟକ ହେଲା । ତାଙ୍କର ଦୃଷ୍ଟି କେବଳ ସାନ୍ୟାଲ ଓ ମୁଣ୍ଡାଙ୍କ ଉପରେ ଆବଦ୍ଧ ରହିଲା । ଫଳବାଣୀ, ଗଞ୍ଜାମ ଓ କୋରାପୁଟର ପର୍ଯ୍ୟଟକ ଓ ପିଲମାନେ ତାଙ୍କଠାରୁ ହତାଦର ପାଇଲା ପରି ମନେ କଲେ । ଅବଶ୍ୟ ଏହା ଦୂର କରିବାକୁ ମୁଁ ଯଥାସାଧ୍ୟ ଚେଷ୍ଟା କଲି । କିନ୍ତୁ ମନ୍ତ୍ରୀଙ୍କର ସହଯୋଗ ପାଇଥିଲେ ମୁଁ ସେମାନଙ୍କ ଉପରେ ଯେଉଁ ପ୍ରଭାବ ପକାଇ ପାରି ଥାନ୍ତି ତାହା ହୋଇ ପାରିଲା ନାହିଁ । ସେ ନିଜର କ୍ଷୁଦ୍ର ସ୍ୱାର୍ଥକୁ ମଧ୍ୟ ଦବାଇ ରଖି ପାରୁ ନାହାନ୍ତି ବୋଲି ଜଣାପଡ଼ିଲା । ଦାମ ପଣ୍ଡା ମଧ୍ୟ ସେଇଆ ଅନୁଭବ କରୁଛନ୍ତି ।

ଦାମ ବାବୁଙ୍କଠାରୁ ଶୁଣିଲି, ମୁଁ ନାଚଗୀତ କେଉଁ ଦିନ କ'ଣ ହେବ ତାହା ମନ୍ତ୍ରୀଙ୍କୁ ନ ଜଣାଇବାରୁ ମନ୍ତ୍ରୀ ଦୁଃଖିତ ହେଉଛନ୍ତି । ହସିବ ନା କାନ୍ଦିବ ! ତାଙ୍କ ଆଖି ଆଗରେ ତ ପ୍ରଦର୍ଶନୀ ନାଚିବାର ସ୍ଥାନ ବ୍ୟତୀତ ଆଉ କିଛି ବୋଲି ମନେ ହେଉ ନାହିଁ । ଶୁଣିଛୁ, ସେ ଯୁଆଡ଼େ ଯାଉଛନ୍ତି ସେ ଆଡ଼େ ନାଚୁଛନ୍ତି । ଲୋକ ସାଧାରଣଙ୍କ ସଙ୍ଗେ ମିଶିବାର ସାଧନ ଭାବରେ କେତେବେଳେ କମିତି ନାଚିବା ଗ୍ରହଣୀୟ ହୋଇପାରେ । କିନ୍ତୁ ମନ୍ତ୍ରୀ ଯଦି ନାଚିବାକୁ ନିଜ କର୍ମ ସୂଚୀର ସବା ଆଗରେ ରଖନ୍ତି ତେବେ ତ ସେହିଟାରୁ ମନ୍ତ୍ରୀଙ୍କୁ ଆଜି ଯେତେ ନଗ୍ନ ହେଉଛନ୍ତି, ତହିଁରୁ ଅଧିକ ନଷ୍ଟସ୍ୱ ନଗ୍ନ ହେବେ ।

ପ୍ରଦର୍ଶନୀଦ୍ୱାରା ମୁଁ ସମଗ୍ର ଆଦିବାସୀଙ୍କ ଭିତରେ ଏକତା ଦୃଢ଼ କରିବାକୁ ଚାହୁଁଛୁ । ସେମାନଙ୍କ ଭିତରେ ଆତ୍ମ ବିଶ୍ୱାସ ଜନ୍ମାଇବାକୁ ବସିଛୁ ଓ ସେମାନଙ୍କ ସାହାଯ୍ୟରେ ଆମ ଶିକ୍ଷା ପ୍ରଣାଳୀକୁ ଗୋଟାଏ ମୋଡ଼ ଦେବାକୁ ଚେଷ୍ଟା କରୁଛୁ ।

ସୁନାରାମ ବାବୁଙ୍କୁ ଏଇ କଥା ଜଣା ନ ପଡ଼ୁଛି କାହିଁକି କେଜାଣି ?

ଜଣା ନ ପଡ଼ିଲା ତ ବୁଝାଇ ଦେବାକୁ ଚେଷ୍ଟା କରନ୍ତି । କିନ୍ତୁ ମୁଁ ଲକ୍ଷ୍ୟ କରୁଛି ଦାମ ପଣ୍ଡା ମଧ୍ୟ ଦେଖିଲେଣି ଯେ ସୁନାରାମ ବାବୁଙ୍କ ଭିତରେ ନୀଚ ସ୍ୱାର୍ଥଚିନ୍ତା ସଙ୍ଗେ ଅହଂକାର ମଧ୍ୟ ପଶିଲାଣି । ମୋ ଠାରୁ କୌଣସି ଉପଦେଶ ଗ୍ରହଣ କରିବାର ଆଗ୍ରହ ତ

ନାହିଁ, ଏକଟି ମୋତେ ହୁକୁମ ଦେବାର—ତାହା ପୁଣି ଅଭଦ୍ର ଭାବରେ—ପ୍ରବୃତ୍ତି ପ୍ରକାଶ ପାଇଲାଣି । ବାପ୍ରେ ! ଖାଲି ଏତକ ଦୁଃଖ ହେଉଛି, ଗଡ଼ ଗଡ଼ ଉଦେଇତ ସିଂହଙ୍କର ଯେପରି ଅବସ୍ଥା ଦେଖ୍, ସେ ମଧ୍ୟ ସେହିପରି ଦିନେ ଗଡ଼ ଗଡ଼ ବାହାର ହୋଇଯିବେ । ମୋ ଭାଗ୍ୟରେ ଖାଲି ମାଟି ପିଣ୍ଡରେ ଦାଣ ଦୁରବସ୍ଥା ଓ ପ୍ରତିମା ବିସର୍ଜନ ଅଛି । (୩୧ । ୧ । ୧୯୫୪)

## ମୁଖ୍ୟମନ୍ତ୍ରୀଙ୍କର ରାଜ୍ୟପାଳଙ୍କୁ ବିଦାୟ ଭୋଜି

ଆଜି ରାଜ୍ୟପାଳ ଫଜଲ ଅଲିଙ୍କ ବିଦାୟ ସଂବର୍ଦ୍ଧନା ପାଇଁ ମୁଖ୍ୟମନ୍ତ୍ରୀ ଅତିଥି ଭବନରେ ଗୋଟିଏ ଭୋଜି ଦେଇଥିଲେ । ସେହି ଭୋଜିରେ ନାଚ ଦେଖାଇବା ପାଇଁ କାଲି ତାଙ୍କ ୩।୪ ଦଳ ଆଦିବାସୀ ଟୃପ୍ସଙ୍କୁ ବନ୍ଦୋବସ୍ତ କରିଥିଲେ । ମନ୍ତ୍ରୀ ବା ଆଦିବାସୀ ଗ୍ରୁପ ଯାଇ ଏଠି ସେଠି ନାଚିବା ମୁଁ ପସନ୍ଦ କରେ ନାହିଁ । ମୁଖ୍ୟ ମନ୍ତ୍ରୀ ଡକାଇଛନ୍ତି ବୋଲି ଶୁଣିବାରୁ ମୁଁ ଅନିଚ୍ଛା ସତ୍ତ୍ୱେ ରାଜି ହୋଇଥିଲି । ଆଜି ସନ୍ଧ୍ୟାବେଳେ ଭୋଜିକୁ ମୁଁ ଆସିବା ମାତ୍ରେ ମୁଖ୍ୟମନ୍ତ୍ରୀ ମୋତେ ଡାକି ଜଣାଇ ଦେଲେ, ସେ ଆଦିବାସୀ ଗ୍ରୁପଙ୍କୁ ଫେରାଇ ଦେଇଛନ୍ତି । ସେହି ସଭାରେ ଯେଉଁ ବାତାବରଣ ହେଉଛି ସେଥିରେ ଆଦିବାସୀ ପିଲାଙ୍କୁ ଆଣି ନଚାଇବା ଠିକ୍ ହେବ ନାହିଁ ବୋଲି ସେ କହିଲେ । ମୁଁ ଏହା ଶୁଣି ମନେ ମନେ ଖୁବ୍ ଖୁସୀ ହୋଇ ଥିଲେ ମଧ୍ୟ, କହିଲି, "କାଲି ଆପଣ ଡକାଇଥିବାରୁ ଶୁଣି ମୁଁ ପିଲାଙ୍କୁ ଅନୁମତି ଦେଇଥିଲି ।" ସେ ହଁ କଲେ ଓ କୈଫିୟତ୍ ଦେଲେ ଯେ ଆଜି ଏଠାରେ ଯେଉଁ ଅବସ୍ଥା ସେ ଦେଖୁଛନ୍ତି ତାହା ହେବ ବୋଲି ସେ ଆଗରୁ କଳ୍ପନା କରି ନ ଥିବାରୁ ଭୁଲ୍ କରିଥିଲେ ।

ସେ ନନ୍ଦବାବୁ ଓ ରାଧାନାଥବାବୁ ଠିଆ ହୋଇ କାଥାବାର୍ତ୍ତା କହୁଥିବା କୋଣକୁ ଦେଖାଇ ଓ ତାହା ପରେ ନଜଲ ସାହେବମାନଙ୍କର ପ୍ରଜାପତି ବେଶକୁ ଦେଖାଇ କହିଲେ, ଦେଖ କିପରି antipodei । ମୁଁ ନିଜ ମତ ଲୁଚାଇ ରଖି ପାରିଲି ନାହିଁ ; ରାଧାନାଥ ବାବୁ, ନନ୍ଦ ବାବୁ ଓ ନୀଳମଣି ରାଉତରାୟଙ୍କୁ କହିଲି ।

(୨ । ୨ । ୧୯୫୪)

## ଦଳିତ ଜାତି କମିଶନ

କାଲି ଉପର ଓଳି ଦଳିତ ଜାତି କମିଶନ୍ ସୁନ୍ଦରପଦା ଗାଁକୁ ଯାଇଥିଲେ ବାଣୀଭୂଷଣଙ୍କ ଘରେ ଭୋଜି ନିମନ୍ତ୍ରଣରେ । ଗାଁଟି ଯାକ ଅତି ଅପରିଚ୍ଛନ୍ନ ଦିଶୁଥାଏ । ସେ ଦିଗରେ କାହାର ନଜର ପଡ଼ିନାହିଁ । କାହାକୁ ପଠାଇ ବନ୍ଦୋବସ୍ତ କରିବାକୁ ମଧ୍ୟ ମୋର ଖିଆଲ ରହିଲା ନାହିଁ । ବାଣୀଭୂଷଣଙ୍କର ଇଚ୍ଛା କ'ଣ ଗୋଟାଏ କରିପକାନ୍ତେ । କିନ୍ତୁ ବୁଦ୍ଧି ଓ ମନର ଖେଳ ବଡ଼ ଖେଞ୍ଚା ଜାଗାରେ ହେଉଛି ।

ଆଜି କଟକରେ ଅନୁନ୍ନତ ଜାତି କମିସନଙ୍କ କାର୍ଯ୍ୟରେ ଟିକିଏ ବୁଝାପଢ଼ା କରିବାକୁ ମୁଁ କଟକ ଯାଇଥିଲି । କମିସନ୍ ଅତି ମାମୁଲି ଧରଣର ଆଲୋଚନା କରୁଛନ୍ତି । ସେମାନଙ୍କ

ବ୍ୟବସ୍ଥାରେ ମଧ୍ୟ ଅନୁନ୍ନତ ଆଦିବାସୀ ଓ ହରିଜନଙ୍କୁ ସ୍ପର୍ଶ କରି ନ ଥିଲା । ତାଙ୍କ ପ୍ରବର୍ତ୍ତିତ ଶିକ୍ଷା ପ୍ରଣାଳୀ ଭାରତର ଶିକ୍ଷିତ ସମାଜକୁ କର୍ମକୁଣ୍ଠ କରି ପକାଇଛି । ଆଜି ସମସ୍ତେ ସ୍ୱୀକାର କଲେଣି, କାଉଲାରେ ରଡ଼ି ଛୁଡ଼ିଲେଣି ମଧ୍ୟ ଯେ, ଏ ଶିକ୍ଷାରୀତି ନ ବଦଳାଇଲେ ଭାରତର ଗତି ନାହିଁ । (୭ । ୨ । ୧୯୫୪)

## ବିଦେଶୀ ବନ୍ଧୁଙ୍କ ଗହଣରେ

ଆଜି ଦିନଟିଯାକ ସୁଇଜରଲଣ୍ଡରୁ ଆସିଥିବା ପ୍ରଫେସର ଗିଲବର୍ଟ ଏଣ୍ଟିନ୍ ଓ ତାଙ୍କ ମା'ଙ୍କ ସଙ୍ଗେ କଟିଗଲା । ସେ ବଡ଼ସକାଳୁ ଆସି ମୋ ପାଖରେ ପହଞ୍ଚିଲେ । ଉଦ୍ଦେଶ୍ୟ ଭୁବନେଶ୍ୱର ଓ କୋଣାର୍କ ଦେଖିବେ ଓ ସବୁଠାରୁ ଅନୁନ୍ନତ ଆଦିବାସୀ ଲୋକଙ୍କୁ ଦେଖିବେ । ସେ ଜଣେ କୃତବିଦ୍ୟ ଲୋକ ଓ ଇଉରୋପର ୫୬ଖଣ୍ଡ କାଗଜର ସମ୍ବାଦଦାତା ବୋଲି ଶୁଣି ମୋର ତାଙ୍କୁ ସାହାଯ୍ୟ କରିବାକୁ ଆଗ୍ରହ ହେଲା । ତାଙ୍କ ସଙ୍ଗେ ନାନାଏ ବିଷୟରେ ଆଲୋଚନା ହେଲା । ମୁଁ ତାଙ୍କୁ କହିଲି ଯେ, ଭାରତ ତା'ର ନିଜ ବିଭବକୁ ଫେରି ଆସୁଛି । ସେ ପ୍ରତିବାଦ କଲେ, ଭାରତ ପାଶ୍ଚାତ୍ୟ ଭାବଧାରାଦ୍ୱାରା ପ୍ରଭାବିତ ହୋଇଯିବ । ମୁଁ କହିଲି, ଦେଶର ଉପରେ ଥିବା ଶତକଡ଼ା ଜଣେ ଲେଖାଏଁ ଲୋକ ଇଂରେଜ ଢଙ୍ଗ ଧରିଛନ୍ତି ବୋଲି ସମସ୍ତେ ଯେ ଇଂରେଜ ଧାରା ଧରିଯିବେ ତାହା ହୋଇ ନ ପାରେ । ନିଜର ସଂସ୍କୃତି ଏତେ ଟାଣ ଯେ ତାହା ଇଂରେଜଙ୍କୁ ମଧ୍ୟ ମୋଡ଼ି ମାଡ଼ି ଭାରତୀୟ କରି ପକାଇବ । ସେ ଆପତ୍ତି କଲେ—ଶିଳ୍ପର ବିକାଶ ଯେଉଁ ଗତିରେ ଚାଲିଛି ତାହା ଫଳରେ ଇଂଲଣ୍ଡରେ ଯେପରି ବିପ୍ଳବ ହୋଇଥିଲା ଏଠାରେ ବି ସେହିପରି ହୋଇଯିବ । ବର୍ତ୍ତମାନ ୪୦ ଲକ୍ଷ ଲୋକ ଶିଳ୍ପରେ କାମ କରୁଛନ୍ତି ବୋଲି ବା ୫ ବର୍ଷରେ ଏ ସଂଖ୍ୟା ବଢ଼ି ବଢ଼ି ୩ କୋଟି ହେବ ବୋଲି ଯେ ବାକୀ ସମସ୍ତେ ତାଙ୍କଦ୍ୱାରା ପ୍ରଭାବିତ ହେବେ, ତାହା ମୋତେ ପସନ୍ଦ ହେଲା ନାହିଁ ।

(୧୨ । ୨ । ୫୪)

## ପ୍ରମୋଦ

ସକାଳେ ବୈଦ୍ୟନାଥ ଆସି ପହଞ୍ଚିଲେ । ଦୁଇ ଜ୍ୱାଇଁଙ୍କ ସଙ୍ଗେ ସକାଳ ଓଳିଟି ଖୁବ୍ ଆନନ୍ଦରେ କଟିଲା । ଦିପହରରେ ମୁଁ ଟିକିଏ ଶୋଇ ପଡ଼ିଲି । ସାଧାରଣତଃ ମୁଁ ଦି'ପହରେ ଶୁଏ ନାହିଁ । ଏବେ କେତେ ଦିନ ହେଲା ରାତିରେ ଶୋଇବାରେ ବିଶେଷ ବେନିୟମ ହେବାରୁ ଦିନବେଳେ ଟିକିଏ ହାଲିଆ ଲାଗୁଛି । ଶୋଇକରି ଉଠି ଶଶୀ ବୋଉଠାରୁ ଶୁଣିଲି, କୁଆଡ଼େ ଯାକ ପଶା ଖେଳୁଥିଲେ—ସର୍ବେଶ୍ୱର ମଧ୍ୟ । ବଡ଼ ଆନନ୍ଦ ଲାଗିଲା । ସର୍ବେଶ୍ୱରଙ୍କୁ ତାଙ୍କ ଅଭିଭାବକମାନେ ପିଲାଦିନେ ଯେପରି ଚଳାଇଛନ୍ତି ସେଥିରେ ତାଙ୍କ ସ୍ୱଚ୍ଛନ୍ଦ ବିକାଶ ରୁଦ୍ଧ ହୋଇ ଯାଇଛି । ମୁହାଣ ମେଲାଇ ଦେବା ସକାଶେ ଏପରି ଟିକିଏ ଟିକିଏ ହେବା ଦରକାର । ମନରେ ବଡ଼ ସନ୍ତୋଷ ଲାଗୁଛି ଯେ, ଜ୍ୱାଇଁମାନେ ସମସ୍ତେ ମୋ'ର ଆଦର୍ଶରେ ଅନୁପ୍ରାଣିତ ହେଉଛନ୍ତି । ଏଥିରେ ବାହାଦୁରି ପ୍ରମୋଦଙ୍କର ।

ତାଙ୍କର ପ୍ରଭାବ ସମସ୍ତଙ୍କ ଉପରେ ପଡୁଛି । ମୋର ପ୍ରଭାବ ତାଙ୍କ ଉପରେ ଖୁବ୍ ପଡ଼ିଲାଣି । ଅନ୍ୟମାନଙ୍କ ଉପରେ ସେ ପ୍ରଭାବ ସେ ଖଟାଇଛନ୍ତି । ମୁଁ ପଛରେ ରହି ଟିକିଏ ଟିକିଏ ହେମନ୍ତ ଦେଇଛି ମାତ୍ର । ପ୍ରମୋଦଙ୍କ ଖୁସିବାସୀ ମେଜାଜ୍ ଯୋଗୁଁ ସେ ବେଶ୍ ସଫଳ ହେଉଛନ୍ତି । ପ୍ରମୋଦ ଜୀବନଟାକୁ ବଡ଼ ସରଳ ଭାବେ ନେଉଛନ୍ତି । ଠିକ୍ ରାସ୍ତା । ବଡ ହେବାକୁ ଚେଷ୍ଟା କରି ବେଶୀ ଲୋକ ସଫଳ ହୋଇ ନାହାନ୍ତି । (୧୪ । ୨ । ୧୯୫୪)

× × × × ରାଉରକେଲାରେ ଇସ୍ପାତ କାରଖାନା ହେବ କି ମଧ୍ୟ ପ୍ରଦେଶ ବା ବଙ୍ଗଳାରେ ହେବ ସେ ବିଷୟରେ ଭାରି ଆଲୋଚନା ଚାଲିଛି । କାଲି ବୈଦ୍ୟନାଥ ଏ ବିଷୟରେ କହୁଥିଲେ, ନବ ବାବୁ ଦିଲ୍ଲୀ ନ ଯାଇ ରାଧାନାଥ ବାବୁଙ୍କୁ ପଠାଇଲେ ବୋଲି କଲେଜ ପ୍ରଫେସରମାନେ ଭାରି ସମାଲୋଚନା କରୁଥିଲେ । ମୁଁ ମତ ଦେଲି ଓଡ଼ିଶାରେ ନିଶ୍ଚୟ ହେବ ; ବ୍ୟବସାୟ ଅନୁଷ୍ଠାନର ସ୍ଥାନ ବ୍ୟବସାୟ ଭିତ୍ତିରେ ନିର୍ଣ୍ଣୀତ ହେବ, ରାଜନୀତିକ ଭିତ୍ତିରେ ନୁହେଁ । (୧୫ । ୨ । ୫୪)

କାଲି ରାତିରେ ବାହାରି ଆଜି ଭୋରରେ ନରଣପୁରରେ ପହଞ୍ଚିଲି ଓ ସେଠାରେ ଗାଧୋଇ ପାଧୋଇ ୮ଟା ବେଳେ କେନ୍ଦୁଝର ସର୍କିଟ୍ ହାଉସ୍‌ରେ ପହଞ୍ଚିଲି । ନବବାବୁ, ମହତାବ ବାବୁ ଓ ସଦାଶିବ ବାବୁ ସେଠାରେ ଥାନ୍ତି । × × ହଠାତ୍ ଖବର ମିଳିଲା ରାଉରକେଲାରେ ଇସ୍ପାତ କାରଖାନା ହେବାର ହେଲା । ନବବାବୁଙ୍କ ସଙ୍ଗେ ଏ ବିଷୟରେ ଆଲୋଚନା ହେଲା । (୧୬ । ୨ । ୫୪)

**ରାଧାନାଥଙ୍କ ଭାଷଣ ଅନୁବାଦ**

ଆଜି ଓପର ଓଳି ଗାଁକୁ ଯାଇ ସେଠାରୁ କୋରାପୁଟ ଅଭିମୁଖେ ଯାତ୍ରା କରିବି ବୋଲି ସ୍ଥିର କରି କାମ ସାରୁଛି, ରାଧାନାଥ ବାବୁଙ୍କଠାରୁ ଟେଲିଫୋନ ଆସିଲା, ତାଙ୍କ ବଜେଟ୍ ଭାଷଣ ମୁଁ ଓଡ଼ିଆ ନ କଲେ ହେବ ନାହିଁ । ମୁଁ ଏ କଥା ଆଗରୁ ଆଶଂକା କରିଥିଲି । ଆଶା କରି ବସିଥିଲି, ଯଦି ଆଜି ଓପର ବେଳା ପର୍ଯ୍ୟନ୍ତ ତାଙ୍କଠାରୁ ଖବର ନ ଆସିବ ତେବେ ମୁଁ ଖସି ଚାଲିଯିବି । ସେ ନିଜର ବକ୍ତୃତାଟି ଲେଖିବାରେ ବହୁତ ସମୟ ଲଗାନ୍ତି ଓ ନିଜର ମନ ଉପରେ ଲଗାମ ନ ଥିବାରୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଲେଖୁଥାନ୍ତି, କାଟୁଥାନ୍ତି । ପୁଣି ସେ ଇଂରେଜିରେ ଯେ କାହିଁକି ଲେଖନ୍ତି, ତା' ବି ମୁଁ ଜାଣି ପାରେ ନାହିଁ । ତାଙ୍କ ଲେଖାରେ ପୁନରାବୃତ୍ତି ଦୋଷ ବିଶେଷ ଭାବେ ଘଟେ, ଶୈଳୀ ଅତି ନୀଚ ଶ୍ରେଣୀର । ଓଡ଼ିଆରେ ଲେଖିଲେ ଅବଶ୍ୟ ବିଶେଷ କିଛି ଅଧିକା ହୁଅନ୍ତା ନାହିଁ, ତେବେ ଭାଷା ଦୋଷ ରହନ୍ତା ନାହିଁ । ସର୍ବୋପରି ବିଚିତ୍ର ଏହି ଯେ, ତାଙ୍କର ଇଂରେଜି କହିବା ଭଙ୍ଗୀ ଅତି ହାସ୍ୟାସ୍ପଦ ହେଲେ ମଧ୍ୟ ତାଙ୍କ ନିଜ ବିଷୟରେ ତାଙ୍କର ଏତେ ଉଚ୍ଚ ଧାରଣା ଯେ, ସେ ଓଡ଼ିଆ ଅପେକ୍ଷା ଇଂରେଜିରେ ପଢ଼ିବାକୁ ବେଶୀ ସୁଖ ପାଆନ୍ତି ; ଓ ପେଟ ଭିତରେ ବିଶ୍ୱାସୁଥାନ୍ତି, ଓଡ଼ିଆ ଛପା କୌଣସି କାରଣରେ ଡେରି ହେଲେ ସେ

ଇଂରେଜୀରେ ପଢ଼ନ୍ତି । ଏହି ସବୁ କାରଣରୁ ତାଙ୍କ କାମରୁ ଖସିବାକୁ ମୋର ସବୁବେଳେ ମନ । ତାଙ୍କ ପରେ କିନ୍ତୁ ଆଉ ଉପାୟ ରହିଲା ନାହିଁ । ସମସ୍ତ ଅନୁଷ୍ଠାନ ସଂସ୍କୃତି କାର୍ଯ୍ୟ ହାତରେ ନେବାକୁ ହେଲା, ଓ ନେଲା ଜିନିଷକୁ ଭଲ ଭାବେ କରିବାକୁ ତ ହେବ । ଏହି ପୂର୍ବରୁ ଦୁଇଥର କୋରାପୁଟ ଗସ୍ତ ରାଧାନାଥ ବାବୁଙ୍କ ଯୋଗୁଁ ବନ୍ଦ ହୋଇଛି । ଏଥର ବନ୍ଦ କରିବାକୁ ଆଦୌ ଇଚ୍ଛା ନ ଥିଲା । ଅଗତ୍ୟା ବନ୍ଦ କଲି ।

(୧୧ । ୨ । ୧୯୫୪)

## ଗୋପାଳପୁର ବେଳାଭୂମିରେ ଚିନ୍ତା

କାଲି ରାତି ବାରଟା ବେଳେ ଆସି ଗୋପାଳପୁର ଡାକବଙ୍ଗଳାରେ ପହଞ୍ଚିଲି । ଅଲେଖ ପାଢ଼ୀ ଘର ସୁବିଧା କରିଥିଲେ । ଖାଇବାର ପ୍ରୟୋଜନ ନ ଥିଲା । ଶୋଇବା ଜାଗା ମିଳିଯିବାରୁ ମହା ଆନନ୍ଦରେ ଶୋଇଲି । ଉଠିବାକୁ ଆଜି ସକାଳେ ଖୁବ୍ ଡେରି ହେଲା । ଗାଧୋଇ ସାରି ପିଲାମାନେ ସମୁଦ୍ରକୂଳକୁ ଗଲେ; ମୁଁ ଗୋପାଳପୁର ଡାକବଙ୍ଗଳାର ଲାଇବ୍ରେରୀର କାଗଜପତ୍ର ଲେଉଟାଇଲି । ଜଣେ କେହି ଉଦ୍ୟମୀ ଲୋକ ଏଠାରେ ବହି କେତେଗୁଡ଼ିଏ ରଖାଇ ଥିଲା; ସେ ଉଦ୍ୟମ ତଳ କର୍ମଚାରୀ ମହଲରେ ଆଉ ଦେଖା ଯାଉ ନାହିଁ । ଏହାର କାରଣ ବିଷୟରେ ମୁଁ ବହୁତ ଆଲୋଚନା କରିଛି । ମୋର ମନେହୁଏ, ଉପର ବାଲାଙ୍କର ଆଉ ନୈତିକ ପ୍ରଭାବ ତଳ କର୍ମଚାରୀଙ୍କ ଉପରେ ପଡ଼ୁନାହିଁ । ତଳ କର୍ମଚାରୀଙ୍କର initiative (ସ୍ୱାଧୀନବୃତ୍ତି) ଜାଗ୍ରତ କରିବାକୁ ପ୍ରଶ୍ରୟ ଦିଆ ଯାଉ ନାହିଁ । ତାହା ହୁଅନ୍ତା, ଯଦି ସେମାନଙ୍କୁ ଗତାନୁଗତିକ ନୀତି ଛାଡ଼ିବାରେ ହେମତି ମିଳନ୍ତା, ଭଲ କାର୍ଯ୍ୟଟିଏ ହେଲେ ପ୍ରଶଂସା ମିଳନ୍ତା । ଆଜିକାଲି ଅତି ନୀଚ ଶ୍ରେଣୀର ଲୋକ ଉପରେ ରହିଯାଇଛନ୍ତି । ଯେଉଁ ଲୋକେ ଏବେ ଉପରେ ଅଛନ୍ତି ସେମାନଙ୍କ ଭିତରୁ ଅଧିକାଂଶ କୁକୁର-ମୁଖୀ, ଈର୍ଷୀ, ଦୋଷଦର୍ଶୀ । ଯେଉଁ ଭଦ୍ର ବ୍ୟକ୍ତି ଚିଫ୍ ସେକ୍ରେଟାରୀ ହୋଇଛନ୍ତି, ତାଙ୍କର ମନ ବଡ଼ ନୁହେଁ । ଆକୃତି ଓ ବୟସକୁ ବିଚାରିଲେ, ମହତ୍ତ୍ୱ ତାଙ୍କଠାରୁ ଆଶା କରିବା ବୃଥା । ତାଙ୍କ ତଳକୁ ଯେଉଁମାନେ ଅଛନ୍ତି ସେ ସମସ୍ତେ ବିଦେଶୀ । ଏ ଦେଶର ଭଲ ମନ୍ଦରେ ସେମାନଙ୍କର ମମତା ଆସି ନାହିଁ, ଆସିବାର ସଂଭାବନା ବି ଦିଶୁନାହିଁ । ଏମାନଙ୍କ ଅମଳରେ ବିଶେଷ କିଛି ଆଶା କରାଯାଏ ନାହିଁ । ମନ୍ତ୍ରୀମାନେ ଏ କଥା ବୁଝିଲେ କିଛି ଜିନିଷର ବାଟ ହୁଅନ୍ତା । ସେମାନଙ୍କର ଶାସନ ବିଷୟରେ ଅଭିଜ୍ଞତା କମ୍ । ଉଚ୍ଚାଭିଳାଷ ବି ନାହିଁ । ଏ ପରିସ୍ଥିତିରେ ଯାହା ହେବାର କଥା ହେଉଛି । (୧୨ । ୨ । ୧୯୫୪)

## ମୋ ବହି ପାଠ୍ୟପୁସ୍ତକ ହେଲା

ଆଜି ଉପର ଓଳି ସର୍ବେଶ୍ୱର ଟେଲିଫୋନ କରି ଜଣାଇ ଦେଲେ ମୁଁ ଲେଖିଥିବା ରାଷ୍ଟ୍ର ନାୟକ ଜବାହରଲାଲ ବହି ଖଣ୍ଡିକ ପାଠ୍ୟ ପୁସ୍ତକ ହୋଇଛି । ଭାରି ଖୁସି ଲାଗିଲା

ଜୀବନରେ ମୋ ବହି ପାଠ୍ୟ ପୁସ୍ତକ ହେବ ଏହା ନୂଆ । କୋଡ଼ିଏ ବର୍ଷ ପରେ ନୂଆ କରି ଏଇ ବହି ଖଣ୍ଡ ମୁଁ ଲେଖି ଛପାଇଲି । ନାମ ଯୋଗୁଁ ପାଠ୍ୟ ପୁସ୍ତକ ହୁଏ, କି ବହିର ମୂଲ୍ୟ ଯୋଗୁଁ ହୁଏ ଏହା ଦେଖିବାକୁ ଏ ପୁସ୍ତକରେ ମୋର ନାମ ଦେଇ ନ ଥିଲି । ମନେ ମନେ ଭାବୁଥିଲି ଏ ବହିଖଣ୍ଡି ଯଦି ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ହୁଏ, ତେବେ ମୋ ବହିର ଆଦର ହେବ ବୋଲି ସୂଚନା ପାଇ, ଆହୁରି ଲେଖିବାକୁ ଚେଷ୍ଟା କରିବି । ଅବସର ଖୁବ୍ କମ୍ । କିନ୍ତୁ ଯେଉଁ ଟିକିଏ ମିଳିବ ସେଥିରେ ମୁଁ ବହୁତ ଲେଖି ପାରିବି ।

ଆଜିକୁ ତାରିଖ ଥିଲି ପଣ୍ଡିତ ବାସୁଦେବ ମିଶ୍ର ପ୍ରମୁଖ ଆସିବେ, ଓ ସେମାନଙ୍କୁ ସାଙ୍ଗରେ ନେଇ ମୁଁ ନବବାବୁଙ୍କ ପାଖକୁ ଯାଇ ପଣ୍ଡିତମାନଙ୍କ ପାଇଁ ଗୋଟିଏ ନୂଆ କାର୍ଯ୍ୟପନ୍ଥା ଖୋଲିବା କଥାରେ ଆଲୋଚନା କରିବି । ଶାନ୍ତନୁ ବାବୁଙ୍କ ଅନୁଷ୍ଠାନ ସମ୍ପର୍କୀୟ ଆଲୋଚନା ପରେ ୯ଟା ବେଳେ ପଣ୍ଡିତ ବାସୁଦେବ ମିଶ୍ର, ପଣ୍ଡିତ ଜଗନ୍ନାଥ ରଥ, ପଣ୍ଡିତ ରାମଚନ୍ଦ୍ର ମହାପାତ୍ର ଓ ପଣ୍ଡିତ କିଶୋରୀମୋହନ ଦ୍ୱିବେଦୀଙ୍କୁ ଧରି ନବବାବୁଙ୍କ ପାଖକୁ ଗଲି । ନାନା ଆଲୋଚନା ପରେ ସ୍ଥିର ହେଲା ପଣ୍ଡିତମାନେ ଯୁଗ ଉପଯୋଗୀ ନେତୃତ୍ୱ ଦେବାରେ ଉଦ୍ୟମ କଲେ ନବବାବୁ ଯଥାସାଧ୍ୟ ସାହାଯ୍ୟ କରିବେ । ଯୁଗୋପଯୋଗୀ ନେତୃତ୍ୱ ବିଷୟରେ ମୋର ମତାମତ ସମସ୍ତେ ଗ୍ରହଣ କଲେ । (୧ । ୩ । ୧୯୬୪)

ମିନାକ୍ଷୀଙ୍କ ଓଡ଼ିଶୀ ନୃତ୍ୟ

ଆଜି ସନ୍ଧ୍ୟାବେଳେ ବଜୁ ପଟ୍ଟନାୟକଙ୍କଠାରୁ ଡାକରା ଆସିଲା । ମାଧବ ନନ୍ଦଙ୍କ ଝିଅ ମିନାକ୍ଷୀକୁ ଆଣାଇ କପର ହକ୍‌ସଲି ଦମ୍ପତିଙ୍କୁ ତା'ର ନାଚ ଦେଖାଇବାର ବନ୍ଦୋବସ୍ତ କରିବାକୁ ହେବ । ତାଙ୍କରି ଉପରେ ଭାର ଥିଲା । ସେ ସକାଳୁ ମନା କରି ଦେଲେ । ଏତେ ଅଳ୍ପ ସମୟ ଭିତରେ ଆୟୋଜନ କରାଇ ପାରିବେ ନାହିଁ । ମୁଁ ଟେଲିଫୋନ ଧରି ଚେଷ୍ଟା କରୁ କରୁ ଫଳ ହେଲା । ଅଧଘଣ୍ଟା ଭିତରେ ବଜୁ ପଟ୍ଟନାୟକ ଭୁବନେଶ୍ୱରରୁ ବାହାରିଲେ, ମିନାକ୍ଷୀକୁ ଆଣିବା ସକାଶେ । ସାଢ଼େ ଆଠଟାବେଳେ ନୃତ୍ୟ ଆରମ୍ଭ ହୋଇ ପ୍ରାୟ ରାତି ୧୧ଟା ପର୍ଯ୍ୟନ୍ତ ଲାଗିଲା । ଜୁଲିଆନ୍ ହକ୍‌ସ୍‌ଲି ଦେଖି ଅତି ପ୍ରୀତ ହେଲେ । ଏ କଳାକୁ ପୁନରୁଜ୍ଜୀବିତ କରିବା ଉଚିତ ବୋଲି କହିଲେ । ମୁଁ କହିଲି, "ଏ କଳା ମରି ନାହିଁ । ଇଂରେଜଙ୍କ ଅମଳରେ ଆତ୍ମଗୋପନ କରି ସଙ୍ଗସଲ କୋଣରେ ରହି ଯାଇଛି । ଟିକିଏ ପ୍ରଶ୍ରୟ ପାଇଲେ ପୁଣି ମୁଣ୍ଡ ଟେକି ଠିଆ ହୋଇ ଉଠିବ ।" ଆସନ୍ତା ଜାନୁଆରି ସପ୍ତାହରେ ଏଇ ପ୍ରକାର ନୃତ୍ୟ ଗୀତର ପରିବେଷଣ କରିବାକୁ ମନ ଅଛି । ସେତିକି ବେଳେ ଓଡ଼ିଶାର ଜନନୃତ୍ୟ ଓ ସଙ୍ଗୀତର ଗୋଟିଏ ଡକୁମେଣ୍ଟାରି ଫିଲ୍ମ ନେବାର କଳ୍ପନା ଅଛି ବୋଲି ପ୍ରକାଶ କଲି । ହକ୍‌ସ୍‌ଲି ଏ କଥାର ଖୁବ୍ ପସନ୍ଦ କଲେ, ଓ ଏପରି ଗୋଟିଏ ଫିଲ୍ମ ଭାରତ ବାହାରେ ମଧ୍ୟ ଆଦୃତ ହେବ ବୋଲି ଦୃଢ଼ ଆଶା ପ୍ରକାଶ କଲେ । ମୋର

ଉପରେ ତାଙ୍କ ସଙ୍ଗେ ସନ୍ଧ୍ୟାଟି ଭଲରେ କଟିଲା । ସେଠାରୁ ଫେରି ଖାଇପିଇ ଗୋଟାଏ ବେଳେ ଟ୍ରେନକୁ ବାହାରିଲି । (୨ । ୩ । ୧୯୫୪)

## କଣଭୁଇଁ ଆଶ୍ରମ ସ୍କୁଲର ଶୁଭଦାନ

ବାଲେଶ୍ୱରଠାରେ ପହଞ୍ଚିଲି ବେଳକୁ ଠିକ୍ ସକାଳ । ଜିଲ୍ଲାମଙ୍ଗଳ ଅଫିସର ଓ ପ୍ରଚାର ବିଭାଗର ଅଫିସର ଅପେକ୍ଷା କରିଥିଲେ । ସାଙ୍ଗେ ସାଙ୍ଗେ ସର୍କିଟ ହାଉସକୁ ଯାଇ ଗାଧୁଆ ପାଧୁଆ ସାରି ୯ଟାରେ ନୀଲଗିରିରେ ଆମର ହେଉଥିବା ଆଶ୍ରମ ଘରର ଶୁଭ ଦେଲି । ଏ ସ୍କୁଲ ଯେଉଁଠାରେ ହେଉଛି ତାହାର ନାମ କଣଭୁଇଁ । ୨୦୦।୩୦୦ ସାନ୍ତାଳ ଉପସ୍ଥିତ ଥିଲେ । ଏମାନେ ମୟୂରଭଞ୍ଜ ସାନ୍ତାଳଙ୍କଠାରୁ ଉନ୍ନତ । ଏଠାରେ ଗୋଟିଏ ନୂଆ କଥା ଦେଖିଲି—ନୂଆ ଅର୍ଥ ମୋତେ ଏହା ଜଣା ନ ଥିଲା । ନୀଲଗିରିର ସାନ୍ତାଳମାନଙ୍କର ଶିବ ଚତୁର୍ଦ୍ଦଶୀ ଗୋଟାଏ ବଡ଼ ପର୍ବ । ମାନସିକ କରି ଅନେକ ଜାଗର ଜାଳନ୍ତି । ବାଲେଶ୍ୱରରେ ବି ସେଇଆ ଦେଖିଲି । ପୁଣି ଚୁଳିଲ ପଣାସଂକ୍ରାନ୍ତି ବି ସମସ୍ତେ ମାନନ୍ତି । ନିଆଁ ରେ ଚାଲିବା ପ୍ରଥା ଏଠାରେ ଅଛି ; ଯେପରି ଆମ ଖୋର୍ଦ୍ଧା ଅଞ୍ଚଳରେ ଅଛି । ବ୍ରାହ୍ମଣ ଓ କରଣ ଏଇ ଉଭୟ ଜାତି ଛାଡ଼ିଦେଲେ ଆଉ ସମସ୍ତେ ଏ ବ୍ରତରେ ଯୋଗ ଦିଅନ୍ତି । କୌଣସି କୌଣସି ଅଞ୍ଚଳରେ ବ୍ରାହ୍ମଣ ମଧ୍ୟ ଯୋଗ ଦେଲେଣି । ନୀଲଗିରିରେ ଆମିଷ ପୂଜା ନ ହେଉଥିବା ଚଣ୍ଡି ବି ଅଛନ୍ତି ଦେଖିଲି । ଚଣ୍ଡି ମାଛ ମାଂସ ନ ଖାଉଥିବା ମୋତେ ଜଣା ନ ଥିଲା । (୩ । ୩ । ୧୯୫୪)

ସକାଳୁ (୫ । ୩ । ୫୪) ମୋ' ଅବସ୍ଥା ଭାରି ଖରାପ ହୋଇଗଲା । ସକାଳୁ ଉଠି ନିତ୍ୟକର୍ମ ସାରି କାମ ଆରମ୍ଭ କରିବାକୁ ବସୁଛି, ସାତ ମାସ ପୂର୍ବେ ପେଟକୁ ଯେପରି ମାରିଥିଲା ସେହିପରି ଆରମ୍ଭ ହେଲା । ଅସହ୍ୟ ଯନ୍ତ୍ରଣା । ସୁଧୀରବାବୁଙ୍କୁ ଡାକିଲି । ଡାକ୍ତର ଆସିଲେ । ମର୍ଫିଆ ଇଞ୍ଜେକ୍‌ସନ୍ ସାହାଯ୍ୟରେ ସ୍ଥିର ହେଲି । ଏଇଠାରୁ ଯେଉଁ ରୋଗ ଆରମ୍ଭ ହେଲା ତାହା ଅଳ୍ପ ବହୁତେ ଉତ୍କଟ ଭାବେ ମାର୍ଚ୍ଚ ମାସଯାକ ରହିଲା । ଏପ୍ରିଲ୍ ମାସରୁ ମଧ୍ୟ ୫ । ୬ ଦିନ ଚାଲିଗଲା ।

ଡାଏରି ନିୟମିତ ଲେଖିବାକୁ ସଂକଳ୍ପ କରିଥିଲି । ସେ କୁଆଡ଼େ ଗଲା । ମାସେ ପର୍ଯ୍ୟନ୍ତ ଲେଖିପାରିଲି ନାହିଁ । ମାର୍ଚ୍ଚ ମାସରେ କେତେ କାମ କରିବି ବୋଲି କଳ୍ପନା କରିଥିଲି, ତାହା ହେଲା ନାହିଁ । ଛୁଟି ନେଇଯିବାର ଉପାୟ ନ ଥିଲା । ପ୍ରଥମ କଥା, ମୁଁ ଛୁଟି ନେଇ ଯାଇଥିଲେ ସଙ୍ଗେ ସଙ୍ଗେ ଆଉ ଜଣେ ଆସି ତ୍ରିଣୀଂ ଅଫିସର ହୋଇ ଟଙ୍କା ଦ୍ରୁତଗତି କରିବାରେ ଅସୁବିଧା ହୋଇ ଆଥାନ୍ତା । ଦ୍ୱିତୀୟତଃ ମୁଁ ଯେପରି ଢଙ୍ଗରେ କାର୍ଯ୍ୟ କରେ ସେପରି ଅନ୍ୟ ଅଫିସର କରିବାକୁ ରାଜି ହୋଇ ନ ଥିଲେ ଗୁଡ଼ାଏ ଟଙ୍କା ସରେଣ୍ଡର ହୋଇ ଯାଇଥାନ୍ତା, ଯେପରି ପ୍ରତ୍ୟେକ ଡିପାର୍ଟମେଣ୍ଟରେ ହେଉଛି । ପୂର୍ବର ସ୍ୱୀକାର ଅଭିଜ୍ଞତା—ଆଉ-

ମିନିଷ୍ଟ୍ରେଟିଭ୍ ସର୍ଭିସ୍‌ରେ ନ ଆଇ ଯେଉଁ ଆଇ. ଏ. ଏସ୍. ଅଫିସରମାନେ ଆସିଛନ୍ତି ସେମାନେ ନିୟମ କାନୁନ୍‌ର ଆକ୍ଷରିକ ଅର୍ଥ କରିବାରେ ଲାଗିଛନ୍ତି, ନିଜ ଦାୟିତ୍ୱ ମୁଣ୍ଡାଇବାକୁ ଚାହାନ୍ତି ନାହାନ୍ତି । (୧୦ । ୪ । ୫୪)

## ପରିବାର ଓ ତ୍ୟାଗ

ଶଶୀ ବୋଉ ଓ ମୁଁ ଚିରଦୁଃଖୀ । ଅନ୍ୟମାନଙ୍କ କଥା ଭାବୁ ଭାବୁ ଆମର ବେଶୀ ସମୟ ଯାଉଛି । ଆମ କାର୍ଯ୍ୟ ଭାଇମାନଙ୍କ ମନକୁ ଓ ତାଙ୍କ ଭାର୍ଯ୍ୟା ଓ ପିଲାଙ୍କ ମନକୁ କପରି ଯୋଗାଇବ ଏଇ କଥା ଚିନ୍ତାରେ ଆମର ସମୟ ଯାଉଛି । ଫଳରେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି କେବେହେଲେ ନଜର ଦେଇନାହୁଁ । ନିଜ ପିଲାମାନଙ୍କର ସୁବିଧା ପ୍ରତି ମଧ୍ୟ ନଜର ଦିଆ ହୋଇନାହିଁ । (୧୨ । ୪ । ୫୪)

## ବିଭାଗୀୟ କାର୍ଯ୍ୟ ଚିନ୍ତା

ଆଜି ପଣାସଂକ୍ରାନ୍ତିକୁ ପଣ୍ଡିତେ (ପଣ୍ଡିତ ଆତ୍ମଲ ମିଶ୍ରେ) ନିମନ୍ତ୍ରଣ କରିଥିଲେ । ଗତ ୨୦ ବର୍ଷ ହେଲା ଯେତେବେଳେ କଟକରେ ଥାଏ, ତାଙ୍କ ଉତ୍ସବରେ ଯୋଗ ଦେଇଛି । ସବୁ ବର୍ଷ ଭୁବନେଶ୍ୱରରୁ ଯାଇ ହେଉ ନାହିଁ । ଆଜି ନିଶ୍ଚୟ ଯାଇଥାନ୍ତି । ଯଦି ମୋ ଦେହକୁ ଭାରି ଭୟ ଲାଗି ନ ଥାନ୍ତା । ନୂଆ ହୋଇ ଦେହ ପାଇଛି, ତାହାରି ସହିସଂଭାଳ ବ୍ୟବହାର କରିବାକୁ ଠିକ୍ କରିଛି । ସାଧାରଣ କାର୍ଯ୍ୟରେ ଦେହକୁ ବିପନ୍ନ କରି ମଧ୍ୟ ଯୋଗ ଦେବି, କିନ୍ତୁ ବ୍ୟକ୍ତିଗତ କାର୍ଯ୍ୟ ବା ମଉଜ ମଜଲିସରେ ଦେହ ଖରାପ ହେବାର ଆଶଙ୍କା ଥିଲେ ମାତିବି ନାହିଁ । ଏଇ ଗୋଟିଏ ନୀତି ଠିକ୍ ଭାବରେ ପାଳି ପାରିଲେ, ଦେହର ଗୋଳମାଳରୁ ବୋଧ ହୁଏ ନିଷ୍କୃତି ମିଳିବ ।

ନୂଆ ବର୍ଷ ପାଇଁ ଆଦିବାସୀ ଓ ଗ୍ରାମ୍ୟମଙ୍ଗଳ ବିଭାଗ ପାଇଁ ବହୁତ ଟଙ୍କା ମିଳିଛି । ପ୍ରଚାର ବିଭାଗ ପାଇଁ ମଧ୍ୟ ପୂର୍ବ ବର୍ଷ ଅପେକ୍ଷା ଅଧିକ ମିଳିଛି, ଆହୁରି ମିଳିବାର ବି ଆଶା ଅଛି । ଏ ଟଙ୍କା ସବୁ କପରି ଠିକ୍ ଭାବେ ଖର୍ଚ୍ଚ ହେବ ତାହା ଗୋଟିଏ ପ୍ରଧାନ ସମସ୍ୟା । କର୍ମୀମାନେ ଟଙ୍କା ଯଦି ନ ଖାଇଲେ ତେବେ ଯଥେଷ୍ଟ ହେଲା ବୋଲି ସାଧାରଣତଃ ମନେ କରାଯାଉଛି । କିନ୍ତୁ ସେତିକି ତ ଯଥେଷ୍ଟ ନୁହେଁ । ସାଧୁତା ଦରକାର, କିନ୍ତୁ ତା' ସଙ୍ଗେ, ହୁଏତ ତା' ଅପେକ୍ଷା ଅଧିକ ଦରକାର କାର୍ଯ୍ୟକୁଶଳତା ଓ ନିଷ୍ଠା । ମୋ କର୍ମୀମାନଙ୍କ ଭିତରେ ସେଇ ଭାବ କପରି ସ୍ଥିର ରହିବ ସେଥିପାଇଁ ମୋ ବ୍ୟକ୍ତିଗତ ଉଦ୍ୟମ ବିଶେଷ ଦରକାର । ଏଥର ଏଣିକି ବେଶୀ ଗସ୍ତ କରି ପାରିବି ନାହିଁ । କର୍ମୀମାନଙ୍କୁ ମଝିରେ ମଝିରେ ଡକାଇ ସେଥିର ଆଲୋଚନା କଲେ ଭଲ ହେବ । (୧୩ । ୪ । ୧୯୫୪)

## ମନ୍ତ୍ରୀଙ୍କ ବ୍ୟକ୍ତିତ୍ୱ

ଆଜ ଠିକ୍ ଏଇ ଭଳିଆ କିଛି କଥା ଲେଖିଥିଲେ ଆମ ସରକାର ପକ୍ଷରେ । ମନ୍ତ୍ରୀଙ୍କର ନିଜ ମାନ ଓ ମନ ଉପରେ ଏତେ ନଜର ଅଛି ଯେ ସେ ନିଜ ବ୍ୟକ୍ତିତ୍ୱ ଆଉ କାହାକୁ ଶ୍ରଦ୍ଧା କରିବା ପ୍ରଶ୍ନ ଉଠୁନାହିଁ । ଅଫିସରମାନେ ଯେବା କାମ କରନ୍ତି, ତାଙ୍କୁ କାମ କରାଇବାର ଯୋଗ୍ୟତା ମନ୍ତ୍ରୀମାନଙ୍କଠାରୁ ଆଶାକରାଯାଇ ନ ପାରେ । ସେମାନେ ନିଜ ଲୋକପ୍ରିୟତା ଯୋଗୁଁ ମନ୍ତ୍ରୀ ହୋଇଛନ୍ତି, ଯୋଗ୍ୟତା ଯୋଗୁଁ ନୁହେଁ । ମନ୍ତ୍ରୀତ୍ୱର ମୋହ ପ୍ରଥମ ଦୁଇତିନିବର୍ଷ ଯାଉଛି, ଶେଷ ଆଡ଼କୁ ଏକମାତ୍ର ଚିନ୍ତା ହେଉଛି, ଆର ପାଞ୍ଚ ବର୍ଷକୁ କିପରି ରହିବେ । ଆମ ଓଡ଼ିଶାରେ ଯେଉଁମାନେ ମନ୍ତ୍ରୀ ହୋଇଛନ୍ତି ବା ଆସନ୍ତା ୫ ବର୍ଷରେ ହେବା ସମ୍ଭାବନା ସେମାନେ ବଡ଼ ଅଲିକିଆ ଲୋକ । ଗସ୍ତ ଖର୍ଚ୍ଚ ଆଡ଼କୁ ସମସ୍ତଙ୍କ ମନ ଯିବା ବିଚିତ୍ର ନୁହେଁ । ପ୍ରଥମ ଦର୍ପରେ ମଣିଷ ଚିହ୍ନିବାରେ ଅନ୍ଧୁଆ ହେଉଛି । ଜଣେ ଜଣେ ମନ୍ତ୍ରୀ ବିଦେଶୀ ଲୋକଙ୍କର ମୋହରେ ପଡ଼ିଯାଉଛନ୍ତି । ସେମାନଙ୍କ ଚାଲିଚଳଣ, ତାଙ୍କ ସ୍ତ୍ରୀମାନଙ୍କର ବେଶଭୂଷା ସେମାନଙ୍କୁ ଏତେ ମୁଗ୍ଧ କରୁଛି ଯେ, ସେ ମୋହ ଭାଙ୍ଗିଲା ବେଳକୁ ଅସଲ ଲୋକଙ୍କୁ ଆପଣାର କରିବାକୁ ଲାଜ ମାଡ଼ୁଛି ।

ଅନ୍ୟ କଥା କ'ଣ କହିବା, ଆମ ମୁଖ୍ୟ ମନ୍ତ୍ରୀଙ୍କୁ ଏ ମୋହ ଛାଡ଼ୁନାହିଁ । ଯେଉଁ ଅଫିସରମାନେ ବିଲାତି ଆଦବକାଇଦାରେ ଅଛନ୍ତି, ସେମାନଙ୍କୁ ସେ ପଛରେ ଥଟ୍ଟା କରୁଛନ୍ତି । ମତେ ଥରେ କହିଥିଲେ ବିଲାତି ପୋଷାକ ପରି ବିଷୟରେ ସମାଲୋଚନା କରି ଲେଖା ପଢ଼ି କରିବାକୁ । ତାଙ୍କ ନଜର ଚିନ୍ତାଧାରା ଠିକ୍ ଅଛି । କିନ୍ତୁ ଷାଠିଏ ଶ୍ଳୋକ ପଢ଼ିଥିବା ଶୁଣି, ଝିଅଡ଼ି ଦେଖିଲେ ଅସୁବିଧା ହେଲାପରି ସେ ମୁହଁ ଉପରେ ସେ ଅଫିସରମାନଙ୍କୁ ପଦେ କହି ପାରୁନାହାନ୍ତି । ବରଂ ସେମାନଙ୍କଦ୍ୱାରା ଚାଳିତ ହେଉଛନ୍ତି । ସେଥିରୁ ଗୋଟିଏ ଉଦାହରଣ । ୩୦ ବର୍ଷର ଟୋକା, ଏ ଦେଶକୁ ଜାଣିବାକୁ କେବେ ଚେଷ୍ଟା କରିନାହିଁ । ଉପର ମହଲର ରାଜନୀତିରେ ଟିକିଏ ପଶିଛି । ଅଫିସର ଓ ମନ୍ତ୍ରୀମାନଙ୍କ କାମରେ ମୁଖ୍ୟ ମନ୍ତ୍ରୀଙ୍କ ଆଗରେ ଚୁଗୁଲି କରି ପାରୁଛି । ସେଥିକରେ ସେ ଭଲ । ମୁଖ୍ୟମନ୍ତ୍ରୀଙ୍କର ତା'ଉପରେ ବିଶ୍ୱାସ । ଏଣେ ସେ ଭଦ୍ର ଲୋକଟି ସ୍ତ୍ରୀ ଲୋକଙ୍କ ପରି ମୁହଁରେ ପାଉଡର ମାରେ । ଅନ୍ୟମାନେ— ଭୈରବବାବୁ, ନୀଳମଣି ରାଉତରାୟ ତାଙ୍କ ସେକ୍ରେଟାରୀମାନଙ୍କର ଚାକର ପରି ଚାଲୁଛନ୍ତି । ଏଇମାନଙ୍କୁ ଧରି ଦେଶଟା କେତେ ଦିନ ଚାଲିବ ! ରାଜନୀତି ଏପରି ହୋଇଛି, ଦଳର ପ୍ରଭାବ ସହଜେ ଯିବ ନାହିଁ । ଗୁଡ଼ାଏ ସ୍ୱାର୍ଥପର ଲୋକ ଉପରେ ରହି ଯେଉଁ ଆଡ଼େ ମୋଡ଼ୁଛନ୍ତି, ଦେଶ ସେଇ ଆଡ଼େ ଚାଲୁଛି । (୧୫ । ୪ । ୧୯୫୪)

## ଶଶୀବୋଉ ଓ ପିଲାଏ

ଶଶୀ ବୋଉ ସଙ୍ଗେ ଆଜ ପୁଣି ପଡ଼ିଲା ସେଇ ପୁରୁଣା କଥା—ପିଲାଙ୍କୁ କିପରି ଚଳାଇବା । ମୁଁ କହୁଛି ମୋ ମତ ଠିକ୍, ସେ କହୁଛି ତା'ର କଥା ଠିକ୍ । ସେ କହୁଛି ଯେ ତା ବୋଉର ଯେମିତି ଝିଅ ଥିଲା, ତା' ଝିଅ ପୁଅ ସେମିତି ହେବେ । ସତେ ଯେମିତ

ଗତ ୩୦ ବର୍ଷହେଁ କରୁ ନୁହେଁ । ତା'ର ସେଇ ସ୍ୱାମୀ ନିଜ ପାଖ ବୃଣୀ ତାକୁ ବନ୍ଧି ହୋଇଥିଲା, ସେ ସେ ଆଜି ସେକ୍ରେଟାରୀ ହୋଇଥିବା ଚନ୍ଦ୍ରମଣି ମିଶ୍ର ଏକଥା ଆମେ ସିନା ବସ୍ତୁରୁଛେ ଦମୟନ୍ତୀ କ'ଣ ବୁଝୁଛନ୍ତି ? ପିଲାଙ୍କ ମନରେ ଅନ୍ୟ ସମସ୍ତଙ୍କ ମତର ପ୍ରଭାବ ପଡ଼ିଥିବ ନା ନାହିଁ ? ସେପରି ମତ ପୋଷଣ କରିବାକୁ ଚନ୍ଦ୍ରର ବୟସ ହେଲଣି କି ନାହିଁ । ଆଜିକାଲି ପିଲା ୧୫/୧୭ ବର୍ଷରେ ବାପାଙ୍କ ବିରୋଧୀ ହେଉଛନ୍ତି କି ନାହିଁ ? ଆମ ଆଗ ପିଲା ଘୋଡ଼ାଙ୍କୁ ଗେଲବସରରେ ଚଳାଇଥିଲେ । ଆଜିକାଲି ଢଙ୍ଗ ବଦଳିଛି ନା ନାହିଁ ? ଏ ସବୁ କଥା ତା'ର ମନରେ ରହୁନାହିଁ । ମୋ କଥା ସିନା ଆଉ ଦମୟନ୍ତୀଙ୍କୁ ବେଦ, ଶଶୀ ବୋଉ ମୋ କଥାକୁ ବଡ଼ ଅଳିକେ ଉଡ଼ାଇ ଦିଏ । (୧୭ । ୪ । ୧୯୫୪)

## ମାଛ ଓ ଚଣ୍ଡିପାଠ

ଆଜି ସାତଟା ବେଳେ ଇଅଁଙ୍କ ଘରୁ ବାହାରିଲା ବେଳକୁ ଚନ୍ଦ୍ର ସାଗରରୁ ଗୋଟିଏ ୫ ସେରିଆ ମାଛ କଣେ ଆଣି ପହଞ୍ଚାଇ ଦେଲେ । ସାଙ୍ଗେ ସାଙ୍ଗେ ଚଣ୍ଡୀ ଗୁଣିବାର ବ୍ୟବସ୍ଥା ହେଲା । ୧୫ ଜଣ ବନ୍ଧୁଙ୍କୁ ନିମନ୍ତ୍ରଣ ଦେଲି । ଭାଗ୍ୟକୁ ପଣ୍ଡିତ ଜଗନ୍ନାଥ ରଥଙ୍କୁ ପାଇଲି । ଇଅଁଙ୍କ ପୂଜା କରିବାକୁ—ସେ ଇଅଁଙ୍କ ଭାର ନେଲେ, ମୁଁ ଅତିଥିମାନଙ୍କର ଭାର ନେଲି । ଇଅଁଙ୍କ ପୂଜା କରିବାକୁ ମୁଁ ବାହାରେ ନାହିଁ, କାରଣ ମୋର ଉପର ମନେ ହୁଏ ମୁଁ ପ୍ରକୃତ ଭାବରେ ତାଙ୍କୁ ଉପାସନା କରୁନାହିଁ । ମୋ ସ୍ତ୍ରୀର ପ୍ରକୃତ ବିଶ୍ୱାସ ନିଷ୍ଠା ଅଛି । ମୁଁ ତାକୁ ପୂଜା କରିବାକୁ ଦିଏ । ଯେଉଁଦିନ ଜଗନ୍ନାଥ ରଥଙ୍କ ପରି ଲୋକେ ମିଳିଯାନ୍ତି, ସେଦିନ ଇଅଁଙ୍କ ବିଷୟରେ କହନ୍ତି; ସେ ଯେପରି ଲୋକଙ୍କୁ ସୁଖ ପାଆନ୍ତି, ତାଙ୍କୁ ପାଇ ଆମକୁ କ'ଣ ଲୋଡ଼ିବେ ? ଆମେ Safe distance ରେ ରହୁ । କାର୍ଯ୍ୟଟି ଭଲରେ ବଢ଼ିଗଲା । ମୋତେ କାପରି ଜଣା ପଡ଼ିଲା, ଯୁଗ ଗୋଟିଏ ନୂଆ ଅଧ୍ୟାୟ ଆଜିଠାରୁ ଆରମ୍ଭ ହେଲା । ( ୨୦ । ୪ । ୧୯୫୪ )

## ନବବାବୁଙ୍କ ଓଡ଼ିଆରେ ଫାଇଲ କାମ

କାଲି ତାଙ୍କ ସଙ୍ଗେ ହୋଇଥିବା କଥାବାର୍ତ୍ତାରୁ ସ୍ପଷ୍ଟ ଜଣାପଡ଼ିଲା, ସେ ଓ ତାଙ୍କ ପରି ଅନ୍ୟ ଅଣଓଡ଼ିଆ ଅଫିସରମାନେ ଚାହୁଁନାହାନ୍ତି ନାହିଁ ଯେ ଶୀଘ୍ର ଓଡ଼ିଆ ଚଳୁ । ସେମାନେ ଅଗଣ ହୋଇଯିବେ । ଓଡ଼ିଆ ଚଳିଲେ ସମସ୍ତଙ୍କର ଅସଲ ଯୋଗ୍ୟତା ଧରା ପଡ଼ିଯିବ । ବର୍ତ୍ତମାନ ଇଂରେଜି ଭାଷା ଘଣ୍ଟପର ମୂର୍ଖଙ୍କ ମୂର୍ଖତାକୁ ଘୋଡ଼ାଇ ରଖିଛି । କାଲି ମୁଖ୍ୟ-ମନ୍ତ୍ରୀଙ୍କ ସଙ୍ଗେ ଏ ବିଷୟ ଆଲୋଚନା କଲି । ବୋଧହୁଏ ସେ ମୋ ମତକୁ ପସନ୍ଦ କଲେ; ଓ ତାଙ୍କ କଥାରୁ ଜଣା ପଡ଼ିଲା, ସେ ନିଜେ ତାଙ୍କ ଡିପାର୍ଟମେଣ୍ଟମାନଙ୍କରେ ଓଡ଼ିଆ ଆରମ୍ଭ କରିଦେବେ ।

ରାତିରେ ଦେଖିଲି ମୋ ଅନୁମାନ ଠିକ । ସେ ଆଜି ସେକ୍ରେଟାରିଏଟ୍ ଫାଇଲରେ ଓଡ଼ିଆରେ ସୁନ୍ଦର ନୋଟିଏ ଦେଇଛନ୍ତି । ବେଲେ ଦେବେ ନବ ବାବୁଙ୍କ ମନ ଠିକ

ସତ୍ତାରେ ରହୁଛି । କିନ୍ତୁ ମନର ବଳ ଅଭାବରୁ ଶରୀରରେ ଦୃଢ଼ତା ରହୁନାହିଁ । ଧ୍ରୁବତ ଲକ୍ଷ୍ୟ ନ ଥିବାରୁ ଏପରି ହେଉଛି । ( ୨୩ । ୪ । ୧୯୭୪ )

**ଧାର ଦଶ ହଜାର ଟପିଲା :**

ଆଜି ଆମ ଅଭାବ କଷ୍ଟସ୍ଥ ଶଶୀବୋଉ ସଙ୍ଗେ ଆଲୋଚନା କରୁଥିଲି । ଏଣୁ ତେଣୁ ହୋଇ ପ୍ରାୟ ଦଶ ହଜାର ଧାର ହୋଇ ଗଲାଣି । ମାସକୁ ଯାହା ମିଳୁଛି ସେଥିରୁ ସବୁ ଟଙ୍କା ୨ଶହ ବଳୁଥାନ୍ତା, ତାହାହେଲେ କରଜ ଆସ୍ତେ ଆସ୍ତେ ସୁଝି ହୋଇଯିବ ବୋଲି ଆଶା ହୁଥନ୍ତା । କିନ୍ତୁ ତାହା ତ ହେଉନାହିଁ । କାହିଁ କାହିଁ ଖର୍ଚ୍ଚ ବଢ଼ି ବଢ଼ି ଯାଉଛି । ଆମ ଘରେ ଖାଇବା ଖର୍ଚ୍ଚକୁ ଛାଡ଼ିଦେଲେ ଆଉ କୌଣସି ଖର୍ଚ୍ଚ ନାହିଁ । ଖାଲି ଆମେ ଖାଇଲେ ସରନ୍ତା ନାହିଁ । କିନ୍ତୁ ଏପରି କୌଣସି ଦିନ ଯାଉନାହିଁ, ଯେବେ ଅତିଥି ନ ଆସୁଛନ୍ତି । ଆଜି ଅଛନ୍ତି ତିନିଜଣ, ବୈଦ୍ୟନାଥଙ୍କ ଗୁଡ଼ା । ବୈଦ୍ୟନାଥ ବା ଅନ୍ୟ ଜ୍ୱାଇଁମାନେ ଆସିଲେତ, ଯା'ନ୍ତୁ ବୋଲି ମନ ହୁଏ ନାହିଁ । ଅନ୍ୟ ଯେ ବାହାର ଲୋକ ଆସୁଛନ୍ତି, ସେ ମଧ୍ୟ ଯା'ନ୍ତୁ ବୋଲି ମୋର ମନ ନୁହେଁ । ସୋମନାଥ ରଥେ କାଲିଠାରୁ ଯିବାକୁ ଲଗେଇଲେଣି । ତାଙ୍କୁ ଅଟକାଇଛି କାଲି ଗାଁକୁ ଯିବା ବୋଲି । ଗୋବିନ୍ଦ ପଟ୍ଟନାୟକଙ୍କୁ ଡକାଇ ଆଣିଥିଲି । ବହୁତ ବିଚାର ବିମର୍ଶ ସ୍ଥିର କଲି, ଆୟ ବଢ଼ାଇବାକୁ ଚେଷ୍ଟା କରିବ ; ବହି ଲେଖି କିଛି ପଇସା ଉପାର୍ଜନ କରି କରଜ ସୁଝିବ । ନ ହେଲେ ପ୍ରୋଭିଡେଣ୍ଟ୍ ଫଣ୍ଡ୍ ଉପରେ ହାତ ପକାଇବାକୁ ହେବ । ( ୨୪ । ୪ । ୧୯୭୪ )

**୩ ମାଣ ଜମି ୩ହଜାର ଧାରରେ କିଣିଲି :**

ଏ ବର୍ଷ ନଅ ବର୍ଷରେ କଥାରେ ପଡ଼ି ଜମି ଖଣ୍ଡିଏ କିଣିବାକୁ ହଁ କରି ଦେଲି । ଗାଁରେ ୯ ମାଣ ଜମି ବିକା ହେଉଥିଲା । ବିଷୟକୁ ପାଇବ । ମୋଟ ୩ ହଜାର ଟଙ୍କା । ଧାର କରି ଦେଇତକ କିଣିଲି, ଶଶୀ ବୋଉ ନାମରେ । ତା'ର ବହୁତ ଟଙ୍କା ମୁଁ ମଝିରେ ମଝିରେ ନେଇ ଯାଇଛି, ଫେରାଇ ନାହିଁ । ବର୍ତ୍ତମାନ ତା'ର ସଞ୍ଚୟ କରିବା ମନୋବୃତ୍ତି ଏକାବେଳକେ ଛାଡ଼ି ଯାଇଛି । ଯାହା ହେଉ ଏ ଜମିତକ କିଣି ତା'ର ଋଣ ଶୋଧ କରି ଦେଇଛି । ସ୍ୱୀକାର ମିଶାଇ ଧାର ସର୍ବମୋଟ ହୋଇଛି ଦଶ ହଜାର । ପୁଣି କାଲି ସଦାଶିବ କରେଇଙ୍କ ପୁଅର ମୁହଁମଞ୍ଚରେ ଆଉ ୫ ଶହ ଟଙ୍କାରେ ଖଣ୍ଡିଏ ଜମି କିଣିବାକୁ ହଁ ଭରି ଦେଇ ଆସିଲି । ଆର ମାସରେ ଦରମା ମିଳିବା ପରେ ଏ ଖଣ୍ଡ କିଣିବାକୁ ହେବ । ଶଶୀ ବୋଉ ଓ ରମା ବୋଉଙ୍କ ନାମରେ ଏହା କିଣିବା ପାଇଁ କହି ଦେଇ ଆସିଛି । ଶଶୀ ବୋଉକୁ କହିନାହିଁ । ରମା ବୋଉକୁ ବି କହି ନାହିଁ । ଦେଖାଯାଉ କଣ ପରିବୁଛି । ଆମ ଧାନ ଆମ ପିଲାଙ୍କୁ ଅଣ୍ଟିବା ପାଇଁ ଜମି କିଣିବାକୁ ମୋର ଇଚ୍ଛା । ଗଲକୁଲଙ୍କ ପକ୍ଷରୁ ଟିକିଏ ସହଯୋଗ ହେଲେ ବହୁତ କାମ ହୋଇ ଯାଆନ୍ତା । ( ୨୭ । ୪ । ୧୯୭୪ )

## ତା' ଆଢ଼ୁଆଳରେ

ପଣ୍ଡିତଙ୍କ ପାଇଁ ଚାଉଳ ଆଣିବାକୁ ଆଜି ଟୁନୁ ମଟର ନେଇ ଗଲା ଯେ, ରାତି ୧୨ଟା ପର୍ଯ୍ୟନ୍ତ ଆସିଲା ନାହିଁ । ନିଶ୍ଚିନ୍ତ ହୋଇ ରହି ପାରିଲି ନାହିଁ । ତା' ବୋଉ ମୋତେ ବୋଧ ଦେଉଥାଏ । ଏ କଥା ଆଗ ଯେତେବେଳେ ମୁଁ ମନରେ ଭାବେ, ଭାରି ଖରାପ ଲାଗେ । ମାଇକିନିଆଟେ ମୋଠାରୁ ବେଶୀ ଟାଣ ହେବ —ଏଥି ପାଇଁ ଲାଜ ବି ମାଡ଼େ । କ୍ରମେ ଦଢ଼ ସୁଦ୍ଧା ହୋଇଗଲା । ଏବେ ତ ମୋ'ର ଭାରି ସନ୍ତୋଷ ଯେ ମୁଁ ତା'ର ଧୈର୍ଯ୍ୟ ଓ ଟାଣ ପଛରେ ଆଢ଼ୁଆଳରେ ରହି ଦାଣ୍ଡକୁ ଟାଣ ମଣିଷ ବୋଲି ଦେଖାଇ ହୁଏ । ଶଶୀ ଦେଇକୁ ଏଇ କଥା ଜଣା ; ସେ ତ ଅନେକ ଥର କହେ ମୁଁ ଦାଣ୍ଡକୁ ବାଘ, ଘରେ ମୂଷା । ଆଜି ସେଇଆ ହେଲା । ମୁଁ ଟୁନୁକୁ ଖୋଜିବାକୁ ମଟରରେ ମୋ ସାଙ୍ଗରେ ଯିବାକୁ ଡ୍ରାଇଭର ଖୋଜିଲି । ସେ ନିଶ୍ଚିନ୍ତ ଥାଏ ଯେ, ଟୁନୁ କାଲି ଆସିବାକୁ ରହିଲା, କୌଣସି ଅସୁବିଧା ଯୋଗୁଁ । ମୁଁ ଭାବୁଥାଏ ସେ ବୋଧହୁଏ ବାଟରେ ଅଟକି ଯାଇଛି ; ମଟର ବିଗିଡ଼ି ଯିବାରୁ । ସେ ଆକ୍‌ସିଡେଣ୍ଟରେ ପଡ଼ିବା ଆଶଙ୍କା ମଧ୍ୟ ଖୁବ୍ ମନରେ ଥାଏ । ଯାହା ହେଉ ସ୍ତ୍ରୀର ସାହସରେ ସାହାସୀ ହୋଇ ମୁଁ ଶୋଇ ପଡ଼ିଲି । ସକାଳୁ ଉଠି ଟୁନୁ ବିଷୟରେ ବ୍ୟସ୍ତ ହେବାକୁ ଆରମ୍ଭ କଲା ବେଳକୁ ସେ ଆସି ପହଞ୍ଚିଲା । (୨ । ୫ । ୧୯୫୪)

ନୂଆଗାଁ ଆଶ୍ରମ ସ୍କୁଲର ଭାନୁ କ୍ୟାପିଟେଲ ହାଇ ସ୍କୁଲରେ ତା' ଶ୍ରେଣୀରେ ପ୍ରଥମ ହୋଇଛି ବୋଲି ହେଡ୍ ମାଷ୍ଟର ଗଣେଶ୍ୱର ମିଶ୍ରେ ଆଜି କହିଲେ । ମତେ ବଡ଼ ଆନନ୍ଦ ଲାଗିଲା । ସତେ ଯେପରି ମୋ' ପୁଅ ଭଲ କରିଛି । ଭାନୁର ଗୋଟିଏ କଠିନ ରୋଗ ହୋଇଛି ; ଯେତେ ଖର୍ଚ୍ଚ ହେଉ ପଛେ ତାକୁ ଯେ କୌଣସି ମତେ ଭଲ କରିବାକୁ ହେବ । ଏ ବର୍ଷ ତା' ପିଛା ତିନି ଶହ ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ ହେବ, ହେଉ ପଛେ ; ଭାନୁ ଉପରେ ଯାହା ଖର୍ଚ୍ଚ ହେବ ତାହା ବୃଥା ନୁହେଁ । ସେ ଆଦିବାସୀଙ୍କର ଇଜ୍ଜତ ରଖିବ । ଆଜି ଯାଏଁ କୌଣସି ଆଦିବାସୀ ପିଲା ତା' କ୍ଲାସରେ ପ୍ରଥମ ହୋଇଥିବାର ମୋତେ ଜଣା ନାହିଁ । ଆଶ୍ରମ ସ୍କୁଲ ଶିକ୍ଷାର ଟେକ, ଭାନୁ ଓ ତା'ର ସଙ୍ଗୀ, ଯେଉଁମାନେ ଭୁବନେଶ୍ୱରରେ ପଢ଼ୁଛନ୍ତି, ସେମାନେ ରଖିବେ ବୋଲି ମୋର ବିଶ୍ୱାସ ।

କିନ୍ତୁ ଭୁବନେଶ୍ୱରରେ ଯେଉଁ ଆଶ୍ରମ ସ୍କୁଲ ପିଲାମାନେ ଅଛନ୍ତି, ସେମାନଙ୍କର ଗୋଟିଏ ତ୍ରୁଟି ନେଇ ମୁଁ ବଡ଼ ଚିନ୍ତିତ । ଆଶ୍ରମରେ ଯାହା ଶିକ୍ଷା ଦିଆ ଯାଉଥିଲା, ତାହା ତାଙ୍କଠାରେ ଆଉ କିଛି ନାହିଁ । ସେମାନେ ବଗିଚା କରୁଥିଲେ ହାଡ଼ଭଙ୍ଗା ପରିଶ୍ରମ କରୁଥିଲେ । ବର୍ତ୍ତମାନ ତାଙ୍କୁ ପରିଶ୍ରମ କରିବାକୁ ଲାଜ ମାଡ଼ୁଛି । ସହରବାସୀଙ୍କୁ ଯେତେ ଲାଜ ମାଡ଼ୁଛି, ତାହିଁରୁ ବେଶୀ । ସହରି ପିଲେ ଅସମର୍ଥ ମାତ୍ର ଆମ ପିଲେ ପରିଶ୍ରମ କରି ପାରନ୍ତେ ; ତାଙ୍କୁ ଲଜ୍ଜା ଗ୍ରାସ କରିଛି । ସେମାନେ ସହର ଲୋକଙ୍କ ଢଙ୍ଗ ରଙ୍ଗ ଦେଖି ଆଗ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଶେଷରେ ଗଡ଼ୁଳିକା ପ୍ରବାହରେ ଚାଲିବାକୁ ଠିକ୍ ପନ୍ଥା ବୋଲି ଧରି ନେଇଛନ୍ତି । ବରଂ ଆମ ପିଲାଙ୍କଠାରୁ ବେଶୀ ବାବୁ ହୋଇ ଯାଇଛନ୍ତି, ଏଇ ଭୟରେ ଯେ,

ତାଙ୍କର ବାକ୍ପଟୁତ୍ୱରେ କେଜାଣି ଆଖ ଆସିପାରେ । କେଜାଣି ସେମାନେ ମାତବ୍ବର ବୋଲି ଲୋକେ ଜାଣି ଯିବେ । ନିଜର ବାପ ଗୋଟିଏ ବାପଙ୍କ ଉପରେ ଆଉ ତାଙ୍କର ଆସ୍ଥା ନାହିଁ । ପ୍ରାଚ୍ୟପ୍ରାପ୍ତସୃଷ୍ଟି ଭଳି କଣ ଭିତରେ ମନେ କରୁଥିବେ, କପଣ ହେଲେ ତାଙ୍କ ବାପଙ୍କ କଥା ଏଠାରେ କେହି ନ ଜାଣନ୍ତେ ! ଆଦିବାସୀ ମଙ୍ଗଳ ନାମରେ ଏଇଠାରେ ଅମଙ୍ଗଳ ! (୧୬ । ୭ । ୬୪)

**ହିନ୍ଦୁ ଧର୍ମର ହାଟୁଆ ମାର୍ଫତ୍‌ଦାର :**

ମୋର ବିଶ୍ୱାସ ଏଇ ଭିତରେ ଶ୍ରେଷ୍ଠ ଓ ନୀଚ ଜାତି ସମସ୍ୟାକୁ ନ ଦେଖିଲେ ଆଖିକୁ ଦିଶିଲା ପରି କାର୍ଯ୍ୟ ହେବ ନାହିଁ । ଖାଲି ଯେ ଅସ୍ପୃଶ୍ୟତା ଆମ ଶାସ୍ତ୍ର ଦୃଷ୍ଟିରେ ଗର୍ହିତ ତାହା ନୁହେଁ । ଭାରତୀୟ ସଂସ୍କୃତି ବୋଲି ଆମେ ଆଜି ଯାହାକୁ ଦେଖାଇ ବଡ଼େଇ କରୁଥାଉଁ, ତାହା ଉଚ୍ଚ ଜାତିମାନଙ୍କ ଭିତରେ ନାହିଁ । ହାଟୁଆ ଲୋକେ, ଆଦିବାସୀ ଓ ହରିଜନମାନେ ବର୍ତ୍ତମାନ ତାହାର ମାର୍ଫତ୍‌ଦାର । ସେଇମାନଙ୍କ ସଙ୍ଗଠନରେ ହିଁ ଭାରତର ଉନ୍ନତି ହେବ ; ଭାରତ ତା'ର ବିଶିଷ୍ଟତା ରଖି ପାରିବ । ଉଚ୍ଚ ଶ୍ରେଣୀର ଲୋକଙ୍କର ଜୀବନ ଆଦର୍ଶ କଳଙ୍କିତ ହୋଇଛି—ସେମାନେ ଭାରତର ବାହାରକୁ ଚାହିଁଛନ୍ତି, ମୁକ୍ତି ପାଇଁ । ଇଂରେଜ ସଭ୍ୟତାର ମୋହ ଯେ ହାଟୁଆ, ଆଦିବାସୀ ଓ ହରିଜନଙ୍କୁ ଗ୍ରାସ କରିନାହିଁ । ଏହା ଆମର ଗୋଟିଏ ସୌଭାଗ୍ୟ । ଏହି ସୌଭାଗ୍ୟକୁ ବୁଝି ତାହାର ଫାଇଦା ଉଠାଇବା ବର୍ତ୍ତମାନ ଦେଶର କର୍ତ୍ତବ୍ୟ ବୋଲି ମୋର ମନେ ହେଉଛି । ସମସ୍ତେ ଏଇ ଦୃଷ୍ଟିରେ ସମସ୍ୟାଟିକୁ ହଠାତ୍ ଦେଖିବେ ବୋଲି ବିଶ୍ୱାସ ହେଉ ନାହିଁ । ଏଥିରେ କିନ୍ତୁ ତରତର ହେଲେ ଚାଲିବ ନାହିଁ । ଏପରି ଗୋଟିଏ ସମସ୍ୟାର ଜାଦୁବିଦ୍ୟା ପରି ସମାଧାନ ହୋଇ ପାରିବ ନାହିଁ । ସମୟ ଲାଗିବ । ଅଧ୍ୟବସାୟ ଦରକାର ହେବ । କିନ୍ତୁ ଉଦ୍ୟମରେ ଗ୍ରାମ ଗହଳର ପୂର୍ଣ୍ଣ ସହଯୋଗ ମିଳିବ ବୋଲି ମୋର ଆଶା । ସହରରେ କୌଣସି କଥା ଚେର ଧରୁନାହିଁ । କିନ୍ତୁ ମଫସଲର ଜଳବାୟୁ ଭଲ ଅଛି । ( ୨୩ । ୭ । ୧୯୬୪ )

**ପଣ୍ଡିତମାନଙ୍କ ସହ ରାଜନୀତି ଅସମ୍ଭବ :**

ଆଜି ସଂଧ୍ୟାବେଳେ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଦେଖା ହେଲା । ନାନା ବିଷୟରେ ଆଲୋଚନା ହେଲା । ମନେ ହେଲା ସତେ ଯେପରି ସେ ମୋ କାମକୁ ପସନ୍ଦ କରୁଛନ୍ତି ଓ ମୋର ସହଯୋଗ ଚାହୁଁଛନ୍ତି । କିନ୍ତୁ ସେ କଥା ତାଙ୍କ ମୁହଁରୁ ଫିଟି ବାହାରିବାକୁ କଷ୍ଟ ହେଉଛି । ମୋ ସଙ୍ଗେ ଅତୀତରେ ଯେଉଁ ବିରୋଧ ଥିଲା ତାହାର ଛାପ ତାଙ୍କ ଉପରେ ପଡ଼ିଥିଲା ପରି ମନେ ହୁଏ । ପଡ଼ିବାର କଥା । ଅନେକ ସମୟରେ ମୁଁ ଭାବେ ନବକୃଷ୍ଣ ଚୌଧୁରୀଙ୍କ ବିରୁଦ୍ଧରେ ମୁଁ ପୂର୍ବେ ଥିଲେ ମଧ୍ୟ, ସେ ବର୍ତ୍ତମାନ ମୋତେ ସଙ୍ଗରେ ରଖିଛନ୍ତି, ପୂର୍ଣ୍ଣ ବିଶ୍ୱାସ ନ କରୁଥିଲେ ମଧ୍ୟ । କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ବିରୁଦ୍ଧରେ ମୁଁ କାୟ ମନୋବାକ୍ୟରେ କେବେ ବିରୋଧ କରି ନ ଥିଲେ ମଧ୍ୟ ସେ ଅତି ଅଶୋଭନୀୟ ଭାବରେ ମୋ ବିରୁଦ୍ଧରେ ଯାଉଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ବିଶ୍ୱାସରେ ବିଷ ଦେଉଥିଲେ । ସେମାନଙ୍କ ତୁଳନାରେ ନବବାବୁ ଓ ମହତାବ୍ ଭଦ୍ରଲୋକ ବୋଲି କହିବାକୁ ହେବ ।

ନବବାବୁ ଓ ବନମାଳୀ ପଟ୍ଟନାୟକ ଆଜି ହରିଜନ ମେଳାକୁ ଆସିଥିଲେ ଓ ଘଣ୍ଟେ-ଖଣ୍ଡେ ରହିଲେ । ନବବାବୁଙ୍କୁ ବକ୍ତୃତା ଦେବାକୁ ଅନୁରୋଧ କଲି, ସେ ନାହିଁ କଲେ । ଆଜି ଆଦୌ ବକ୍ତୃତା ନ ହୋଇ ଖାଲି ନୃତ୍ୟଗୀତ ଚାଲିଲା ।

ଜଗନ୍ନାଥ ରଥେ ତାଙ୍କ ଗାଁରୁ ଘଣ୍ଟ ମାଦଳ ଗୋପବାଜା ଓ ଢେଲେଙ୍ଗି ବାଜା ଆଣିଥିଲେ । ସାଙ୍ଗରେ ଚନ୍ଦ୍ରାମଣି ମହାପାତ୍ରେ ମଧ୍ୟ ଆସିଥିଲେ । ସେମାନେ ତ'ପହରେ ପୁଣି ମହାପ୍ରସାଦ ତାଡ଼ିଆ ଆଣିଥିଲେ । ଏଠାରେ ଛେନା ଚକଟାର ବନ୍ଦୋବସ୍ତ ହେଲା । ୧୫-୨୦ ଜଣଙ୍କୁ ସାଙ୍ଗେ ସାଙ୍ଗେ ଡକାଇ ମହାପ୍ରସାଦ ସେବା ହେଲା ।

ଚନ୍ଦ୍ରାମଣି ମହାପାତ୍ରଙ୍କୁ ଆଜି ବାଧ୍ୟ ହୋଇ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ ଗୁଣ କହିଦେଲି । ମହାପାତ୍ରେ ସବୁବେଳେ ଇଚ୍ଛା କରନ୍ତି ମୁଁ ରାଜନୀତିକୁ ଯିବି, ଓ ପୁଣି "ପଣ୍ଡିତ" ମାନଙ୍କ ସଙ୍ଗେ ମିଶି ରାଜନୀତି କରିବି । ତାହା ଯେ ଅସମ୍ଭବ ସେଇ କଥା ବୁଝାଇ ଦେଲି । ପୁଣି ସେମାନଙ୍କ ସଙ୍ଗେ ରାଜନୀତି କରିବା ଅର୍ଥ କଂଗ୍ରେସର ବିରୁଦ୍ଧରେ ଯିବା । ମୁଁ ଅଜ୍ଞାତରେ କଂଗ୍ରେସରୁ ଆଡ଼େଇ ହୋଇ ରହିଗଲି ସତ, କିନ୍ତୁ ସକ୍ରିୟ ଭାବରେ କଂଗ୍ରେସ ବିରୁଦ୍ଧରେ କେବେ ଯାଇନାହିଁ । ଆଉ ବର୍ତ୍ତମାନ ଯାଇ ପାରିବି ନାହିଁ । ବର୍ତ୍ତମାନ କଂଗ୍ରେସ ବ୍ୟତୀତ ଏପରି କୌଣସି ଦଳ ଆଖିକୁ ଦିଶୁନାହିଁ ଯାହାଙ୍କ-ଦ୍ୱାରା ଝଡ଼ା ଫିଟିବ । ( ୨୮ । ୫ । ୧୯୫୪ )

**ପେଟମରା ଲାଗି ରହିଛି :**

ଆଜି ସକାଳୁ ସମ୍ବଲପୁର ବାହାରିଲି । ଲୁଗାପଟା ସୁବିଧା କରି ନ ଥିବାରୁ ଝିଅମାନଙ୍କ ଉପରେ ବଡ଼ ରାଗ ଲାଗିଲା । କିନ୍ତୁ ଗାଳିଦେଲି ତାଙ୍କ ବୋଉକୁ । ଆମ ଦୁହିଁଙ୍କ ଜୀବନତମାମ ଏହିପରି ମୁଁ କରୁଛି । ଘରେ ଯେ ଦୋଷ କଲେ ଶଣିବୋଉ ଦଣ୍ଡ ପାଉଛି । ଖାଲି ପୁଅ ଝିଅ ନୁହନ୍ତି, ଚାକରବାକରଙ୍କ ଦୋଷ ତା'ରି ଉପରେ, ଭାଇମାନଙ୍କ ଦୋଷ ବି ତା'ରି ଓପରେ ପଡ଼ୁଛି । ଏହାର କାରଣ, ଯେ ସହିବ ତା'ରି ଓପରେ ମାଡ଼ ହେବ । ଯୁକ୍ତି ସଙ୍ଗତ ନୁହେଁ, କିନ୍ତୁ ବଡ଼ ଲୋକପ୍ରିୟ ପନ୍ଥା ।

ଦ'ପହରେ କପିଳାସ ଆଶ୍ରମରେ ରହିଲି । ଆଶ୍ରମଟି କ୍ରମେ କ୍ରମେ ବେଶ୍ ଉନ୍ନତି କରୁଛି । ଦେଖି ସୁଖ ଲାଗିଲା । ସେଠାରେ ଖାଇସାରି ଟିକିଏ ବିଶ୍ରାମ କରିଥିଲେ ହୋଇଥାନ୍ତା, ଅଳ୍ପ ସମୟ ଭିତରେ ବାହାରିଲୁଁ । ସମ୍ବଲପୁରରେ ସାଢ଼େ ସାତଟାରେ ପହଞ୍ଚିଲୁ । ଅଧଘଣ୍ଟା ଭିତରେ ପେଟମୋଡ଼ା ଆରମ୍ଭ ହେଲା । ପ୍ରାୟ ୪ ଘଣ୍ଟା ସହିଯିବାକୁ ଚେଷ୍ଟା କଲି । ହେଲା ନାହିଁ । ଏଗାରଟାବେଳେ ଡାକ୍ତର ଆସି ପେଥିଡ୍ରିନ୍ ଇଞ୍ଜେକ୍ସନ୍ ଦେଲେ । ଆଉ କଷ୍ଟ କ'ଣ ? ପ୍ରାୟ ୧୦ ମିନଟ୍ ଭିତରେ ନିଘୋଡ଼ ନିଦ ହେଲା । ଶୋଇବା ବେଳେ ଭାବିଲି, ସବୁଦିନ ଖାଇ ବସିଲାବେଳେ ରୋଗ କଥା ଭାବି ଖାଇବ । ସେଇ ଏ ରୋଗର ଔଷଧ ।

ସାଙ୍ଗରେ ବୈଦ୍ୟନାଥ ଓ ସର୍ବେଶ୍ୱର ଆସିଛନ୍ତି । ତାଙ୍କ ସଙ୍ଗେ ବାଟରେ ଧର୍ମ ବିଷୟରେ ଆଲୋଚନା ହେଲା । ଭଲ ଭାବେ ଶୁଣିଲେ । ( ୨୧ । ୬ । ୧୯୫୪ )

**ପ୍ରେସର ଅଫିସରେ ଅଗ୍ନିକାଣ୍ଡ :**

ସକାଳୁ ଦେହ ଭଲ ଥିଲା । ରାତକୁ ଟିକିଏ ଖରାପ ଲାଗିଲା । ବିଶେଷ କିଛି ନୁହେଁ । ଆଜି ବଡ଼ ସକାଳୁ ଗୋଟିଏ ମନ୍ଦ ସମ୍ବାଦ ମିଳିଲା । କାଲି ରାତି ୩ଟା ବେଳେ ପ୍ରେସର ବିଶ୍ରାମ ଅଫିସରେ କେତେକ ଫିଲ୍ମ ପୋଡ଼ିଯାଇଛି । ତାହା ପୋଡ଼ାହେବା ପାଇଁ ମୁଁ କେତେଦିନ ତଳେ ପ୍ରସ୍ତାବ ଦେଇଛି, ଉପମନ୍ତ୍ରୀଙ୍କ ଆଦେଶ ନିମନ୍ତେ । ଉପମନ୍ତ୍ରୀଙ୍କ ଆଦେଶ ମିଳିବା ପୂର୍ବରୁ ଭଗବାନଙ୍କର ଆଦେଶ ମିଳି କାର୍ଯ୍ୟ ତଦନୁସାରେ ହୋଇଗଲା । ସୁଧୀରବାବୁଙ୍କର ଭୟ, ଏହି ଘଟଣା ଯୋଗୁ ଆମ ଉପରେ ସମାଲୋଚନା ଆରମ୍ଭ ହୋଇଯିବ । ମୋ'ର ସେପରି ଭୟ ହେଉନାହିଁ । ଖୁବ୍ ସମ୍ଭବ ଏ ଘଟଣା ଉପରେ ଖବରକାଗଜରେ ଯଦି ସମାଲୋଚନା ହୁଏ, ତା' ଉପରେ ସଫେଇ ଦେବାବେଳେ ଆମେ ଅସଲ କଥା ଲୋକଙ୍କୁ କହିବାର ସୁଯୋଗ ପାଇବା । ( ୨୨ । ୭ । ୫୪ )

**କଟକ ବଡ଼ ଡାକ୍ତରଖାନା :**

ସକାଳକୁ ବି ପେଟରେ ଟିକିଏ ଗୋଳମାଳ ଥାଏ । ହମସ୍ତେ ଧରି ବସିଲେ ମୁଁ ଯାଇ ନର୍ସିଂ ହୋମ୍‌ରେ ରହିବି, ଦେହକୁ ଭଲ ରକମ୍ ପରୀକ୍ଷା କରାଇବା ପରେ ସେଠା ଛାଡ଼ିବି । ବାଧ ହୋଇ ହଁ କଲି ; କହିଲି, ଯଦି ଆଜି ନର୍ସିଂ ହୋମ୍‌ରେ ଜାଗା ମିଳିବ ତେବେ ଯିବି, ନ ହେଲେ ଆଉ କେତେବେଳେ ଆସିବା । ଦୈବାତ୍ ଜାଗା ମିଳିଗଲା, ସୁଧୀରବାବୁଙ୍କ ଚେଷ୍ଟାରେ । ଏଠାକୁ ଆସି ଶୁଣିଲି, ବଡ଼ ଡାକ୍ତରଖାନାରେ ଲାଗିଛି ଘୋର ସାମ୍ପ୍ରଦାୟିକ ସଂଘର୍ଷ । ବ୍ରାହ୍ମଣ ଡାକ୍ତରଙ୍କଦ୍ୱାରା ଚିକିତ୍ସିତ ହେବାକୁ କହିଲେ, ନର୍ସିଂ ହୋମ୍‌ରେ ସିଟ୍ ମିଳି ନ ଥାନ୍ତା । ବଡ଼ ଦୁର୍ଭାଗ୍ୟର କଥା । ଯାହା ହେଉ ଏପରି ଅବସ୍ଥାରେ ମୁଁ ତ ବ୍ରାହ୍ମଣ ଡାକ୍ତରଙ୍କ ନାମ ଲେଖି ନ ଥାନ୍ତି । ଘନଶ୍ୟାମ ମହାପାତ୍ରଙ୍କର ନାମ ଲେଖି ମୁଁ ଠିକ୍ କରିଛି । ରାଧାନାଥ ମିଶ୍ରଙ୍କ ବିରୁଦ୍ଧରେ ବେଶୀ ଆନ୍ଦୋଳନ । ହୁଏତ ସେ କାଶୀବାବୁଙ୍କ ସମ୍ବନ୍ଧୀ ହୋଇଥିବାରୁ ଏପରି ହୋଇଥିବ । ଶରତ୍‌କୁ ମଧ୍ୟ ଘର ଅଡ଼ୁଆରେ ପକାଇଛନ୍ତି ବୋଲି ଶୁଣିଲି । ଜନରବ ହେଉଛି ଯେ ଏଠାର ହାଉଆରେ ଚଳି ନ ପାରି, ଇସ୍ତଫା ଦେଇ ନିଜେ ଗୋଟିଏ ଡାକ୍ତରଖାନା ଖୋଲିବାକୁ ବସିଛନ୍ତି । ଭଲ ହେବ । ତା'ପରି ଭଲଲୋକ ଏଠାରେ ନ ରହିଲେ ଭଲ । ଡାକ୍ତରଖାନାରେ ବର୍ତ୍ତମାନ ଯେଉଁ ବ୍ରହ୍ମହତ୍ୟା ଲାଗିଛି, ତା' ମୂଳରେ ଅଛନ୍ତି ରଣପୁର ରାଜମାତା ଓ ତାଙ୍କର ସବୁଠାରୁ ବଡ଼ ସହାୟକ ପେନ୍‌ସନ୍‌ପ୍ରାପ୍ତ ଡାକ୍ତର ମଲ୍ଲିବାବୁ, ଯେ କି ଯୌବନରେ ରଣପୁର ରାଜମାତାଙ୍କର ଜଣେ ଅନ୍ତରଙ୍ଗ ଥିଲେ । ସେତେବେଳେ ରଣପୁର ରାଜମାତା ତାଙ୍କ ସ୍ୱାମୀଙ୍କର ପରିତ୍ୟକ୍ତା ଥାଇ ପୁରୀରେ କାଳି ଅର୍ଜୁଥାନ୍ତି । ରଣପୁରରୁ ତାଙ୍କ ନାମରେ ବହୁ କଳଙ୍କ ସୀମା ଡେଇଁ ଖାସ୍ ଖୋର୍ଦ୍ଧାରେ ଶୁଣାଯାଏ । ଶୁଣିଛି, ଥରେ ଦୁଇଥର ଯୁବରାଜଙ୍କଠାରୁ ସେ ଘୋଡ଼ା କୋରଡ଼ାରେ ସଂବର୍ଦ୍ଧିତ ହୋଇଛନ୍ତି । ଆମ ଦେଶରେ ଏକଥା ସବୁ ଲୋକେ ସହଜରେ ପାସୋରନ୍ତି ନାହିଁ । ସେହି ରାଜମାତା

ବର୍ତ୍ତମାନ ଜନନାୟିକା । ନେହରୁଲାଲଙ୍କ ଭାଷାରେ 'accomplished lady' । ଏସବୁ ଚିନ୍ତାକୁ ଦୂରରେ ରଖି ଡାକ୍ତରଖାନାରେ ଶାନ୍ତରେ ଶୋଇବାକୁ ଚେଷ୍ଟା କଲି ।

( ୧୭ । ୬ । ୫୪ )

ଆଜି ସକାଳୁ ଆରମ୍ଭ ହେଲା ମୋ'ର ଶରୀର ପରୀକ୍ଷାର ଅଧ୍ୟାୟ । ସକାଳୁ ଝାଡ଼ା ଓ ପରିସ୍ରା ନେଇଗଲେ । ସାଢ଼େ ଆଠଟା ବେଳକୁ ଗଲି X'ray ପାଇଁ । ପ୍ରାୟ ୧୨ଟା ବେଳେ ରକ୍ତ ପରୀକ୍ଷା ପାଇଁ ନିଆଗଲା । ଫେରେ ୧ ତାରିଖ ଦିନ X'ray ; ତା'ପରେ ୭ ଓ ୬ ତାରିଖରେ ଆଉ ଦୁଇଥର ।

X'ray ବିଭାଗଟି ଖୁବ୍ ବଢ଼ିଯାଇଛି । ଗତ ୨୦ ବର୍ଷ ଭିତରେ ଡାକ୍ତରଖାନାର ସବୁ ଅଙ୍ଗ ବିଶେଷ ଭାବେ ବଢ଼ିଛି । ସେତେବେଳେ ବିସ୍ତୀର୍ଣ୍ଣ ପଡ଼ିଆ ଭିତରେ ଦୁଇ ତିନିଖଣ୍ଡ ଘର ଥାଏ । ଏବେ ସମଗ୍ର ପଡ଼ିଆଟି ଗୋଟିଏ ଜନଗହଳି ବସ୍ତି ହୋଇଗଲାଣି । ପ୍ରତିଦିନ ଘର ତିଆରି ଚାଲିଛି । ରୋଗୀ ସଂଖ୍ୟା ବହୁଗୁଣ ବଢ଼ି ଗଲାଣି । ୨୦ବର୍ଷ ପୂର୍ବେ ଲୋକେ ଏ ଡାକ୍ତରଖାନାକୁ ଆସିବାକୁ ଡରୁଥିଲେ । ଗାଁରେ ମଧ୍ୟ ଦେଶୀ ଚିକିତ୍ସା ଚାଲିଥିଲା । ଏତେବେଳକୁ ଆଉ ଦେଶୀ ଚିକିତ୍ସାର ସେତେ ଆଦର ନାହିଁ । ଯେଉଁମାନେ ବା କବିରାଜ ଅଛନ୍ତି, କେତେକ କଷ୍ଟ କରି କବିରାଜି ଔଷଧ ତିଆରି କରିବା ପରିବର୍ତ୍ତେ ଡାକ୍ତରୀ ଔଷଧରେ କାମ ଚଳେଇ ଆରମ୍ଭ କଲେଣି । ସରକାର ଗୋଟିଏ କବିରାଜୀ ବିଭାଗ ଖୋଲିଛନ୍ତି, କିନ୍ତୁ କବିରାଜ ଛାତ୍ରମାନେ ବେଶଭୂଷା ଢଙ୍ଗରଙ୍ଗରେ ଡାକ୍ତରୀ ଛାତ୍ରମାନଙ୍କର ଅନୁକରଣ କରିବାରେ ଲାଗିଛନ୍ତି । ଆମ ଦେଶର ବିରାଟ ଦରିଦ୍ର ଜନତାଙ୍କର ପ୍ରୟୋଜନ ବ୍ୟୟସାଧ୍ୟ ଡାକ୍ତରୀ ଚିକିତ୍ସା ମେଣ୍ଟାଇ ପାରିବ ନାହିଁ । କିନ୍ତୁ ଅନ୍ୟ ଗତି ନ ଥିଲା ପରି ଜଣାଯାଉଛି ।

ରାତିରେ ମୋ ପେଟର ଯନ୍ତ୍ରଣା ଅତି ତୀବ୍ର ହେଲା । ଡାକ୍ତରମାନେ ରାତିଯାକ ଭାରି ସାନ୍ତି ହେଲେ ।

( ୨୮ । ୬ । ୫୪ )

**ଲେଖକ ଓ ଲେଖା :**

ନିମାଇଁବାବୁ ତାଙ୍କର ଖଣ୍ଡିଏ ପାଣ୍ଡୁଲିପି ଆଣି ଆସିଲେ । ତାଙ୍କର ସବୁ ପାଣ୍ଡୁଲିପି ପରି ଏଣୁ ତେଣୁ ସଂଗୃହୀତ । ଅଟଳ କଥାର ଗୋଟିଏ ଅଧ୍ୟାୟ ସେ ମୋତେ ଦେଖାଇଲେ । ଭିଖାରୀ ବାବୁଙ୍କ ଲେଖା, କହାଁ ଖଣ୍ଡାରୁ ଉଦ୍ଧୃତ ଗୋଟିଏ ଅଂଶ, ଡଗର ଓ ହୋମାଙ୍କ ରଚିତ ଦୁଇଟି ଓଡ଼ିଆ ଓ ଇଂରେଜି ଗୀତ, ତା' ସାଙ୍ଗକୁ ଏଣୁ ତେଣୁ ଶୁଣା ପ୍ରବଚନ ଓ ନିଜ କୃତ ଗଡ଼ା—ସବୁ ଗୋଟିଏ ଅଧ୍ୟାୟରେ ଦିଆଯାଇଛି । ତାକୁ ସେ ମୋତେ ଶୁଣାଇ ଭାରି ଖୁସି ହେଲେ । ମୁଁ ଏପରି ଗୋଟିଏ ଅଧ୍ୟାୟ ମୋ'ର କୌଣସି ବହିରେ ଦେବାକୁ ଇଚ୍ଛା କରେନି ନାହିଁ । କିନ୍ତୁ ମୋ'ର ପୂର୍ଣ୍ଣ ବିଶ୍ୱାସ ଏହା ପଢ଼ିବାକୁ ବହୁତ ଲୋକ ଆଗ୍ରହ କରିବେ । ସେ' ବା ଦୋ ଦୋ ପାଞ୍ଚ ହେବେ, ନିମାଇଁ ବାବୁଙ୍କ ପ୍ରଚାର କୌଶଳରେ ସେ ତାହା ନିଶ୍ଚୟ କିଣିବେ । ନିମାଇଁବାବୁଙ୍କଠାରୁ ମୁଁ ଏତିକି ଶିଖିଛି ଯେ, ଯେ କୌଣସି ବିଷୟ ଲେଖିଦେଲେ କିଣିବାକୁ

ନେଇ ବାହାରିବେ ଏବଂ ଯେତେ ଭଲ ବିଷୟ ଲେଖିଲେ ମଧ୍ୟ ଶତ୍ରୁଙ୍କ ପରିଣତ ଅଣ୍ଟପ୍ ତାକୁ ଖଣ୍ଡିବେ । କେଣ୍ଟି କିଏ ଖୁଣ୍ଡୁଛନ୍ତି ତାଙ୍କ ପ୍ରତି ଦୃଷ୍ଟି ନ ଦେଇ ଯେଉଁମାନେ ପସନ୍ଦ କରୁଛନ୍ତି ସେଇମାନଙ୍କୁ ଧରି ଚାଲିଯିବାକୁ ହେବ । ଯାହା ଲେଖିବ ସବୁ ଚଳିବ, ଖାଲି ଲେଖକର ନିଜକୁ ବିଗ୍ଭରିବାର କଥା, ସେ ଯାହା କରୁଛୁ ଭଲ ପାଇଁ କରୁଛୁ ନା ଖାଲି ପଇସା ଉପାର୍ଜନ କରିବା ପାଇଁ କରୁଛୁ । ତାହା ମଧ୍ୟ ସମାଲୋଚନାର ଦୃଷ୍ଟିକୋଣରୁ ସବୁବେଳେ ବିଗ୍ଭରିବା ଠିକ୍ ହୋଇ ନ ପାରେ । ଲେଖକ ସାଧୁଭାବରେ ଭଲ ଉଦ୍ଦେଶ୍ୟରେ ସବୁ ଲେଖିଥିବ ; ସମାଲୋଚକ ତାହା ପସନ୍ଦ କରିବ ନାହିଁ । କାଳ ତା'ର ଶେଷ ଫଇସଲା କରିବ ।

( ୩୦ । ୬ । ୫୪ )

**ଡାକ୍ତର ଓ ନିଦାନ :**

ଆଜି ସକାଳୁ ବେରିଅମ୍ ଖାଇବାକୁ ଦେଇ ତାହା ଦେହର ବିଭିନ୍ନ ଅଙ୍ଗବାଟେ କିପରି ଯାଉଛି ଦେଖିବାକୁ ଗ୍ଭରି ପାଞ୍ଚଟା ପ୍ଲେଟ୍ X'ray ନିଆଗଲା । ସକାଳ ଓଳି ତିନିଟା ଓ ସନ୍ଧ୍ୟାରେ ଦୁଇଟା । ପୁଣି କାଲି ସକାଳେ ଆଉ ଗୋଟେ ନିଆଯାଇ ପାରେ । ସନ୍ଧ୍ୟାବେଳେ ଡାକ୍ତରଙ୍କ ସାଙ୍ଗେ ମୋ X' ray ଫଟୋ ବିଷୟରେ ଠିକଏ ଆଲୋଚନା କରିଥିଲି । ସେ ସବୁ ଭଲ କରି ଦେଖି କାଲି ରିପୋର୍ଟ ଦେବେ । ଆଜି ମୋଟାମୋଟି ଏତିକି କହିଲେ ଯେ, ପିତ୍ତକୋଷରେ ଦୋଷ ଥିବାପରି ଜଣାଯାଉ ନାହିଁ । ଯକୃତର ଦୋଷ ନାହିଁ । କୌଣସି କୌଣସି ଯନ୍ତ୍ରର କାର୍ଯ୍ୟକାରିତା ବିଷୟରେ କିଛି ଦୋଷ ଥାଇପାରେ । ରାତିରେ ଘନଶ୍ୟାମ ବାବୁଙ୍କୁ ଏ କଥା କହିଲି । ତାଙ୍କର ଇଚ୍ଛା ପିତ୍ତକୋଷର ଆଉରି ଗୋଟାଏ ପରୀକ୍ଷା ହେବ । ତଥାପି ସେଥିରେ ଦୋଷ କିଛି ନ ବାହାରିଲେ ମଧ୍ୟ, ପିତ୍ତ କୋଷକୁ କାଟି ଫୋପାଡ଼ିଦେବା ନିରାପଦ । କାରଣ, ଯେପରି ପେଟମରି ହେଉଛି ସେଥିରେ ପିତ୍ତକୋଷର ଦୋଷ ପରି ମନେ ହେଉଛି । ( ୧ । ୭ । ୫୪ )

ଆଜି ସକାଳୁ ଡାକ୍ତରଖାନାର କର୍ମଚାରୀଙ୍କ ଉପରେ ମନ ବଡ଼ ବିରକ୍ତ ହେଲା । ବିଶେଷ କରି ସାମୁଏଲ ଝିଅ ମିସ୍ ବେଲ୍ (ନର୍ସ) ଉପରେ । ମୁଁ ସକାଳୁ ଗାଧୋଇ ସାରିଲା ବେଳକୁ ମୋତେ ଖୁବ ଭୋକ ହେଉଥାଏ, ରାତିରେ ପ୍ରାୟ ଉପାସ ରହିବା ହେତୁ । ମୁଁ ସକାଳ ଖାଇବା ମାଗିବା ବେଳକୁ ବେହେରା ଜଣାଇ ଦେଲା ଯେ, ଆଜି ନ ଖାଇ X'ray ପାଇଁ ଯିବାକୁ ଥିବା କାରଣରୁ ବର୍ତ୍ତମାନ ଖାଇବାକୁ ଦିଆଯିବ ନାହିଁ । ମୁଁ ବୁଝାଇ ଦେଲି, ସେପରି ହେବାର ନାହିଁ, ମୋତେ କାଲି X'ray ଡାକ୍ତର ଗୋଲକବାବୁ ପରିଷ୍କାର କରି କହିଛନ୍ତି ଯେ, ଖାଇବାରେ ବାଧା ନାହିଁ । ୧୦ଟା, ୧୧ଟା ବେଳରୁ ଥରେ ଗଲେ, ସେ କେବଳ ଦେଖି-ନେବେ ବେରିଅମ୍ ଦେହରୁ ସବୁ ଯାଇଛି କି ନାହିଁ । ବେହେରା ପୁଣି ଯାଇ ପଚାରିଲା, କିନ୍ତୁ ମିସ୍ ବେଲ୍ ପୁଣି ତାଙ୍କ ପୁରୁଣା ହୁକୁମ ଦେଇଦେଲେ । ମୋତେ ବଡ଼ ବିରକ୍ତ ଲାଗିଲା । ମନେକଲି ଏଠା ଛାଡ଼ି ଚାଲିଯିବି । ଯାହା ହେଉ ହର୍‌ଲିକ୍‌ସ୍ ଟିକିଏ ଖାଇ ପଡ଼ି ରହିଲି ।

ବେଳ ଆସି ମୋ' ଠାରୁ ଶୁଣି ଭାରି ଦୁଃଖ କଲେ, କ୍ଷମା ମାଗିଲେ, ବାଧ୍ୟ କରି ପୁଣି ନେଇଗଲେ ।

୧୦ଟା ବେଳକୁ ପ୍ରମୋଦ, ବୈଦ୍ୟନାଥ ଓ ସର୍ବେଶ୍ୱର ଆସି ପହଞ୍ଚିଲେ । ଦୁ' ପହରେ ବେଙ୍କଟେଶ୍ୱର ଦକ୍ଷିଣୀଆ (ମାନ୍ଦ୍ରାଜୀ) ହୋଟେଲର ଗୋଟିଏ ମିଲ୍‌କୁ ମନବୋଧ ଖାଇଲେ । ମନୁ ବି ଆସିଥିଲି । ତାକୁ ଆଗରୁ ହୋଟେଲକୁ ପଠାଇ ଖୁଆଇଥିଲି । ତାକୁ ନେଇ X'ray ଡିପାର୍ଟମେଣ୍ଟକୁ ଗଲି । ସେ ଦେଖିଲି । ସେ ଯଦି ଏ ବର୍ଷ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେସନ୍ ପାଶ୍ କରେ ତେବେ ତାକୁ I. Sc. ରେ ଦେବ । I. Sc. ପରେ ଡାକ୍ତରୀ ପଢ଼ିବ । ଦେଖାଯାଉ ।

ସଂଧ୍ୟାରେ ଅଶୋକ ଓ ବିନୋଦ କାନୁନ୍‌ଗୋ ଆସିଥିଲେ । ବିନୋଦ ନିଜ ଚେଷ୍ଟାରେ ଖୁବ୍ ଉନ୍ନତ କରୁଛନ୍ତି : ଭଲ ବହି ଲେଖୁଛନ୍ତି । (୨।୭।୫୪)

## ପିତ୍ତକୋଷ ଅପରେସନ ନୋହିଲା :

ଆଜ ସକାଳେ ଶେଷ X'ray ନିଆ ହେଲା । ପିତ୍ତକୋଷରେ ପଥର ଥିବାର ନିଃସନ୍ଦେହ ପ୍ରମାଣ ମିଳିଲା ନାହିଁ । ତଥାପି ଘନଶ୍ୟାମ ବାବୁ କହିଲେ ପିତ୍ତକୋଷଟା କାଟି ଦିଆଯାଉ । ତାହା ଶରୀରର ଅତି ଆବଶ୍ୟକ ଅଂଶ ନୁହେଁ । ଈଶ୍ୱର ଏପରି ଅଙ୍ଗଟିଏ କାହିଁକି ରଖିଲେ, ଘନଶ୍ୟାମ ବାବୁ ସେ ଉତ୍ତର ଦେଇ ପାରିବେ ନାହିଁ । ତାଙ୍କୁ ପଚାରିଲି ନିଃଶ୍ୱାସ ଏକା ବାଟରେ ଆସି, କେତେବେଳେ ବାଁ ନାକ ପୁଡ଼ାରେ ଓ ଅନ୍ୟ ସମୟରେ ଡାହାଣ ନାକ ପୁଡ଼ାରେ କାହିଁକି ଆସୁଛି, ସେ କଥା ତାଙ୍କୁ ପଚାରିଲି । ସେ କହିଲେ ତାଙ୍କ ଶାସ୍ତ୍ରରେ ଏ ବିଷୟର ଉଲ୍ଲେଖ ନାହିଁ । ଦେହରେ କୌଣସି ଇତର ବିଶେଷ ହୁଏ ବୋଲି ଡାକ୍ତରୀ ଶାସ୍ତ୍ର କହୁନାହିଁ । ଏ ଉତ୍ତର ପରେ ପିତ୍ତକୋଷ ବିଷୟରେ ତାଙ୍କ ଇତର ବିଶେଷ ମୂଲ୍ୟ ନିରୂପିତ ହୋଇଗଲା । ସେ ଔଷଧର ଗୋଟିଏ ଲମ୍ବା ତାଲିକା ଲେଖି ଦେଲେ । ତାକୁ ଧରି ଭୁବନେଶ୍ୱର ଫେରିବାକୁ ସଙ୍ଗେ ସଙ୍ଗେ ସ୍ଥିର ହେଲା । ଆସିବା ବାଟରେ ପୂର୍ଣ୍ଣ ମିଶ୍ର, କବିରାଜଙ୍କ ସଙ୍ଗେ ଦେଖା କଲି । ସେ କବିରାଜ ରୀତିରେ ମୂତ୍ର ପରୀକ୍ଷା କରିବାକୁ କହିଲେ । କାଲି ସେ ଗୋଡ଼ପଡ଼ା ଯିବେ । ସେଠାରୁ ଫେରିଲେ ପରୀକ୍ଷା କରିବାକୁ କହିଲେ । (୫।୭।୧୯୫୪)

## ଗାଁରେ ଷଷ୍ଠୀଓଷାର ଆନନ୍ଦ :

କାଲି ପଣ୍ଡିତମାନଙ୍କ ଆଗ୍ରହ ଯୋଗୁଁ ପୁଣ୍ଡିଏ ବେଶୀ ମହାପ୍ରସାଦ ସେବା କରି ଦେଲି । ସେମାନେ ବଳାଇ ବଳାଇ ଅତ୍ୟଧିକ ଛେନା ଚକଟା ଖୁଆଇ ଦେଲେ । ଦେହ ଖରାପ ହେବ ବୋଲି ମନରେ ସାମାନ୍ୟ ଆଶଙ୍କା ଥିଲା, ବେଶୀ ନୁହେଁ । କାଲି ରାତରେ କିଛି ଗୋଳମାଳ ହେଲା ନାହିଁ । ଆଜି ବି ଭଲରେ କଟିଲା—ବୋଧହୁଏ ହାଣ୍ଡି ଗୁଡ଼ ଯୋଗୁଁ

ପାଣିଆ ଜାଉ ଖାଇ ରହୁବାରୁ । ଦିନ ଭିତରେ ଟିକିଏ ସୁଜି ଖିର, ମିଶ୍ରି ପାଣି, ହରଲିକସ ଖାଇ ରହିଲି । ରାତିରେ ପୁଣି ଟିକିଏ ଭାତ ଖାଇଲି ।

ଶଶୀବୋଉ ୫ ଦିନ ହେଲା ଗାଁକୁ ଯାଇଛି । ଆଜି ୫ଦିନ ପରେ ତା ସଙ୍ଗେ ଦେଖା ହେଲା ମାତେ ଜାଣିଲି ତା ମନ ବଡ଼ ପ୍ରଫୁଲ୍ଲ । ଗାଁ ପାଇଁ ଭଗବାନ ତାକୁ ସୃଷ୍ଟି କରିଛନ୍ତି, ସହର ପାଇଁ ନୁହେଁ । ମୋ'ର ଯୋଗଦାନରେ ସେ ମୂଳରୁ ରହୁଛି ଆଜିଯାଏ ସହରରେ । ଏଇଥର ସବୁଠାରୁ ବେଶୀ ରହିଥିଲା, ଏକାବେଳକେ ଦଶବର୍ଷ । ତା'ର ବର୍ତ୍ତମାନ ଖାଲି ଗୋଟିଏ ଦୁଶ୍ଚିନ୍ତା ମୋ'ର ଦେହ ପାଇଁ । ଯଦି ମୁଁ ଭୁବନେଶ୍ୱରରେ ପେଟ ମରାରେ ପଡ଼ିବି, ଓ ସେ ମୋର ଶୁଶ୍ରୂଷା କରିବାକୁ ପାଖରେ ନ ଥିବ ତେବେ କ'ଣ ହେବ ? ଏଇ କଥାଟି ଚିନ୍ତା ନ ଥିଲେ ସେ ଗାଁରେ ଆହୁରି ଆରାମରେ ରହି ପାରନ୍ତା । ମୁଁ ଉଦ୍ୟମ କରିବି ସୁସ୍ଥ ରହିବାକୁ ଯେପରି ତା' ଦୁଶ୍ଚିନ୍ତା ଦୂର ହେବ । ପୁଅର ପାଠପଢ଼ା ଯଦି ଏଠାରେ ଭଲ ହେବ ଓ ମୁଁ ସୁସ୍ଥ ରହିବି ତେବେ ସେ ଗାଁରେ ଶରୀର ଓ ମନରେ ସୁସ୍ଥ ରହିବ । ଜୀବନ ତମାମ୍ ମୋ ଯୋଗୁଁ ସେ ଏତେ କଷ୍ଟ ପାଇଛି । ଶେଷ କେତେ ବର୍ଷ କିପରି ସୁଖରେ କଟାନ୍ତା କି ?

ଘରେ ବୁଲୁର ଦେହ ଟିକିଏ ଖରାପ ହୋଇଛି । ତା' ମା' କହିଲା ଖାଲି ଗୁଡ଼ାକିଆ ଖାଇବାର ଗୁଣ । ପିଲାମାନେ ସହରରେ ଜନ୍ମ, ସହରରେ ବଢ଼ିଛନ୍ତି, ପ୍ରଥମାବସ୍ଥାରେ ଟିକିଏ ଅସୁସ୍ଥ ହେବେ—ସେ କଥାକୁ ବେଶୀ ଚିନ୍ତା କରିବି ନାହିଁ । ଗାଁର ଏତେ ଲୋକ ଯେପରି ରହୁଛନ୍ତି ସେପରି ରହନ୍ତୁ । କାଲି ରାତିରେ ଘରେ ରହି ଯେଉଁ ଆନନ୍ଦ ଉପଭୋଗ କଲି, ତାହା ବହୁ ଦିନ ହେଲା ପାଇ ନ ଥିଲି । (୧୭ । ୭ । ୧୯୫୪)

## ଘର ଓ ବଗିଚା :

ସକାଳୁ ସମସ୍ତେ ବଗିଚାକୁ ଗଲୁ । ବଗିଚାଟି ବଡ଼ ସୁନ୍ଦର ଦିଶୁଛି । ଅନ୍ୟମାନଙ୍କୁ କିପରି ଦିଶୁଥିବ କେଜାଣି । ମୋର ତ ମନ ପୂର୍ଣ୍ଣ ହୋଇ ଯାଉଛି । ମୁଁ ବିଶ୍ୱାସ କରୁଛି ପିଲାଙ୍କ ଭବିଷ୍ୟତ ପାଇଁ ମୁଁ ଗୋଟାଏ ଭଲ କାମ କଲି । ବଡ଼ ଲୋକଙ୍କୁ ଏହା ଖୁବ୍ ଗ୍ରେଟ ଦିଶିବ । ମୋଟେ ୮-୯ ଏକର ଜମିରେ ଗଛ କେତୋଟା ଲଗାଇଦେଲେ ପିଲାଙ୍କ ଭବିଷ୍ୟତ ପାଇଁ କିଛି ହେଲା ନାହିଁ ବୋଲି ସେମାନେ ମନେ କରିବେ । ମୁଁ କିନ୍ତୁ ଭିନ୍ନମତ ସବୁବେଳେ ପୋଷଣ କରୁଛି । ମୋର ଦୃଢ଼ ଧାରଣା ଗାଁର ସାଧାରଣ ଲୋକଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଭାବରେ ଯଦି କେହି ବଢ଼ିବାକୁ ଚେଷ୍ଟା କରେ, ତେବେ ତା' ଉପରେ ଲୋକଙ୍କର ମନ୍ଦ୍ୟ ପଡ଼ିଯିବ, ତା'ର ମଙ୍ଗଳ ହେବନାହିଁ । ମୋ ପିଲେ ଲୋକଙ୍କଠାରୁ ସମ୍ପର୍କ ନ ତୁଟାଇ ବଢ଼ନ୍ତୁ ଓ ସେମାନଙ୍କର ବଢ଼ିବାରେ ଲୋକଙ୍କର ଶ୍ରେୟ ହେଉ । ଏ ବଗିଚାଟି ପିଲାମାନଙ୍କର ସଂପର୍କ ଗ୍ରାମ ଲୋକଙ୍କ ସଙ୍ଗେ ରଖିବ । ଯଦି ପାରିବି ଏହାର ପରିସର ଆହୁରି ଟିକିଏ ବଢ଼ାଇବି । ଏଥିରେ ବିଭିନ୍ନ ପ୍ରକାର ସ୍ଥାୟୀ ଗଛ ରହିବ, ପରିବା ବଗିଚା ପାଇଁ ଟିକିଏ ଜାଗା ରହିବ । ବିଶେଷ କରି ଲଙ୍କା ଆମ୍ବ ଓ କାଇଁଶର ବୃକ୍ଷ ଆହୁରି ବଢ଼ାଇବାକୁ ହେବ ।

ଆଜ ସରଣ୍ଟା ଏକାବେଳକେ ପୂର୍ଣ୍ଣ । ମୋର ସବୁ ସାନ ଦୁଇଟି ପିଲାଙ୍କର ଦେହ ଖରାପ ନ ଥିଲେ, ବଡ଼ ଆନନ୍ଦ ଲାଗିଥାନ୍ତା । ଘରର ଗହଳି ଦେଖି ବଗୁରଲା ପାଇଲେ, ଦୋମହଲାଟି କରନ୍ତୁ । ବେଳେବେଳେ ମନ ହୁଏ ଭାଇମାନଙ୍କ ପାଇଁ ନ କରି ମୋ'ର ପାଇଁ ଘର କରନ୍ତୁ । ଟିକକ ପରେ ପୁଣି ହୃଦ ମାଡ଼େ । ଜୀବନ ଆରମ୍ଭରୁ ଯେଉଁ ଦୀକ୍ଷା ଧରିଛୁ, ମୋ ଜୀବନରେ ତାହାର ଖଲାପ କରିବି ନାହିଁ ।

ଆଜ ବରୁଣେଇ ଯିବାକୁ ବିଗ୍ଭର କରିଥିଲି । ଜଗନ୍ନାଥ ରଥେ ଆସିବାକୁ ଲେଖିଥିଲି । ସେ ଆସିଲେ ନାହିଁ । ବରୁଣେଇ ଯିବା ବନ୍ଦ ହେଲା । ବୈଦ୍ୟନାଥ ବରୁଣେଇ ଯିବା ଉଦ୍ଦେଶ୍ୟରେ ଉପର ଓଳି ପହଞ୍ଚିଲେ । ଘରେ ମଉଜଟାଏ ତାଙ୍କ ପାଇଁ ହେଲା । ରାତ୍ର ୧୧ଟାରେ ଭୁବନେଶ୍ୱର ଫେରି ଆସିଲୁ । (୨୫ । ୭ । ୨୯୫୪)

ଆଜ ବ୍ରହ୍ମପୁର ଯିବାକୁ ଅଛୁ । ଗଲା ବେଳେ ଗାଁ । ବାଟେ ଯିବ । ସେଥିପାଇଁ କାଲି ଶାନ୍ତ, ବାବୁଲ ଓ ବୁଲୁ ମୋ ସଙ୍ଗେ ଭୁବନେଶ୍ୱର ଆସିଥିଲେ । ଆଜ ଫେରିବାକୁ ପ୍ରସ୍ତୁତ ହୋଇ ସେମାନେ ନିଜ ନିଜର ଦରକାରି ଜିନିଷ କିଣିବାରେ ଲାଗିଲେ । ବୁଲୁ ବାବୁଲଙ୍କର ଗୋଟେ ଗୋଟେ ସୁଟ୍‌କେଶ୍ ଦରକାର । ଶାନ୍ତର ଗୋଟାଏ ଫାଉଣ୍ଟେନ୍ ପେନ୍ ଦରକାର । ସମସ୍ତଙ୍କର ଖଣ୍ଡେ ଖଣ୍ଡେ ନୂଆ ପ୍ୟାଣ୍ଟ ଓ କୁରୁତା । ଏସବୁ କିଣା ହୋଇ ସାରିଲା ପରେ ବୁଲୁ ଗ୍ଭହିଁ ଦେଇ, "ନନା ଭଲ । ଯାହା ମାଗିଲେ କିଣି ଦେଉଛନ୍ତି ।" ମୁଁ କହିଲି, "ତମେ ଯାହା କହୁଛ ମୁଁ ଦେଉଛି, ମୁଁ ଯାହା କହିବି ସେ କଥା ମାନିଲେ ଯିନା ହେବ ।" ବୁଲୁ କହିଲା, "ଆମେ କ'ଣ ନ ମାନୁଛୁ କହିଲ ଦେଖି ।" ମୋ'ର ତ ସେପରି କୌଣସି ଘଟଣା ମନେ ପଡ଼ିଲା ନାହିଁ । ଏ ପିଲାମାନେ ଆଜଠାରୁ ଯେପରି ବିଗ୍ଭର ବୁଦ୍ଧି ଦେଖାଉଛନ୍ତି ତାହା ଯଦି ଉତ୍ତରୋତ୍ତର ବଢ଼ିପାରିବ, ତେବେ ସେମାନେ ସଂସାରରେ ଚଳି ପାରିବେ ବୋଲି ଆଶ୍ୱସ୍ତ ହୋଇ ମରି ପାରିବ । ଦୁଇଟାବେଳେ ଆମେ ଗାଁକୁ ବାହାରିଲୁ । ଖୋର୍ଦ୍ଧାରେ ବୁଲୁ ବାବୁଲଙ୍କ ପାଇଁ ଖଣ୍ଡେ ଖଣ୍ଡେ ବେଲ୍‌ଟ ଓ ସାନ ଦୁ' ଜଣଙ୍କ ପାଇଁ ଗୋଟେ ଗୋଟେ ଝୁମୁକା ଓ ବିସ୍‌କୁଟ କିଣା ହେଲା । ଗାଁରେ ଆଜ କାହା ଦେହରେ ଜର ନାହିଁ ଦେଖି ବଡ଼ ଖୁସି ହେଲି ।

ଛତ୍ରପୁରରେ ଅଧଘଣ୍ଟେ ରହି ବ୍ରହ୍ମପୁର ଗଲି । ଅଲେଖ ପାଢୀ ମୋ' ନିର୍ଦ୍ଦେଶକ୍ରମେ କେତେ ଜଣ ଭଦ୍ରଲୋକଙ୍କୁ ଏକାଠି କରିଥିଲେ, କଥାବାର୍ତ୍ତା ହେବାପାଇଁ ।

ହରିଜନ ଆନ୍ଦୋଳନ ବିଷୟରେ ଅମେ ଯେଉଁ ନୂତନ ଆଭିମୁଖ୍ୟ ଧରିଥାଇଁ ତାହାର ଆଲୋଚନା କଲି । କାମାକ୍ଷୀପ୍ରସାଦ ଶର୍ମା, ବନମାଳୀ ମିଶ୍ର କବି ବଲ୍ଲଭ, ଗୋବିନ୍ଦ ମିଶ୍ରେ ପ୍ରମୁଖ ଥିଲେ । ଖୁବ୍ ଅଗ୍ରହର ସହିତ ଶୁଣିଲେ । କିନ୍ତୁ ସମସ୍ତେ ସବୁ କଥାରେ ତରତର । ଦଶଟା ଯେପରି ବାଜିଲା ସମସ୍ତେ ତରତର ହେଲେ ଘରକୁ ଯିବେ, ଖାଇବେ, ଶୋଇବେ । ଠିକ୍ ସମୟରେ ଖାଇବେ ଶୋଇବେ, ଏ ତ ଆମ ଦେଶର ଗୋଟିଏ ରୋଗ ହେଲାଣି । ସବୁ ଦିନ ନିୟମ କରି ବୋଲି କେହି କହୁନାହିଁ । ଯ୍ୱା' ବୋଲି ବିଶେଷ ବିଶେଷ ଘଟଣା ବା

ଧନମାନଙ୍କରେ ନିୟମାନୁବର୍ତ୍ତିତା ଏକାବେଳକେ ମୂଣ୍ଡରେ ଯଦି ଭୂତ ଚପାଇ ରହେ ତେବେ ମନୀଷ କାମ କରିବ କ'ଣ ? ( ୩୦ । ୭ । ୫୪ )

## କ୍ଳବ ଘର ଓ ମାଳତୀ ଦେବୀଙ୍କ କାର୍ଯ୍ୟ :

ବଡ଼ି ସକାଳୁ ସଦାଶିବ ବାବୁ ଆସି ସେ ନବ ଚୌଧୁରୀଙ୍କ ପାରିବାରିକ କଥା ପକେଇଲେ । ମୋ ବୟସ୍କ କହ୍ନ ଶ୍ରୀମତୀ ମାଳତୀ ପରି ନବବାବୁଙ୍କ ଆଗରେ କାନ୍ଦ ପକାଇଲେ । ଏକଥା ପୁଣି କୈଳାସ ବୋଷ ସୁଧୀର ବାବୁଙ୍କୁ ଟେଲିଫୋନରେ କହୁଥିଲେ ବୋଲି ସଦାଶିବ ବାବୁ ଶୁଣିଲେ । ଅଦ୍ଭୁତ କାରଖାନା । ଦମ୍ପତି କଳହ ଓ ଦମ୍ପତି ସମ୍ଭାଷଣ ବର୍ତ୍ତମାନ ଆମ ରାଜନୀତି ଓ ସରକାରୀ ନୀତିର ଗୋଟାଏ ବଡ଼ ଅଧ୍ୟାୟ ହୋଇ-ଗଲଣି । ମୋତେ ମାନ, ମୋ କୁକୁରଙ୍କୁ ମାନ, ମୋ' କୁକୁର ଝିଅ ଗିନାକୁ ଦଉଁ ବୋଲି ମୁଣ୍ଡିଆ ମାର—ଏହା ଯଦି ନବଚୌଧୁରୀଙ୍କର ଇଚ୍ଛା ବୋଲି ତାଙ୍କ ପାଖ ଲୋକେ ମନେ କରନ୍ତି ତେବେ ତ ଆମେ ମଲେ । ନବ ଚୌଧୁରୀଙ୍କ ମନ ଯେପରି ରାଜୁଡ଼ା ଢଙ୍ଗ ଧଇଲଣି ସେଥିରେ କେତେବେଳେ କ'ଣ ହେବ କିଏ କହିବ ? ସମ୍ବଲପୁରରେ ସେ ଦିନ କାନ୍ଦ ପକାଇଲେ ଲୋକମାନେ ବଡ଼ ଦୁଃଖରେ ଅଛନ୍ତି ବୋଲି । ଆଜି ହୁଏତ କ୍ଳବ ବାଲଙ୍କ ଉତ୍ସବରେ ଯୋଗ ଦେବେ ।

ଆଜି ସନ୍ଧ୍ୟାରେ ଆମର ଘରପାଖେ କ୍ଳବ୍‌ର ପ୍ରାରମ୍ଭ ଉତ୍ସବ ବଡ ସମାରୋହରେ ପାଳିତ ହେଲା । ମୁଁ ନିମନ୍ତ୍ରଣ ଝଣ୍ଡେ ପାଇଥିଲି ; କିନ୍ତୁ ଗଲି ନାହିଁ । ୮ଟା ବେଳକୁ ଖୁବ୍ ବାଣ ଫୁଟିଲା । ଏମାନେ ସରକାରୀ ଚାକିରିଆ, ଦେଶର ଜନତାଙ୍କର ସେବକ । ଏମାନଙ୍କ ଢଙ୍ଗ ବଦଳିବ କ'ଣ କ୍ରମେ କ୍ରମେ ଏମାନେ ବେଶୀ ଉଦ୍ଧାତ ହେଉଛନ୍ତି । ନବବାବୁ ମଧ୍ୟ ଏମାନଙ୍କୁ ଖୁବ୍ ପ୍ରଶ୍ରୟ ଦେଉଛନ୍ତି । ଏତେ ବଡ଼ ଘରଟାଏ ମାଗଣାରେ ଏମାନଙ୍କୁ ଦେବା ଠିକ୍ ହେଉ ନାହିଁ ବୋଧ ହୁଏ । ଭଡ଼ା ଦାବି କଲେ କ୍ଳବ୍ ବାଲଙ୍କର ବାଫେଟା ବନ୍ଦ ହୋଇ ଯାଆନ୍ତା । ବାଣ ପଇସା ଭଡ଼ାପାଇଁ ରଖନ୍ତେ ।

## ଲୋକ ସଂପର୍କ ଏବଂ ଆଶ୍ରମ ସ୍କୁଲ:

ସକାଳେ ନିତ୍ୟକର୍ମ ସାରି ବାହାରିଲି ବେଳକୁ ବୀରରାମଚନ୍ଦ୍ରପୁର ଓ ବୀର ନରସିଂହ-ପୁରର ଯାତ୍ରା ଓ ସଙ୍କୀର୍ତ୍ତନ ଦଳର ଲୋକେ ଆସି ଜମା ହେଲେ କଥାବାର୍ତ୍ତା ହେବାକୁ । ଦାସ-କାଠିଆ ଦଳ ଆସି ପହଞ୍ଚିଲେ । ଏହି ଶେଷୋକ୍ତ ଦଳଟି କାଲି ଖୁବ୍ ଭଲ କଲେ । ସେମା-ନଙ୍କୁ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନରେ ମୋ'ର କଳ୍ପିତ ରୀତିରେ ବ୍ୟବହାର କରିବାକୁ ସ୍ଥିର କରିଛୁ । ଯାତ୍ରାଦଳ ଇତ୍ୟାଦିଙ୍କ ସଙ୍ଗେ କେତେକ ଆଲୋଚନା କରି ସାମାନ୍ୟ ପାରି-ଶ୍ରମିକ ଗତ କାଲି ପାଇଁ ଦିଆ ହେଲା ।

ଅଫିସ୍‌ରୁ ବହୁତ ଫାଇଲ୍ ଆସିଲା ସପ୍ଲିମେଣ୍ଟାରୀ ବଜେଟ୍ ସକାଶ ପ୍ରସ୍ତାବ କରି । ସେ କାମ ସବୁ ସାରି ମୁଁ ଫୁଲବାଣୀ ଗସ୍ତରେ ବାହାରିଲି । ରାସ୍ତାରେ ଗ୍ରାମମଙ୍ଗଳ କେନ୍ଦ୍ର

ବିଷୟରେ ଆଲୋଚନା କରି ଆଗକୁ ଯିବା ବାଟରେ ଦାଶରଥି ସୁବୁଦ୍ଧି ରତ୍ନଙ୍କ ସଙ୍ଗେ ଦେଖା ହେଲା । ତାଙ୍କୁ ଶହେବର୍ଷ ହେଲାଣି । ସେ ଆଜିଯାଏଁ ଯେପରି ସୁସ୍ଥ ଅଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ସେଠାରୁ ପୁରୁଷୋତ୍ତମପୁର ବାଟରେ ରସଲକୋଣ୍ଡା ଯାଇ ସେଠାରେ ପହଞ୍ଚିଲି ବେଳକୁ ରାତି ସାଢ଼େ ୧୨ । (୧୭ । ୮ । ୫୪)

ରସଲକୋଣ୍ଡାରୁ ରାମପ୍ରସାଦ ବାବୁ ଓ ପ୍ରମୋଦ ପତିଙ୍କ ସଙ୍ଗେ ବଇଡ଼ା ଗଲି । ମଦନବାବୁ ଯିବା ପରେ ଜଣେ ନୂଆ ହେଡ଼ମାଷ୍ଟର ଆସିଛନ୍ତି । ତାଙ୍କର ବିଶେଷ ଉତ୍ସାହ ଥିବାପରି ଜଣାଗଲା ନାହିଁ । ସ୍କୁଲର ଅବସ୍ଥା ଗତ ଅକ୍ଟୋବର ମାସରେ ଯାହା ଥିଲା ବର୍ତ୍ତମାନ ଠିକ୍ ସେଇପରି ଅଛି । କେତେକ ବିଗରେ ଅବନତି ହୋଇଛି ପଛେ ଉନ୍ନତି ହୋଇନାହିଁ । ନୂଆ ହେଡ଼ମାଷ୍ଟର କାମରେ ଯେପରି ମନ ଦେଉଥିଲା ପରି ମନେ ହେଉନାହିଁ । ସେ ଆଗରୁ ନୂଆଗାଁ ଯାଇଛନ୍ତି । ଶିକ୍ଷକ ଓ ଛାତ୍ରମାନଙ୍କ ସଙ୍ଗେ ସ୍କୁଲର ଉନ୍ନତି ବିଷୟ ଆଲୋଚନା କଲି । ପିଲମାନେ ଯତ୍ନ କରି ଗୋଟିଏ ଭଲ କୋଠାଘର ଆରମ୍ଭ କରିଛନ୍ତି । ଏ ପର୍ଯ୍ୟନ୍ତ ଆଠହଜାର ଟଙ୍କା ଖର୍ଚ୍ଚ ହେଲାଣି । ଆଉ ପ୍ରାୟ ଟଙ୍କା ଚାରିହଜାର ଖର୍ଚ୍ଚ ହେଲେ କାମ ସଂପୂର୍ଣ୍ଣ ହେବ । ପୂର୍ତ୍ତିବିଭାଗ ରେଟ୍ ଅନୁସାରେ ଏ ଘରର ମୂଲ୍ୟ କୋଡ଼ିଏ ହଜାର ଟଙ୍କାରୁ କମ୍ ହେବ ନାହିଁ ।

ଶଙ୍କରୀଖୋଲ ଆଶ୍ରମ ଦେଖିଲି । ଘର ତୋଳିବା ପାଇଁ ଟଙ୍କା ମଞ୍ଜୁର ହୋଇଥିଲା । କିଛି ଖର୍ଚ୍ଚ ହୋଇନାହିଁ । ପୂର୍ବପରି ଆଶ୍ରମ ଚାଲିଛି । ବଗିଚା କରିବାର ଉଦ୍ୟମ ହୋଇଛି । ଲକ୍ଷ୍ମୀ ଓ ମଦନବାବୁଙ୍କ ସ୍ତ୍ରୀ ମାଷ୍ଟରାଣୀ ଅଛନ୍ତି । ଉଭୟଙ୍କ ଭିତରେ ଆଜିକାଲି ସଦ୍ଭାବ ଥିବା ପରି ମନେ ହେଉଛି ।

ରାତି ୮ଟା ବେଳେ ନୂଆଗାଁରେ ପହଞ୍ଚିଲି । ସେଇ ରାତିରେ ସବୁଆଡ଼ ବୁଲି ଦେଖିଲି । ସବୁ ବିଗରେ ଉନ୍ନତି ହୋଇଛି । ନୂଆ ହେଡ଼ମାଷ୍ଟ୍ରେ ପଠାଣୀ ମିଶ୍ରଙ୍କଠାରୁ ମଧ୍ୟ ଭଲ ବୋଲି ମନେ ହେଲା । (୧୭ । ୮ । ୫୪)

ସକାଳ ଆଠଟାରେ ଜିଲ୍ଲାମଙ୍ଗଳ ଅଫିସରମାନଙ୍କର ସଭା ହେବାର କଥା ; କିନ୍ତୁ ମନ୍ତ୍ରୀଙ୍କର ଆସିବାରେ ଡେରି ହେଲା । ସେ ସାଢ଼େ ନ'ଟାରେ ଆସିବାରୁ ସଭାକାର୍ଯ୍ୟ ଆରମ୍ଭ ହେଲା । ଆଶ୍ରମ ସ୍କୁଲମାନଙ୍କର ପରିଚାଳନାରେ କିପରି ଉନ୍ନତି କରିବାକୁ ହେବ ସେ ବିଷୟରେ ବହୁତ ଗୁଡ଼ିଏ ଭଲ କଥା ପଡ଼ିଲା । ଦୁଇଜଣ ଆସେମ୍ବ୍ଲି ମେମ୍ବର ଅସିଥିଲେ । ସେମାନେ ଗୋଟିଏ ଗୋଟିଏ ବକ୍ତୃତା ଦେବେ ବୋଲି ମନ୍ତ୍ରୀ ସ୍ଥିର କରିଥିଲେ । ତାହା ବଦଳାଇଲି । ମନ୍ତ୍ରୀ ରାଜି ହେଲେ ଯେ ସେମାନେ ଆମମାନଙ୍କ ସଙ୍ଗେ ସମାନ ଭାବରେ ବସି ଆଲୋଚନାରେ ଯୋଗ ଦେବେ । ମୁଁ ଜାଣିଥିଲି ସେମାନଙ୍କର ଆଲୋଚନା କରିବାକୁ କିଛି ନାହିଁ । ଗାଲି-ଦେବା ଗୋଟିଏ ମାତ୍ର କାର୍ଯ୍ୟ ଯାହାକି ସେ ସୁନ୍ଦରରୂପେ କରିପାରିବେ । ସେଥିପାଇଁ ସୁବିଧା ନ ଦେଲେ ସେମାନେ ବସି ବସି ଆମ କଥାରେ ହୁଁ ମାରିବା ବ୍ୟତୀତ ଆଉ କିଛି କରିବେ ନାହିଁ । ତାହାହିଁ ହେଲା । ଆଉ ଟିକିଏ ଅଧିକ ହେଲା ଯେ, ସେମାନଙ୍କର ବିଶ୍ୱାସ ହେଲା ଯେ, ଆମେ-ମାନେ ଯେଉଁ ଠକ, ଅପସୁଆଁ ଲୋକ ବୋଲି ସେମାନେ ବିଚାରିଥିଲେ, ସେ ଭାବ ତାଙ୍କର

ବହୁ ପରିମାଣରେ ଦୂର ହେଲା । ଆମ ସଙ୍ଗେ ସମାନ ଭାବେ ବସି ଆଲୋଚନା କରିବାର ସୁବିଧା ପାଇବାରୁ ସେମାନଙ୍କୁ ପୁଣି ଗୌରବ ଲାଗିଲା । ଆହା, ବିଚାରେ ! ନିଜର କ୍ଷମତା ବୁଝିବାର ଯୋଗ୍ୟତା ବି ନାହିଁ । ଆମର ଆଲୋଚନା ବଡ଼ ଭଲ ଧରଣର ହେଲା । ଜିଲ୍ଲା ମଙ୍ଗଳ ଅଫିସରମାନଙ୍କର କାର୍ଯ୍ୟରେ ଓ କଥାରେ ପୂର୍ଣ୍ଣ ଆନ୍ତରିକତା ଦେଖିଲି । ସନ୍ଧ୍ୟାବେଳେ କାଣ୍ଡା-ମେଣ୍ଡି ଗାଁରେ ଗୋଟିଏ ଭାଗବତ ଘରର ଶୁଭ ଦିଆହେଲା । ଭାଗବତ ଘର ବୋଲି ତାକୁ କହିଲି ନାହିଁ । ପଲ୍ଲୀ ମଙ୍ଗଳ ସମିତିର ଏ ଅନୁଷ୍ଠାନଟି ହେବ । ସ୍ଥାନୀୟ ଲୋକ, ବିଶେଷ କରି ଆଶ୍ରମ ସ୍କୁଲର ଛାତ୍ରମାନେ ଏ ଘରଟି କରିବେ । ସମିତି ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିବ । ମନ୍ତ୍ରୀ ( ଶ୍ରୀ ସୁନାରାମ ସୋରେନ୍ ), ଅଫିସର ଆଦି ଡ୍ରାଇଭର ଚପରାସୀଙ୍କ ସହିତ ଡୁଡୁ ଓ ବୋହୁଚୋରି ଖେଳ ଖେଳିଲେ । ସେମାନଙ୍କର ମନ ଠିକ୍ ରାସ୍ତାରେ ଚାଲିଛି ।

( ୧୮ । ୮ । ୫୪ )

କାଲିର ସମିତି ଘରକୁ ସୁନାରାମ ସଦନ ନାମ ଦିଆଯିବ । ମୂଳଦୁଆ ଦେବା ସକାଶେ ପିଲାମାନଙ୍କ ସଙ୍ଗେ ପଥର ଆଣିବାକୁ ଜିଲ୍ଲାମଙ୍ଗଳ ଅଫିସରମାନେ ଗଲେ—ଆଜି ସନ୍ଧ୍ୟାରେ ମଧ୍ୟ ମୂଳଦୁଆ ପକାଇବାରେ ସାହାଯ୍ୟ କଲେ । ସେମାନଙ୍କ ମନରେ ନୂତନ ଉତ୍ସାହ ଉନ୍ମାଦନା ଦେଖାଯାଉଛି । ଏ ବର୍ଷ ଆଉ ୩୦ । ୪୦ଟି ଏହିପରି ପଲ୍ଲୀମଙ୍ଗଳ ସମିତି ରାଜ୍ୟର ବିଭିନ୍ନ ସ୍ଥାନରେ କରାଇବାର ସଙ୍କଳ୍ପ ସେମାନଙ୍କୁ ଜଣାଇଲି । ସମସ୍ତେ ଯଥାସାଧ୍ୟ ଚେଷ୍ଟା କରିବାକୁ ଅଙ୍ଗୀକୃତ ହେଲେ । ଥରକୁଥର ଚେତେଇଲେ କିଛି କରିବେ । ଜିଲ୍ଲା ଲୋକ ସମ୍ପର୍କ ଅଫିସରଙ୍କୁ ମଧ୍ୟ ଏଥିରେ ଲଗାଇବାକୁ ହେବ ।

ରାତି ୧୧ଟା ବେଳେ ବାହାରି ରସୁଲକୋଣ୍ଡାରେ ୩ଟା ବେଳେ ପହଞ୍ଚିଲୁ । ସେଠାରେ ଥାନ ନ ମିଳିବାରୁ ରାତି ରାତି ବ୍ରହ୍ମପୁର ବାହାରିଗଲୁଁ । ( ୧୯ । ୮ । ୫୪ )

## କୃଷି କଲେଜ ଉତ୍ସବ :

କୌଣସି ମତେ କାମ ସାରି ଠିକ୍ ସମୟର ଟିକିଏ ପୂର୍ବରୁ ଫାର୍ମକୁ ଗଲି । ଆଜିର ଉତ୍ସବ ଓଡ଼ିଶା ଇତିହାସରେ ନୂଆ କଥା । ଅନେକ ଅଫିସର ଆଜି ଲୁଗା ପିନ୍ଧି ଆସିଥାନ୍ତି । ସେଥିରେ ଉତ୍ସାହିତ ହୋଇ ଶରଧରଙ୍କୁ ଆଣି ଆଗରେ ବସାଇଲି । ମଇଳା ଲୁଗା ପିନ୍ଧି-ଥିବା, ଦେହରେ ଶଗଡ଼େ ମଳି ବସିଥିବା ଅସ୍ପୃଶ୍ୟ ଲୋକ ଆଜି ନୂଆକରି ବାବୁଙ୍କ ସାଙ୍ଗରେ ବସିଲେ । ଓଡ଼ିଆରେ ସବୁ ବକ୍ତୃତା ହେଲା । ମୁଁ ମୋ ବକ୍ତୃତାରେ ଏ ବିଷୟର ଉଲ୍ଲେଖ କରି ଭବିଷ୍ୟତ ପାଇଁ ଆଶା ପ୍ରକାଶ କଲି । ନବବାବୁ ଗୋଟିଏ ଖୁବ୍ ଭଲ ବକ୍ତୃତା ଦେଲେ । କେବଳ ଗୋଟିଏ ଦୋଷ ହେଉଛି ଆମ ପଣ୍ଡିତ ବିଷୟରେ ବିଶେଷ କିଛି ନ ଜାଣି, ସେ ତାହାକୁ ସାଥାନ୍ତୁଆ ପଣ୍ଡିତ ବୋଲି କହୁଛନ୍ତି । ( ୨୩ । ୮ । ୧୯୫୪ )

ପଣ୍ଡିତ ଜଗନ୍ନାଥ ରଥେ ଏକାକୁ ଆସି ପହଞ୍ଚିଲେ । ତାଙ୍କ ସଙ୍ଗେ ଗୁଡ଼ାଏ ସମସ୍ତ କଥାବାର୍ତ୍ତା ହେଲା । ତାଙ୍କ ସାହାଚର୍ଯ୍ୟ ସୁଖ ଲାଗୁଛି । ଏଣେ କିଛି ଗୁଡ଼ାଏ ସମସ୍ତ ସିବାକୁ

ବ୍ୟସ୍ତ ଲାଗୁଛୁ । ଦ'ପହର ପରେ ବୁଢ଼ାଏ ସମସ୍ତ ଲାଗି ଟେବୁଲ ସଫା କଲା ବେଳକୁ ଡେପୁଟି ମିନିଷ୍ଟରଙ୍କଠାରୁ ଡାକରା ଆସିଲା । ତାଙ୍କ ସଙ୍ଗେ ବହୁତ ଗୁଡ଼ାଏ ରାଜନୀତିକ ଓ ସାଂସ୍କୃତିକ ଆଲୋଚନା ହେଲା ରାତି ଦ' ଘଣ୍ଟା ପର୍ଯ୍ୟନ୍ତ ।

ରାତିରେ କବିରାଜେ ମହାପ୍ରସାଦ ଆଣିଲେ । ତାହାର ସଦ୍‌ବ୍ୟବହାର କରିବାକୁ ଧଇଣ୍ଟି ହୋଇ ଲୋକ ସଂଗ୍ରହ କଲି ।

ଉତ୍କଳ ପ୍ରସଙ୍ଗର ଲେଖା ଦୁଇଟି ପରମାନନ୍ଦ ଆଚାର୍ଯ୍ୟ ଓ ବ୍ରଜବାବୁଙ୍କ ସଙ୍ଗେ ଆଲୋଚନା କଲି । ସେମାନେ ତାହାକୁ ଅଯାଚିତ ଭାବେ ପ୍ରଶଂସା କଲେ । ପୁଣି ମନରେ ସନ୍ଦେହ ରହୁଛି, କେଜାଣି ଅବା ମୁଦ୍ରିମତରେ ପସନ୍ଦ କରିଥିବେ । ଆଜି ମନରେ ସାହସ ହେଲା, ମୋର ଲେଖାର ପ୍ରକାଶ ଆରମ୍ଭ କରିବାକୁ ଖଣ୍ଡେ ଦୁଇଖଣ୍ଡ ଛପାଇଦେବା ; ଯାହା ହେଉ । ( ୨୪ । ୮ । ୧୯୫୪ )

**ବରୁଣେଇରେ ଉତ୍ସବ :**

ଆଜି ଦିନଟି ମୋ'ର ଗୋଟିଏ ସ୍ମରଣୀୟ ଦିନ । ବରୁଣେଇକୁ ପୁରୀର କେତେଜଣ ବ୍ରାହ୍ମଣ, ଗାଁରୁ ଆମ ବାଡବାଲାଙ୍କୁ ଓ ଭୁବନେଶ୍ୱରର ମୋ'ର କେତେଜଣ ଆତ୍ମୀୟଙ୍କୁ ଡାକିବା କଳ୍ପନା ପଣ୍ଡିତ ଜଗନ୍ନାଥ ରଥଙ୍କ ସଙ୍ଗେ ହେଉ ହେଉ ଏହା ଗୋଟିଏ ବଡ଼ ଆକାର ଧାରଣ କଲା । ଭୁବନେଶ୍ୱରରୁ, କଟକରୁ ଓ ଖୋର୍ଦ୍ଧାରୁ ଗୁଡ଼ାଏ ଉଚ୍ଚଶିକ୍ଷିତ ଲୋକ ପହଞ୍ଚିଲେ । ଏହା ମରହଟ୍ଟିଆ ଓ ଆଧୁନିକଙ୍କର ଏକ ମିଳନ ଉତ୍ସବ ହୋଇଗଲା । ପୂର୍ବରୁ ୪୦ ଜଣଙ୍କ ବରାଦରେ ଜିନିଷ ଯୋଗାଡ଼ ହୋଇଥିଲା । ବିଶ୍ୱାସ ଥିଲା ୬୦ ଜଣଙ୍କୁ ଅଣ୍ଟିଯିବ । ଆମନ୍ତ୍ରିତ ଭଦ୍ରବ୍ୟକ୍ତି ଦେଖି ଦେଖି ଶହକରୁ ଉପର ହୋଇଗଲେ । ଯେଉଁମାନେ ରନ୍ଧାରନ୍ଧର ଭାର ନେଇଥିଲେ ସେମାନେ ଭାରି ଘାଣ୍ଟି ହେଲେ । ଖୋର୍ଦ୍ଧାକୁ ଖୁବ୍ ଦୌଡ଼ ହେଲା, ଜିନିଷ ଓ ଡାଗା (ପାତ୍ର) ଯୋଗାଇବାକୁ । ସମସ୍ତଙ୍କୁ ଅଣ୍ଟିଲା; ବରୁଣେଇର ଇତିହାସରେ ଆଜି ନୂଆ ହୋଇ ଇଲେକ୍ଟ୍ରିକ୍ ଲାଗିଲା । ମଉଜ କରିବା ବାଲାଙ୍କୁ ବେଶ୍ ଲାଗିଥିବ । ଖାଲି ଖାଇବା ବେଳକୁ ବର୍ଷା ଆରମ୍ଭ ହେବାରୁ ଦାଉଁଙ୍କ ଆଗ ଜଗମୋହନରେ ଖୁନ୍ଦାଖୁନ୍ଦି ହୋଇ ଖାଇଲେ । ମୋ'ର ଆଶା ଯେତିକ ଅନ୍ତତଃ କେତେ ଜଣ ମଉଜ ଭିତରେ ମହତ୍ତ୍ୱର କଥାର ଟିକାନ ପାଇଥିବେ । ଗଜେନ୍ଦ୍ର ମୋକ୍ଷଣରୁ 'ଅଧ୍ୟାୟେ ପଢ଼ି ବୁଝାଇଲି । ଖାଇବା ପରେ ଗୋଟିଏ ସଭା ହେଲା । ନୂଆ ପୁରୁଣାର ସମ୍ମିଶ୍ରଣ କାହିଁକି ଦରକାର, ପଣ୍ଡିତମାନଙ୍କ କାର୍ଯ୍ୟରେ କେଉଁଠି ସଂକୀର୍ଣ୍ଣତା ରହିଯାଉଛି, ଓ ଶିକ୍ଷିତ ଲୋକଙ୍କର କେଉଁଠି ଅବଜ୍ଞାର ଓ ଅନୁଦାରତା ରହୁଛି ତାହା ଆଲୋଚିତ ହେଲା । ମୁଁ ଯେଉଁ ଚିନ୍ତାଧାରା ଧରିଛି ତାକୁ ଉଭୟ ପକ୍ଷ ପସନ୍ଦ କଲେ ବୋଲି କହିଲେ ।

ମୋ'ର ୪୦ ବର୍ଷ ପୂର୍ବର ସ୍ମୃତି ଆଜି ଜାଗ୍ରତ ହେଲା ଗୋଟିଏ ଘଟଣାରେ । ନନାଙ୍କର ହାଲେ ବଳଦ ୪୦ ବର୍ଷ ତଳେ ଏଇ ବରୁଣେଇରୁ ଚାଲି ଯାଇଥିଲେ ଗାଁକୁ । ଅଜ ମୋ'ର ଗୋଟିଏ ବଳଦ ହେଇପରି ଫିଟି ଚାଲିଗଲା । (୨୯ । ୮ । ୫୪)

## ପିତୃସ୍ମୃତି :

ନିଦରୁ ଉଠିବା ବେଳକୁ ସର୍ବ ପ୍ରଥମେ ମନେ ପଡ଼ିଲା ବଳଦ କଥା ଓ ତା' ସଙ୍ଗେ ୪୦ ବର୍ଷ ପୂର୍ବର ସେ ରାତିର କଥା । ନନା, ଦଦେଇଙ୍କ ସମେତ ଆମ ସାଇର ସମସ୍ତେ ଯାଇଥାନ୍ତି । ରାତି ଅଧରେ ନନାଙ୍କ ନୂଆ ବଳଦ ଯୋଡ଼ାକ ଫିଟିଗଲେ । ନନା ନଟିଆକୁ ଦି'ପଦ ଗାଳିଦେଲେ ଓ ବରୁଣେଇଙ୍କୁ ଡାକି ନିଶ୍ଚିନ୍ତ ରହିଲେ । ବଳଦଙ୍କର ଜଙ୍ଗଲରେ କିଛି ହେବନାହିଁ ବୋଲି କହିଲେ । ଦଦେଇ ତା' ଆରଦିନ ପହାନ୍ତିଆରେ ଗାଁକୁ ଆସିଲେ ବଳଦ ଖୋଜିବାକୁ ! ଗୋଟିଏ ଯାଇ ଘରେ ପହଞ୍ଚିଥିଲା, ଆଉ ଗୋଟିଏ କଦଳୀବାଡ଼ିରେ ରହି ଯାଇଥିଲା, ପରେ ମିଳିଲା । ସେ କଥା ମନେ ପଡ଼ିବାରୁ ମୋ'ର ପୂର୍ଣ୍ଣ ବିଶ୍ୱାସ ହେଲା, ମୋ ବଳଦ ମିଳିବ । ଅନ୍ତତପକ୍ଷେ ବାଟରେ ସେ ବାଘ ହାବୁଡ଼େ ପଡ଼ିବ ନାହିଁ, ବା ପଠାଣ ନେବେ ନାହିଁ । ଏଣିକି ମା'ଙ୍କୁ ମାଗି ମୁଁ ନିଶ୍ଚିନ୍ତ ରହିଲି ।

ନିଦରୁ ଉଠିଲାବେଳକୁ ହୋଇଥିଲା ପ୍ରାୟ ଏଗାର । ଶୀଘ୍ର ନିତ୍ୟକର୍ମ ସାରି କାମରେ ଲାଗିଲି । ପ୍ରାୟ ଘଣ୍ଟା ବେଳକୁ ପଣ୍ଡିତ, ଚିନ୍ତାମଣି ମହାପାତ୍ରେ ଓ କବିରାଜଙ୍କୁ ଧରି ପୁରୀ ବାହାରିଲି । ଗିରିସ୍ୱାମୀ ମଠର ଜଣେ ବାବାଜୀଙ୍କ ସଙ୍ଗେ ଦେଖା ହେଲା । ସେଠାକୁ ଯିବାର ପ୍ରଧାନ ଉଦ୍ଦେଶ୍ୟ ଥିଲା ଉତ୍କଳ ପଲ୍ଲୀମଙ୍ଗଳ ସମିତି ପାଇଁ ଷଣ୍ଢ କରିବାକୁ ବାଛୁରୀ ଖୋଜିବା । ସେ ମଠରେ ବଡ଼ ସୁନ୍ଦର ବାଛୁରୀ ସବୁ ଅଛନ୍ତି । ଗୋଟିଏ ବାଛୁରୀ ବାଛିଲି । ମାଲିକ ନ ଥିବାରୁ ଆଉ ଅଧିକ ଅଗ୍ରସର ହୋଇ ହେଲା ନାହିଁ । ତା'ପରେ ଗଲି ଶଙ୍କରାନନ୍ଦ ମଠକୁ । ସ୍ୱାମୀଙ୍କ ସଙ୍ଗେ ଦେଖାହେଲା । ସେ ମୋତେ ଦେଖି ଖୁସି ହେଲେ ; ଦେଖା ହେବାକୁ ଇଚ୍ଛୁକ ଥିଲେ ବୋଲି କହିଲେ । ସେଠାରେ ଶ୍ରୀ ଅନନ୍ତ ମିଶ୍ର ବୋଲି ଜଣେ ସ୍ୱାମୀ ହୋଇଛନ୍ତି । ସେ ମୋତେ ଦେଖିବାକୁ ଆସିଲେ । ନନାଙ୍କ କଥା ପକେଇଲେ । ମୋ ଆଖିରୁ ଲୁହ ଆସିଗଲା । ନନାଙ୍କର ମୋ ଉପରେ କି ପ୍ରଭାବ ପଡ଼ିଥିଲା, ପିଲାଦିନଯାକ ତାଙ୍କର ନାଁ ଗାରେଇ ଗାରେଇ ପୃଷ୍ଠାକୁ ପୃଷ୍ଠା ଖର୍ଚ୍ଚ କରେ ରଫ୍ ଖାତାରୁ । ଆଜି ମଧ୍ୟ ପ୍ରତି ଦିନ ତାଙ୍କର କଥା ଦିନକେ ଅନ୍ତତଃ ଥରେ ମନେ ପଡ଼େ । ବେଳେ ବେଳେ ଆଖିରୁ ଲୁହ ଗଡ଼ିପଡ଼େ । ମୋତେ ଦଶ ବର୍ଷ ହେଲା ବେଳକୁ ତାଙ୍କୁ ଦେଖିବା ସରିଲା ; କିନ୍ତୁ ସବୁବେଳେ ତାଙ୍କର ପାଇଁ ମୁଁ ଯେ ଏ ସଂସାରକୁ ଆସିଛି, ଏଇ ଭାବ ମନରେ ରହିଛି । ମୋ'ର ଯୋଗୁ ମୋ' ନନା ମନେ ରହନ୍ତୁ ଏଇ ଇଚ୍ଛା । ଭଗବାନ୍ ! ମୋ' ନନାଙ୍କ ନାଁ ମୋ ନାମରେ ଲିଭି ନ ଯାଉ ; ଦଦେଇଙ୍କ କଥା ମଧ୍ୟ ତାଙ୍କର କଥା ସାଙ୍ଗରେ ରହୁ ।

## ମନ୍ତ୍ରୀମଣ୍ଡଳ ବୈଠକ ଓ ଅଫିସର ମେଳଣ :

କାଲି ରାତି ଅଧକୁ ପୁରୀରୁ ବାହାରି ଶୋଇବାକୁ ଗଲାବେଳକୁ ଅଢ଼େଇଟା ହୋଇଥିଲା । ପଥରଦିନ ବି ସେଇଆ ହୋଇଥିଲା । ଆଜି ଉଠିଲାବେଳେ ଦେହ ଟିକିଏ ଖରାପ ଲାଗିଲା । ଭାବିଲି ବର୍ତ୍ତମାନ ଦିନ ଦୁଇଘଣ୍ଟା ବିଶ୍ରାମ କରିବି, ଅର୍ଥାତ୍ ରାତି ୧୦ଟା ବେଳକୁ

ଅନ୍ତତଃ ଶୋଇବ । ଅଫିସ୍ ଘରେ ପହଞ୍ଚିଲାବେଳକୁ ଟେବୁଲଯାକ କାଗଜ ପତ୍ର । ମନ୍ତ୍ରୀମଣ୍ଡଳ ବୈଠକରେ ମତେ ଯେତେବେଳେ ଖୋଜାପଡ଼ିବ ସେତେବେଳେ ଖବର ଦେବାକୁ ସାମଲଙ୍କୁ ଜଣାଇ ମୁଁ ଫାଇଲ କାମରେ ଲାଗିଲି । କିନ୍ତୁ ଘଣ୍ଟେ ଖଣ୍ଡେ ଭିତରେ ମନ୍ତ୍ରୀଙ୍କଠାରୁ ଡାକରା ପଡ଼ିଲା । ତାଙ୍କ ସଙ୍ଗେ ପଦେ କଥା ଥିଲା । ସେତେବେଳକୁ ମନ୍ତ୍ରୀମାନଙ୍କର ସାଧାରଣ ଆଲୋଚନା ହେଉଥାଏ, ମୋଟ ଉପରେ ଝାଲ ମାନ ଅଭିମାନର ଲୀଳା । ଆମ ମନ୍ତ୍ରୀ ଅର୍ଥ ମନ୍ତ୍ରୀଙ୍କ ଉପରେ ଗୋଟିଏ ଦୋଷ ଲଦି ତାହାର ପ୍ରମାଣ ମୋ'ଠାରୁ ଲୋଡ଼ୁଥିଲେ । ପ୍ରମାଣ ତ ଥିଲା ; କିନ୍ତୁ ମୋତେ ଏ ଗୀତ ସୁଖ ଲାଗୁନାହିଁ । ମନ୍ତ୍ରୀମାନେ ନିଜର ଦୋଷ ଗୁଣ ଚଟ୍ ସେକ୍ରେଟାରୀ ଓ ଡାଇରେକ୍ଟର ଆଗେ ପକାଇବା ଫଳରେ ନିଜକୁ ଏଇ ଭଦ୍ରଲୋକମାନଙ୍କ ଆଗରେ ଖୁବ୍ ଶ୍ରେଷ୍ଠ କରି ଦେଉଛନ୍ତି । ନବବାବୁ ଏଥିରେ ଦୋଷ ଦେଖୁ ନାହାନ୍ତି । ସେ ନିଜକୁ ଭାରତୀୟ ବୋଲି ଭାବି ସାରିଲେଣି । କିନ୍ତୁ ମୁଖର୍ଜି ଓ ଡାଭେ କ'ଣ ଓଡ଼ିଶାକୁ ନିଜ ଦେଶ ବୋଲି ବୁଝୁଛନ୍ତି ? ସେମାନେ ସ୍ୱଚ୍ଛନ୍ଦରେ ଓଡ଼ିଆଙ୍କ ନାମରେ ଚୁଗୁଲି କରୁଛନ୍ତି । ଆମେ ସମସ୍ତେ ଭାରତୀୟ, କିନ୍ତୁ ଆଗ ଓଡ଼ିଆ—ତାହା ନ ହେଲେ ଓଡ଼ିଶାର ଗ୍ରାମ ମଙ୍ଗଳରେ ଅର୍ଥ ନାହିଁ, ଏ କଥା ନବବାବୁ ବୁଝିଲା ପରି ଆଶା ହେଉନାହିଁ । ( ୩୧ । ୮ । ୧୯୫୪ )

**ମୋ ମନ୍ତ୍ରୀ ଓ ଆଦିବାସୀ ମଙ୍ଗଳ :**

ସକାଳୁ ଉଠି ପୁଣି ଅଫିସ୍ ଟେବୁଲ ସଫା କରିବାରେ ଲାଗିଲି, କିନ୍ତୁ ବେଶି ବେଳ କାମ କରିବାକୁ ହୋଇ ପାରିଲା ନାହିଁ । ସାଢ଼େ ଦଶଟାବେଳକୁ ମନ୍ତ୍ରୀ ଡକାଇଲେ । ତାଙ୍କ ସଙ୍ଗେ ବହୁତ ଗୁଡ଼ିଏ ଆଲୋଚନା ହେଲା । ତାଙ୍କ ମନ ମୟୂରଭଞ୍ଜରେ ଲାଗି ରହିଛି । ମୁଁ ସମଗ୍ର ଓଡ଼ିଶା କଥା ତାଙ୍କ ଆଗରେ ଟିକିଏ ସୁବିଧା ମିଳିଲେ ଗପୁଛି । ମୟୂରଭଞ୍ଜକୁ ଛାଡ଼ିଦେବାକୁ ମୋର ଇଚ୍ଛା ନୁହେଁ ; ତାଙ୍କ ରାଜନୈତିକ ଜୀବନର ମୟୂରଭଞ୍ଜ ମୂଳଦୁଆ ; ତାହାକୁ ଦୃଢ଼ କରିବାରେ ଦୋଷ ନାହିଁ । କିନ୍ତୁ ସେତିକରେ ସନ୍ତୁଷ୍ଟ ହୋଇଗଲେ କାନ୍ଥ ଉପରକୁ ଉଠିବ କେବେ, ଛାତ ପଡ଼ିବ କେବେ ? ଖାଲି ସୂଚନାରେ ଏକଥା ପକାଇଲି ।

ଫେରିଲା ବେଳକୁ ପିପିଲିର ଟୋକା ପଞ୍ଚାଏ ଯାଇ ନ ଥାନ୍ତି । ଏ ମାନଙ୍କୁ ମନ୍ତ୍ରୀଙ୍କ ପାଖକୁ ଗଲାବେଳକୁ ଫେରାଇ ଦେଇଥିଲି । ଏମାନେ ଚାହୁଁଛନ୍ତି ଗ୍ରାମ ମଙ୍ଗଳ କେନ୍ଦ୍ରଟା ପିପିଲିରେ ରହୁ । କିଛି କାମ କରୁନାହାନ୍ତି ; ଉଠାଇ ନେବା କଥା ପଡ଼ିବାରୁ ଚେଷ୍ଟା ପଶୁଛି । ତାଙ୍କୁ ଗୁଡ଼ାଏ ଗାଳିଦେଇ, ଶେଷରେ ସ୍ଥିର କଲି ଆଉ କୋଉଠି ନୂଆ ପିପିଲିରେ ଅନୁଷ୍ଠାନଟା ରହୁ ।

ଗୋଟାକ ବେଳେ ଟାଙ୍ଗିଆପଡ଼ା ସେବାଶ୍ରମକୁ ଗଲି, ଗଣେଶ ପୂଜାରେ ଶବର ଓ ସବର୍ଣ୍ଣ ଏକାଠି ଭୋଗ ବାଣ୍ଟୁଛନ୍ତି କି ନାହିଁ ଦେଖିବାକୁ । ପାଖଆଖ ଗାଁରୁ ସେବାଶ୍ରମର ଉତ୍ସବ ଦେଖିବା ବହୁତରେ ଅଙ୍କ ବାହାରିଥିଲେ । ଶିଆଳିଆରେ ମଧ୍ୟ ଶବର ଓ ସବର୍ଣ୍ଣ ଏକାଠି ପୂଜା ବାଢ଼ୁଥାନ୍ତି । ଗାଁର ବଗିଚା ଦେଖି ଓ ଆମ ଗାଁର ସ୍କୁଲ ଦୁଇଟି ଦେଖି ଫେରିଲି ବେଳକୁ, ରାତି ୧୨ଟା । ( ୧ । ୯ । ୧୯୫୪ )

**ମୁଖ୍ୟମନ୍ତ୍ରୀଙ୍କ ସାମ୍ବାଦିକ ସମ୍ମିଳନୀ :**

ଉଠିଲି ବେଳକୁ ୭ଟା । ଆଜି ଟିକିଏ ଖରାପ ଲାଗିଲା । ଜଗନ୍ନାଥ ରଥଙ୍କର ବରାଦ ଆଜି କଟକ ଯିବାକୁ, କାଲି ପୁଣି ପୁରୀ । ମୋତେ ଆଜି ପେଟ ସୂଚେଇ ଦେଲା, ଏ ଦୁଇଟି ପ୍ରୋଗ୍ରାମ ଯଦି ରହିବ, ତେବେ ପୁଣି ଆଉ ସ୍ୱାସ୍ଥ୍ୟ ଖଟରେ ହେବ । ଜଗନ୍ନାଥ ରଥ ପ୍ରଭୃତିଙ୍କୁ ଚାଲିଯିବାକୁ ସୂଚାଇ ଦେଲି, ବଡ଼ ଅପ୍ରତ୍ୟକ୍ଷ ଭାବେ । ସେମାନେ ବୁଝିଥିବେ ଯେ ସେମାନେ ବେଶୀ ଲାଗିଥିବାରୁ ମୋର ଦେହ ଖରାପ ହେଉଛି । ବୁଝନ୍ତୁ ; ଏମାନେ ନିଜ ସ୍ୱାର୍ଥ ପାଇଁ ଗୋଡ଼ାଇଛନ୍ତି । ଅବଶ୍ୟ ସ୍ୱାର୍ଥ ସଙ୍ଗେ ଟିକିଏ ସଦିଚ୍ଛା ଅଛି । କିନ୍ତୁ ସ୍ୱାର୍ଥର ଭାଗ ବେଶି ଥିବାରୁ ଯାହା ପ୍ରସ୍ତାବ କରୁଛନ୍ତି ସେଥିରେ ଟିକିଏ ମେଞ୍ଚଡ଼ ରହିଯାଉଛି । ଏମାନଙ୍କ ସ୍ୱାର୍ଥ ଅବଶ୍ୟ ଉଚ୍ଚ ଧରଣର । କିନ୍ତୁ ଯେତେ ହେଲେ ସ୍ୱାର୍ଥ ତ !

ଆଜି ଆଉ ଗୋଟିଏ ଶୁଭ କାର୍ଯ୍ୟ ଆରମ୍ଭ ହେଲା । ଆଜି ନବବାବୁଙ୍କର ମନ ହେଲା, ସମ୍ବାଦିକ ସମ୍ମିଳନୀ ଡାକିବାକୁ । ବର୍ଷେରୁ ବେଶି ହେଲା ସ୍ୱାଙ୍କୁ ମୁଁ କେତେ ଲଗେଇଛି । ସବୁଥର ସେ ପ୍ରସ୍ତାବକୁ ଫୋପାଡ଼ି ଦିଅନ୍ତି । ଆଜି ନିଜେ ଆରମ୍ଭ କଲେ । ଖାଦ୍ୟ ସମସ୍ୟା ବିଷୟରେ ଭଲ ଇସ୍ତାହାରଟିଏ ଦେଲେ । କିନ୍ତୁ ପ୍ରେସ୍‌ବାଲାଙ୍କୁ ଗୁଡ଼ାଏ ଖୁସାମତ କଲେ । ଲୋକରେ ଆତଙ୍କ ହୋଇ ଗଲାଣି ବୋଲି ସ୍ୱୀକାର କଲେ । ତାହା ଦୂର କରିବାକୁ ଟଙ୍କା ବାହାର କରିଛନ୍ତି ଓ ପ୍ରେସ୍ ବାଲାଙ୍କୁ ଖୁସାମତ କରୁଛନ୍ତି ବୋଲି ମାନିଲେ । ମୁଁ ଏହି କାର୍ଯ୍ୟ ଅନ୍ୟ ପ୍ରକାରେ କରିଥାନ୍ତି । ହଉ । ପ୍ରେସ୍ କନ୍‌ଫରେନ୍‌ସ ତ ଆରମ୍ଭ ହେଲା । ସ୍ୱାକୁଇ ମୁଁ କହେ, ପୁଅ ତ ଆଁ କଲାଣି ; ଈଶ୍ୱର ଆୟୁଷ ହେଲେ ହାତରେ ଖାଇବ ନାହିଁ କି ?

( ୨ । ୯ । ୧୯୫୪ )

**ମରୁଡ଼ି ଚତ୍କାର :**

ଦୁଇ ଦିନ ହେଲା ବେଶ୍ ବର୍ଷା ହେଉଛି । ଏ ବର୍ଷ ଫସଲ ହାନି ହେବାର ଯେଉଁ ଆଶଙ୍କା ଅଛି ତାହା ଏ ବର୍ଷାଦ୍ୱାରା କେତେକ ପରିମାଣରେ ହ୍ରାସ ହେବ । ଯେଉଁ ଜମିରେ କେବେ ଧାନ ହୁଏ ନାହିଁ ସେହିପରି ଜମିରେ ବର୍ଷେ ଦୁଇବର୍ଷ ହେଲା ଲୋକେ ଧାନ କରୁଛନ୍ତି, ଅଧିକ ଲାଭ ପାଇବା ଆଶାରେ । ସେ ଆଶା ଏ ବର୍ଷ ପୂରଣ ହେବାର ନ ଦେଖି ସେଇମାନଙ୍କ ଆଉ ଆରମ୍ଭ ହୋଇଛି, ମରୁଡ଼ିର ଚିତ୍କାର । ତାଙ୍କଠାରୁ ଶୁଣି ଖବରକାଗଜ ପ୍ରତିନିଧିଙ୍କୁ ସମ୍ବାଦ ମିଳିଯାଇଛି । ଅବଶ୍ୟ ସମ୍ବଲପୁର ଓ ବାଲେଶ୍ୱର ପରି କୌଣସି କୌଣସି ଜିଲ୍ଲାରେ ବର୍ଷା କମ୍ ହୋଇଛି । କିନ୍ତୁ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବାର ଆଶଙ୍କା ଦିଶୁନାହିଁ । ଖବର କାଗଜରେ ବିକଳ ଚିତ୍କାର କରିବା ଫଳରେ ଭାରତ ସରକାରଙ୍କ ଦୃଷ୍ଟି ଆମ ଉପରେ ପଡ଼ିବାର ଆଶା ଅଛି । କେନ୍ଦ୍ରଠାରୁ ଇ ତ ସାହାଯ୍ୟର ପ୍ରତିଶ୍ରୁତି ଦେଇ ସାରିଲେଣି । ପଣ୍ଡିତ ଜବାହରଲାଲ ୨୫ ହଜାର ଟଙ୍କା ସାହାଯ୍ୟ ଦେବାର ସମ୍ବାଦ ଶୁଣା ଗଲାଣି । କିନ୍ତୁ ଖବର କାଗଜରେ ଏପରି ଚତ୍କାର ହେବା ଫଳରେ ଆମ ନିଜ ଲୋକଙ୍କର ଦିଲ୍ କିପରି ଶୁଖିଯାଉଛି ସେ କଥା କେହି ଦେଖୁନାହାନ୍ତି । ଲୋକଙ୍କ ଭିତରେ ଉତ୍ସାହ ଦେଲେ କେତେ କାମ ହୁଅନ୍ତା,

ସମାଜର କେତେ ଅଳଆ ସଫା ହୋଇଯା'ନ୍ତା ; ସେ ଦିଗରେ ଯଥେଷ୍ଟ ଚିନ୍ତା କରାଯାଉ ନାହିଁ । ଭାଗ୍ୟକୁ ଆଦର କରିବା ଆମର ଦୋଷ ଥିଲା । ପୂର୍ବେ ଲୋକେ, ଭଗବାନଙ୍କଠାରେ ଭରସା ରଖି ପଡ଼ିଥିଲେ । ବର୍ତ୍ତମାନ ସରକାରଙ୍କ ଗୁହାରି ବସିବେ । ( ୩ । ୯ । ୧୯୫୪ )

ଯାତ୍ରା ଏବଂ ପାଲାକୁ ସାହାଯ୍ୟ ଦେବା ସକାଶେ ତିନିହଜାର ଟଙ୍କା ଦେବାକୁ ମନ୍ତ୍ରୀମଣ୍ଡଳରେ ଆବେଦନ କରିଥିଲି । ମିଳିଲା । ମୁଁ ଖର୍ଚ୍ଚ ଫର୍ଦ୍ଦ ତିଆରି କଲାବେଳେ ୫୦ ଶହ ଟଙ୍କା ରଖିଥିଲି । ଦୁଏତ ରହୁ ରହୁ ସବୁତକ ରହିଯିବ, ଏଇ ଆଶାରେ ! ଏଥର ଆସେମ୍ବ୍ଲି ଭୋଟ ବାକୀ ରହିଲା । ଆଜିକାଲି ଆସେମ୍ବ୍ଲି ଭୋଟକୁ ଅବଶ୍ୟ କେହି ପଚାରୁନାହାନ୍ତି । ମନ୍ତ୍ରୀମଣ୍ଡଳରେ ଯାହା ଗୃହୀତ ହୋଇ ଯାଉଛି, ତାହା ତ କଂଗ୍ରେସ ଦଳ ନିଶ୍ଚୟ ଗ୍ରହଣ କରନ୍ତି । ସରକାରଙ୍କର ଅନେକ କାର୍ଯ୍ୟକୁ ତାଙ୍କ ନିଜ ଦଳର ଲୋକେ ସମାଲୋଚନା କରୁଛନ୍ତି— ଚୁପ୍ଚାପ୍ ରୂପରେ । ଦଳ ବୈଠକରେ ନିଜର ବିରୋଧ କେହି ଠାଣି କରି ପ୍ରକାଶ କରୁନାହାନ୍ତି, କେଜାଣି ନବବାବୁ ବିଗିଡ଼ିଲେ ଗାଦିର ଗୋଳିଯିବ ଏହି ଭୟରେ । ଆସେମ୍ବ୍ଲିକୁ ଖାଲି ଏତିକି ଭୟ, ବିପକ୍ଷ ନ ବୁଝି ବିରୋଧୀ ଦଳ ଗୁଡ଼ାଏ ଏଣୁ ତେଣୁ ସମାଲୋଚନା କରିବେ । ତାହା କମାଇବା ନିମନ୍ତେ ଦାସକାଠିଆ ଦଳେ କରାଇ ଯାଯାଦରେ ଓ ଦାସକାଠିଆରେ ଲୋକଙ୍କୁ କପରି ମନାଇ ହେବ ସେ କଥା ଦେଖାଇବା କଳ୍ପନାରେ ଆଜି ସନ୍ଧ୍ୟାବେଳେ ଟୋଟାଏ ଚରିତ ହେବାର ଆୟୋଜନ କରିଥିଲି । ଦଶଜଣ ପର୍ଯ୍ୟନ୍ତ ଆସେମ୍ବ୍ଲି ମେମ୍ବର ଆସିଥିଲେ । ଅଧିକାଂଶ କଂଗ୍ରେସ ଦଳର । ଆହୁରି ବହୁ ଲୋକ ଆସିଥିଲେ । ସମସ୍ତେ ତୁନି ହୋଇ ଶୁଣୁଥାନ୍ତି । ବାସ୍ତବିକ୍ ଏଇ ଦାସକାଠିଆ ବାଲାଙ୍କୁ ବ୍ୟବହାର କରିପାରିଲେ ଲୋକଶିକ୍ଷାରେ ବହୁ ଦୂର ଅଗ୍ରସର ହୋଇ ପାରିବା । ( ୪ । ୯ । ୫୪ )

**ବୋଉ ମନେ ପଡ଼ିଲା :**

ସକାଳୁ ଉଠି ହରି ଖଇନା, ସର୍ବେଶ୍ୱର ଓ ବଳଭଦ୍ର ମିଶ୍ରଙ୍କ ସାଙ୍ଗେ ବଗିଚାକୁ ଗଲି । ବଗିଚା କୂଅ ଉପରେ ବସି ପୂର୍ବକଥା ପକାଇଲୁ । ବୋଉ କଥା ମନେ ପଡ଼ିଗଲା, କାନ୍ଦି ପକାଇଲି । ମୋ ବୋଉ ୨୮ ବର୍ଷରେ ମଲା, ମତେ ସେତେବେଳକୁ ୯ ବର୍ଷ । ମୋର ଜନ୍ମ ବର୍ଷ ପର୍ଯ୍ୟନ୍ତ ନନା ବୋଉ ସୁଖ ପାଇଥିଲେ । ମୋ'ର ଜନ୍ମବର୍ଷ ଆମ ଗାଁ ପୋଡ଼ିଗଲା— ଏକାବେଳକେ ସବୁ । ଆମର ସଡ଼କ ଦାଢ଼ ବାଡ଼ିରେ ବଖରେ ଘୁହାଳ ରହି ଯାଇଥାଏ । ସେଇଠାରେ ବଢ଼ିଁକୁ ଓ ମୋତେ ନେଇ ନନା ବୋଉ ରହିଲେ ପ୍ରାୟ ସପ୍ତାହେ । ସେଇ ବର୍ଷ ନନାଙ୍କର ରୋଗ ବାହାରିଲା । ତା'ପରେ ବୋଉର ବାହାରିଲା ଶ୍ୱାସ । ଗୋଟିକ ପରେ ଗୋଟିଏ ଆମେ ଚାରିଜଣ ଜନ୍ମ ହେଲୁ । ବୋଉର ଦେହ ବଡ଼ାଟି ପରି, କିନ୍ତୁ ତା ମୁହଁ ଓ ଦେହ କେଡ଼େ ପ୍ରସନ୍ନ ଓ ସୁନ୍ଦର ଦିଶେ ! ବୋଉର ରୂପ ଚିନ୍ତା କରିବା ପାପ ବୋଲି ସମସ୍ତେ କହନ୍ତି ; କିନ୍ତୁ ଆଜି ମୋର ବାର୍ଦ୍ଧକ୍ୟରେ ତାହା ଚିନ୍ତା ନ କରି ରହିପାରିଲି ନାହିଁ । ଆଜି ନନାଙ୍କ ଠାରୁ ମଧ୍ୟ ମୁଁ ବଡ଼ । ସେ ୪୩ ରେ ମରିଥିଲେ, ମୋତେ ହେଲା ୫୦ । ବୋଉ

ମୁହଁ ମଧ୍ୟେ ପଡ଼ିଗଲାବେଳେ ଭଗିଯାଉଛି ସେତେବେଳେ ଆମ ଘରର ଦୁଃଖ । ନନା ଓ ସେ ରୋଗୀ । ଧାନ ବର୍ଷକ ଯାଏ ନାହିଁ—ନନାଙ୍କର ଆମ ଉପରେ ଅକାତର ଖର୍ଚ୍ଚ ଯୋଗୁଁ । ଆମଠାରୁ ଲୁଗୁଇକରି ବୋଉ ନନାଙ୍କ ପାଇଁ ଭଲ ଜିନିଷଟିଏ ରଖିଥାଏ, ନନାଙ୍କୁ ଖୁଆଇ ଦିଏ । ଖୁଆଇ ଦେବା ପୂର୍ବରୁ ନନାଙ୍କର ଆଖି ପଡ଼ିଗଲେ, ଆମକୁ ସବୁ ଭାଗକରି ଦିଏ । ସେତେ ସାନ ଜିନିଷ ହେଉ ପଛେ ସମସ୍ତେ ଭାଗ ପାଉଁ । ନନାଙ୍କ ସେବା କରିବାରେ ବୋଉ ସବୁବେଳେ ଲାଗିଥାଏ, କର୍ତ୍ତବ୍ୟ ଭାବରେ ନୁହେଁ, ପ୍ରାଣର ପୂର୍ଣ୍ଣତାରେ । ମୁଁ ତ ମନେକରେ ତା'ପରି ଓ ମୋ ସ୍ତ୍ରୀ ପରି ଯାହାଙ୍କର ସ୍ତ୍ରୀ ଥିବ, ତାଙ୍କର କେମାରି ହେବାରେ ଆନନ୍ଦ ହେବାର କଥା । ମୋ ରୋଗବେଳେ ମୋର ମନରେ ଯଦିବା ଦୁଃଖ ହୁଏ, ତାହା କେବଳ ଶଶି ବୋଉ ପାଇଁ ।

ବୋଉ ଶ୍ରାଦ୍ଧ ଭଲରେ ହେଲା । ବ୍ରାହ୍ମଣମାନେ ଖୁବ୍ ସନ୍ତୋଷରେ ଖାଇଲେ । ଅନ୍ୟାନ୍ୟ ଶୂଦ୍ରାଦି ୫୦ଜଣ ମଧ୍ୟ ଖାଇଲେ । ମୁଁ ଖାଉ ଖାଉ ୪ଟା ହୋଇଗଲା । ଶଶୀ ବୋଉ, ଆନନ୍ଦ ବୋଉ ହେଉଣୀ ଖାଇଲା ବେଳକୁ ୫ଟାରୁ ବେଶୀ । ଆଜ ଏତେ ଉଛୁରରେ ଖାଇ ମୋତେ ମଝିରେ ଟିକିଏ ହେଲେ ଭୋକ ହୋଇନାହିଁ । ତାହାର କାରଣ ଆଜ ତୃପ୍ତି, ଅନ୍ୟମାନେ ଭଲକରି ଖାଆନ୍ତୁ ବୋଲି କାମନା ହେଲେ ନିଜର ଭୋକ ମରିଯାଏ; ବାଧା ହୁଏ ନାହିଁ । (୭ । ୯ । ୫୪)

**ପଣ୍ଡିତ ଗୋବିନ୍ଦ ମିଶ୍ରେ :**

ଆଜ ସକାଳୁ ଭାରି ବର୍ଷା । କାଲି ପୁଅ ହରେକୃଷ୍ଣ ସାଙ୍ଗରେ ସାଇକଲରେ ଗାଁକୁ ଯାଇଥିଲା । ଆଜ ସକାଳୁ ଫେରିବା କଥା । ବେଶୀ ବାଟ ସାଇକଲରେ ଯିବା ତା' ପକ୍ଷରେ ଏଥର ନୂଆ । ମନରେ ଟିକିଏ ଚିନ୍ତିତ ହେଉଥାଏ । ମୋ' ପିଲାଦିନ କଥା ମନେ ପକାଇ ମନକୁ ବୋଧ ଦେଲି । ମୁଁ ସେତେବେଳେ ମୋ ଯୌବନରେ ଆଗ ସାଇକେଲ୍‌ରେ କଟକରୁ ଗାଁକୁ ଆସିଲି ସେତେବେଳେ ଦଦେଇ ଓ ହରି ଭାଇନାଙ୍କୁ ଭାରି ଚିନ୍ତା ଲାଗେ, ମୁଁ ବାଟରେ ନିରାପଦରେ ଯିବି କପରି । ସେମାନେ ଅନେକ ଥର ଲଗାନ୍ତି, ଫେରି କଟକରେ ପହଞ୍ଚିଲେ ଚିଠି ଦେବାକୁ । ସେ କଥା ମନେ ପଡ଼ିବାରୁ ହସ ମାଡ଼ିଲା—ମୁଁ ବୁଢ଼ା ହେଲିଣି । ଏ ବୟସରେ ଟିକିଲୁ ବର୍ଷା ସହୁ, ପଥଶ୍ରାନ୍ତ ହେଉ । ପ୍ରାୟ ୧୧ଟା ବେଳକୁ ସେମାନେ ଫେରିଲେ । ବର୍ଷାକୁ ଚିନ୍ତା ନାହିଁ କି ବାଟକୁ ଚିନ୍ତା ନାହିଁ ।

ଆଜ ଅଫିସ ଘରେ ବସି କାମ କରି ପାରିଲି ନାହିଁ । କାଲି ରାତିରେ କୁକୁର ଉଜନେ ଗୋଟିଏ ବିଲୁଆ ଛଡ଼ିଆଣି ମୋ'ର ଅଫିସ ଘରେ ତାକୁ ମାରି ପକାଇଲେ । ବିଲୁଆ ମୃତ ଯୋଗୁଁ ଘର ଏତେ ଗନ୍ଧାଇ ଯାଇଥିଲା ଯେ ଦୁଇଥର ଫିନାଇଲ୍ ପକାଇ ଧୁଆ ହେଲେ ମଧ୍ୟ ଗନ୍ଧ ଛଡ଼ାଇ ହେଲା ନାହିଁ ।

ଗୋବିନ୍ଦ ମିଶ୍ରେ କାଲି ଆସିଥିଲେ । ଆଜ ଗଲେ । ସେ ଭାରତ ସେବକ ସମାଜ କାର୍ଯ୍ୟରେ ଖୁବ୍ ବୁଲାବୁଲି କରୁଛନ୍ତି । ପଇସାପତ୍ର ମିଳୁନାହିଁ । ଟଙ୍କା ଦୁଇଶହ ପାଉଛନ୍ତି ଯେ,

ସେ ମଧ୍ୟ ନିୟମିତ ମିଳୁନାହିଁ । କିନ୍ତୁ ଗୋଟିଏ କାମ ମନ ମୁତାବକ ମିଳିଯାଇଛି । ତେଣୁ ଦେହ ବି ଭଲ ଅଛି । ଗୋବିନ୍ଦବାବୁ ବାସ୍ତବିକ ବଡ଼ ନିରଳସ କର୍ମୀ । ୭୫ ବର୍ଷ ବୟସରେ ସେ ଯେପରି ଖଟୁଛନ୍ତି, ତାହା ଦେଖି ଅଳ୍ପ ବୟସ୍କ ଲୋକଙ୍କ ମନରେ ଉତ୍ସାହ ଆସିବା ଉଚିତ । ଗୋବିନ୍ଦଜୀଙ୍କ ଅଧ୍ୟବସାୟ ଓ ନିଷ୍ଠା ପ୍ରଶଂସନୀୟ ।

**୧୬।୨।୭ ନା ୧୬।୧।୭:**

ସକାଳେ ପୁଲିସ୍ ଡି. ଏସ. ପି. ଓ ଦୁଇଜଣ ସବ୍ ଇନ୍‌ସପେକ୍ଟର ଆସିଥିଲେ । କାଲି ସକାଳେ ବି ଦୁଇଜଣ ସବ୍‌ଇନ୍‌ସ୍‌ପେକ୍‌ଟର ଆସିଥିଲେ । ମୋର ଗାଡ଼ି ଶନିବାର ଦିନ ୧୦ଟାବେଳେ ୩ ନମ୍ବର ଯୁନିଟ୍‌ରେ ଗୋଟିଏ ବାଳୁଙ୍ଗକୁ ଆଘାତ କରିଛି ବୋଲି ପୁଲିସ୍‌ରେ ଅଭିଯୋଗ ହୋଇଛି । ମୋର ପରିଷ୍କାର ମନେଅଛି ସେଦିନ ୧୦ଟା ବେଳେ ଗାଡ଼ି ମୋ ପାଖରେ ଥିଲା । ନିତ୍ୟାନନ୍ଦକୁ ବହୁତ ଧମକାଇ କରି ପଗ୍ଭରିଲି, ସତ କହିବାକୁ ଅନୁରୋଧ ବି କଲି । ସେ ସେତେବେଳେ ବା ଅନ୍ୟ କେତେବେଳେ ୩ ନମ୍ବର ଆଡ଼େ ଯାଇନାହିଁ । ଯିବାର କାରଣ ବି ନ ଥିଲା । ମୋର ବିନା ଅନୁମତିରେ ସେ କୁଆଡ଼େ ଗାଡ଼ି ନେବାର ଆଜି ପର୍ଯ୍ୟନ୍ତ ମୁଁ ଜାଣିନାହିଁ । ପୁଲିସଙ୍କର ଏକମାତ୍ର ପ୍ରମାଣ, ଦୂରରୁ ପଛରୁ କେତେଜଣ ମୋ ଗାଡ଼ିର ନମ୍ବର ଦେଖିଛନ୍ତି—୧୬୨୭ । ୧୬୧୭ ବୋଲି ଖଣ୍ଡେ ଗାଡ଼ି ମଧ୍ୟ ଅଛି—ଗୋଦାବରୀଶ ବାବୁଙ୍କର । ସୁଧୀର ବାବୁ କହୁଥିଲେ ସେ ଗାଡ଼ିକୁ ଦେଖି ସେ ମୋର ବୋଲି ଥରେ ଦୁଇ ଥର ସନ୍ଦେହ କରିଛନ୍ତି । ବର୍ଣ୍ଣ ପ୍ରାୟ ସମାନ । ସେ ଗାଡ଼ି ଭିକ୍ଟର୍ ନେଲି, ମୋର ପୁରୁ ନିଲା । ଦୂରରୁ ଲୋକେ ଏହା ଠିକ୍ କରି ମନେ ରଖିବା ସହଜ ନୁହେ । ସୁଧୀର ବାବୁଙ୍କ ପରି ବିଶାରଦଙ୍କର ଭୁଲ୍ ହେଉଥିବା ବେଳେ, ସାଧାରଣ ଲୋକଙ୍କର ଭୁଲ ହେବା ବିଚିତ୍ର ନୁହେଁ । ଏକଥା ଡି. ଏସ. ପି. ଙ୍କୁ କହିଛି ଓ ଏ ବିଷୟରେ ଅଧିକ ଅନୁସନ୍ଧାନ କରିବାକୁ ଅନୁରୋଧ କରିଛି । ବାଳୁଙ୍ଗ ପୁଣି ନ ମରିଥିବା ବେଳେ ଏ ବିଷୟରେ ଏତେ କାହିଁକି ଘାଣ୍ଟି ଚକଟ ଲାଗିଛି କେଜାଣି ?

ଅପରାହ୍ନରେ କଳାହାଣ୍ଡିର ଗଙ୍ଗାଧର ଦାସ ଆସିଥିଲେ । ତାଙ୍କ ପୁଅ ବୋହୂ ତାଙ୍କ ପ୍ରତି ବଡ଼ ମନ୍ଦ ବ୍ୟବହାର କରୁଥିଲେ । ସେ ମୋ ସଙ୍ଗେ ଆସି କଥାବାର୍ତ୍ତା ହେବା ପରେ ସେମାନଙ୍କର ମନ ବଦଳିଛି ବୋଲି ଶୁଣି ବଡ଼ ଆନନ୍ଦିତ ହେଲି ।

ଆଜି ସାଢ଼େ ୫ଟା ବେଳେ ପ୍ରଚାର ବିଭାଗର ପ୍ରଦର୍ଶନୀ ମନ୍ଦିରରେ ଆସେମ୍ବ୍ଲି ମେମ୍ବର-ମାନଙ୍କର ମେଳନ ହେଲା । ଉପମନ୍ତ୍ରୀ ଗ୍ଭ ଭୋଜି ଦେଲେ । ରାଧାନାଥ ବାବୁ, ସଦାଶିବ ବାବୁ, ନୀଳକଣ୍ଠ ବାବୁ, ଗୋଦାବରୀଶ ବାବୁ ଓ ପ୍ରାଣକୃଷ୍ଣ ପରିଜାଙ୍କୁ ଛାଡ଼ି ଆଉ ସମସ୍ତେ ପ୍ରାୟ ଆସି-ଥିଲେ । ପ୍ରଦର୍ଶନୀ ଗୃହଟି ବୋଧହୁଏ ସମସ୍ତଙ୍କୁ ସୁନ୍ଦର ଦିଶିଥିବ । ମୋର ବୋଲି ମୋତେ ସୁନ୍ଦର ଦିଶିଲା ନାହିଁ । ଆହୁରି ଅନେକ କଥା କରିବାକୁ ବାକି ଅଛି ବୋଲି ମନେ ହେଲା । ଓଡ଼ିଆ ଚଳଚ୍ଚିତ୍ର ୪ଟିଯାକ ମଧ୍ୟ ପ୍ରଦର୍ଶିତ ହେଲା । ସମସ୍ତେ ଆଗ୍ରହରେ ଦେଖିଲେ । କ'ଣ ମନେ କଲେ, କାଲି ବକ୍ତୃତାରୁ ଜଣାପଡ଼ିବ । (୧୪ । ୨ । ୧୯୫୪ )

**ଆସେମ୍ବ୍ଲି :**

ଆଜ ଏଥର ନୂଆ କରି ଆସେମ୍ବ୍ଲିକୁ ଗଲି—ଅଫିସରଙ୍କ ଗ୍ୟାଲେରୀରେ ବସି ମେମ୍ବର-ମାନଙ୍କର ଆଲୋଚନା ଶୁଣିବାକୁ । ଆଜ ପ୍ରସ୍ତୁତ ବିଭାଗର ଅତିରିକ୍ତ ବଜେଟ୍ ପ୍ରସ୍ତାବ ଉପରେ ଆଲୋଚନା ଥିଲା । ମୁଁ ଗଲାବେଳକୁ ଶିକ୍ଷା ବିଭାଗ ଉପରେ ଆଲୋଚନା ଚାଲିଥିଲା । ପ୍ରାଇମେରି ସ୍କୁଲ ଅଧିକ ସଂଖ୍ୟାରେ ବସାଇବାକୁ ଶିକ୍ଷା ବିଭାଗ ପ୍ରସ୍ତାବ ଦେଇଛନ୍ତି । ଏଣେ ଶିକ୍ଷା ବିଭାଗର ମତ ଭବିଷ୍ୟତରେ ପ୍ରାଇମେରି ସ୍କୁଲ ନ ବସାଇ ମୌଳିକ ବିଦ୍ୟାଳୟ ବସାଇବେ । ବର୍ଷକୁ ଯେତେ ମୌଳିକ ସ୍କୁଲ ବସାଯାଉଛି, ତହିଁରୁ ବହୁ ଗୁଣ ଅଧିକ ସଂଖ୍ୟାରେ ପ୍ରାଇମେରି ସ୍କୁଲ ବସିଛି । କାରଣ ସ୍ୱରୂପ ଶିକ୍ଷାମନ୍ତ୍ରୀ କହିଲେ, ମୌଳିକ ସ୍କୁଲପାଇଁ ଯଥେଷ୍ଟ ଜମି ମିଳୁନାହିଁ, ତାଲିମ ପାଇଥିବା ଶିକ୍ଷକ ମିଳୁନାହାନ୍ତି ଇତ୍ୟାଦି । ବେକାର ମେଟ୍ରିକ୍ ପାଶ ଯୁବକଙ୍କୁ କାମ ଯୋଗାଇବାକୁ ପ୍ରାଇମେରି ସ୍କୁଲ ବସାଯାଉଛି ବୋଲି ମଧ୍ୟ କୁହାଗଲା । ଏଥିରୁ କୌଣସି ଯୁକ୍ତି କାହାରି ମନକୁ ପାଇଲା ନାହିଁ । ଗତାନୁଗତିକ ଭାବରେ ଦାବୀ ମଞ୍ଜୁର ହୋଇଗଲା । ପ୍ରସ୍ତୁତ ବିଭାଗ ଉପରେ ଅଗ୍ନି ବୃଷ୍ଟି ଆରମ୍ଭ ହେଉ ହେଉ ଆସେମ୍ବ୍ଲିର ଦିନକର କାର୍ଯ୍ୟ ସରିଗଲା । (୧୫ । ୯ । ୫୪)

ଅଜ ୧୨ଟାରୁ ପ୍ରସ୍ତୁତ ବିଭାଗ ଉପରେ ଆଲୋଚନା ସରଗରମ ହୋଇଗଲା । ବିପକ୍ଷ ଦଳରୁ ଯେତେ ଜଣ କହିଲେ, ସମସ୍ତେ ଏକମତ ଯେ ଏ ବିଭାଗ ରହିବା ଉଚିତ ନୁହେଁ । ପ୍ରଧାନ କାରଣ କଂଗ୍ରେସ ସରକାର ନିଜର ସ୍ତୁତି ଗାନ କରିବାକୁ ଏ ବିଭାଗରେ ଗୁଡ଼ିଏ ଭାଟ ପୋଷିଛନ୍ତି । ସରକାରୀ ଦଳର ସମସ୍ତେ ଏକ ସ୍ୱରରେ ଏ ବିଭାଗର କାର୍ଯ୍ୟକୁ ପସନ୍ଦ କଲେ । ଅତୀତରେ ଏ ବିଭାଗ ଭାରି ଭଲ କାମ କରିଛି ଓ ବର୍ତ୍ତମାନ ବି କରୁଛି, ଏଥିରେ ଆଉ ମଣିଷ ରହିବା ଦରକାର ଓ ଆଉ ଟଙ୍କା ଖର୍ଚ୍ଚ କରିବା ଦରକାର ବୋଲି ମତ ଦେଲେ । ସରକାରୀ ଦଳର ସଂଖ୍ୟାଧିକ୍ୟ ଥିବାର ସ୍ପଷ୍ଟ ଜଣାଥିଲେ ହେଁ, ବିରୋଧୀ ପକ୍ଷ ନିଜ ବିରୋଧର ଗଭୀରତା ଜଣାଇବା ସକାଶ ପ୍ରସ୍ତାବକୁ ଭୋଟକୁ ନେଲେ । ବିରୋଧୀ ଦଳର ୫୦ ଓ ସରକାରୀ ଦଳର ୬୫ ଭୋଟରେ ପ୍ରସ୍ତାବ ପାଶ୍ ହେଲା । ଗ୍ରାମମଙ୍ଗଳ ବିଭାଗର ଅନେକଗୁଡ଼ିଏ ଦାବୀ ଉପରେ କାଟ ପ୍ରସ୍ତାବ ଥିଲା । କିନ୍ତୁ ସମସ୍ତ ଅଭାବକୁ ସେସବୁ ବିନା ଆଲୋଚନାରେ ଗୃହୀତ ହୋଇ-ଗଲା । ଏଥର ଆସେମ୍ବ୍ଲି କମେ ଆଖଡ଼ା ରୂପ ଧରିଲାଣି । ବକ୍ତୃତାଗୁଡ଼ିକର ଚିନ୍ତା ଶୂନ୍ୟତା ସ୍ପଷ୍ଟ । ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ଆଲୋଚନାବେଳେ ସଭା ଗୃହରେ ଉପସ୍ଥିତ ରହୁ ନାହାନ୍ତି । ବାଚସ୍ପତି ମଧ୍ୟ ସବୁବେଳେ ନ ରହିବାରୁ ଯେ କୌଣସି ଜଣେ ସଭ୍ୟ ବାଚସ୍ପତି ଆସନରେ ବସୁଛନ୍ତି ।

ସନ୍ଧ୍ୟାବେଳେ ପୁରୀ ଗଲି । ଜଗନ୍ନାଥ ରଥଙ୍କ ସଙ୍ଗେ ଦେଖା ହେଲା । ସେ ତ ମୋ ନାମରେ ସ୍ତୁତି କରିବାକୁ ଆରମ୍ଭ କଲେଣି । ମୁଁ ଯାଇ ପହଞ୍ଚିଲା ବେଳକୁ ସେ ମୋ'ର ବିଷୟରେ ଆଲୋଚନା କରୁଥିଲେ । ସେଠାରୁ ଦେଉଳକୁ ଗଲୁ । ଗିରିସ୍ୱାମୀ ମଠର ବାବୁଜୀଙ୍କୁ ସୁଧୀରବାବୁଙ୍କୁ ଦେଖାଇଲି । ତାଙ୍କ ମନକୁ ବି ଖୁବ୍ ପାଇଲା । ଦେଉଳରେ ସମସ୍ତେ ପ୍ରାୟ

୧୬ ଜଣ ମହାପ୍ରସାଦ ସେବା କଲୁ । ଦେଉଳରେ ମହାପ୍ରସାଦ ଖାଇବାକୁ ଆନନ୍ଦ ଲାଗୁଛି । ମୁଁ ଆଉଥରଠାରୁ ସ୍ଥିର କରୁଛି ପୁରୀରେ ମହାପ୍ରସାଦ ଦେଉଳ ବ୍ୟତୀତ ଅନ୍ୟତ୍ର ଖାଇବି ନାହିଁ । ( ୧୭ । ୯ । ୫୪ )

**ଭଗବତ ମୁଖ୍ୟ**

ଆଜି ସକାଳୁ ବହୁତ ଗୁଡ଼ିଏ ବିଷୟରେ ଫଇସଲା ଥିଲି । ୧୫ଟା ପୂର୍ବରୁ ଗସ୍ତରେ ଯିବା ଆଗରୁ ସବୁ ସାରିକରି ଯିବି ବୋଲି କଳ୍ପନା କରିଥିଲି , ହୋଇ ପାରିଲା ନାହିଁ । ସ୍ତୋତ୍ର ଓ ଭାଗବତ ପାଠରେ ଦିନକୁ ଦିନ ବେଶୀ ସମୟ ଯାଉଛି । ୯ଟା ପୂର୍ବରୁ କାମ ଉପରକୁ ଯାଇ ପାରୁ ନାହିଁ । ସୁଧୀର ବାବୁଙ୍କ ପରି ଲୋକେ ଏହାକୁ ସମୟର ଅପଚୟ ବୋଲି ମନେ କରୁଛନ୍ତି । ସେ ଏ ସ୍ୱାଦ ପାଇବେ କାହୁଁ ? ସେ ଓ ତାଙ୍କପରି ଲୋକେ ବଡ଼ ଶ୍ରେଷ୍ଠ ବିଷୟରେ ଆବଦ୍ଧ ହୋଇ ରହିଛନ୍ତି । ସେ ବିଶ୍ୱାସ କରନ୍ତି, ଈଶ୍ୱରଙ୍କ ଗ୍ରୁଡ଼ ନିଜ କାର୍ଯ୍ୟ କରି ହେବ । ଅସମ୍ଭବ । ଏକଥା ବୁଝିବାକୁ ମୋର ବହୁତ ଦିନ ଲାଗିଲା । ସୁଧୀର ବାବୁଙ୍କୁ ଆଉ ସମୟ ଲାଗିବ । ଏକା ବେଳକେ ସେ ସମୟ ଆସିବ କି ନାହିଁ ସନ୍ଦେହ । ଆଜିକାଲି ତ ଅନେକଙ୍କର ସେ ସମୟ ଆସୁନାହିଁ । ସ୍ତୋତ୍ର ଓ ଭଗବତ ପାଠରେ ସଂସ୍କୃତର ତ ଚର୍ଚ୍ଚା ହୁଏ । ସଂସ୍କୃତର ପ୍ରୟୋଜନ ବିଷୟରେ ମହାତ୍ମା ଗାନ୍ଧୀ କହିଛନ୍ତି । କିନ୍ତୁ ଭାଷାର ଆବରଣ ଭିତରେ ଭାଗବତ ପରି ଶାସ୍ତ୍ରରେ ଯେଉଁ ଅମୃତ ରହିଛି, ତାହାର ସ୍ୱାଦ ଥରେ ପାଇଥିଲେ, ଆଉ ଇତର ସୁଖ, ଦୁଃଖ ପରି ମନେ ହେବ ନାହିଁ ।

ସୁଧୀର ବାବୁ ଓ ସଦାଶିବ ବାବୁ ଆଜି ଗୋଟାଏ ଫାଇଲ୍ ଧରି ଆସିଲେ, ମୁଁ ଗୋଟାଏ ଟାଣୁଆ କରି ନୋଟ ଦେବି ବୋଲି । ଗ୍ରାମ ମଙ୍ଗଳ ବିଭାଗ ସ୍ଥାୟୀ ହେବାର ପ୍ରସ୍ତାବ ଆସିଛି, ପ୍ରଚାର ବିଭାଗ ଅସ୍ଥାୟୀ ରହୁ ବୋଲି ବଡ଼ବଡ଼ିଆ ମତ ଦେଇଛନ୍ତି । ଏ ମତ ଭୁଲ୍ । କିନ୍ତୁ ସଦାଶିବ ବାବୁ ଗୋଟିଏ ଭୁଲ୍ ଧାରଣା କରିଛନ୍ତି ଯେ, ଗ୍ରାମମଙ୍ଗଳ ବିଭାଗ ସ୍ଥାୟୀ ହେବାରେ ମୋର ପ୍ରଚାର ବିଭାଗର ସ୍ଥାୟିତ୍ୱ ବିଷୟରେ ଯତ୍ନ ନାହିଁ । ମୋର ବିରକ୍ତ ସଯତ ଭାବେ ପ୍ରକାଶ କଲି ।

ଆଜି ଆଠଗଡ଼ ନିକଟବର୍ତ୍ତୀ ଗୋପୀନାଥପୁର ସେବାଶ୍ରମ ଓ ଖଣ୍ଡକଟା ଗ୍ରାମମଙ୍ଗଳ କେନ୍ଦ୍ର ଦେଖିଲି । ଏ ଦୁଇଟିର ବହୁତ ଉନ୍ନତି ହେବାର ବାକି ଅଛି । ପୁଣି ଆଉ ମାସରେ ଆସିବି । ରାତି ୧୦ଟାରେ ଚଣ୍ଡିଖୋଲରେ ଯାଇ ରାତିରେ ରହିଲି । (୨୧ । ୯ । ୫୪)

**ବ୍ରାହ୍ମଣ କରଣଙ୍କ ଆତ୍ମବିଶ୍ୱାସ**

ଆଜି ସକାଳୁ ବହୁ ଦିନ ପରେ ଟିକିଏ ରାଗିଲି । ବିଶ୍ୱନାଥ ବୋଲି ଯେଉଁ ଟୋକା ଆମ ଘରେ ରହି ସିଲେଇ କରୁଥିଲା, ସେ ଭୁଲେଇ ଦେଇ ସତୁରିଟଙ୍କା ଅଫିସ୍‌ର ନେଇଗଲା । ସେ ଟଙ୍କା ମୋ ସ୍ତ୍ରୀର । ବାନାମ୍ବର ଓ ଅଫିସ୍‌ର ଜଣେ କିରାଣୀଙ୍କ ହେଲାରେ ଏହା ହେଲା ।

ବାନାମ୍ବର ଉପରେ ବେଶୀ ବିରକ୍ତ ହେଲି । ଟଙ୍କାପାଇଁ ନୁହେଁ, କିନ୍ତୁ ମୋ ଟଙ୍କାକୁ ଆପଣାର ବୋଲି ନ ବିଚାରିବା ଯୋଗୁଁ ।

ଆଜି ପୁଣି ରସୁଲଗଡ଼ ଗଲି । ବଡ଼ ଭଲରେ ସନ୍ଧ୍ୟାବେଳଟି କଟିଲା । ଗୋଟିଏ ସଭା ହେଲା । ଗୁଡ଼ିଏ ପିଲା ବଡ଼ ସୁନ୍ଦର ଗୀତ ବୋଲିଲେ । ସେମାନଙ୍କୁ କୁମାର ପୂର୍ଣ୍ଣିମା ସକାଶେ ଲୁଗା ଦେବାକୁ ସ୍ଥିର କଲି । ରସୁଲଗଡ଼ର ବିନୋବା କୁଟୀର ଯୋଜନା ବେଶ୍ ଭଲ ଅଗ୍ରସର ହେଉଛି । ଏ ଗାଁରେ ଖଣ୍ଡାୟତ ଗୁଡ଼ିଏ ଓ ଶବର ଗୁଡ଼ିଏ । କାମପାଇଁ ଏ ଦୁଇଟି ଜାତି ବଡ଼ ଠିକଣା । ଯେଉଁ ଗ୍ରାମମାନଙ୍କରେ ବ୍ରାହ୍ମଣ କରଣ ବେଶୀ ସେ ଗାଁରେ କାମ କରିବା ଘୋର କଷ୍ଟ । ସେମାନଙ୍କର ସବୁ କଥାରେ ସଂଶୟ । କାହା କଥାକୁ ମାନିଯିବା ତାଙ୍କ ଜାତକରେ ନାହିଁ । ଅନ୍ଧ ଭାବରେ ବିଶ୍ୱାସ କରିଯିବା ଠିକ୍ ନୁହେଁ—ଏ କଥା ସତ । କିନ୍ତୁ ଅନ୍ଧ ଭାବରେ ବିରୋଧ କରିବା ତାହାଠାରୁ ବେଶୀ ମାରାତ୍ମକ । କାଳର ପ୍ରଭାବରେ ସେଇ ଦୁର୍ଦ୍ଦଶା ଉଚ୍ଚ ଜାତିଙ୍କ ଭିତରେ ରହିଯାଇଛି । ମନକୁ ପାଇଲେ ଯଥାସାଧ୍ୟ ଉଦ୍ୟମ କରି କାର୍ଯ୍ୟଟି ସଫଳ କରିବାର ସଂକଳ୍ପ ମୋ ଜାଣିବାରେ ଏ ଦୁଇଟି ଜାତି କରନ୍ତି । ତାହାର କାରଣ ଏମାନଙ୍କ ନିଜ ବାହାବଳରେ ଏମାନେ ଚଳନ୍ତି । ବ୍ରାହ୍ମଣ, କରଣ, ତେଲି, ଗୁଡ଼ିଆଙ୍କ ପରି ଏମାନେ ଅପର ଲୋକଙ୍କ ଅର୍ଜନକୁ ଚାହିଁ ବସନ୍ତି ନାହିଁ । ନିଜ ଉପରେ ବିଶ୍ୱାସ ସେଇ ଯୋଗୁଁ ଏମାନଙ୍କଠାରେ ଦେଖାଯାଏ । ଅନ୍ୟମାନେ ପାରିପାର୍ଶ୍ୱିକ ଅବସ୍ଥାଦ୍ୱାରା, ବହୁଶଃ ଅକାରଣରେ ପ୍ରଭାବିତ ହୁଅନ୍ତି । (୨୯ । ୯ । ୧୯୫୪ )

## ଶକ୍ତି, ମୂର୍ତ୍ତିପୂଜା ଓ ସ୍ତ୍ରୀ

ଆଜି ପୁରୀ ଯିବା ଦିନ । ଅର୍ଦ୍ଧେକ କାମ ସାରି ସଂଧ୍ୟାରେ ପୁରୀ ଗଲି । ସଂକଳ୍ପ ଅନୁସାରେ ବ୍ରାହ୍ମଣ ସମିତି ବୋର୍ଡିଂଠାରୁ ଦେଉଳକୁ ଚାଲିକରି ଗଲି, ଜଗନ୍ନାଥବଲ୍ଲଭ ବାଟେ । ଜଗନ୍ନାଥବଲ୍ଲଭର ଗୋପୀନାଥ ସତେ ଯେପରି ମୋତେ ଡାକିଲେ । ତାଙ୍କ ମୁହଁକୁ ଚାହିଁ ମୋର ମନେ ହେଲା, ସତେ ଯେମିତି ସେ ମୋତେ ନିର୍ଦ୍ଦେଶ ଦେଉଛନ୍ତି, ତାଙ୍କରି ଘରେ ମୋର କାମ କରିବାକୁ । ଜଗନ୍ନାଥ ରଥେ ଯେଉଁ ଗୋପାଳ ମୂର୍ତ୍ତିଟି ଆଣିଛନ୍ତି, ସେ ବି ସେହିପରି ନିର୍ଦ୍ଦେଶ ଦେଉଛନ୍ତି । ମୂର୍ତ୍ତିପୂଜା ଉପରେ ମୋର ପୂର୍ବେ ଅନାସ୍ଥା ଥିଲା । ଦୁର୍ଗା ମୂର୍ତ୍ତିରେ ମୁଁ ଅଭୟ ଦେଖିଥିଲି । କିନ୍ତୁ ଗୋପୀନାଥଙ୍କର କର୍ମ କରିବାକୁ ପ୍ରେରଣା । ଯେଉଁମାନେ ମୂର୍ତ୍ତିପୂଜାର ସମାଲୋଚନା କରନ୍ତି, ସେମାନେ ଏହାର ତତ୍ତ୍ୱଟି ବୁଝି ନିଜ ଜୀବନରେ ଏହାର ପ୍ରମାଣ କରନ୍ତୁ । ହିନ୍ଦୁ ଏହାର ପ୍ରମାଣ ପାଇଥିଲା ବୋଲି ମୁସଲମାନ ଓ ଇଂରେଜଙ୍କ ଅବିଶ୍ୱାସ ସତ୍ତ୍ୱେ ମୂର୍ତ୍ତିପୂଜା ଧରି ବସିଛି । ଯଥାରୀତି ବିମଳା, ଲକ୍ଷ୍ମୀ ମନ୍ଦିର ବାଟେ ପଡ଼ିଆରୀ ନିଯୋଗକୁ ଆସିଲି । ଆଜି ପ୍ରାୟ ୩୦ ଲୋକ ହୋଇଥିଲେ । ସମସ୍ତେ ପଣ୍ଡିତ । ଭଲ ଲୋକ, ଭ୍ରମରେ ପଡ଼ି ଭୁଆଁ ବୁଲୁଛନ୍ତି । ମୋର କଥାରେ ସେମାନେ କ୍ରମେ କ୍ରମେ ପ୍ରଭାବିତ ହେବାର ଦେଖିଲି । ଶଶୀବୋଉ ସାଙ୍ଗରେ ଥିଲା । ସେ ତ ମୋର ଛାଇପରି, ସବୁବେଳେ ପାଖରେ ଅଛି ; କିନ୍ତୁ କେତେବେଳେ ଆଗକୁ ବାହାରି ମୋ ବାଟ ବନ୍ଦ କରୁନାହିଁ । (୩୦ । ୯ । ୧୯୫୪)

## ଠାକୁରାଣୀ ପୂଜା:

ଆଜି ଆମର ଠାକୁରାଣୀ ପୂଜା ଆରମ୍ଭ । ଆମର ବୋଇଲେ ଶଶୀବୋଉର । ତା'ର ଯୋଗୁଁ ଦୁଅଁ ଅଛନ୍ତି । ଆଜି ମୋର ମନ ଦୁଅଁଙ୍କ ଆଡ଼କୁ ଆକୃଷ୍ଟ ହୋଇଛି । କିନ୍ତୁ ମଝିରେ ତାଙ୍କ ପ୍ରତି ମୋର ଯେଉଁ ବିତୃଷ୍ଣା ହୋଇଥିଲା, ସେଥିରେ ସେ ଆଜିଯାଏଁ ଆମ୍ଭ ଘରେ ନ ଥାନ୍ତେ । ମୋର ମନର ବର୍ତ୍ତମାନର ପରିବର୍ତ୍ତିତ ଅବସ୍ଥାର ପ୍ରତୀକ୍ଷାରେ ଶଶିବୋଉ ମନ୍ଦ ନ ଯେଣୁ ମଧ୍ୟ ଦୁଅଁଙ୍କର ପୂଜା କରିଆସୁଛି । କେବଳ ଏଇ ତିନି ଦିନ ତା' ଭାଇନା (ନରସିଂହ ମିଶ୍ରେ) ପୂଜା କରିବାକୁ ଆସନ୍ତି । ନରସିଂହ କାଲିଠାରୁ ଆସିଲେଣି, ପୂଜା କରିବାକୁ କୁଣ୍ଠାଉଥିଲେ, ଦେହ ଖରାପ ଅଛି ବୋଲି କହି । ମୁଁ ଜାଣିଥିଲି ସେ ନିଜ ମନକୁ ପୂଜା କରିବେ । ତାଙ୍କୁ ଅଧିକ ବଳାଇଲି ନାହିଁ । ଠିକ୍ ବେଳରେ ସେ ପୂଜା କରିବସିଲେ । ମାଳର ତିନି ପୁଅ, ବାସନ୍ତୀ ଓ ରମା ଘରକୁ ଆସିଛନ୍ତି । ମାଳ ଆସିଥାନ୍ତା, ତା' ଦେହ ଖରାପ ଥିବାରୁ ଆସିନାହିଁ । ରମା ବୋଉ ମଧ୍ୟ ସେଥିଯୋଗୁଁ ବେଲୁଜିଆରେ ରହି ଯାଇଛି ।

ସକାଳ ପର୍ଯ୍ୟନ୍ତ ମାଛ ପାଇଁ କୌଣସି ଯୋଗାଡ଼ ହୋଇ ନ ଥିଲା । ଠାକୁରାଣୀଙ୍କୁ ମାଛ ପୂଜା ଦେବା ଦରକାର । ଉପର ମନରେ ବାସନ୍ତୀକୁ କହିଲି, ଯଦି ଦୁଅଁ ଠିକ୍ ତେବେ ମାଛ ଆସି ତା ମନକୁ ପହଞ୍ଚିଯିବ । ବନ୍ଦିସି ମାଛ ଆସି ପହଞ୍ଚିଗଲା ଆମ ପ୍ରୟୋଜନକୁ ଦୃଷ୍ଟି । ବାସନ୍ତୀ ଓ ତା' ବୋଉ ଆଗରେ ଦୁଅଁଙ୍କ ବାହାଦୁରି କଲି । ଭାଉଜ ମୋତେ ଭକ୍ତ ବୋଲି ଅଛା କଲା । ଯଦି ଆମମାନଙ୍କ ଘରେ ବର୍ତ୍ତମାନ କାଳରେ କେହି ଭକ୍ତ ଥାଏ, ତେବେ ସେମାନେ ଆମ ଘରର ସ୍ତ୍ରୀ ଲୋକମାନେ । ଦୁଅଁଙ୍କ ପାଇଁ ରାନ୍ଧିବାରେ, ଅପର ଲୋକଙ୍କୁ ଖାଇବାକୁ ଦେବା ସକାଶେ ନିରଳସ ପରିଶ୍ରମ କରି ସେମାନେ ଆମ ସଂସ୍କୃତି ରଖିଛନ୍ତି । (୪ । ୧୦ । ୧୯୫୪)

## ମନ୍ଦିର ପୀଠ ସଂସ୍କାର

ଆଜି ଦିନଟି ବଡ଼ ଭଲ ଭାବେ ଆରମ୍ଭ ହେଲା । ସକାଳୁ ସାଇର ବ୍ରାହ୍ମଣମାନଙ୍କୁ ମେଳାଇ ବେଲେଶ୍ୱରଙ୍କ ବେଢ଼ାରେ ବୃକ୍ଷ ରୋପଣ ହେଲା । ଗଛର ଚାରି ପଟେ ପଥର ଗୋରଡ଼ା ତିଆରି ହେଲା । ବୁଢ଼ା ଓ ପିଲା ସମସ୍ତେ ମିଶିଗଲେ । ହରି ଭାଇନା ଓ ଅଲେଖ ଭାଇନା ଯେପରି ଉତ୍ସାହରେ ଲାଗିଗଲେ, ତାହା ଦେଖି ମନରେ ଭାରି ସନ୍ତୋଷ ଲାଗିଲା । ମୋ କଥାରେ ସେ ଲାଗି ନ ଥାନ୍ତେ, ଯଦି ଯେଉଁ କାର୍ଯ୍ୟଟି ହେଲା ତାହା ସେମାନଙ୍କର ମନଃପୂତ ହୋଇ ନ ଥାନ୍ତା । ଆମର ସବୁ କାମରେ ଏଇ ଦିଗ ପ୍ରତି ନଜର ରହୁ ନାହିଁ । ଲୋକଙ୍କର ମତ, ପରାମର୍ଶ ଓ ପୋଷିତ ଆଶା ଆକାଂକ୍ଷାକୁ ନଜର ନ ଦେଇ ଆମେ ଆମକୁ ଭଲ ଲାଗୁଥିବା କାମ ସେମାନଙ୍କ ଉପରେ ଲଦି ଦେବାକୁ ବସୁ ଥାଉଁ । ସେମାନଙ୍କୁ ବୁଝାଇବାର ଧୈର୍ଯ୍ୟ ନାହିଁ । ଆମେ ଯେତେ ପଣ୍ଡିତ ହେଲେ କ'ଣ ହେଲା କେହି କାହାକୁ ଅନ୍ଧ ଭାବରେ ମାନିଯିବେ ନାହିଁ । ବୁଝିବାର ମନୋବୃତ୍ତି

ଜାଗ୍ରତ କରିବାର ପ୍ରଥମ ସାଧନ ଉଦାରତା । ଆମ ବାଟରେ ଯାହାକୁ ଚଳାଇବାକୁ ଇଚ୍ଛା କରୁଥାଉଁ, ତା' ବାଟରେ ଆମକୁ କିଛି ଦୂର ଯିବାକୁ ହେବ । ଲୋକଙ୍କୁ ନିଜ ପଛରେ ଦଉଡ଼ାଇବାକୁ ଚେଷ୍ଟା କରିବା ବାତୁଳତା । କୁକୁର ପଛରେ ଗୋଡ଼ାନ୍ତି, ମଣିଷ ନୁହେଁ । ମୋର ଆଶା କ୍ରମେ ଏଇ ବେଲେଶ୍ୱରଙ୍କ ମନ୍ଦିରଟି ଧର୍ମର ପୁନରୁତ୍‌ଥାନର ଗୋଟିଏ ପୀଠ କରିବ ।

ଉପହାରେ ବହୁ ଦିନ ପରେ ଖେଳ ଆରମ୍ଭ ହେଲା । ଉପର ଓଳକୁ ଆମ ଗାଁର ଆଖଡ଼ା ଦଳ ଆସିଲେ । ନଷ୍ଟ ବଣେଇର ଉତ୍ସାହରେ ଏହା ପୁଣି ଆଉ ଥରେ ଆରମ୍ଭ ହୋଇଛି । ଆଖଡ଼ା ଦଳଟିର ଉନ୍ନତି କରିବାକୁ ପ୍ରତିଶ୍ରୁତି ଦେଲି । ଉତ୍କଳ ପଲ୍ଲୀମଙ୍ଗଳ ସମିତି ନାମରେ ସବୁ ଆଡ଼େ ଏଇ ଅନୁଷ୍ଠାନମାନଙ୍କୁ ଟେକିବାକୁ ହେବ । ଯୁବକର ମନ ଶରୀରଚର୍ଯ୍ୟା ଆଡ଼କୁ ଆକୃଷ୍ଟ ନ ହେଲେ, ବ୍ରହ୍ମଚର୍ଯ୍ୟ ଧାରଣ କରିବାକୁ ସେମାନଙ୍କର ପ୍ରବୃତ୍ତି ହେବ ନାହିଁ । ଯାହା ଠିକ୍‌. ଖାଲି ଉପଦେଶ ଦେଇ ଦେଲେ ତାହା ଲୋକେ ଧରିପିବେ ନାହିଁ । ପ୍ରତ୍ୟେକ କାର୍ଯ୍ୟକୁ ସୁକର କଲେ ଯାଇ ଲୋକେ ତାହା କରିବେ । (୭-୧୦-୫୪)

**ନବବାବୁଙ୍କ ନିଷ୍ପତ୍ତି:**

ଆଜି ସକାଳୁ ନିତ୍ୟକର୍ମ ସାରି ଅଫିସ ଘରକୁ ଆସି ଶୁଣିଲି, କେନ୍ଦ୍ର ମନ୍ତ୍ରୀ କିଦ୍‌ୱାଇ କାଲି ମରି ଯାଇଛନ୍ତି । ମହତାବ୍‌ କେନ୍ଦ୍ରମନ୍ତ୍ରୀ ମଣ୍ଡଳରୁ କଟିଛନ୍ତି । ଅବଶ୍ୟ ମହତାବ୍‌ଙ୍କର ନିଜର ଦୋଷ ଥିଲା, କିନ୍ତୁ କିଦ୍‌ଓାଇଙ୍କ ଚକ୍ରାନ୍ତ ନ ହୋଇଥିଲେ, ସେ ଦୋଷ ପଣ୍ଡିତ ଜବାହରଙ୍କ ଦୃଷ୍ଟିକୁ ବଡ଼ ଦିଶି ନ ଥାନ୍ତା ।

ଏ ସମ୍ବାଦ ପାଇବାର ଅଳ୍ପ ସମୟ ଭିତରେ ମୋ ବିଷୟରେ ନବବାବୁ ଶେଷ ସିଦ୍ଧାନ୍ତ କରିଥିବାର ଶୁଣିଲି । ମୋର ଯୋଗ୍ୟତା ଓ କର୍ମକୁଶଳତା ସ୍ୱୀକାର କରି ସେ ଲେଖିଛନ୍ତି, ମୋର ଏପରି କେତେକ ଦୋଷ ତ୍ରୁଟି ଅଛି ଯେଉଁଥିପାଇଁ ମୁଁ ସେକ୍ରେଟାରି ରହିବା ଉଚିତ ନୁହେଁ । ମୋତେ ସ୍ଥାୟୀ ଭାବରେ ଡିରେକ୍ଟର କରି ରଖି ମୋ ଜାଗାରେ ଆଉ ଜଣକୁ ସେକ୍ରେଟାରି କରିବାପାଇଁ ସେ ସିଦ୍ଧାନ୍ତ କରିଛନ୍ତି । ଏହା ଆଦେଶ ଆକାରରେ ଯଥାବିଧି ମୋ ପାଖକୁ ଆସି ନାହିଁ । କିନ୍ତୁ ଖବରଟା ଶୁଣିବା ମାତ୍ରେ ମୁଁ ଠିକ୍‌ କରିନେଲି ମୁଁ ଡିରେକ୍ଟର ହୋଇ ରହିବି ନାହିଁ, ଯଦିଓ ପଇସାରେ ମୋର କିଛି କ୍ଷତି ନ ହେବ । ହଠାତ୍‌ ଚାକିରି ଛାଡ଼ି ଦେବି ବା ଆଦେଶ ପାଇଲା ପରେ ଛାଡ଼ିବି ଏ ବିଷୟରେ ମନରେ ଦ୍ୱନ୍ଦ୍ୱ ହେଲା । ପ୍ରଥମେ ବିଚାରିଲି, ସ୍ୱାସ୍ଥ୍ୟ କାରଣ ଦେଖାଇ ଅବସର ନେବାକୁ ଦରଖାସ୍ତ କରିବି । ସେଇ ମର୍ମରେ ଖଣ୍ଡିଏ ଚିଠି କରି ସଦାଶିବ ବାବୁଙ୍କୁ ଦେଖାଇଲି । ସେ ଆଲୋଚନା ପରେ ସେ ଚିଠାରେ ରାଜି ହେଲେ । ସେ ତାହାକୁ ଚିଫ୍‌ ମିନିଷ୍ଟର ଓ ନୀଳମଣି ରାଉତରାୟଙ୍କୁ ଦେଖାଇଛନ୍ତି । ସେମାନେ ମୋର ପ୍ରତିଜ୍ଞାରେ ବିବ୍ରତ ହେବାର ସଦାଶିବ ବାବୁଙ୍କ କଥାରୁ ଜଣା ପଡ଼ିଲା ନାହିଁ । କ୍ଷମତାର ମଦରେ ସେମାନେ ଅନ୍ଧ ହୋଇଛନ୍ତି । କିମ୍ବା ମୁଁ ଖାଲି ଫୁଟାଣି ଦେଖାଉଛି ଓ ମେଁଢ଼ମାଡ଼ ହୋଇ ରହିବି ବୋଲି ସେମାନଙ୍କର ବିଶ୍ୱାସ ।

ସନ୍ଧ୍ୟାବେଳେ ମନ୍ତ୍ରୀଙ୍କ ସଙ୍ଗେ ଆଲୋଚନା ହେଲା । ସେ ଖୁବ୍ ବିରକ୍ତି ପ୍ରକାଶ କଲେ ଓ ନବବାବୁଙ୍କ ସଙ୍ଗେ ଝଗଡ଼ା କରିବାକୁ ବାହାରିଲେ । ବୁଝି ବିଚାରି ଯାହା କରିବାକୁ ତାଙ୍କୁ କହିଛି । ରାତି ୯ଟା ବେଳେ ଗାଁରେ ଆସି ପହଞ୍ଚିଲି । ଶଶୀ ବୋଉର ପାଦ ମୋଡ଼ି ହୋଇ ଯାଇ ସେ ଖୁବ କଷ୍ଟ ପାଉଥାଏ । ସବୁ ପ୍ରକାର ଦୁଃସମ୍ବାଦ ଆଜ ଦିନଟା ଭିତରେ ମିଳିଲା । ମୋ କଥା ଶୁଣି ଶଶୀ ବୋଉ ତଳେ ମାତ୍ର ବିଚଳିତ ହେଲା ନାହିଁ । (୨୫ । ୧୦ । ୧୯୫୪)

ଚାକିରି ଗଲେ ଯାଉ:

ଆଜ ସକାଳେ ବଗିଚାକୁ ରାଜନାଙ୍କ ସଙ୍ଗେ ଗଲି । ବାଟରେ ମୋର ଚାକିରି ବିଷୟ ପଡ଼ିଲା । ତାଙ୍କର ଇଚ୍ଛା ଟିକିଏ ଅପମାନ ମିଳୁ ପଛେ, ଦରମାରେ ଆଞ୍ଚ ନ ଆସିବା ସ୍ଥଳେ ଡିରେକ୍ଟର ପଦରେ ରହି ଯିବା ଠିକ୍ ହେବ । ଯାହାଠାରୁ ପରାମର୍ଶ ନେବ ସେଥିରୁ ଅଧିକାଂଶ ଏହି ମତ ଦେବେ । ପ୍ରତ୍ୟେକଙ୍କ ସଙ୍ଗେ ଯୁକ୍ତିତର୍କ କରିବାକୁ ହେବ । ଅନେକ ହୁଏତ ବୁଝିବେ—ଯେପରି ରାଜନା ବହୁ ଯୁକ୍ତିତର୍କ ପରେ ବୁଝିଲେ । ଆଜକାଲି ସମସ୍ତଙ୍କର—ବ୍ରାହ୍ମଣମାନଙ୍କର ତ ଆଦିବାସୀଙ୍କଠାରୁ ବେଶୀ—ମନ ପଇସା ଉପରେ । ପଇସା ଯଦି ମିଳିଲା ତେବେ ଅପମାନ ଯେପରି କିଛି ନୁହେଁ । ମୁଁ ଯେ ଖାଲି ମାନ ରକ୍ଷା ପାଇଁ ଚାକିରି ଛାଡ଼ିବାକୁ ଇଚ୍ଛା କରୁଛି ତାହା ନୁହେଁ । ମୋତେ ଡିରେକ୍ଟର କରି ରଖିଲେ ମୋର କାମ କୌଣସି କମେ ଲଘୁ ହେବ ନାହିଁ । ଯେ ସେକ୍ରେଟାରୀ ହୋଇ ଆସିବେ ସେ ଏ କାମ ବିଷୟରେ କିଛି ଜାଣି ତ ନ ଥିବେ, ଓଲଟି ମୋତେ ଈର୍ଷ୍ୟା କରି ସବୁବେଳେ ମୋର ଖୁଣ ଦେଖାଇବାକୁ ଜାଗ୍ରତ ରହିବେ । ତାଙ୍କ ମନ ଧରି କାମ କରିବାକୁ ହେବ । ମୁଁ ଯେଉଁ କାମ ଆରମ୍ଭ କରିଛି ତାହାର ପ୍ରକୃତି ଓ ପରିସରରେ ପରିବର୍ତ୍ତନ ମଧ୍ୟ ମୋରି ହାତରେ କରିବାକୁ ପଡ଼ିବ । ସେଥିପାଇଁ ମୁଁ ସମର୍ଥ ହେବି କି ନାହିଁ ସନ୍ଦେହ । ମୁଁ ପକ୍କା ଚାକିରିଆ ହୋଇଥିଲେ ଯେଉଁ ଆଡ଼କୁ ବର୍ଷା ହେଲେ ଆଡ଼କୁ ଛତା ଟେକି ରହି ପାରନ୍ତି ! ସେ କଥା ମୁଁ ପାରୁ ନାହିଁ । ତାହା ମୋର ଦୋଷ । ସେଇ ଦୋଷ ଯୋଗୁଁ ଯଦି ନବବାବୁ ମୋତେ ନ ଚାହୁଁ ଥାନ୍ତି, ତେବେ ଗତାନୁଗତିକ ରୀତିରେ ସେ ଠିକ୍ ବିଚାର କରୁଛନ୍ତି ବୋଲି ସ୍ୱୀକାର କରିବାକୁ ହେବ । ମୋର ଏକ ମାତ୍ର ଦୁଃଖ ନବବାବୁଙ୍କ ଭଳି ଲୋକ ଗତାନୁଗତିକ ରୀତି ଧରି କାହିଁକି ଅବସ୍ଥାର ପ୍ରୟୋଜନକୁ ଚାହିଁ ମନ ଠିକ କରୁ ନାହାନ୍ତି । ଏ ବିଷୟରେ ତେଣୁ ମୁଁ ଆଉ ବେଶୀ ଭାବୁନାହିଁ । ତାଙ୍କ ରାଜ୍ୟ ସେ ଯେପରି ଚଳାଇବେ ସେଥିରେ କାହାର କ'ଣ କହିବାକୁ ଅଛି । ଆମ କଥା ରଖିବା ନ ରଖିବା ତାଙ୍କର ଇଚ୍ଛା ଉପର କଥା । ରାତିରେ ଦୀପାବଳୀ ଶ୍ରାଦ୍ଧ କରି ରାତି ୧୧ଟାରେ ଭୁବନେଶ୍ୱର ଫେରିଲି । ( ୨୬ । ୧୦ । ୧୯୫୪ )

ଆଜ ସକାଳେ ଶୁଣିଲି ସୁନାରାମ ବାବୁ କାଲି ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଟିକିଏ ତିକ୍ତ ଆଲୋଚନା କରିବା ଫଳରେ ସେ ମହାଶୟ ତାଙ୍କ ମତ କିଛିଟା ପରିମାଣରେ ବଦଳାଇଛନ୍ତି । କିନ୍ତୁ ଠିକ୍ କ'ଣ କରିବେ ତାହା ସ୍ଥିର କରି ନାହାନ୍ତି । ଶ୍ରୀ ଅନୁପ ସିଂହଙ୍କ ସଙ୍ଗେ ଏ ବିଷୟରେ କଥାବାର୍ତ୍ତା ହେବାରେ ସେ ସୂଚନା ଦେଲେ ଯଦି ହରିବନ୍ଧୁ ମହାନ୍ତିଙ୍କ ଭଳି ମୋତେ

ଆଦିବାସୀ ବିଭାଗର ପରାମର୍ଶଦାତା କରି ରଖାଯାଏ ତେବେ ଭଲ ହେବ । ମୁଁ ତାଙ୍କ କଥାରୁ ବୁଝିଲି ଯେ ମୋ ପାଇଁ ସୁନାରାମ ବାବୁଙ୍କ ଭଲ ଦାଣ୍ଡକୁ ବାହାରିବେ ନାହିଁ । ଖୁବ୍ ଉତ୍ତେଜିତ ହେଲେ ; ଏ ସମ୍ବାଦରେ ସେ ଖୁବ୍ ବିବ୍ରତ ହୋଇଥିବାର ପ୍ରକାଶ କଲେ ; କିନ୍ତୁ ତାଙ୍କ ଢଙ୍ଗରଙ୍ଗରୁ ବିବ୍ରତ ହେବାର ଜଣା ପଡ଼ିଲା ନାହିଁ । ମୋର ପୂରା ବିଶ୍ୱାସ ହେଉଛି ସେ ଇତି ମଧ୍ୟରେ ମୋ ନାମରେ ମୁଖ୍ୟମନ୍ତ୍ରୀଙ୍କ ପାଖେ ଚୁଗୁଲି କରିଛନ୍ତି । ମାଳତୀ ଦେବୀ ମଧ୍ୟ ମୋ ବିରୁଦ୍ଧରେ ଅଭିଯାନରେ ମୁଖ୍ୟ ଭାଗ ନେଇଥିବେ । ଏମାନଙ୍କ ସାହାଯ୍ୟ ପାଇ ଏଥର ଚିଫ୍ ସେକ୍ରେଟାରୀ ଝଗିଲା । ଦେଖାଯାଉ କ'ଣ ହେଉଛି । ମୁଁ ସ୍ଥିର କଲି, ମୋତେ ସେକ୍ରେଟାରୀରୁ କାଢ଼ି ଆଦେଶନାମା ଜାରି ହେବା ସଙ୍ଗେ ସଙ୍ଗେ ଛୁଟି ନେବି କିମ୍ବା ଇସ୍ତଫା ଦେଇ ଦେବି ।

କଟକରୁ ପଣ୍ଡିତେ ଡକାଇ ପଠାଇଲେ । ଦୁଃଖିଶ୍ୟାମ ମିଶ୍ରଙ୍କଠାରୁ ଶୁଣିଥିଲି ଯେ ମୋତେ ମୋର ଭବିଷ୍ୟତ୍ କାର୍ଯ୍ୟ ପନ୍ଥାରେ ଖୁବ୍ ସାହାଯ୍ୟ କରିବେ ବୋଲି ଦୃଢ଼ ପ୍ରତିଜ୍ଞା ହୋଇଛନ୍ତି । କିନ୍ତୁ କଥାବାର୍ତ୍ତାରେ ଏହା ଜଣା ପଡ଼ିଲା ନାହିଁ । ସେ ତାଙ୍କ ଘର କଥା ନେଇ ଖୁବ୍ ବିବ୍ରତ । ( ୨୭ । ୧୦ । ୧୯୫୪ )

କାଲି ମୁଁ ପଣ୍ଡିତଙ୍କ ଘରେ ଥିଲାବେଳେ ସୁଧୀର ବାବୁ ଭୁବନେଶ୍ୱରରୁ ଟେଲିଫୋନ କଲେ ଯେ, ସୁନାରାମ ବାବୁଙ୍କ ଉଗ୍ର ମନୋଭାବ ଦେଖି, ମୁଖ୍ୟମନ୍ତ୍ରୀ ସ୍ଥିର କରିଛନ୍ତି ଯେ ମୁଁ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗର ସେକ୍ରେଟାରୀ ଡିରେକ୍ଟର ରହିବି ; ଓ ପ୍ରଚାର ବିଭାଗ କ୍ୟାବିନେଟ୍ ଡିପାର୍ଟମେଣ୍ଟକୁ ଚାଲିଯିବ । ଏ କଥାଟି ଶୁଣି ମୋତେ ବଡ଼ ଆନନ୍ଦ ଲାଗିଲା । ପ୍ରଚାର ବିଭାଗରୁ ମୁଁ ରକ୍ଷା ପାଇଲେ ଭାରି ମଙ୍ଗଳ ହୁଅନ୍ତା । ସୁଧୀର ବାବୁଙ୍କ ପରି ଦୋ ମୁଣ୍ଡିଆ ସାପ କବଳରୁ ରକ୍ଷା ପାଆନ୍ତି ! ସେ ମଧ୍ୟ ଦେଖନ୍ତେ ଚନ୍ଦ୍ରାମଣି ମିଶ୍ର ସଙ୍ଗେ କାମ କରିବା ସୁଖ ନା ମୁଖର୍ଜି, ମାଥ୍ୟୁସ୍‌ଙ୍କୁ ସ ର୍ ସାର୍ କହିଲେ ସୁଖ । ନବ ବାବୁ ଏପରି ବିଚାର କାହିଁକି କରୁଛନ୍ତି, ତାହାର ମର୍ମ କଥା ସୁଧୀର ବାବୁ ବାନ୍ତି କରି ପକାଇଲେ । ନବବାବୁ ପରା ତାଙ୍କୁ ଅନେକ ଦିନ ହେଲା କହୁଛନ୍ତି ଯେ, ପ୍ରଚାର ବିଭାଗ ଖାଲି ସୁନାରାମ ବାବୁଙ୍କ ସ୍ତୁତି ଗାନ କରିବାରେ ଲାଗିଛି । ସୁନାରାମ ବାବୁ କ୍ରମେ କ୍ରମେ ବେଶୀ ଲୋକପ୍ରିୟ ହୋଇଯାଉଥିବାର ଦେଖି ନବ ବାବୁ ବିରକ୍ତ ଅଛନ୍ତି । ସେ ବୁଝାନ୍ତି ସମସ୍ତେ ତାଙ୍କୁ ଉପର ମଉ ମନ୍ତ୍ରୀମଣ୍ଡଳରେ ରହିବେ । ସେହିପରି ଅନେକ ଅଛନ୍ତି । କିନ୍ତୁ ସୁନାରାମ ବାବୁ କାହିଁକି ସେପରି ରହିବେ ? ତାଙ୍କର ଯୋଗ୍ୟତା ଅଛି ଓ ତାଙ୍କ ଲୋକେ ତାଙ୍କୁ ପାଇ ଖୁସି । ସୁନାରାମ ବାବୁ ଝାଡ଼ଖଣ୍ଡୀ ମତ ଛାଡ଼ି ବର୍ତ୍ତମାନ ପୁରାପୁରି ଓଡ଼ିଆ । ଏପରି ପରିସ୍ଥିତିରେ ମୁଖ୍ୟମନ୍ତ୍ରୀ ସୁନାରାମ ବାବୁଙ୍କୁ ହିଂସା କରିବା ପରିବର୍ତ୍ତେ ହିମ୍ମତ୍ ଦେବା ଉଚିତ । ଦୁଃଖର ବିଷୟ, ସେ ଉପକୂଳିଆ ମନୋବୃତ୍ତିରେ ଭୁମି, ଗଡ଼ଜାତିଆ ଓ ଆଦିବାସୀ ହରିଜନଙ୍କୁ ନଜର ବୁଲୁବୁଲୁହା କରି ରଖିବାକୁ ଚାହିଁଛନ୍ତି । ଏହା ହୋଇ ପାରିବ ନାହିଁ ।

ସନ୍ଧ୍ୟାରେ ପୁଷ୍ପ ଗଲି । ଏଥରର ସୁରୁବାର ଅନୁଷ୍ଠାନ ବଡ଼ ଶ୍ରେଷ୍ଠ ଧରଣର ହେଲା । ପଣ୍ଡିତ ଜଗନ୍ନାଥ ରଥ ଓ ଚନ୍ଦ୍ରମଣି ମହାପାତ୍ରଙ୍କ ଉଦାସୀନତା ଯୋଗୁଁ ଅନୁଷ୍ଠାନର ଉଦ୍ଦେଶ୍ୟରେ ଆଘାତ ଆସିଲା । ମହାପାତ୍ରଙ୍କୁ ଚେତାଇ ଦେଇଛୁ । (୨୮ । ୧୦ । ୫୪)

ଆଜି ଦିନ ତମାମ ମନରେ ଚିନ୍ତା ରହିଲା । ଖାଲି ଆଶା କରି ବସିଲି କପରି ହୁକୁମ ନାମା ଆସୁ, ମୋଠାରୁ ପ୍ରସ୍ତୁର ବିଭାଗ କାଢ଼ି ନେବାକୁ । ସୁଧୀର ବାବୁଙ୍କ ମନରେ ମୋ ପ୍ରତି ଶ୍ରଦ୍ଧା ନାହିଁ । ଏ ବିଷୟରେ ମୋ ମନରେ ଧାରଣା ଜାତ ହେଲା ବେଳୁ ମୋର ଆଉ ମୁହୂର୍ତ୍ତେ ମଧ୍ୟ ପ୍ରସ୍ତୁର ବିଭାଗରେ ରହିବାକୁ ମନ ହେଉନାହିଁ । ଆଦିବାସୀ ବିଭାଗରେ ମୋତେ ସେକ୍ରେଟାରୀ ଓ ଡିରେକ୍ଟର କରି ରଖିଲେ ମୁଁ ରହିବି ; ସେକ୍ରେଟାରୀ ପାଇଁ ଦିଆ ହେଉଥିବା ସ୍ୱତନ୍ତ୍ର ଭତ୍ତା ରହିବ କି ନାହିଁ ସେ ବିଷୟରେ କରଣୀଙ୍କର ଯେଉଁ ସନ୍ଦେହ ହେଉଛି ସେଥିପ୍ରତି ମୋର ଭ୍ରୂକ୍ଷେପ ନାହିଁ । ଚେଷ୍ଟା କରୁକରୁ ଦେବେ ତ ଦେବେ, ନ ଦେଲେ ନାହିଁ । ଏ ଭତ୍ତା ନ ପାଇ ମଧ୍ୟ ମୁଁ ବହୁ ଦିନ ସେକ୍ରେଟାରୀ ଥିଲି ।

ତି ପହରେ ଜଗନ୍ନାଥ ମିଶ୍ରେ ଓ ହୃଦୟନାଥ ରଥେ ଆସି ପହଞ୍ଚିଲେ । ଦୁହେଁଯାକ ପରାମର୍ଶ ଦେଲେ, ଯଦି ମୋତେ ସେକ୍ରେଟାରୀରୁ କାଢ଼ିବା ଆଦେଶ ଆସେ, ତେବେ ମୁଁ ଇସ୍ତଫା ନ ଦେଇ ଛୁଟିରେ ଚାଲି ଯିବି । Earned leave ଓ Medical leave ହୋଇ ମୁଁ ଆଠ ମାସ ପର୍ଯ୍ୟନ୍ତ ଅନୁପସ୍ଥିତ ରହିବି । ଏ ପରାମର୍ଶ ମୋତେ ଭଲ ମନେ ହେଉଛି । ମୋର ପୂର୍ବ ବିଶ୍ୱାସ ୮ ମାସ ଭିତରେ ନବ ବାବୁଙ୍କର ମନ ଘର ଧରିଯିବ । ଯଦି ନ ଧରିଲା, ତେବେ ବା କ୍ଷତି କ'ଣ ? ଯେଉଁ ଇସ୍ତଫାଟା ଆଠ ମାସ ଆଗରୁ ଦିଆ ହୋଇ- ଥାନ୍ତା, ତାହା ଆଠ ମାସ ପରେ ଦିଆଯିବ ।

ଆଜି ଭାରତ ସରକାରଙ୍କ ଯାନବାହନ ବିଭାଗର ଉପମନ୍ତ୍ରୀ ଆସିବାରୁ ନବବାବୁ ଅତିଥି ଭବନରେ ରାତ୍ରି ଭୋଜନ ଦେଉଛନ୍ତି । ନିମନ୍ତ୍ରଣ ପାଇଲି ; କିନ୍ତୁ ସେଠାରେ ଯାଇ ଲିବିସିବି ହେବାକୁ ମନ ହେଲା ନାହିଁ । ଘରକୁ ଆସି ପଢ଼ାପଢ଼ିରେ ଲାଗିଲି । ପଢ଼ୁପଢ଼ୁ ବହୁତ ନୂଆ ନୂଆ କଥା ଦେଖିଲି । ମୋ'ର ମନେ ହେଲା ଏଇ ସବୁ ଲେଖି ପକାଇଲେ ଭଲ ବହି ହେବ । ହେଉ ବା ନ ହେଉ ସେ ଦିଗରେ ଗୋଟାଏ ଆନ୍ତରିକ ଚେଷ୍ଟା ଚଳାଇବାକୁ ହେବ । ବହି ବାବଦରୁ ଟଙ୍କା ଦୁଇ ଶହ ମାସକୁ ରୋଜଗାର ହେଲେ ପିଲେ ଚଳିଯାଇ ପାରିବେ । (୨୯ । ୧୦ । ୫୪)

ଆଜି ସକାଳୁ ମନ୍ତ୍ରୀ ଡକାଇ ପଠାଇଲେ । ଯାଇ ଶୁଣିଲି, ଆଜି ତି' ପହରେ ସତ୍ୟପ୍ରିୟ ବାବୁଙ୍କ ଘରେ ମନ୍ତ୍ରୀମାନେ ମଧ୍ୟାହ୍ନ ଭୋଜନରେ ଏକତ୍ର ହେବେ । ସେଇଠାରେ ମୋ ବିଷୟ ପଡ଼ିବ ବୋଲି ଦୀନାରାମ ବାବୁଙ୍କର ଆଶଂକା । ସେଠାରେ ସେ କି ଯୁକ୍ତି ଧରିବେ ସେ ବିଷୟରେ ମୋତେ ପଚାରିଲେ । I. A. S. ଅଫିସର ଓ ନନ୍ ସେକ୍ରେଟାରୀଙ୍କର କ'ଣ ଦୋଷ ଦୁର୍ବଳ ଅଛି ଜାଣିବାକୁ ଚାହିଁଲେ । ମୁଁ ସେ କଥାକୁ ଆଡ଼େଇ ଦେଇ ମୋ'ର ବିଷୟକୁ କଥା ଆଣିଲି । କ'ଣ କ'ଣ କହିବାକୁ ହେବ ତାଙ୍କ ସଙ୍ଗେ ଆଲୋଚନା କଲି ।

ସ୍ୱାଙ୍କର ମୋ' ପ୍ରତି ଯଥେଷ୍ଟ ଆନ୍ତରିକତା ଅଛି । ଅବଶ୍ୟ ମୂଳରେ ସ୍ୱାର୍ଥ । ହେଲେ କ'ଣ ହେଲା ? ନିଜ ସ୍ୱାର୍ଥ ନିଜେ ବୁଝିପାରିବା ତ ସାଧାରଣରେ ଦେଖାଯାଉ ନାହିଁ । ମୁଁ ପ୍ରଗ୍ୱର ବିଭାଗରେ ରହିବା ନବ ବାବୁ ଓ ସୁଧୀର ବାବୁଙ୍କ ସ୍ୱାର୍ଥର ଅନୁକୂଳ, ଏ କଥା ଏ ଦୁହେଁ ନ ବୁଝି ଛନ୍ତି କାହିଁକି ? ମୁଁ ବାହାରକୁ ଗଲେ କଂଗ୍ରେସ ଦଳ କେତେ ଦୁର୍ବଳ ହୋଇଯିବ ତାହା ବନମାଳୀ ପଟ୍ଟନାୟକ ନ ବୁଝିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ହୁଏତ ରାଧାନାଥ ବାବୁ ମୋ ପ୍ରତି ଥିବା ବ୍ୟକ୍ତିଗତ ବିଦ୍ୱେଷ ଯୋଗୁ ସମୂହ ସ୍ୱାର୍ଥ ଭୁଲିଯାଇ ପାରନ୍ତି । କିନ୍ତୁ ନବବାବୁ ତ ଏ ସବୁ ସଂକୀର୍ଣ୍ଣତାରୁ ଉପରେ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ସେ କାହିଁକି ଚିଫ୍ ସେକ୍ରେଟାରୀର କଥାରେ ମାତିଛନ୍ତି ? ମୋ'ର ଆଶା ସୁନାରାମ ବାବୁଙ୍କ ଜିଦ୍ ଯୋଗୁଁ ଏଥରର ଅବସ୍ଥା ସମ୍ଭାଳି ହୋଇଯିବ । ମୁଁ ପ୍ରଗ୍ୱର ବିଭାଗରେ ରହେ ବା ନ ରହେ, ଆଦିବାସୀ ବିଭାଗ ମୋ'ଠାରୁ କେହି ଛଡ଼ାଇ ନେବାକୁ ସାହସ କରିବେ ନାହିଁ ।

ଆଜି ଅଫିସକୁ ନ ଯାଇ ଘରେ ରହିଲି । ମୋ'ର ଟଙ୍କାପଇସା ଅଡ଼ୁଆ ତୁଟାଇବାକୁ ପ୍ରଭିଡେଣ୍ଟ ଫଣ୍ଡରୁ ଆଉ ଗୋଟାଏ ଋଣ ନେବାକୁ ଦରଖାସ୍ତ କଲି । ୫ ହଜାର ଟଙ୍କା ନେବି । ଏଥିରେ ମୋର ଜରୁରି ପରିଶୋଧ କରିବାକୁ ଥିବା ଟଙ୍କା ସୁଝିଦେବି । ଟିକିଏ ନିଶ୍ଚିନ୍ତ ହେବି । ସନ୍ଧ୍ୟାରେ ଫୁଲବାଣୀର ଜିଲ୍ଲା ମାଜିଷ୍ଟ୍ରେଟ୍ ଆସିଲେ । ତାଙ୍କୁ ଟିକିଏ ଗୁ' ଦେଲି । କାହିଁକି ଆସିଥିଲେ ଜାଣି ହେଲା ନାହିଁ । ସାଢ଼େ ୧୦ଟା ପର୍ଯ୍ୟନ୍ତ ଅପେକ୍ଷା କରି, ମଟର କଟକରୁ ଫେରିବା ପରେ ଗାଁକୁ ଗଲି । (୩୦ । ୧୦ । ୫୪)

କାଲି ରାତିରେ ଶୋଇବାକୁ ଖୁବ୍ ଡେରି ହେଲା । ରୁନୁ ଓ ଲୁଲୁଙ୍କର ଦେହ ଖରାପ । ବାକି ତିନିଜଣଯାକ ଏକ ରକମ ଭଲ ଅଛନ୍ତି । ସାନ ପିଲାଙ୍କ ଜଞ୍ଜାଳରେ ଶୋଉ ଶୋଉ ରାତି ତିନିଟା ହୋଇଯାଇଥିଲା । ଉଠିଲା ବେଳକୁ ଡେରି ହେଲା । ଆଜି ଆଉ ବଗିଚାକୁ ଯାଇ ପାରିଲି ନାହିଁ । ସକାଳେ ଦୁ'ଜଣଯାକ ପିଲାଙ୍କର ଜର ଛାଡ଼ିଯାଇଥାଏ । ସକାଳେ ବଡ଼ ଝିଅ ବାଙ୍କୀରୁ ଆସିବାର କଥା ଥାଏ । ମନ ଭଲ ରହିବାରେ ଏସବୁ ଯଥେଷ୍ଟ ସାହାଯ୍ୟ କରୁଥିଲେ ହେଁ ମନ ଭିତରେ ସବୁବେଳେ ମୋ' ଭବିଷ୍ୟତ କଥାଟା ଜାଗ୍ରତ ହେଉଥାଏ । ଅବଶ୍ୟ ଅନ୍ୟ କେହି ଜାଣିପାରୁ ନ ଥାନ୍ତି । କିନ୍ତୁ ମୁଁ ତ ଜାଣୁଥାଏ । ମୋ'ର ସାଧନାର ପ୍ରଥମ ଅଧ୍ୟାୟ ବି ସରିନାହିଁ । ଅନ୍ୟମାନଙ୍କ ସୁଖ ଦୁଃଖରେ ଯଦି ମନ ପୁରା ଭାବେ ନ ରହିଲା, ସବୁବେଳେ ନିଜ ଆଡ଼କୁ ଟାଣି ହେଲା, ତେବେ ଈଶ୍ୱରଙ୍କ ଅନୁଗ୍ରହ ମିଳିବ କେତେକେ ।

ସକାଳେ ଧାମ ଭଞ୍ଜନା ଆସି ପହଞ୍ଚିଲେ । ସେ ବାଲୁକେଶ୍ୱର ଦେବଙ୍କର ଟ୍ରଷ୍ଟି ହୋଇଛନ୍ତି । ଆଜି ତାଙ୍କୁ କ୍ଷମତା ମିଳିବ । ସେଇ ଅର୍ଡରର ସେଥିପାଇଁ ଆସିବେ ତାଙ୍କ ଅଭ୍ୟର୍ଥନା ସକାଶେ ସେ ୩୦।୪୦ ଟଙ୍କା ଖର୍ଚ୍ଚ କରିବାର ଫର୍ଦ୍ଦ କରିଛନ୍ତି । ସେଥିକୁ ୫ ଟଙ୍କା ଚାନ୍ଦା ଦେଲି । ମାଳିମାନେ ତାଙ୍କୁ ହିନସ୍ତା କରିବାକୁ ଡାଉଟରଙ୍କ ପରାମର୍ଶରେ ଉଦ୍ୟମ କରିଛନ୍ତି । ମାଳିମାନଙ୍କୁ ଡକାଇ ସମସ୍ତଙ୍କୁ ବସାଇ ବିଷୟର ସମାଧାନ କରିବାକୁ ପରାମର୍ଶ ଦେଲି । ଆଜି ସଭା ହୋଇପାରିଲା ନାହିଁ । ନାରଣ ବାବୁ ଓ ପରୀକ୍ଷିତ ବାବୁ ଆଜି ସଭାରେ ଯୋଗ ଦେଇ ପାରିବେ ନାହିଁ ବୋଲି ଆର ରବିବାରକୁ ସଭା ଘୁଞ୍ଚିଲା ।

ଗୋବିନ୍ଦ ଅଣ୍ଡାଙ୍କୁ ନୂଡ଼ିଏ ମାଛ ଧରି ଆସି ପହଞ୍ଚିଲା । ସଂଧ୍ୟାଯାଏ ଗେଲ ହେଲା ।

ସଂଧ୍ୟାରେ ଗାଁରୁ ଭୁବନେଶ୍ୱର ବାହାରି ଆସିଲି । ମନରେ ସବୁବେଳେ ଟିକିଏ ଚିନ୍ତା ରହୁଛି । ଶନିବାର ଦିନ ମନ୍ତ୍ରୀମାନଙ୍କ ମେଳରେ ମୋ' ବିଷୟ କ'ଣ ହେଲା, ଏ ବିଷୟ ଜାଣିବାକୁ ମନରେ ଉଦ୍‌ବେଗ ଥାଏ । କିନ୍ତୁ ଭୁବନେଶ୍ୱରକୁ ଆସି ମନ୍ତ୍ରୀଙ୍କ ଘରକୁ ଯିବାକୁ ଲାଜ ମାଡ଼ିଲା । ମୁଁ ଚାକିରିକୁ ପସନ୍ଦ କରେ ନାହିଁ ବୋଲି ସମସ୍ତେ ଜାଣନ୍ତି । ଏପରି ଚାକିରି ପାଇଁ ଭାବ ହୋଇ ମନ୍ତ୍ରୀଙ୍କ ପାଖକୁ ଯିବି କିପରି ବୋଲି ବିଚାରି ଘରେ ବସିଲି । କିନ୍ତୁ ମନରେ ସେଇ ଚିନ୍ତା ଥାଏ । କୁଆଡ଼ୁ କେଜାଣି ଟେଲିଫୋନ ଆସିବ ବୋଲି ଟେଲିଫୋନ ପାଖରେ ବସିଲି । ସୁଧୀର ବାବୁଙ୍କ ଘରକୁ ଟେଲିଫୋନ କରିବାକୁ ମଧ୍ୟ ଲାଜ ମାଡ଼ୁଥାଏ । ରାମ ପଣ୍ଡା ଟେଲିଫୋନ କଲେ । ତାଙ୍କଠାରୁ ଶୁଣିଲି କାଲି ସଭାରେ ମୋ' ବିଷୟରେ ବିଶେଷ କିଛି ପଡ଼ି ନାହିଁ । ମନ୍ତ୍ରୀ ଯେତେ ଦୂର ବୁଝିଛନ୍ତି ଅତି ଶୀଘ୍ର ବିଶେଷ କିଛି ହେବ ନାହିଁ । ଶ୍ରୀକାନ୍ତଜୀ ମୋ' ବିଷୟରେ ଯେଉଁ ମନ୍ତବ୍ୟ ଦେଇଛନ୍ତି ସେ ବିଷୟରେ କିଛି ବିଚାର ହୋଇନାହିଁ । ତାହା ବିଚାର ହେବ ବୋଲି ସଭା ସରେଇ ମନ୍ତ୍ରୀ କହିଲେ । ଅବସ୍ଥାଟା ପରିଷ୍କାର ହୋଇଗଲା । ଶୀଘ୍ର ଗୋଟାଏ କିଛି କରିବାର ଇଚ୍ଛା ଥିଲା, କିନ୍ତୁ ଆମ ମନ୍ତ୍ରୀ ଜିଦ୍ ଧରିବାରୁ ଓ ମୁଁ ଡିରେକ୍ଟର ହୋଇ ରହିବି ନାହିଁ ବୋଲି ବିଶ୍ୱାସ ହେବାରୁ ପୁଣି ସିଦ୍ଧାନ୍ତ ଘୁଞ୍ଚିଲା ; ଯେପରି ୪।୫ ବର୍ଷ ହେଲା ଘୁଞ୍ଚୁଛି । ନବବାବୁଙ୍କ ଦୁର୍ବଳତା ଯୋଗୁଁ ମନେ ମନେ ହସିଲି; ମନରେ ଯଦି ମୋପ୍ରତି ଅସୂୟା ଅଛି, ମୋତେ ଛାଡ଼ିବା ଉଦ୍ଦେଶ୍ୟ ଅଛି, ତେବେ ସାହସ କରି କରିଦେଲେ ହୁଅନ୍ତା । ସେଥିପାଇଁ ଯଦି ସାହସ ନ ହେଉଛି ତେବେ ଔଷଧ ଖାଇଲା ପରି ମୋତେ ଗ୍ରହଣ କରିନେଲେ ହୁଅନ୍ତା । ତା' ନ କରି ଥରକୁ ଥର ଫଣା ଟେକି ପୁଣି ସ୍ଥିର ହୋଇ ତଳେ ପଡ଼ିଯିବା ଫଳରେ ନିଜର ମଣିଷ ପଣିଆ ତ ଧରା ପଡ଼ୁଛି, ସଙ୍ଗେ ସଙ୍ଗେ ସମଗ୍ର ଶାସନ ହୁଗୁଳା ହୋଇଯାଉଛି । ଯାହା ହେଉ ଯେପରି ଜଣାଯାଉଛି ମୋତେ ପୁଣି ଆଉ କିଛି ଦିନ ଦୋଳାୟିତ ଚିତ୍ତବୃତ୍ତି ହୋଇ ରହିବାକୁ ହେବ । ଏହା ଗୋଟାଏ ବଡ଼ ସାଧନା ହୋଇ ବସିଲାଣି । ଅଭ୍ୟାସ ଫଳରେ ଏହା ସହିଯିବା ଅତିଶୟ କଷ୍ଟକର ହେଉ ନାହିଁ । କିନ୍ତୁ ମୋ'ର କାମନା କିପରି ଆଦୌ କଷ୍ଟ ନ ହୁଅନ୍ତା ।

(୩୧ । ୧୦ । ୧୯୫୪)

ଆଜି ସକାଳୁ ମେଘଗୁଡ଼ାକ ଅନେକାଂଶରେ ଉଡ଼ି ଆକାଶ ସଫା ହୋଇଗଲା । ସକାଳେ ଦାଅଁଙ୍କ ପାଖେ ଅଳି କଲି, ମୋର ଚିନ୍ତା ଦୂର କରିବାକୁ । ଦାଅଁ ଶୁଣିଲେ । ଅଫିସ୍ ଘରେ ଆସି ବସିବାର ଅଳ୍ପ ସମୟ ଭିତରେ ସୁଧୀରବାବୁ ଆସି ପହଞ୍ଚିଲେ, ମୁଖ୍ୟମନ୍ତ୍ରୀଙ୍କ ପାଖରୁ । ମୁଖ୍ୟମନ୍ତ୍ରୀଙ୍କୁ ସେ ବହୁତ କଥା ଶୁଣାଇଦେଇଛନ୍ତି ବୋଲି ତାଙ୍କୁ ଦେଖିବା ମାତ୍ରେ ଜାଣି ପାରିଲି । ସେ ମୋତେ ଦୋଷିଲେ ଯେ, ମୁଁ ତାଙ୍କୁ ସନ୍ଦେହ କରୁଛି ବୋଲି । ମୁଁ ପରିଷ୍କାର କହିଦେଲି, ପ୍ରଥମେ ମୋ ମନରେ ଧାରଣା ହୋଇଥିଲା ଯେ, ସୁଧୀରବାବୁଙ୍କ ଯୋଗୁ ମୁଖ୍ୟମନ୍ତ୍ରୀ ମୋ ଉପରେ ବିଗିଡ଼ିଛନ୍ତି, କିନ୍ତୁ ଦିନକ ପରେ ମୁଁ ମନକୁ ବୁଝାଇଲି ଯେ, ସୁଧୀର ବାବୁଙ୍କୁ ସନ୍ଦେହ କରିବା ମୋ ପକ୍ଷରେ ଅନ୍ୟାୟ ହେଉଛି । ତାଙ୍କ ଯୋଗୁ ମୁଁ

ପ୍ରସ୍ଥର ବାସ୍ତବରେ ଆସିଲି । ମଝିରେ ତାଙ୍କଠାରୁ ମୁଁ ବହୁତ ଉପକାର ପାଇଛି । ବିଶେଷ କରି ମୋ'ର ବେମାର ସମୟରେ ସେ ମୋତେ ଯାହା ସାହାଯ୍ୟ କରିଛନ୍ତି ତାହା ଜୀବନରେ ଭୁଲି ପାରିବି ନାହିଁ । ଏପରି ସ୍ଥଳେ ସେ ମୋ ବିରୁଦ୍ଧରେ ଲାଗିଛନ୍ତି ବୋଲି ବିଶ୍ୱାସ କରିବା ପାପ । ଏ କଥା ମଧ୍ୟ କହିଲି ଯେ, ମଝିରେ ମଝିରେ ସେ ତାଙ୍କ ମତ ସ୍ପଷ୍ଟ ଭାବେ ଦେବାକୁ ଯାଇ ଯାହା କହନ୍ତି ତାକୁ ଶୁଣି ଲୋକେ ଭୁଲ ବୁଝୁଥିବେ । ସୁଧୀର ବାବୁଙ୍କୁ ଇଚ୍ଛା କରି କହିଲି ନାହିଁ ଯେ, ତାଙ୍କର ମୋ ସଙ୍ଗେ କଳି କରିବାର ହେଲେ ଏକାନ୍ତରେ କରିବାର କଥା । ସଭାରେ ନୁହେଁ । ନବ ବାବୁ ପରି କହିଲେ, "ଚନ୍ଦ୍ରାମଣି ବାବୁ କାହିଁକି ବିଶ୍ୱାସ କରୁଛନ୍ତି ଯେ, ତାଙ୍କୁ ଆମେ ଗ୍ରୁଡ଼ି ଦେବୁ ବୋଲି । ତାଙ୍କୁ ଗ୍ରୁଡ଼ି ଦେଇ ଆମେ କ'ଣ ବି. ମୁଖାର୍ଜି ଓ ଡାକ୍ତରଙ୍କୁ ଧରି ପ୍ରସ୍ଥର ବିଭାଗ କାମ କରାଇ ପାରିବୁ ?" ଏ କଥା ସତ୍ୟ ହୋଇଥିଲେ ସାଂଘାତିକ । ସଦାଶିବ ତ୍ରିପାଠୀଙ୍କ ଆଗେ ସେ ଯାହା କହିଲେ ବୋଲି ମୁଁ ଶୁଣିଲି, ଓ ସୁନାରାମ ବାବୁଙ୍କୁ ଯାହା କହିଲେ ବୋଲି ମୁଁ ଜାଣେ ତା' ସଙ୍ଗେ ଏ କଥା ଖାପ ଖୁଆଇବାକୁ ଚେଷ୍ଟା କଲେ ପରିଷ୍କାର ବୁଝାଯାଉଛି ଯେ, ସୁନାରାମବାବୁଙ୍କ ବିରୋଧରେ ସେ ଡରିଯାଇଛନ୍ତି, କେଣ୍ଠ ସୁଧୀର ବାବୁଙ୍କ ଓକିଲତରେ ଏପରି କହୁଛନ୍ତି ।

ସୁଧୀର ବାବୁଙ୍କ ସଙ୍ଗେ ଯାହା କଥାବାର୍ତ୍ତା ହେଲା ସେ କଥା କାହାକୁ କହିଲି ନାହିଁ । ଶୁଣିଲି ସୁଧୀର ବାବୁ ସ୍ୱରାଆଡେ କହୁଥିଲେ ଯେ ଚନ୍ଦ୍ରାମଣିବାବୁ ଯେପରି ଥିଲେ ସେପରି ରହିବେ ବୋଲି ନବବାବୁ ପରିଷ୍କାର କହିଲେ ଓ ଚନ୍ଦ୍ରାମଣି ବାବୁ ବୃଥାରେ ନଈ ନ ଦେଖି ଲଙ୍ଗଳା ହୋଇଯାଇଥିଲେ । ଯଥା ଲାଭ । (୯ । ୧୧ । ୫୪)

**ପଡ଼ିଆ ଜମି :**

ଆଜି ସକାଳେ ବଗିଚାକୁ ଓ ସେଠାରୁ ଗୋବିନ୍ଦ ସାହୁଠାରୁ କିଣିଥିବା ପଡ଼ିଆକୁ ଦେଖିବାକୁ ଗଲି । ମୁଁ ଜୀବନଯାକ ପଡ଼ିଆ କିଣୁଛି ନିଜ ପାଇଁ । ଆଦିବାସୀଙ୍କ ପାଇଁ ପଡ଼ିଆ ଭାଙ୍ଗୁଛି । ଖାଲି ଯେ ସାତ୍ତ୍ୱିକ ଭାବରେ ଏହା କରୁଛି ତାହା ନୁହେଁ । ଜମି କିଣିବାକୁ ମୋର ଟଙ୍କା ନାହିଁ କି ଆଦିବାସୀଙ୍କର ଟଙ୍କା ନାହିଁ । ଯେଉଁ ଜିନିଷ ଅନ୍ୟର ଦରକାରରେ ନ ଆସୁଛି ସେଇ ଆମର ଯଥେଷ୍ଟ ବୋଲି ମନକୁ ବୁଝାଇବାକୁ ହେବ । ଏଇ ପଡ଼ିଆରୁ କିଛି ଆଦାୟ କରିପାରିଲେ ଦରିଦ୍ରର ମନରେ ମଧ୍ୟ ସାହସ ଆସିବ ।

ଦି ପହରେ ବ୍ରହ୍ମପୁର ବାହାରିଲି । ପହଞ୍ଚିବାକୁ ୪।୨୦ ହୋଇଗଲା । ରାମପ୍ରସାଦବାବୁ ରେଲରେ ଆସି ୧୨ଟାରେ ପହଞ୍ଚିଥିଲେ । ଆଜି ଡାକବଙ୍ଗଳାକୁ ଆସି ମିଟିଂ ପାଇଁ ପ୍ରସ୍ତୁତ ହେବା ଅବସରରେ କାମାକ୍ଷୀ ପ୍ରସାଦ ଶର୍ମାଙ୍କ ସଙ୍ଗେ ନାନା ବିଷୟରେ ଆଲୋଚନା ହେଲା । ସେ ପାରଳାଖେମୁଣ୍ଡିରୁ ଫେରିଛନ୍ତି । ସେଠାରେ ଅନ୍ଧ୍ର ଓ ଓଡ଼ିଆଙ୍କର ଗୋଟିଏ ବଡ଼ ଧରଣର ସଂଘର୍ଷ ହୋଇଯାଇଛି । ବେସରକାରୀ ଓ ସରକାରୀ ନେତୃତ୍ୱର ଅଭାବରେ ଅବସ୍ଥା ଟିକିଏ ଅଧିକ ଖରାପ ହୋଇଗଲା । ବେସରକାରୀ ଲୋକେ ସରକାର ଉପରେ ଦୋଷ ଲଦୁଛନ୍ତି; ସରକାର ବେସରକାରୀ ଲୋକଙ୍କ ଉପରେ ଦୋଷ ଲଦିବେ । ଏଇପରି ଦୋଷ ଲଦାଲଦିରେ

ଅବସ୍ଥା ବେଶୀ ଖରାପ ହେଉଛି । କ୍ରମେ କ୍ରମେ ଆମେ ବଡ଼ ବଡ଼ ବିପଦର ସମ୍ମୁଖୀନ ହେଉଥାଉଁ । ଏହା ବୁଝିବାକୁ କେହି ପ୍ରସ୍ତୁତ ହେବା ବେଳ ଆସିନାହିଁ ।

ସନ୍ଧ୍ୟାରେ ପିଲାଙ୍କ ସଭା ଭଲ ହେଲା । ଏଠାରେ ପିଲାଙ୍କର ଅପେକ୍ଷାକୃତ ଅଧିକ ଉତ୍ସାହ ଦେଖାଯାଉଛି । (୬ । ୧୧ । ୫୪)

ଆଜି ସକାଳ ସାଢ଼େ ୭ଟା ବେଳେ ଖଲିକୋଟ୍ କଲେଜର ୬ ଜଣ ଛାତ୍ର କାଲି କଥା ହୋଇଥିବାମତେ ଆସିଲେ । ସେତେବେଳକୁ ମୋ'ର ଗାଧୁଆ ପାଧୁଆ ନିତ୍ୟକର୍ମ ସରିଥାଏ । ସବୁ ଦିନ ଏହିପରି ହୋଇପାରିଲେ ବଡ଼ ଭଲ ହୁଅନ୍ତା । କାମ କରିବାକୁ ଟିକିଏ ଅଧିକ ସମୟ ମିଳନ୍ତା । କେତେକ ଛାତ୍ରଙ୍କୁ ଓଡ଼ିଶାର ବିଭିନ୍ନ ସ୍ଥାନକୁ ନେଇ ଗଠନମୂଳକ କାର୍ଯ୍ୟରେ ବ୍ରତୀ କରିବାକୁ ଯେଉଁ ଯୋଜନା ମନେ ମନେ କରିଛି ସେ ବିଷୟରେ କ୍ଷୀଣ ସୂଚନା ସେମାନଙ୍କୁ ଦେଲି । କଷ୍ଟ ପଡ଼ିବା କଥା କିଛି କହିଲି ନାହିଁ । ଖାଲି ବୁଲିବା ଓ ଲୋକଙ୍କ ସଙ୍ଗେ ଦେଖା କରିବା, ଆମ ଦେଶରେ କି ସମ୍ପଦ ସବୁ ରହିଛି ତାକୁ ଦେଖିବା ଉପରେ ଜୋର ଦେଲି । ମନେ ହେଲା, ସେମାନେ ଏଥିରେ ଆଗ୍ରହୀ ହେଲେ । ଚିଠିପତ୍ର ଦିଆନିଆ କରି ସେମାନଙ୍କର ମନ ନେବାକୁ ବିଚାରିଛି । ବିକ୍ରମ ପାତ୍ର ବୋଲି ପିଲାଟି ଆଗ ଚିଠି ଦେବ ବୋଲି କହିଛି ।

୮ଟା ବେଳେ ପଞ୍ଚମା ଗାଁକୁ ଗଲି । ଏ ଗାଁ'ଟି ଦେଖି ବିସ୍ମିତ ହେଲି । ଏଠାରେ ବ୍ରାହ୍ମଣ, ଶୂଦ୍ର ଓ ବାଉରି ଗୋଟିକୁ ଗୋଟି ବାନ୍ଧି ଘର କରି ଗାଁ ଭିତରେ ରହିଛନ୍ତି । ଏହା ମୁଁ ଓଡ଼ିଶାର ଆଉ କେଉଁଠି ଦେଖି ନ ଥିଲି । ବହୁ ଦିନ ଆଗରୁ ଗାଁଟି ବସିଛି । ସେତେବେଳେ ମଧ୍ୟ ଅସ୍ପୃଶ୍ୟତାର ରୂପ ଏ ଗାଁ'ରେ ନ ପଡ଼ିବା ମୂଳରେ ପଞ୍ଚମାର ଶ୍ରୀ ବିନାୟକଙ୍କ ପ୍ରଭାବ ଥିଲା ପରି ମନେ ହେଲି । ପଞ୍ଚମାର ବିନାୟକ ବଡ଼ ପ୍ରସିଦ୍ଧ ଦେବତା । ପ୍ରତି ବର୍ଷ ଗଣେଶ ଚତୁର୍ଥୀରେ ଏଠାରେ ପ୍ରାୟ ଲକ୍ଷେ ଲୋକ ଏକାଠି ହୁଅନ୍ତି । ମୁଁ ଶ୍ରୀ ବିନାୟକଙ୍କ ଆଗରେ ପରମ୍ପରାଗତ ପ୍ରଥା ଅନୁସାରେ ଗୋଟିଏ ନଡ଼ିଆ ଭାଙ୍ଗିଲି—କାମନା, ବର୍ତ୍ତମାନ ଦେଶର ରାଜନୀତିକ କ୍ଷେତ୍ରରେ ଯେଉଁ ବିଶୃଙ୍ଖଳତା ଦେଖାଯାଉଛି ତାହା କିପରି ସୁଧୁରିଯାଉ । ଏଠାରେ କେତେଗୁଡ଼ିଏ ସାଂସ୍କୃତିକ ଅନୁଷ୍ଠାନ ଦେଖି ବଡ଼ ପ୍ରୀତ ହେଲି । ଏଠାରେ ପଲ୍ଲୀମଙ୍ଗଳ ସମିତିର ଗୋଟିଏ କେନ୍ଦ୍ର ବସାଇବାକୁ ଠିକ୍ କଲି । ଗାଁରେ ପହଞ୍ଚିଲି ବେଳକୁ ୩ଟା । ୫ଟାରେ ଖାଇଲି । ବାଲୁଙ୍କେଶ୍ୱରଙ୍କଠାରେ ସଭାରେ ଯୋଗ ଦେଲି ।

(୭ । ୧୧ । ୫୪)

**ଛାଡ଼ଖାଇ :**

ଆଜି ଛାଡ଼ଖାଇ । ଭାରି ପର୍ବ । କାର୍ତ୍ତିକ ମାସରେ ଅନେକେ ମାଛ ଖାଆନ୍ତି ନାହିଁ । ଅଧିକାଂଶ ତ ପକ୍ଷକରେ ଅନ୍ତତଃ ମାଛ ଛାଡ଼ନ୍ତି । ତେଣୁ ଗାଁ' ଗହଳରେ ଛାଡ଼ଖାଇଟା ଲୋକଙ୍କର ମନେ ରହେ । କିନ୍ତୁ ଆମକୁ କ'ଣ ? ଆମର ତ ପ୍ରତିଦିନ ଛାଡ଼ଖାଇ । ବୁଝିଲେ ଛାଡ଼ଖାଇରେ ବି ଯାହା ଖାଇବାକୁ କେହି କଳ୍ପନା କରିବେ ତାହା ତ ଆମକୁ ଛାଡ଼ ।

ତେଣୁ ଗୁଡ଼ଖାଇ ଆମର ମନେ ରହେ ନାହିଁ । ପାଞ୍ଜି ତ ନାହିଁ । କ୍ୟାଲେଣ୍ଡରରେ ଗୁଡ଼ଖାଇ ଦେଖିଛ କଏ ? କାର୍ତ୍ତିକ ପୂର୍ଣ୍ଣିମା ତ 'ରହାସ ପୂର୍ଣ୍ଣିମା' ବୋଲି ଲେଖା ହେଲଣି । ଯେଉଁମାନେ ଗାଁରେ 'ରହାସ' କରନ୍ତି, ସେଇମାନଙ୍କର ପିଲାଙ୍କୁ ତ ବହୁ ସଂଖ୍ୟାରେ ଚାକିରି ରଖାଯିବାର ସ୍ଥିର ହୋଇଛି । ବ୍ରାହ୍ମଣଙ୍କୁ ଖାଲି ଚାକିରି ରଖ ବୋଲି କେହି କହୁନାହିଁ । କିନ୍ତୁ ବ୍ରାହ୍ମଣମାନଙ୍କର ଯେଉଁ ଲକ୍ଷଣ ରହିବାର ଶାସ୍ତ୍ର ନିର୍ଦ୍ଦେଶ ଅଛି ସେହିପରି ଲକ୍ଷଣ ଥିବା ଲୋକଙ୍କୁ ଚାକିରି ରଖିବା ଦରକାର । ପାଠ ଥିବ, ସଦ୍‌ବୃତ୍ତି ଥିବ । ଆଜି ସମସ୍ତଙ୍କ ପାଇଁ ପାଠ ତ ଖୋଜା ନାହିଁ, କାହାଠାରୁ ସଦ୍‌ବୃତ୍ତି ଆଶା କରାଯାଉ ନାହିଁ । ଖାଲି ଯେ ଲେଖାପଢ଼ା 'ଗ୍ରାମ୍ୟ' ହୋଇଗଲଣି, ତାହା ନୁହେଁ । ଆଚରଣ ଅତି ନୀଚ ସ୍ତରକୁ ଚାଲି ଗଲଣି । ଖାଲି ପେଟ ପାଇଁ ଲୋକ ନିଯୁକ୍ତ ହୋଇଛନ୍ତି । ଯେଉଁ ଉତ୍ସାହ କାର୍ଯ୍ୟସିଦ୍ଧିର ନିଦାନ, ତାହା ଅଛି କି ନାହିଁ ଓ କିପରି ତାହାର ପୁଷ୍ଟି ଓ ଅଭିବୃଦ୍ଧି ହେବ ସେ ବିଷୟରେ କାହାର ଚିନ୍ତା ନାହିଁ । ଏପରି କେତେ ଦିନ ଚାଲିବ କେଜାଣି ?

ମୁଁ ବ୍ୟକ୍ତିଗତ ଭାବରେ ଏହାର ପ୍ରତିରୋଧ କରିବାକୁ କ୍ଷୀଣ ଚେଷ୍ଟାଟିଏ କରୁଛି । ଅଧିକାରବୋଧ ଶ୍ରେଷ୍ଠ ଲୋକଙ୍କ ଭିତରେ ଜାଗ୍ରତ କରିବାରେ ଆମେ କିଛି ଅଂଶରେ ସଫଳ ହୋଇଥାଇଁ । ବର୍ତ୍ତମାନ ବଡ଼ ପ୍ରୟୋଜନ ଉପରବାଲାଙ୍କଠାରେ କର୍ତ୍ତବ୍ୟବୋଧ ଜାଗ୍ରତ କରିବା । ବିନୋବା ଏ ବିଷୟରେ ଖୁବ୍ କରୁଛନ୍ତି । କିନ୍ତୁ କର୍ତ୍ତବ୍ୟବୋଧ ଭୂଦାନରେ ବା ବକ୍ତୃତାରେ ଜାତ ହେବ ନାହିଁ । ବ୍ରାହ୍ମଣମାନଙ୍କୁ ବାଟକୁ ଆଣିବାକୁ ପଡ଼ିବ । ତାଙ୍କଠାରେ ହାରିଲେ ଖାଲି ଅଧିକାର ଉପରେ ହିଁ ସମାଜ ଗଢ଼ିଉଠିବ । ମୁଁ ମଝିରେ ମଝିରେ ଘୁରୁବାର ଦିନ ଏଇ ଉଦ୍ଦେଶ୍ୟରେ ପୁରୀ ଯାଉଛି । ଆଜି ବି ଯାଇଥିଲି । ବ୍ରାହ୍ମଣଙ୍କୁ ଚେତାଇବା ଭାରି କଷ୍ଟ । ପାରିଲି ପରି ଲାଗୁନାହିଁ । (୧୧ । ୧୧ । ୧୯୫୪)

**ଚାକିରି ଭୂତ :**

ଆଜି ସଞ୍ଜାକୁ ପୁଣି ମୋ' ଚାକିରି ଭୂତ ବାହାରିଲା । ସମାଜରେ ଗୋଟିଏ ସମ୍ବାଦ ବାହାରିଲା ଯେ, ଚିନ୍ତାମଣି ମିଶ୍ରଙ୍କୁ ସେକ୍ରେଟାରୀ ପଦରୁ କାଢ଼ି ଦିଆଯାଉଅଛି । ତାଙ୍କୁ ଡିରେକ୍ଟର ଭାବେ ରଖାଯିବ । ସମ୍ଭବତଃ ଏହା ପୁରୁଣା ଖବର, ଯାହା କି ପ୍ରାୟ ୧୫ ଦିନ ପୂର୍ବରୁ ମୋତେ ବିବ୍ରତ କରିଦେବାକୁ ବସିଥିଲା । ସେଇ କଥା କୁଆଡ଼ୁ ଶୁଣି ସମାଜର ସହସମ୍ପାଦକମାନେ ପ୍ରକାଶ କରିଦେଇଛନ୍ତି । ସୁଧୀର ବାବୁ ବନମାଳୀ ପଟ୍ଟନାୟକଙ୍କଠାରୁ ଶୁଣିଲେ, ପୁଣି ଆଉ ଥରେ ଏଇ ପ୍ରସଙ୍ଗ ସରୋଜ ବାବୁଙ୍କ ତରଫରୁ ଆରମ୍ଭ ହୋଇଛି । ଏ କଥାର ଖବର ରଖିବାକୁ ସୁଧୀର ବାବୁ ମୋତେ କହିଲେ । ମୁଁ କହିଲି, ଏ ବିଷୟରେ ମୁଁ ଆଉ ମୁଣ୍ଡ ଘୂରାଇବି ନାହିଁ ; ତୁମର ଯଦି ମନ ହେଉଛି ତେବେ ତୁମେ ନବ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କର ।

ଆଜି ସକାଳେ ଗୋପବାବୁଙ୍କ ଝିଅ ଅନ୍ନପୂର୍ଣ୍ଣା ମୋ ପାଖକୁ ଆସିଥିଲା ଭୂଦାନ ବିଷୟରେ ମୋ'ଠାରୁ କିଛି ଚାନ୍ଦା ନେବାକୁ । ସର୍ବୋଦୟ ଉତ୍ସବ ପାଇଁ ଏକଶତ ଟଙ୍କା

ଦେବାକୁ ଅଙ୍ଗୀକାର କଲି । ତା' ସଙ୍ଗେ ସଙ୍ଗେ ଜାତିଭେଦ ବିଷୟରେ କେତେକ ତଥ୍ୟର ଆଲୋଚନା କଲି । ସେ ବଡ଼ ଆଗ୍ରହରେ ଶୁଣିଲା । ମୋତେ ବଡ଼ ଆନନ୍ଦ ଲାଗିଲା । ପିଲା ଦିନ କଥା ସେ ମନେ ରଖିଛି । ଯେତେବେଳେ ସେ ୫/୭ ବର୍ଷର ଝିଅ, ମୁଁ ୨୦ ବର୍ଷର । କଲେଜରେ ପଢ଼ୁଥିଲି । ସେ କାଳ କଥା ମନେ ପକାଇବାରୁ ମୋତେ ଟିକିଏ ଆତ୍ମାଭିମାନ ଜାତ କଲା । ତା' ପ୍ରତି ବାତ୍ସଲ୍ୟରେ ମନଃପୂତ ହୋଇଗଲା । ତାକୁ ପିଲା ଘର ସୁନ୍ଦର ବୋଲି ଜାଣିଥିଲି, ଆଜି ବୁଝିଲି ତା'ର ମନର ମହତ୍ତ୍ୱ । ଫୁଲଠାରୁ ସେ ବଡ଼ୁ ଗୁଣ ଉପରେ ।

(୧୨ । ୧୧ । ୧୯୫୪)

ସାଧୁସଙ୍ଗ :

ଆଜି ଜୀବନର ଗୋଟିଏ ସ୍ମରଣୀୟ ଦିନ । ସକାଳେ ମୁଁ ଯାଇ ଅଫିସ ଘରେ କାମ ଆରମ୍ଭ କରୁଛି, ଜଣେ ସାଧୁ ଆସି ପହଞ୍ଚିଲେ । ପିଣ୍ଡ ପାଖରେ କେବେ ଥା'ନ୍ତେ ତେବେ ତାଙ୍କୁ ସାଙ୍ଗେ ସାଙ୍ଗେ ବିଦା କରିଦେଇଥାନ୍ତି । ଆଗ ତ ବିଦା କରିଦେବାର ବ୍ୟବସ୍ଥା କଲି । କ'ଣ କାମ ବୋଲି ତାଙ୍କୁ ପଚାରିଲି । ସେ କହିଲେ, ସେ ବନା ଟିକଟରେ ଯିବାକୁ ଚାହାନ୍ତି ନାହିଁ । ତାଙ୍କର ଘରମେଣ୍ଟର ଯିବାର କଥା । ମୋ'ଠାରୁ ସେ କିଛି ପାଇବାକୁ ଆଶା କରନ୍ତି । ମୁଁ ସାଙ୍ଗେ ସାଙ୍ଗେ ଦୁଇଟି ଟଙ୍କା ତାଙ୍କ ପାଇଁ ହିରେକୃଷ୍ଣଙ୍କୁ ମାଗିଲି । ହିରେକୃଷ୍ଣ ଟଙ୍କା ଆଣୁଛନ୍ତି, ଏଇ ସମୟରେ ତାଙ୍କୁ କହିଲି, ଆପଣ କ୍ୟାପିଟାଲ୍‌ରେ ଯେତେ କୋଠା ଦେଖୁଛନ୍ତି, ସେଥିରୁ ପ୍ରତ୍ୟେକରେ ବଡ଼ ବଡ଼ ଲୋକ ଅଛନ୍ତି । ଆପଣ ବୁଲି ଆସନ୍ତୁ ଟଙ୍କା ମିଳିଯିବ । ତା' ପରେ ସେ ଯାହା କହିଲେ ସେଥିରୁ ଆଲୋଚନା ଆରମ୍ଭ ହେଲା । ପ୍ରତି ପଦରେ ତାଙ୍କ ପ୍ରତି ମୋର ମନ ଆକୃଷ୍ଟ ହେଲା । ତାଙ୍କ ସଙ୍ଗେ ଅଧିକ ସମୟ କଟାଇବାକୁ ଆଗ୍ରହ ହେଲା । ବସୁ ବସୁ ପ୍ରସ୍ତାବ ଦେଲି, ମୋ' ସଙ୍ଗେ ଆଜି ଗାଁ'କୁ ଯିବାକୁ । ସେ ସହଜରେ ହଁ କରିଦେଲେ । ମୋତେ ଜଣାପଡ଼ିଲା, ସତେ ଯିମିତି ମୋତେ ନିଧି ମିଳିଗଲା ।

ସନ୍ଧ୍ୟାରେ ତାଙ୍କୁ ସାଙ୍ଗରେ ଧରି ଗାଁକୁ ଗଲି । ବଟ କହିବାକେ ବି ଥିଲେ । ଗାଁରେ ଯାଇ ଶୁଣିଲି, ମୀରା ପଳଙ୍କା ଉପରୁ ପଡ଼ିଯାଇଛି ଓ ଲୁଲୁକୁ ୩ ଦିନ ହେଲା ଜର ହୋଇଛି ସେ ଛାଡ଼ୁ ନାହିଁ । ବଡ଼ ଖରାପ ଲାଗିଲା । ଯେତେବେଳେ ଗାଁକୁ ଆସୁଛି ଶୁଣୁଛି ତାହାର ନା ତାହାର ରୋଗ । ଈଶ୍ୱର ମୋତେ ଖାଲି ପରୀକ୍ଷା କରୁଛନ୍ତି । ଜୀବନ ତମାମ ସବୁବେଳେ ଏଇ ଅବସ୍ଥା । ଦିନେ ହେଲେ ନିଶ୍ଚିନ୍ତ ହୋଇ ରହିପାରୁ ନାହିଁ । କେଉଁ ଦିନ ପିଲାଙ୍କ ଦେହମୁଣ୍ଡ ତ, କେଉଁ ଦିନ ମୋ ନିଜର । ତା'ଠାରୁ ବଳି ଆଜିକାଲି ଯେଉଁ ଗୃହକଳି ଭୂତ ଲାଗିଛି । ଏତେ ଅଶାନ୍ତିରେ ରହି ମଧ୍ୟ ଅଶାନ୍ତିକୁ ମୁଁ ସ୍ଥାୟୀ ଭାବରେ ଶାନ୍ତି ବୋଲି ମନେ କରି ପାରୁ ନାହିଁ । ଏହାହିଁ ବଡ଼ିଆ । ମୋର କିମିତି ଗୋଟାଏ ଧାରଣା ହେଉଛି ଏଇ ସାଧୁଙ୍କୁ ଭଗବାନ ମୋ ପାଖକୁ ପଠାଇଛନ୍ତି ମୋର ମନକୁ ତ୍ରାଣ କରିବାକୁ । ଆଜି ସାରଦା ଦେବୀଙ୍କ ଶତବାର୍ଷିକୀ ଉତ୍ସବ ଉପଲକ୍ଷେ ଗୋଟିଏ ସଭାରେ ମୁଁ ବକ୍ତୃତା ଦେଲି ; ନବବାବୁ ସଭାପତି ହୋଇଥିଲେ । ମୋ'ର କଥା ଉପରେ ତାଙ୍କ ବକ୍ତୃତା ଚାଲିଲା । (୧୩ । ୧୧ । ୧୯୫୪)

ସତାକୁ ବିଚାରିଥିଲି ଟିକିଏ ବଗିଚାକୁ ଯିବି କିନ୍ତୁ ସାଧୁଙ୍କୁ ସାଙ୍ଗରେ ନେବାକୁ ମନ କରି ଅପେକ୍ଷା କଲି, ସେ ଘଡିରେ ବେଳେଶ୍ୱରଙ୍କ ଦେଉଳରେ ଶୋଇଥିଲେ । ପାହାନ୍ତିଆରୁ ଉଠି ସେ ତାଙ୍କ ନିତ୍ୟ-କର୍ମରେ ଲାଗିଲେ ପ୍ରାୟ ସାଢ଼େ ସାତଟା ପର୍ଯ୍ୟନ୍ତ । କାଲି ମା'ର ଶୋଉ ଶୋଉ ବହୁତ ଡେରି ହୋଇଗଲା । ସାଧୁଙ୍କର ମଧ୍ୟ ଡେରି ହୋଇଥିଲା କିନ୍ତୁ ତାଙ୍କର ଉଠିବାରେ ଡେରି ହେଲାନାହିଁ । ଏହିପରି ନିୟମ ପାଳନ କରି ନ ପାରିଲେ ବିଶେଷ କିଛି କରି ହେବ ନାହିଁ ।

ସାଧୁ ଦାଣ୍ଡ ଦୁଆରକୁ ଆସି ବସିବାରେ ଅଲେଖ ସ୍ୱାଇଁନା ଓ ହରିସ୍ୱାଇଁନା ଆସି ବସିଲେ । ଆହୁରି ଅନେକ ବି ଆସିଲେ । କଥାବାର୍ତ୍ତା ଯେପରି ଆରମ୍ଭ ହେଲା ସେଥିରେ ମୋ'ର ସନ୍ଦେହ ହେଉଥିଲା ସାଧୁଙ୍କୁ ଅପମାନ ହେବ । ଅଲେଖସ୍ୱାଇଁନା କର୍ମକାଣ୍ଡରୁ ଅନେକ ପ୍ରଶ୍ନ ପଚାରିଲେ । ଏ ସାଧୁ ତ କର୍ମକାଣ୍ଡ ଉପରେ ଜୋର ଦିଅନ୍ତି ନାହିଁ । ସେ ରୁକ୍ଷ ହୋଇଗଲେ, ତାଙ୍କ ରୁକ୍ଷ ହେବାରେ ଅଲେଖ ସ୍ୱାଇଁନା କ'ଣ ଦେଖିଲେ କେଜାଣି, ଦବିଗଲେ ଓ ତାଙ୍କ କଥାରେ ମଜ୍ଜିଗଲେ । ଘଡିରେ ଆମେ ଭୁବନେଶ୍ୱର ଫେରିଲାବେଳକୁ ଅଲେଖ ସ୍ୱାଇଁନା ତାଙ୍କଠାରୁ ବିଦାୟ ନେବା ଦେଖି ମୁଁ ବୁଝିଗଲି, ସେ ସାଧୁଙ୍କୁ କେଡ଼େ ଖାତିର କରିଛନ୍ତି ।

(୧୪ । ୧୧ । ୫୪ )

ମନରେ ବିଚାରିଥିଲି କାଲି ସାଧୁଙ୍କୁ ଆମ ସ୍ୱାଗର ପାଠାଗାରରେ ବକ୍ତୃତା ଦେବାକୁ କହିବାକୁ । କିନ୍ତୁ କାଲି ନୋଟିସ୍ ଦେଇ ହେଲାନାହିଁ । ମୁଁ ସାଧୁଙ୍କ ନାମ ପଚାରି ନ ଥିଲି ଓ କେଉଁ ବିଷୟରେ ସେ ବକ୍ତୃତା ଦେବେ ସେ ବିଷୟ ମଧ୍ୟ ପଚାରିବାକୁ ପାସୋରି ଯାଇଥିଲି । ଆଜି ନୋଟିସ୍ ଦିଆ ହେଲା । ସେ ମାନବ ସମାଜର ବର୍ତ୍ତମାନ ସମସ୍ୟା ବିଷୟରେ କହିବାକୁ ରାଜି ହେଲେ । ଆଜି ୧୦ଟାରେ ନୋଟିସ୍ ଦିଆ ହେଲା । ନୋଟିସ୍ ଠିକ୍ ସମୟରେ ପ୍ରଚାରିତ ହୋଇ ପାରିଲା ନାହିଁ । ଯେଉଁମାନେ ନୋଟିସ୍ ପାଇଲେ ସେମାନେ ବୋଧହୁଏ ଶ୍ରୀ ସୂର୍ଯ୍ୟପ୍ରକାଶ ଉଦାସୀନଙ୍କ ନାମ ଶୁଣି ବାବାଜୀଠାରୁ କ'ଣ ଶୁଣିବା ବୋଲି ନାପସନ୍ଦ କଲେ । ତେଣୁ ଅଳ୍ପ ଲୋକ, ପ୍ରାୟ କୋଡ଼ିଏ ପଚିଶଜଣ ଆସିଲେ । ମହାରାଜଙ୍କଠାରୁ ଶୁଣି ସମସ୍ତେ ମୁଗ୍ଧ ହେଲେ ଓ କାଲିକୁ ପୁଣି ସଭା କରାଇବାକୁ ଅନୁରୋଧ କଲେ । ମୋ'ର କାଲି ବ୍ରହ୍ମପୁର ଯିବାର କଥା । ଠିକ୍ କଲି କାଲି ସନ୍ଧ୍ୟାରେ ବକ୍ତୃତା ସାରି ଯାଇ ବ୍ରହ୍ମପୁରରେ ଶୋଇବି ।

ସୂର୍ଯ୍ୟପ୍ରକାଶ ମହାରାଜ ଯେ କିଛି ନୂଆ କଥା କହୁଛନ୍ତି ତା' ନୁହେଁ । ଅନ୍ତତଃ ମୋତେ ତ ତାଙ୍କ କଥା ନୂଆ ଲାଗିଲା ନାହିଁ । କିନ୍ତୁ ତାଙ୍କ ବିଷୟ ପରିବେଷଣ ନୂଆ । ନିଜେ ଅଧିକାରୀ ହୋଇଥିବାରୁ ତାଙ୍କ କଥାରେ ମନ ଲୋଭାଧ ହେଉଛି । ( ୧୬ । ୧୧ । ୫୪ )

**ସାମ୍ବାଦିକ ସମ୍ମିଳନୀ :**

ଆଜି ଖବରକାଗଜ ପ୍ରତିନିଧିଙ୍କର ସମ୍ମିଳନୀ ହେବାର ସ୍ଥିର ହୋଇଥିଲା । ନିୟମିତ ସାମ୍ବାଦିକ ସମ୍ମିଳନୀ ବସାଇବାକୁ ମୁଁ ଗତ ୩ ବର୍ଷ ହେଲା ନବବାବୁଙ୍କୁ କହି କହି ସେ ଆଜି

ସରଳ ସାଜ ହୋଇଛନ୍ତି । ନିଜର ଅବିବେଚନାରେ ସେ ପ୍ରଥମେ ଜିଦ୍ ଧରିଲେ ସାମ୍ବାଦିକ-ମାନଙ୍କ ମୁହଁ ଚାହିଁବେ ନାହିଁ ; କାରଣ ସେମାନେ ଯଥାର୍ଥ ଖବର ପ୍ରକାଶ କରୁନାହାନ୍ତି । ତାଙ୍କର ଏପରି ମନୋଭାବରେ ଯେତିକି ବିରକ୍ତି ଲାଗିଲା ତା'ଠାରୁ ଅଧିକ ହସ ମାଡ଼ିଲା ।: ଏଇ ଶାସନ ଚଳାଇବେ ! ଯାହା ହେଉ ଆଜି ସେ ସ୍ୱୀକାର କଲେ ଯେ, ଏଥର ଏଣିକି ସମସ୍ତ ସମୟରେ ସାମ୍ବାଦିକ ସମ୍ମିଳନୀ ଡକାଯିବ ।

ଆଜିର ସାମ୍ବାଦିକ ସମ୍ମିଳନୀ ଅତି ଗଣ୍ଡଗୋଳିଆ ହୋଇ ହେଲା । ପ୍ରତି ପ୍ରଶ୍ନର ଉତ୍ତର ପାଇଁ ରାଧାନାଥ ବାବୁ ହମ ହମ ହେଉଥାନ୍ତି । ଯାହା କହୁଥାନ୍ତି ସେଥିରେ ଭୁଲ ରହିଯାଉଥାଏ । ସାମ୍ବାଦିକମାନେ ଭୁଲ ଧରି ହସୁଥାନ୍ତି । କୃପାନିଧି ବାବୁ ଗୁଡ଼ିଏ କଥା କହିବେ ବୋଲି ସଜବାଜ ହୋଇ ଆସିଥିଲେ । କିନ୍ତୁ ତାଙ୍କୁ ବେଳ ମିଳିଲା ନାହିଁ । ଶେଷକୁ ତାଙ୍କୁ ସମୟ ମିଳିବାରେ ଦେଖାଗଲା ତାଙ୍କୁ ବେଳ ମିଳିଥିଲେ ସେ ଅଳ୍ପ ସମୟ ଭିତରେ ସବୁ କାମ କରି ଦେଇଥାନ୍ତେ ।

ପ୍ରେସ୍ କନ୍‌ଫରେନ୍‌ସ୍ ପରେ ମୁଖ୍ୟମନ୍ତ୍ରୀଙ୍କ ନିମନ୍ତ୍ରଣରେ ସମସ୍ତେ ଅତିଥି ଭବନକୁ ଖାଇବାକୁ ଗଲୁ । ଆଜି ନୂଆ କରି ଦେଖିଲି ତଳେ ଖାଇବାର ବ୍ୟବସ୍ଥା ହୋଇଛି । ସବୁ ବେଳେ ହେଉଛି ନା ପାତ୍ର ଭେଦରେ ଭିନ୍ନ ଭିନ୍ନ ରକମ ହେଉଛି ଜାଣି ପାରିଲି ନାହିଁ । ମୁଁ ଅନେକ ଦିନ ହେଲା ଏଠାକୁ ଖାଇବାକୁ ଆସିନାହିଁ ।

ଖାଇ ସାରିବା ପରେ ମୁଖ୍ୟମନ୍ତ୍ରୀ ବଡ଼ ଆନ୍ତରିକତାର ସହିତ ବିଭିନ୍ନ ବିଷୟରେ ଆଲୋଚନା ଆରମ୍ଭ କଲେ । ମୁଁ ବି ପୂର୍ଣ୍ଣ ପ୍ରାଣରେ ଯୋଗ ଦେଲି । ମନର କଥା କହିଲି । ମୁଖ୍ୟମନ୍ତ୍ରୀ ମୋ' କଥାକୁ ଖୁବ୍ ପସନ୍ଦ କରୁଥା'ନ୍ତି । ସୁଧୀର ବାବୁ ଏହା ଦେଖି ଭାରି ଖୁସି ହେଲେ । ଭାବିଲେ ବୋଧହୁଏ ସବୁ ଗୋଳମାଳ ସମାଧାନ ହୋଇଗଲା । ମୁଁ କିନ୍ତୁ ସେପରି ମନେ କରିନାହିଁ । ମୋ'ର ସନ୍ଦେହ ଅସଲ ବେଳେ ମୁଖ୍ୟମନ୍ତ୍ରୀ ମୋ' କଥାର କଦର୍ଥ କରି ମୋ'ର ଅନିଷ୍ଟ ହେଲା ଭଳି ଫାଇଲରେ ଲେଖିଦେବେ ଓ ମୋ'ର character rollକୁ କଳା କରିବାରେ ସାହାଯ୍ୟ କରିବେ । କରନ୍ତୁ । ସେ ଅବ୍ୟବସ୍ଥିତ ଚିତ୍ତ ବୋଲି ମୁଁ କାହିଁକି ଅବ୍ୟବସ୍ଥିତ ଚିତ୍ତ ହେବି ।

ସନ୍ଧ୍ୟାରେ ସାଧୁଙ୍କ ପୁଣି ବକ୍ତୃତା ଦେଲେ । ଏଥର ବହୁତ ଲୋକ ଆସିଥିଲେ ।

( '୭ । ୧୧ । ୫୪ )

**ପାଲ ଓ ଦାସକାଠିଆ :**

କାଲି ରାତିରେ ଦାସକାଠିଆ ଓ ପାଲା ପ୍ରତିଯୋଗିତା ଭାରି ଲୋକପ୍ରିୟ ହେଲା । ରାତି ୧୨ଟା ପର୍ଯ୍ୟନ୍ତ ଚାଲିଲା । ମୁଁ ପ୍ରାୟ ଘଣ୍ଟେ ଖଣ୍ଡେ ଯାଇ ଯୋଗ ଦେଇଥିଲି । ବାବାଜୀ ଆଜି ସନ୍ଧ୍ୟାରେ କୋଣାର୍କରୁ ଫେରି ଆମ ଘରକୁ ଆସିବାର ଖବର ପାଇଲି । ସେ ଆର୍କିଓଲଜି-କାଲ ଡିପାର୍ଟମେଣ୍ଟର ଜଣେ ଅଫିସରଙ୍କ ସଙ୍ଗେ କୋଣାର୍କ ଯାଇଥିଲେ । ସେଠାରେ ଦୁଇ ଦିନ ରହିଲେ । ଅଫିସର ଜଣକ ମହାରାଷ୍ଟ୍ରୀ ଯୁବକ । ତାଙ୍କର ଧର୍ମଭାବ ଦେଖି

ମହାରାଜ ବଡ଼ ପ୍ରୀତ ହେଲେ । ସେ ପୁରୁଣା ମନ୍ଦିର ଦେଖିଲେ ତାହାର ପୁନରୁଦ୍ଧାର ପାଇଁ ଆନ୍ତରିକତା ଦେଖାଉଛନ୍ତି । ଭାରତୀୟ ସଂସ୍କୃତି ବିଷୟରେ ଜାଣିବାକୁ ଅନୁରାଗ ବି ଅଛି । ଆମ ଓଡ଼ିଶାରେ ମଧ୍ୟ ଏପରି ଯୁବକ ଥାଇପାରନ୍ତି । କିନ୍ତୁ ମୁଁ ଦେଖୁଛି ମହାରାଷ୍ଟ୍ର, ଗୁଜୁରାଟ ଓ ଯୁକ୍ତ ପ୍ରଦେଶରେ ଭାରତୀୟ ସଂସ୍କୃତିର ଯେତେ ଆଦର ଅଛି ଓଡ଼ିଶାରେ ନାହିଁ । ମାନ୍ଦ୍ରାଜରେ ତ ଇଂରେଜଙ୍କ ଅମଳରେ ବି ଭାରତୀୟ ସଂସ୍କୃତିର ଆଦର ଥିଲା । ଓଡ଼ିଶା ସର୍ବଶେଷରେ ଇଂରେଜଙ୍କ ହାତକୁ ଯାଇଥିଲା, ନିଜ ସଂସ୍କୃତିକୁ ଏତେ ବର୍ଷ ହେଲା ପାସୋରିଛି, ତେଣୁ ବାଟକୁ ଆସିବାକୁ ଟିକିଏ ଡେରି ହୋଇପାରେ । ଓଡ଼ିଶାରେ ବେଶୀ ; କିନ୍ତୁ ମାନ୍ଦ୍ରାଜକୁ ଛାଡ଼ି ପ୍ରତି ଦେଶରେ ଅଳ୍ପବହୁତେ ବିଜାତୀୟ ଭାବ ଆଧୁନିକ ଶିକ୍ଷିତ ଯୁବକଙ୍କୁ ଗ୍ରାସ କରିଛି । ଇଂରେଜ ସଂସ୍କୃତିର ସାର ତ ପାଇ ପାରିବେ ନାହିଁ ; ଆମ ସଂସ୍କୃତିର ସାରକୁ ମଧ୍ୟ ଅସାର ବୋଲି ଫିଙ୍ଗି ଫୋପାଡ଼ି ଦେଉଛନ୍ତି । ଏ ଦୁର୍ଗତିରୁ ରକ୍ଷା ହେବାକୁ ହେବ । ମୋ ମନରେ ଗୋଟାଏ ଆଶା ହେଉଛି, ଦାସକାଠିଆ ଓ ପାଲା ସାହାଯ୍ୟରେ ମୁଁ ଏହା କରିଇବି । ଭାରତର ଅନ୍ୟ ପ୍ରଦେଶକୁ ଦୃଷ୍ଟି ଦେବାର ଅଧିକାର ମୋର ଅଛି ବୋଲି ମୁଁ ମନେ କରୁନାହିଁ । କିନ୍ତୁ ଓଡ଼ିଶାରେ ତ ପାରିବି । ଦାସକାଠିଆ ଓ ପାଲା ଦଳମାନେ ମୁସଲମାନଙ୍କ ତଥାକଥିତ ଅତ୍ୟାଚାର ଓ ଇଂରେଜଙ୍କ ଲାଞ୍ଛନା ସତ୍ତ୍ୱେ ବଞ୍ଚି ରହିଛନ୍ତି । ବ୍ରାହ୍ମଣ, କରଣ ନିଜତ୍ୱ ହରାଇଲେ । ଆଜି ମଧ୍ୟ ବ୍ରାହ୍ମଣ ପିଲା ଇଂରେଜଙ୍କର ଅନୁସରଣ କରିବାକୁ ଲାଳାୟିତ । କିନ୍ତୁ ହାଟୁଆ ଲୋକ ଗ୍ରାମରେ ତାଙ୍କ ସଂସ୍କୃତିରେ ଅଛନ୍ତି ; ପୁରାଣରେ ବିଶ୍ୱାସ କରୁଛନ୍ତି ଓ ତାହାର ଚର୍ଚ୍ଚା କରୁଛନ୍ତି । ଏହା ଶୁଭ ମଙ୍ଗଳର ଲକ୍ଷଣ ନୁହେଁ ।

(୨୮ । ୧୧ । ୧୯୫୪)

କାଲି ସକାଳ ୯ଟା ବେଳେ ପାଲା ଓ ଦାସକାଠିଆ ଦଳମାନଙ୍କୁ କେତେକ କଥା କହିଲି । ଏଥିରେ ବ୍ରାହ୍ମଣମାନେ ବି ଅଛନ୍ତି । କିନ୍ତୁ ଆମେ ଯେଉଁମାନଙ୍କୁ ଶ୍ରେଷ୍ଠ ବ୍ରାହ୍ମଣ ବୋଲି କହୁ ସେଇମାନେ । ପୁରୀ ଜିଲ୍ଲାରେ ଅନ୍ୟାନ୍ୟ ଯେଉଁମାନଙ୍କୁ ଆମେ ବଡ଼ ବ୍ରାହ୍ମଣ ବୋଲି କହୁଁ ସେଇମାନଙ୍କର ଅବସ୍ଥା ସବୁଠାରୁ ବେଶୀ ଶୋଚନୀୟ । ସାଧାରଣ ଲୋକଙ୍କର ଭକ୍ତିକୁ ଏମାନଙ୍କର ଘୃଣା । ନିଜେ ଯେଉଁ ଗୁଣ ଯୋଗୁଁ ପ୍ରତିଷ୍ଠା ଅର୍ଜିଥିଲେ ସେଥିପାଇଁ ମଧ୍ୟ ଆଦର ନାହିଁ । ଧନ ଅର୍ଜନ କରି ପ୍ରତିପତ୍ତି କମାଇବାକୁ ବ୍ୟର୍ଥ ଚେଷ୍ଟା କରୁଛନ୍ତି । ଧନ ଅର୍ଜିବାର ଯୋଗ୍ୟତା ରକ୍ତରେ ନାହିଁ ; ଖାଲି ଦରିଦ୍ର ହେଉଛନ୍ତି । ଏମାନଙ୍କ ସଙ୍ଗେ ଲାଗିଲେ ନୈରାଶ୍ୟହିଁ ମିଳୁଛି । କିନ୍ତୁ ପାଲା, ଦାସକାଠିଆରେ ନେତୃତ୍ୱ ନେଇଥିବା ତଥାକଥିତ ନୀଚ ଶ୍ରେଣୀସ୍ଥ ବ୍ରାହ୍ମଣମାନଙ୍କଠାରେ ଭବିଷ୍ୟତର ଆଶା ଦେଖିଲି । ପୁରାଣ ବିଷୟର ଜ୍ଞାନ ଓ ଚର୍ଚ୍ଚା ଥିବାରୁ ମୋ କଥା ସେମାନେ ଆଗ୍ରହରେ ଶୁଣିଲେ ଓ ପସନ୍ଦ କଲେ । ଗତ ଦୁଇ ଶହ ବର୍ଷର ଶୃଙ୍ଗାର ରସ-ପ୍ରାଧାନ୍ୟ ଯୋଗୁଁ ଏମାନେ ପୁରାଣର ସେଇଭଳି ଅଂଶମାନଙ୍କର ପ୍ରଚାର କରୁଛନ୍ତି । ପ୍ରେମର କାହାଣୀ ପୁରାଣରେ କାହିଁକି ଅଛି ତାହା ଧରି ପାରି ନାହାନ୍ତି । ଟିକିଏ ସୂଚନାରେ ସେମାନେ ନିଜେ ବୁଝିଗଲେ କଅଣ କରିବାକୁ ହେବ । ବର୍ତ୍ତମାନ ସମସ୍ୟା

ହେଉଛି ଏମାନଙ୍କୁ ଖାଦ୍ୟ ଯୋଗାଇବା । ପୁରାଣର ଚର୍ଚ୍ଚା କରି ଏମାନଙ୍କୁ ବିଷୟବସ୍ତୁ ଯୋଗାଇବାକୁ ହେବ । ଲୋକ ନ ଥାଇ ଗୀତ କରାଇବାକୁ ହେବ ଏବଂ ପାଲାରେ ଯେପରି ଓଡ଼ିଆ ସାହିତ୍ୟରୁ ଉପମା ଦିଆଯାଏ ସେପରି କରିବାକୁ ଉପଯୋଗୀ ଅଂଶ ଖୋଜିବାର ଉଦ୍ୟମ ହେବ । ଓଡ଼ିଆ ସାହିତ୍ୟରେ ଖାଲି ଶୃଙ୍ଗାର ରସ ଅଛି ବୋଲି ସାଧାରଣଙ୍କର ଧାରଣା । ତାହାର କାରଣ ସେଇ ସେଇ ଅଂଶ ଉପରେ ଏପର୍ଯ୍ୟନ୍ତ ନଜର ପଡ଼ୁଛି । ଯେଉଁମାନେ ସେଥିରୁ ସଂଗ୍ରହ କରି ପୁସ୍ତକାଦି ଛପାଇଛନ୍ତି ସେମାନେ ବେଶି ପରିଶ୍ରମ କରିବାକୁ କାତର ହୋଇଯାଇଛନ୍ତି । (୨୯ । ୧୧ । ୧୯୫୪)

କାଲି ସନ୍ଧରେ ଶ୍ରୀ ସୂର୍ଯ୍ୟପ୍ରକାଶ ଉଦାସୀନ ମହାରାଜ ମୋ ଡାଇରିର ଦୁଇ ପୃଷ୍ଠା ଶୁଣିଲେ । ତାଙ୍କର ମୋର ପଢ଼ିଥିବା ଗୋଟିଏ ପ୍ରସଙ୍ଗରେ ମୋର ମତ କ'ଣ ତାହା ତାଙ୍କୁ ଜଣାଇବା ସକାଶେ ଦୁଇଟି ପୃଷ୍ଠା ପଢ଼ିଲି । ସେ ଶୁଣିବା ମାତ୍ରେ କହିଲେ, ଏହା ତ ଛପା ହେବା ଉଚିତ । ବାବାଜୀଙ୍କ ଦୃଷ୍ଟିରୁ ଏହା ଛପା ହେବା ଭଲଆ ହୋଇପାରେ; କିନ୍ତୁ ଆଜି ଚିନ୍ତା ଯେଉଁ ଢଗରେ ଚାଲୁଛି ସେଥିରେ ଏପରି ଚିନ୍ତାଧାରାର ଆଦର ହେବ କିଆଁ ? ଗଙ୍ଗାରୁ ପାଣି ପିଇବା ଅସଭ୍ୟତା ହୋଇଗଲାଣି । ଗଙ୍ଗା ପାଣିକୁ ନେଇ ଫିଲ୍‌ଟର କରି ପିଉଛନ୍ତି । ମୋ'ର ଏ କହିବୁ ଫିଲ୍‌ଟର କରୁ କରୁ ଆଉ କ'ଣ ବାକୀ ରହିବ ଯେ ! ମନେ ପଡ଼ିଲା ଜଣେ ଡାକ୍ତର କହିଥିଲେ ଗଙ୍ଗାରେ ଗୋଟିଏ ସଢ଼ା ଜିନିଷ ଦଶ ଫୁଟ ଉପରେ ପକାଇ ଦେଇ ୧୦ ଫୁଟ ତଳେ ପାଣି ପରୀକ୍ଷା କରି ଦେଖିଛନ୍ତି ସଢ଼ା ଜିନିଷର କୌଣସି ସତ୍ତା ନ ଥାଏ । ଗଙ୍ଗାଜଳ ଫିଲ୍‌ଟର୍‌ର ସତ୍ତା ନ ରଖି, ପାଇପରୁ ବାହାରିଲା ବେଳେ ପୂର୍ଣ୍ଣ ସ୍ୱାଭାବିକ ଗୁଣରେ ଜୀବାଣୁ ଭୂତାଣୁ ମିଶୁଥିବ । ଆମର ସ୍ନେ ତ ଗଙ୍ଗା ପାଣି ହେବାକୁ ବହୁତ ଡେରି ଅଛି । ସ୍ୱାକୁ ଗାଡ଼ିଆ ପାଣି ବୋଲି କେହି କେତାଣି ଛପାଇ ପାରେ, ଜନନୀଙ୍କ ପୁଅ ହୋଇ ଜନ୍ମ ହେବାରେ କପାଳରେ ହାତ ମାରି ମାରି ପୋଡ଼ି ଯାଉଥିବା ପେଟ ପୋଷିବାର ଲୋଭରେ । ସେଥିପାଇଁ ବେଳ ପାଇଲେ ଲେଖନୀ ଦୋଷ ଦୂର କରେ । ଯଦି ସମୟ ନ ପାଇବ ମୋର ଆଶା, ମୋ ପିଲେ ଏତେ ବେଖ ଆତୁରିଆ ହୋଇ ନ ଥିବେ ଯେ, ଶୁଦ୍ଧ ଅଶୁଦ୍ଧ ନ ଦେଖି ସବୁ ଗିଳି ପକାଇବେ । ଈଶ୍ୱର ତାଙ୍କୁ ଶୁଦ୍ଧ ଅଶୁଦ୍ଧ ବାରିବାର କ୍ଷମତା ଦିଅନ୍ତୁ । (୯ । ୧୨ । ୧୯୫୪)

**କଲ୍ୟାଣୀ ସମ୍ମିଳନୀ :**

ଆଜି ସକାଳେ (୧୦-୩୦ ମିନିଟରେ) ଲୋକସଭା ଗୃହର କେନ୍ଦ୍ର କୋଠରୀରେ ଆଦିବାସୀ ମନ୍ତ୍ରୀ, ରାଜ୍ୟ ସଭା ମେମ୍ବର ଓ ଅଫିସରମାନଙ୍କର ସଭା ଆରମ୍ଭ ହେଲା । ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହରଲାଲ ସମ୍ମିଳନୀ ଉଦ୍‌ଘାଟନ କଲେ । ପରିସ୍ଥିତି ବିଷୟଟାକୁ ଠିକ୍ ଧରିଛନ୍ତି, କିନ୍ତୁ ଠିକ୍ କ'ଣ କରିବାକୁ ହେବ ଜାଣିପାରୁନାହାନ୍ତି ବୋଲି ମୋ'ର ମନେ ହୁଏ । ତାହାର ଏକମାତ୍ର କାରଣ, ଭାରତୀୟ ସଂସ୍କୃତିରେ ସେ ବଢ଼ିନାହାନ୍ତି । ଭାରତୀୟ ସଂସ୍କୃତି ବିଷୟରେ ସେ ଯାହା କହୁଛନ୍ତି, ତାହା ଅନ୍ୟଠାରୁ ଶିଖିବା ଜିନିଷ, ବିଶେଷତଃ

ଇଂରେଜ ପଣ୍ଡିତଙ୍କ ଲେଖାରୁ । ସେମାନେ ସତ୍ୟଶାସ୍ତ୍ରୁ ଧକ୍କାଗର ନ ଥିଲେ । ଜାଣି ଜାଣି ଆମ ଶାସ୍ତ୍ରର କଦର୍ଥ କରୁଥିଲେ ବୋଲି ଯାହା ବୁଝାଯାଏ, ତାହା ଅନୁଦାରତା ବୋଲି ମୋ'ର ଆଶଂକା । ଶ୍ରୀ ରାଧାକୃଷ୍ଣନ୍‌ଙ୍କଠାରୁ ପଣ୍ଡିତଜୀ ସତ୍ୟକୁ ବୁଝିପାରନ୍ତେ ; କିନ୍ତୁ ତାଙ୍କ ଭିତରେ ଘୋର ଅହଂକାର, ତେଣେ ରାଧାକୃଷ୍ଣନ୍ ପୁଣି ବୈଷ୍ଣବ ; ଶାକ୍ତ ହୋଇଥିଲେ ସିନା ବାଲ୍ୟରେ ମହାଦେବ ପ୍ରତିଷ୍ଠା କରିଥାନ୍ତେ । ଦେଖାଯାଉ କିଏ କେଉଁଠା ପର୍ଯ୍ୟନ୍ତ ଯାଉଛୁ । ଆଜି ପଣ୍ଡିତଜୀ କହିଲେ ଆଦିବାସୀ ଓ ଆମ ଭିତରେ କିଛି ପାର୍ଥକ୍ୟ ନାହିଁ, ସତ । ତା' ପରେ କହିଲେ, ସେମାନଙ୍କ ପାଇଁ ଯାହା କରିବ ତାହା ତାଙ୍କ ଢଙ୍ଗରେ କର । ତାଙ୍କର ଆମର ପରି ଏକା, ତାଙ୍କ ଢଙ୍ଗ ଆମ ଢଙ୍ଗ ଭିତରେ ପ୍ରଭେଦ ରହିଲା କେଉଁଠି ? କାହିଁକି ? ଖାଲି ତାଙ୍କ ଢଙ୍ଗରେ ଯେ ତାଙ୍କ ସମସ୍ୟାର ସମାଧାନ ହୋଇଯିବ ତାହା ନୁହେଁ, ଆମ ନିଜ ଢଙ୍ଗରେ ଆମ ସମସ୍ୟାର ସମାଧାନ ହେବାର ଗ୍ରହ । ବର୍ତ୍ତମାନ ତ ଆମେ ଆମ ସମସ୍ୟା ଇଂରେଜ ଢଙ୍ଗରେ ସମାଧାନ କରିବାକୁ ବସିଛେ । ଆଜି ବହୁତ ବକ୍ତୃତା ଶୁଣିଲି, ସମସ୍ତେ ଅନ୍ଧ ହାତି ଦେଖିଲା ପରି ଯେ ଯେଉଁଠି ହାତ ବୁଲାଉଛି କେବଳ ସେତିକି ବୁଝୁଛି । (୪ । ୧୨ । ୧୯୫୪)

**ଲାଲ କିଲ୍ଲା:**

ଆଜି ବି ସେଇ ବକ୍ତୃତା । ଆଦିବାସୀ ପ୍ରସଙ୍ଗରେ କେତେକ କଥା ମୁଁ କାଲି ରାତି-ଠାରୁ ଲାଗି ଲେଖିଥିଲି । ଆଜି ତାହା ପଢ଼ିବାକୁ ସମୟ ହୋଇଥିଲେ ଭଲ ହୋଇଥାନ୍ତା । କିନ୍ତୁ ସଭା ଶେଷରେ ୫ ମିନିଟ୍ ସମୟ ମିଳିଲା । ଯାହା ଲେଖିଥିଲି ତାହା ନ ପଢ଼ି ତୁଣ୍ଡରେ କହିଥିଲେ ଭଲ ହୋଇଥାନ୍ତା । ସବୁତକ ପଢ଼ିପାରିବି ବୋଲି ଆଶା କରି ଆରମ୍ଭ କଲି ଯେ ମଝିରୁ ଛାଡ଼ିବାକୁ ପଡ଼ିଲା । ତଥାପି ତାହା ଭଲ ହେଲା ବୋଲି କେହି କେହି କହିଲେ ।

କାଲି ଅପରାହ୍ଣରେ ଲାଲକିଲ୍ଲା ଦେଖିବାକୁ ଯାଇଥିଲି । ତାହା ଦେଖିବା ବେଳୁ ମୋ ମନ କମିତ ହୋଇ ଯାଇଛି । ସବୁ କଥାରୁ ସାହସ ହେଉଛି । ଏ ଦେଶର ଲୋକ ଯେତେ ଉପରକୁ ଉଠିଥିଲେ, ପୁଣି ସେତେ ଉପରକୁ ଉଠି ପାରିବେ, ଏଥିରେ ଆଉ ସନ୍ଦେହ ନାହିଁ । ଦେବାନଖାସରେ ଗୋଟିଏ କଥା ମୋତେ ବଡ଼ ପ୍ରଭାବିତ କଲା । ଗୋଟିଏ ପାଖରେ ଆସ୍ତର ନକଟର ଚନ୍ଦ ରହିଛି, ତା ଆଗରେ ଫାର୍ସିରେ ଲେଖାହୋଇଛି—ଯଦି କୌଣସି-ଠାରେ ସ୍ୱର୍ଗ ଅଛି, ତେବେ ତାହା ଏଇଠାରେ ଅଛି, ଏଇଠାରେ ଅଛି, ଏଇଠାରେ ଅଛି । ଶାହଜାହାନଙ୍କର ମନର କଥା ! ମଝି ହଲର ଦୁଇ ପାଖେ ସ୍ତ୍ରୀଲୋକ ଓ ପୁରୁଷ ଗାଧୋଇବା ପାଇଁ, ଲୁଗା ବଦଳିବା ପାଇଁ, ଅତର ଲଗାଇବା ପାଇଁ ବ୍ୟବସ୍ଥା । ଘରଆଡ଼େ ବହୁ ମୂଲ୍ୟ ମଣି ମୁକ୍ତା ଖଚିତ । ଧର୍ମ, ଅର୍ଥ ଓ କାମର ବିଚିତ୍ର ସମନ୍ୱୟ । ଏହାହିଁ ଭାରତୀୟ ଆଦର୍ଶ । ଏ ଆଦର୍ଶ ଯେ ଗ୍ରହଣ କଲା ସେ ହିନ୍ଦୁ, ଭାରତୀୟ । ଇଂରେଜ ଏ କଥାକୁ ଧରି ନ ପାରି ହିନ୍ଦୁ, ମୁସଲମାନ, ଆଦିବାସୀ ଓ ଅଣ ଆଦିବାସୀ କରି ଆମକୁ ଲଢ଼େଇ ଦେଲେ । ଏ ଅନିଷ୍ଟର ପ୍ରତିକାର କିଏ କରିବ !

(୫ । ୧୨ । ୧୯୫୪)

**ଅଧିକାର ଓ ତ୍ୟାଗ :**

ଆଜି ସକାଳ ୯ଟାରେ ଛତ୍ରପୁର ବାହାରିଲି ଗା ବାଟରେ । ପିଲାମାନେ ଭଲ ଅଛନ୍ତି । ମୋଟେ ୧୦ ମିନିଟ୍ ଗାଁରେ ରହି, ଛତ୍ରପୁରରେ ଯାଇ ପହଞ୍ଚିଲି ବେଳକୁ ଠିକ୍ ଗୋଟେ । ଆଜି ହାଇସ୍କୁଲର ସାଂସ୍କୃତିକ ଉତ୍ସବରେ ମାନବିକ ଅଧିକାର ବିଷୟରେ ଗୋଟିଏ ଭାଷଣ ଦେବାକୁ ମୋତେ ନିମନ୍ତ୍ରଣ ହୋଇଥିଲା । ପାଶ୍ଚାତ୍ୟ ଦେଶମାନଙ୍କରେ ଅଧିକାର ଉପରେ ଜୋର ଦେଇ ସପ୍ତଦଶ ଶତାବ୍ଦୀରୁ ଆଜି ପର୍ଯ୍ୟନ୍ତ ଯେଉଁ ଆନ୍ଦୋଳନ ହୋଇ ଆସିଛି, ତାହାକୁ ସେହି ସମୟର ଦାର୍ଶନିକ ଚିନ୍ତାର ଆଲୋଚନା କରି ବୁଝାଇଥିଲି । ଶେଷରେ କହିଥିଲି ଏଇ ଅଧିକାର ମିଳିବ ଯେଉଁ ସରକାରଠାରୁ ସେମାନେ ଲୋକ ପ୍ରତିନିଧି । ତେଣୁ ସମସ୍ତଙ୍କର ଅଧିକାରର ଦାବୀ । ଏହାର ଫଳରେ ଚିର ସଂଘର୍ଷ ଅବଶ୍ୟମ୍ଭାବୀ । ଏଇ ସଂଘର୍ଷ ଭିତରେ ବିକାଶ ସମ୍ଭବ ହେବ ଯଦି ଦେଶରେ ଏପରି ଦଳେ ଲୋକ ରହିବେ ଯେଉଁମାନେ ଅଧିକାର ଉପରେ ଭାର ନ ଦେଇ, ନିଜେ ଉତ୍କଟ ତ୍ୟାଗ ସ୍ୱୀକାର କରି, ଅନ୍ୟମାନଙ୍କ ଅଧିକାର ମିଳିବାରେ ଚେଷ୍ଟା କରିବେ—ଅହିଂସ ମାର୍ଗରେ, ନିଜର ବିତ୍ତର ଦାନଦ୍ୱାରା—ନିଜ ପ୍ରତି ଲୋକଙ୍କର ଆସ୍ଥା ଆଣିବା ନିମନ୍ତେ ସେମାନେ ତପସ୍ୟା ଓ ତ୍ୟାଗ କରିବେ । ଠିକ୍ ଯେପରି ପୂର୍ବେ ଏ ଦେଶରେ ବ୍ରାହ୍ମଣମାନେ କରୁଥିଲେ । ଆଜି ସେ ଦିନ ଯାଇଛି । ବ୍ରାହ୍ମଣ ନିଜ ଗୁଣ ଛାଡ଼ି, ଜାତିର ଅହଂକାରରେ ସବୁ ସୁବିଧା ଆଗେ ଭୋଗ କରିବାକୁ ଆଗୁଡ଼ା ପଡ଼ି ଯାଇଛନ୍ତି । ତେଣୁ ଦେଶର ଆଜିର ଦୁର୍ଗତି, ପୃଥିବୀର ମଧ୍ୟ । ପୃଥିବୀରେ ଭାରତର ପୂର୍ବ ଆଦର୍ଶ ପ୍ରତିଷ୍ଠିତ ହେଲେ ଯାଇ ଆଜିକାଲିର ଅଶାନ୍ତି ଓ ବିକ୍ଷୋଭର ବିନାଶ ହେବ । ଯେପରି ଭାବରେ କହିଥିଲେ ସର୍ବସାଧାରଣ ବୁଝି ପାରିଥାନ୍ତେ, ସେପରି କହିବାକୁ ଅବସର ହେଲା ନାହିଁ, ପିଲା ଓ ମାଇକିନିଆଙ୍କ ଗୋଳମାଳ ଯୋଗୁଁ । ବକ୍ତୃତା ପରେ ନୃତ୍ୟଗୀତର ପ୍ରୋଗ୍ରାମ ଥିବାରୁ ସେମାନେ ଅଧୀର ହୋଇ ଗଲେ । ସୁତରାଂ ମୁଁ ଅଳ୍ପରେ କାମ ସାରି ଦେଲି । ବୈଦ୍ୟନାଥ ମିଶ୍ରଙ୍କ ଘରେ ରାତି ଭୋଜନ ହେଲା ।     (୨୩ । ୧୨)

ସକାଳୁ ରାଧାନାଥ ବାବୁ ଟେଲିଫୋନ କଲେ, ସଂଧ୍ୟା ପାଞ୍ଚଟା ବେଳେ ତାଙ୍କ ପାଖକୁ ଯିବାକୁ । ଆର ଥର ସେ ମୋ ସଙ୍ଗେ ସମୟ କରି ଅନ୍ୟତ୍ର ଚାଲିଯିବାରୁ ଦୁଃଖ ପ୍ରକାଶ କଲେ । ଠିକ୍ ସମୟରେ ତାଙ୍କ ଘରକୁ ଗଲି । ମୁଁ ମନେ କରିଥିଲି ସେ ସେଇ କଲେଜ୍‌ସ୍ଥାର ପ୍ରଶ୍ନ ବିଷୟରେ କହିବେ, କିମ୍ବା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ନିର୍ବାଚନ ବିଷୟରେ ସାଧାରଣ ଲୋକ ମତ କ'ଣ ତାହା ପଚାରିବେ । ତାହା ତାଙ୍କ ମନରେ ଥିଲା, କିନ୍ତୁ ସେଠାରୁ ଆଉ ଗୋଟିଏ ବଡ଼ କାର୍ଯ୍ୟରେ ସେ ଡାକିଥିଲେ । ସିଂହଭୂମିକୁ ସୀମାକମିସନ୍ ଆସନ୍ତା ୨୬ ତାରିଖରେ ଆସିବେ । ସିଂହଭୂମିର ଯେଉଁ ନେତାମାନେ ଓଡ଼ିଶା ସଙ୍ଗେ ମିଶିବାକୁ ଚାହୁଁଛନ୍ତି, ସେମାନେ ଚାହାଁନ୍ତି ସୀମାକମିଶନର ପରୀକ୍ଷା ପାଇଁ ସେମାନଙ୍କୁ କିଏ ଜଣେ ପ୍ରସ୍ତୁତ କରିବାକୁ । ବିଶ୍ୱନାଥ ବାବୁଙ୍କ ପରାମର୍ଶରେ ମୁଁ ସେ

କାର୍ଯ୍ୟ କରିବ ବୋଲି ରାଧାନାଥବାବୁ ଠିକ୍ କରିଛନ୍ତି । ମୋତେ ସେ କଥା କହିଲେ ଓ ମୁଁ ଚମ୍ପୁଆଠାରେ ରହି ଏ କଥା କରିବି ବୋଲି ପରାମର୍ଶ ଦେଲେ । ଚମ୍ପୁଆରେ ନ ରହି ଜଗନ୍ନାଥପୁର ଆଶ୍ରମରେ ମୁଁ ରହିବାକୁ ପ୍ରସ୍ତାବ ଦେଲି । ତାହା ସମସ୍ତେ ଗ୍ରହଣ କଲେ; କିନ୍ତୁ ୩ତାରିଖରେ ମୁଁ ଦିଲ୍ଲୀ ଯିବାର ଅଛି । ସେଥିପାଇଁ ଅବ୍ୟାହତ ନ ପାଇଲେ ମୁଁ ୧୩, ୧୪ ତାରିଖ ପୂର୍ବରୁ ଚମ୍ପୁଆ ଯାଇ ପାରିବି ନାହିଁ ବୋଲି କହିଦେଲି । ସୂଚନା ଦେଲି ଦିଲ୍ଲୀ ଯିବା ବନ୍ଦ ହୋଇଗଲେ ମୋର କୌଣସି ଆପତ୍ତି ନାହିଁ । ମୋତେ ଯେଉଁ କାର୍ଯ୍ୟ ଦିଆଯାଉଛି ତାହା ଯଦି ମୋ ଢଙ୍ଗରେ କରିବାକୁ ମିଳେ ତେବେ ବହୁତ କାମ ହୋଇ ପାରନ୍ତା ବୋଲି ମୋର ଆଶା । କିନ୍ତୁ ରାଧାନାଥ ବାବୁ ପ୍ରଭୃତିଙ୍କର କାମ ବିଷୟରେ ବିଚିତ୍ର ଧାରଣା । ପୁଣି ନବ ବାବୁଙ୍କ ମତ ନିଆଯାଇନାହିଁ । ଏପରି ଯାଇ ସେଠାରେ ଗୋଟିଏ ଗହଳି କରିବାକୁ ତାଙ୍କର ଇଚ୍ଛା ନ ହୋଇ ପାରେ । ଯାହା କରିବେ କରନ୍ତୁ । ମୋତେ ଯେପରି ଆଦେଶ ଦେବେ ସେପରି କରିବ—ରାମାୟ ସ୍ୱାହା, ରାବଣାୟ ସ୍ୱାହା । କ'ଣ କରିବାକୁ ହେବ, କ'ଣ କଲେ ଭଲ ହେବ ସେ ବିଷୟରେ ମୋର ମତ ତ କେହି ଲୋଡ଼ୁ ନାହାନ୍ତି । ସ୍ୱାମୀଙ୍କ ପାଖେ ଚାକରରେ ଥିବା ଯାକ ସ୍ୱାମୀଙ୍କ ଆଦେଶ ଯେପରି ହେବ ସେପରି କରିବାକୁ ହେବ । ଶୀଘ୍ର ଏ ଚାକରି ଛୁଟିଲେ ବରଂ ଭଲ ହୁଅନ୍ତା ।

(୩୧ । ୧୨ । ୧୯୫୪)

## ସିଂହଭୂମି ପ୍ରସଙ୍ଗ

ଅନିଶ୍ଚିତତାରେ ନୂଆ ବର୍ଷ ଆରମ୍ଭ ହେଲା—ଚମ୍ପୁଆ ଯିବି ବା ଦିଲ୍ଲୀ ଯିବି । ଚମ୍ପୁଆ ଗଲେ କ'ଣ କରିବି ଏ ବିଷୟରେ ରାତିରେ ବହୁତ ଚିନ୍ତା କଲି, ରାଧାନାଥ ବାବୁ ଯେତିକି କରିବାକୁ କହୁଛନ୍ତି, ସେତିକି ଯଥେଷ୍ଟ ହେବ ନାହିଁ । ମୁଁ ଯାଇ ଜଗନ୍ନାଥପୁର ଆଶ୍ରମରେ ବସିବି, ସିଂହଭୂମି ଭାଇମାନେ ତାଙ୍କ ଅଞ୍ଚଳରୁ ଲୋକ ଡାକି ଆଣିଲେ, ମୁଁ ତାଙ୍କୁ ବତାଉଥିବି, ଏହା ବଡ଼ ମାମୁଲି କଥା । ବିହାର ସରକାରଙ୍କ ସମାଲୋଚନା ପାଇଁ ଖାଲି ଖାଦ୍ୟ ଯୋଗାଇବା ସାର ହେବ । ମୁଁ ଠିକ୍ କଲି ସେଠାରେ ଗୋଟିଏ କଳାକୁଞ୍ଜ ଖୋଲିବି । କୁଡ଼ିଏ ଯାହାର ଯୋଗାଡ଼ ହେବ, ପ୍ରତି ଦିନ ଲୋକ ପାଞ୍ଚ ଶହ ଖାଇବେ । ତା'ରି ଭିତରେ ଆମର ପ୍ରଚାର ଓ ଓକିଲାତି ଆରମ୍ଭ ହେବ । ସବୁ କଥା କାହାକୁ ନ କହି କ୍ରମେ କ୍ରମେ କାର୍ଯ୍ୟରେ ଦେଖାଇବି । ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଆଲୋଚନା କରିବାକୁ ତାଙ୍କ ପାଖକୁ ଟେଲିଫୋନ କଲି । ଦଶମିନିଟ୍ ପରେ ଯିବାକୁ ଅନୁମତି ମିଳିଲା । କିନ୍ତୁ ମୁଁ ଗଲାବେଳକୁ ସେ ଭବକୃଷ୍ଣ ବାବୁ, ଦୁର୍ଗାବାବୁଙ୍କ ପୁଅ ଓ ବୋହୂଙ୍କ ସଙ୍ଗେ ବସି ଖୁସି ଗପ କରୁଛନ୍ତି । ମୁଁ ଆସିବା କଥା ତାଙ୍କର ମନେ ନାହିଁ । ମୋତେ ଡକରା ପଡ଼ିବ ବୋଲି ମୁଁ ଅପେକ୍ଷା କଲି । ଦଶପଲ୍ଲା ରାଜା ନୂଆବର୍ଷ ସକାଳ ଅଭିବାଦନ କରିବାକୁ ଆସିଲେ । ନବବାବୁ ଅଫିସରଙ୍କ ସଙ୍ଗେ କାର୍ଯ୍ୟବ୍ୟସ୍ତ ଥିବାର ଶୁଣି, ମାଳତୀ ଦେବୀଙ୍କର ଗୋଟିଏ ଫଟୋ ନେଇ କର୍ତ୍ତବ୍ୟ ସମାପନ କରିଥିବା ସନ୍ତୋଷରେ ଘରକୁ ଫେରିଲେ । ମୋ ଭାଗ୍ୟରେ କିନ୍ତୁ ସେ ସନ୍ତୋଷ ନାହିଁ । ଯେତେ ଚେଷ୍ଟା କଲେ ମଧ୍ୟ ମାଳତୀ ଦେବୀଙ୍କ ଉମେଦାର ହେବାକୁ ମନକୁ ବୁଝାଇଲେ

ପାରୁନାହିଁ । ଦେଢ଼ଘଣ୍ଟା ଅପେକ୍ଷା କରିବା ପରେ, ମୋତେ ଡାକରା ନ ଆସିବାରୁ ମନରେ ଟିକିଏ ଅଧୀର ହେଉଥିଲି, ମୁଖ୍ୟ ମନ୍ତ୍ରୀଙ୍କ ଆପର ସ୍ତକ୍ତା । ସମସ୍ତଙ୍କ ସଙ୍ଗେ ସେ ଉଠିଲେ ଓ ଅଫିସରେ କୌଣସି ତଲପ ନ କରି ଘରକୁ ମୁହାଁଇଲେ । ମୁଁ ଧାଇଁ ଧାଇଁ ଯାଇ ତାଙ୍କ ପଛରେ ପହଞ୍ଚିଲି । ସେତେବେଳକୁ ମୋର ସବୁ ଉତ୍ସାହ ଯାଇଛି । ରାଧାନାଥ ବାବୁଙ୍କ କଥା ତାଙ୍କୁ କହିଦେଲି । ସେ ତାହା ପସନ୍ଦ କଲେ ନାହିଁ । ଏତେ ଦିନଠାରୁ ଯାଇ ଏତେଗୁଡ଼ାଏ ଦିନ ଚମ୍ପ ଆରେ ବସିବାରେ କିଛି ଲାଭନାହିଁ ବୋଲି କହିଲେ । ମୁଁ ଆଉ ବେଶୀ କହିବାକୁ ଇଚ୍ଛା ନ କରି ଫେରିଲି । ଏଭଳି ପ୍ରଭୁଙ୍କ ସଙ୍ଗେ ଅନ୍ୟ ବ୍ୟବହାର ସମ୍ଭବ ନୁହେଁ । ତା'ପରେ ଗାଁକୁ ଗଲି । ଖୁସି ବାସିରେ ଦିନଟି କଟାଇଲି । ଗାଁକୁ ଯିବାଦିନୁଁ, ମୋ ସ୍ତ୍ରୀ ମୋର ଘର ଆପଣାର ହୋଇ ଯାଇଛି । ପୂର୍ବରେ ତାର ମୋର ବହୁତ ବ୍ୟବଧାନ ଥିଲା । ମୁଁ ଜାଣିପାରୁ ନ ଥିଲି ।

(୧ । ୧ । ୧୯୫୫)

ଅନ୍ଧଙ୍କ ପାଇଁ:

ସକାଳେ ଦର୍ଶଙ୍କ ପାଖରୁ ଉଠିଲା ବେଳକୁ ମୋ ଦୁଆରେ ପ୍ରାୟ କୋଡ଼ିଏ ଜଣ ଲୋକ ପହଞ୍ଚିଛନ୍ତି । ସେଥିରୁ ୬ ଜଣ ଅନ୍ଧ । କିଛି ଦିନ ପୂର୍ବେ ଯେଉଁ ୫ ଜଣ ଅନ୍ଧ ପାଳ କରିବାକୁ ଇଚ୍ଛା କରି ସାହାଯ୍ୟ ମାଗୁଥିଲେ ସେମାନେ ସାଙ୍ଗରେ ଆଉ ଜଣେ ଅନ୍ଧ ଜୁଟାଇଲେଣି । ସେମାନଙ୍କ ଟଙ୍କା ମିଳିବାର ବ୍ୟବସ୍ଥା କରିଦେଲି । ଆଉ ଦୁଇ ଜଣ ଧାଡ଼କାଠିଆ ବାଲା ଆସିଥିଲେ । ଜଣେ ଅନ୍ଧ ଆଉ ଜଣକ ଗାୟକରନ୍ତି । ତାଙ୍କ ପାଇଁ ମଧ୍ୟ କିଛି କିଛି ବ୍ୟବସ୍ଥା କଲି । ଆଉ ଜଣେ ସତ୍ୟବାଦୀ ସ୍କୁଲ୍‌ର ପୂର୍ବ ଶିକ୍ଷକ ରଘୁନାଥ ବାବୁ । ତାଙ୍କ ଗୀତାରୁ ଆଉ କେତେ ଖଣ୍ଡ ବିକ୍ରୀ କରିବାକୁ ତାଙ୍କର ଇଚ୍ଛା । ତାହା ବି କରାଇ ଦେବାକୁ କହିଲି ।

ଅଫିସରେ ଯାଇ ପହଞ୍ଚି ପ୍ରଥମେ ବାମଦେବ ବାବୁ ଗ୍ରସ ଦେବାର ବ୍ୟବସ୍ଥା କଲି । ବଡ଼ ଆନ୍ତରିକତା ସହିତ ସେ ବିଦାୟ ନେଲେ । ନୂଆ ଅଣ୍ଡର ସେକ୍ରେଟାରୀ ମଧ୍ୟ ଆସିଲେ । ତାଙ୍କ ସଙ୍ଗେ କାର୍ଯ୍ୟର ଗତି ବିଷୟରେ ବହୁତ ଆଲୋଚନା ହେଲା । ଦଣ୍ଡର ଭୟ ଦେଖାଇ ଶାସନ କରିବା ଗତି ବର୍ତ୍ତମାନ ଚାଲୁଛି । ୯୯ ଗୁଣ ଥିଲେ ବି ଗୋଟିଏ ଦୋଷ ଦେଖିଲେ କର୍ମଚାରୀଙ୍କୁ ବରଖାସ୍ତ କରାଯାଉଛି । ମୁଁ ଏହାର ଖିଲାପ କରୁଛି । ଶ୍ରଦ୍ଧାଦ୍ୱାରା ଅଧସ୍ତନ ଲୋକଙ୍କୁ ମୁଁ ଆକୃଷ୍ଟ କରୁଛି ଓ ଦୋଷ କ୍ଷମା କରି ସଂଶୋଧନ ପାଇଁ ଅବସର ଦେଉଛି । ଏ ଗତି ଆମକୁ ଏ ପର୍ଯ୍ୟନ୍ତ ଭଲ କାମ ଦେଉଛି । ଗଣନାଥ ବାବୁ ଓ ବାମଦେବ ବାବୁ ଏ ଗତିରେ ଭଲ କାମ ହେଉଛି ବୋଲି କହିଲେ । ଶଚୀଙ୍କର କ'ଣ ମତ ଦେଖିବା । ଗୋବିନ୍ଦ ସିଂହେ ଆସିଥିଲେ । ସେ କହିଲେ ମହତାବ୍ ମୋ ସଙ୍ଗେ ଦେଖା କରିବାକୁ ଚାହାନ୍ତି । ତାଙ୍କ ସାଙ୍ଗେ ଗଲି । ବହୁତ ଗୁଡ଼ାଏ ଆଲୋଚନା ହେଲା । ତାଙ୍କର ଅନେକ କଥାରେ ମୋର ମତ ମିଳିଲା ନାହିଁ । ଦିଲ୍ଲୀଠାରେ ତାଙ୍କ ସଙ୍ଗେ ଆଉ ଅଧିକ ଆଲୋଚନା କରିବାକୁ କହିଛି ।

କଟକରୁ ଭୁବନେଶ୍ୱର ଫେରି ଦିଲ୍ଲୀ ଯିବାକୁ ଗାଡ଼ି ଧରିଲି । ବାପନ୍ତ ମୋ ସଙ୍ଗେ ଭୁବନେଶ୍ୱରରୁ କଟକ ଆସିଲି । ଗାଡ଼ିର ସାମାନ୍ୟ ମରାମତି ପାଇଁ କଟକରେ ତାକୁ ଛାଡ଼ି ଆସିଲି ନିତ୍ୟାନନ୍ଦ ହାତରେ ତିରିଶ ଟଙ୍କା ଦେଇ ।                (୩ । ୯ । ୧୯୫୫)

## ମାରୱାଡ଼ଙ୍କ ମିତବ୍ୟୟିତା

ସକାଳ ୭ଟା ୪୫ ମିନିଟ୍‌ରେ ହାବଡ଼ା ଷ୍ଟେସନରେ ପହଞ୍ଚିଲି । ବିଶ୍ରାମାଗାରରେ ସ୍ନାନ ପ୍ରକାର ନିତ୍ୟକର୍ମ କରୁ କରୁ ୧୦ଟା ବାଜିଲା । ମୋର ମନରେ ଧାରଣା ଥିଲି ଦିଲ୍ଲୀକୁ ଗାଡ଼ି ସନ୍ଧ୍ୟାବେଳେ । ଯଦୁବାବୁ ବୁଝିକରି ଆସିଲେ ୧୦/୫୦ରେ ଦିଲ୍ଲୀ ଗାଡ଼ି । ତରତର ହୋଇ ଭାତ ଖାଇ ଗାଡ଼ିକୁ ଆସିଲି । ଭାଗ୍ୟକୁ ଏଠାରେ ବି ଭଲ ସିଟ୍ ମିଳିଲା । ଦୁଇଜଣ ମାରୱାଡ଼ି ଲୋକ ସାଙ୍ଗ ମିଳିଲେ । ଆଉଥରେ ଅନୁଭବ କରିଥିଲି, ଏଥର ବି ସେଇଆ—ମାରୱାଡ଼ି ଲୋକ ଖୁବ ଭଦ୍ର । ନିଜ ସଂସ୍କୃତିରେ । ବ୍ୟବହାରରେ ମୋତେ ଆପଣାର କରିଦେଲେ । ସନ୍ଧ୍ୟା ୫ଟାରେ ଏମାନେ ବାଧ୍ୟ କରି ସେମାନଙ୍କ ରୁଟି ଓ ଲଙ୍କାମରିଚ ଚଟଣି ଖୁଆଇଲେ । ଏମାନଙ୍କ ସଂପ୍ରଦାୟର କେହି—ଅନ୍ତତଃ ଅଧିକାଂଶ, ଶହକେ ନବେ—ଆଜି ପର୍ଯ୍ୟନ୍ତ ରେଳ ରେଷ୍ଟୁରାଁରୁ ଖାଦ୍ୟ ଖାଇ ନାହାନ୍ତି । ଶୁଚି କଥା ଯାହା ହେଉ, ଖର୍ଚ୍ଚ ଦିଗରୁ ଏହା ବଡ଼ ଉପାଦେୟ । ପ୍ରାୟ ପଇସା ଆଠଣାରେ ଓଳିକ ଚଳୁଛି । ଆମର ଓଳିକୁ ଅନ୍ତତଃ ଦେଢ଼-ଟଙ୍କାରୁ ଦୁଇ ଟଙ୍କା । ଓପର ଓଳି ଆଉ କିଛି ଖାଇଲି ନାହିଁ । ଜିନିଷ ଏମାନଙ୍କଠାରୁ ଶିଖିଲେ ଅନ୍ତତଃ ମୋର ଖୁବ୍ ଉପକାର ହୁଅନ୍ତା—ଅଣ୍ଟାର ଓ ପେଟର । ମୋର ଜୀବନ ତମାମ ଖର୍ଚ୍ଚରେ ବିଶେଷ ଅମିତବ୍ୟୟିତା ହୋଇଛି । ଯେଉଁଠି ଅଣାକେ ଚଳିଯାନ୍ତା ସେଠାରେ ମୁଁ ଦୁଇ ଅଣା ଦେଇ ଆସିଛି । ଯେଉଁଠାରେ ପଇସେ ଦେଲେ ହୁଅନ୍ତା ସେଠାରେ ଦୁଇ ପଇସା ଦେଇଛି । ଫଳରେ ଖୁବ୍ ପ୍ରୟୋଜନ ବେଳେ ମୋ ପାଖେ କପର୍ଦ୍ଦକ ନ ଥାଏ । ଏ ବର୍ଷ ଏହାର ପ୍ରତିକାର କରିବାକୁ କଳ୍ପନା କରିଛି । ଦେଖାଯାଉ ।       (୪ । ୯)

## ପଡ଼ୋଶୀ ପାକିସ୍ଥାନ

ଆଜି ଦିନଟି ତମାମ ରେଳରେ କଟିଲା । ସକାଳୁ ଉଠି କିଛି କାମ କରିବ ବୋଲି ଇଚ୍ଛା କରିଥିଲି । କିନ୍ତୁ ୪ଜଣ ଯାତ୍ରୀ ଆମ ଫ୍ଲେଟ କାମରାଟିରେ ପଶିଲେ । ଆଉ କାମ କରିବାର ସୁବିଧା ରହିଲା ନାହିଁ । ଗାଧୋଉ ଗାଧୋଉ ଗୋଟାଏ ହୋଇ ଗଲା । ଯେଉଁମାନେ ନୂଆ ଆସିଲେ ସେମାନଙ୍କ ମଧ୍ୟରେ ଦୁଇଜଣ ଥିଲେ ପଶ୍ଚିମ ପାକିସ୍ଥାନରୁ ବାସ୍ତୁହରା ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା—ପରସ୍ପରର କୌଣସି ସମ୍ପର୍କ ନ ଥିଲା । ଭଦ୍ରମହିଳା ଦୁଇଟି ପିଲା ଧରି ବାପ ଘରକୁ ଯାଉଥିଲା । ସେମାନଙ୍କ ସଙ୍ଗେ ପାକିସ୍ଥାନର ଆଭ୍ୟନ୍ତରୀଣ ଅବସ୍ଥା ବିଷୟରେ ଆଲୋ-ଚନା ହେଲା । ପୂର୍ବ ପାକିସ୍ଥାନ ପରି ପଶ୍ଚିମ ପାକିସ୍ଥାନରେ ମଧ୍ୟ ହିନ୍ଦୁମାନେ ଥିଲେ ଅବସ୍ଥାପନ୍ନ । ମୁସଲମାନ ସେଇମାନଙ୍କ ଆଶ୍ରୟରେ ଚଳୁଥିଲେ । ହିନ୍ଦୁମାନେ ଚାଲି ଆସିବା ପରେ, ମୁସଲମାନଙ୍କୁ ଅଧିକ ଘର ଓ ଜମି ମିଳିଯାଇଛି । କିନ୍ତୁ ତାହାର ସଦୁପଯୋଗ

କରିବାର ଦକ୍ଷତା ବା ପ୍ରବୃତ୍ତି ସେମାନଙ୍କର ନାହିଁ । ଯେଉଁ ଅଳ୍ପ ସଂଖ୍ୟକ ପରିବାର ମୁସଲମାନ ଅଛନ୍ତି ସେମାନଙ୍କ ହାତରେ ଅଧିକାଂଶ ଜନତା ପୁତ୍ତଳିକା ହୋଇଛନ୍ତି । ସ୍ୱାଧୀନତା ବ୍ୟାଜରେ ସାମନ୍ତୀୟ ସମାଜ ପାକିସ୍ତାନରେ ପ୍ରତିଷ୍ଠିତ ହେବାର ପଥ ସୁଗମ ହୋଇ ଯାଇଛି । ପାରିବାର ଲୋକଙ୍କ ମାର ବା ଯଉଡ଼ କମ୍ୟୁନିଜମ୍ ପ୍ରତିଷ୍ଠା କରିବାରେ ଏଇ ବିପଦର ବି ସମ୍ଭାବନା । ରୁଷିଆରେ ଅଳ୍ପ ବହୁତେ ଏଇଆ ହୋଇଛି । ମୁସଲମାନ ଅଭିଜାତ ଯେପରି ସ୍ୱାଧୀନତାର ନିଜ ଅର୍ଥ ଓ ରୂପ ଦେଉଛନ୍ତି, ସେହିପରି ଯେଉଁମାନେ ରୁଷିଆରେ କମ୍ୟୁନିଜମ୍ ପ୍ରତିଷ୍ଠା କଲେ—ଜନତାର ନାମରେ—ସେମାନେ ଆଜି ଜନତାକୁ ନିଜ କ୍ରୀଡ଼ା ପୁତ୍ତଳିକା କରିଛନ୍ତି । ନିଜର ମାନସିକ ବିବର୍ତ୍ତନ ବା ବିପର୍ଯ୍ୟୟ ଅନୁପାତରେ କମ୍ୟୁନିଜମ୍‌ର ଅର୍ଥକୁ ମୋଡ଼ୁଛନ୍ତି । ସାମାନ୍ୟ ସଂଘର୍ଷ ଓ ବିରୋଧ ନ ରହିଲେ ସ୍ୱାଧୀନତାର ବିକାଶ ଅସମ୍ଭବ । ଗୋଟିଏ ଗଉଡ଼ ଅଧୀନରେ ଗୋଠେ ଗାଈ ରହିଲେ, ଗାଈ ତ ଆଉ ନିଜ ସ୍ୱାର୍ଥ ଜଗି ପାରିବେ ନାହିଁ—ଗଉଡ଼ର ମରଜି ଉପରେ ନିର୍ଭର । ଭଲ ଗଉଡ଼ ଗାଈକୁ ନନ୍ଦିନୀ ବୋଲି ବିଗ୍ରହ ପୂଜା କରିବ । ମନ୍ଦ ହେଲେ, ବିଦଆ ବେହେବ । ବଡ଼ ଗୋଠକୁ ବଡ଼ ଠେଙ୍ଗା ।

ଓପର ଓଳି ସତ୍ୟପ୍ରିୟ ବାବୁଙ୍କୁ ଦେଖିଲି । ସେ ଆଗ୍ରାଠାରେ ଗାଡ଼ି ଚଢ଼ିଲେ । ତାଙ୍କର ଗୋଟିଏ ସଭା ଦିଲ୍ଲୀରେ ଅଛି । ସେ ଦିନେ ଆଗରୁ ଆସି ପତ୍ନୀଙ୍କ ତୀର୍ଥ କରୁଥିଲେ । ଆଜିକାଲି ଏ ରୋଗ ଖାଲି ଯେ ମନ୍ତ୍ରୀଙ୍କୁ ଧରିଛି, ତାହା ନୁହେଁ, ବଡ଼ ବଡ଼ ଅଫିସରେ ଯେଉଁମାନେ ଇଂରେଜ ଅମଳରେ ତାଲିମ ହୋଇଥିଲେ ସେମାନଙ୍କର ବି ଏଇ ଅବସ୍ଥା । ସରକାରୀ କାର୍ଯ୍ୟ ଓ ପାରିବାରିକ ଓ ବ୍ୟକ୍ତିଗତ କାର୍ଯ୍ୟ ଭିତରେ ପାର୍ଥକ୍ୟ ରଖିପାରୁ ନାହାନ୍ତି । ସୁନାରାମ ବାବୁ ଯେପରି କରିଥିଲେ ସତ୍ୟପ୍ରିୟ ବାବୁ ବି ସେହିପରି ନିଜ ଧର୍ମ ପର୍ଯ୍ୟଟନରେ ଯୁକ୍ତପ୍ରଦେଶର ସରକାରୀ କାରକୁ ବ୍ୟବହାର କରିଛନ୍ତି । ଦେଶର ଦୁର୍ଭାଗ୍ୟ ସନ୍ଧ୍ୟାରେ ଆସି ପାର୍କ ଭିଉ ହୋଟେଲରେ ରହିଲି । (୫ । ୧ । ୧୯୫୫)

**ଦିଲ୍ଲୀ—ମହତାବଙ୍କ କୋଠିରେ ରହଣି.**

ସକାଳେ ନିତ୍ୟକର୍ମ କରିବାରେ ଅସୁବିଧା ହେଲେ ମଧ୍ୟ ପାର୍କ ହୋଟେଲ ଛାଡ଼ି, ମହତାବ ବାବୁଙ୍କ ଘରକୁ ଯିବା ପକାଶେ ମନ ହେଉ ନ ଥାଏ । ଏଠାରେ ନୂଆ ଦିଲ୍ଲୀର ବାୟୁମଣ୍ଡଳରୁ ଦୂରରେ ରହିବା ସୁବିଧା ହେଉଛି କିନ୍ତୁ ସନ୍ଧ୍ୟାରେ ହୋଟେଲ ଛାଡ଼ିବାକୁ ହେଲା । ମହତାବ ବାବୁ ପ୍ରଫୁଲ୍ଲ ପଟ୍ଟନାୟକଙ୍କ ପାଖକୁ ଟେଲିଗ୍ରାମ ଦେଇଥିଲେ, ମୋତେ ଖୋଜି ତାଙ୍କ ଘରେ ରଖିବାକୁ । ଏ ଅନୁଗ୍ରହର ସଂକେତ ପାଇ ଆଉ ହୋଟେଲରେ ରହି ହୁଅନ୍ତା କିପରି । ୩ ତାରିଖ ଦିନ ମୋ ସଙ୍ଗେ ମହତାବ ବାବୁଙ୍କର କଥାବାର୍ତ୍ତା ହେଲାବେଳେ ମୋର ମନେ ହୋଇଥିଲା ସେ କେବଳ ଭଦ୍ରତା ଖାତିରରେ ମୋତେ ନିମନ୍ତ୍ରଣ କରିଛନ୍ତି । କିନ୍ତୁ ଟେଲିଗ୍ରାମ କରି ମୋ ପାଇଁ ତାଙ୍କ ଆନ୍ତରିକ ସଦିଚ୍ଛା ଦେଖାଇବାରେ ମୁଁ ଅଭିଭୂତ ହେଲି । ଆଜି ତାଙ୍କର ପ୍ରୟୋଜନ ପଡ଼ିଛି ବୋଲି ଯେ ସେ ମୋତେ ଖୋଜୁଛନ୍ତି, ତାହା ନୁହେଁ ।

ତାଙ୍କର ଖୁବ୍ ବଢ଼ତି ବେଳେ ମଧ୍ୟ ସେ ମୋ ପ୍ରତି ଅନୁଗ୍ରହ ଦେଖାଇଛନ୍ତି । ମୁଁ ତାଙ୍କର ଯେତେ ଅନିଷ୍ଟ ମୋ କାଗଜରେ କରିଛି, ଯେତେ ବୋଧହୁଏ କେହି କରିନାହାନ୍ତି । ସେ ଯେତେବେଳେ ମୁଖ୍ୟମନ୍ତ୍ରୀ ହୋଇ ଆସିଲେ ସେତେବେଳେ ସେ ଚାହିଁଥିଲେ ମୋର ଚାକିରିର ଇତି ହୋଇଥାନ୍ତା । କିନ୍ତୁ ତା' ପରବର୍ତ୍ତିରେ ସେ ମୋତେ ଅପ୍ରତ୍ୟାଶିତ ଭାବରେ ଶୀଘ୍ର ଶୀଘ୍ର ଉପରକୁ ଠେଲି, ବର୍ଷ ତିନିଟାରେ ବିଭାଗୀୟ ସେକ୍ରେଟାରୀ କଲେ । ତାଙ୍କ ପାର୍ଶ୍ୱ ଦରକାର ହେଲେ ମୁଁ ଚାକିରି ଛାଡ଼ିଦେବି ବୋଲି ସ୍ଥିର କରିଛି । ଏପରି ସ୍ଥଳେ ନିତ୍ୟାନନ୍ଦ ବାବୁ କ'ଣ ଭାବିବେ ବୋଲି ମୁଁ ତାଙ୍କ ଘରକୁ ନ ଆସିବା ପ୍ରଶ୍ନ ଉଠୁନାହିଁ । ମୁଁ ଆସିଲି ଓ ମହତାବ ବାବୁଙ୍କ ଘରଠାରୁ ଯାଇ ନିତ୍ୟାନନ୍ଦ ବାବୁଙ୍କ ସଙ୍ଗେ ଦେଖା କଲି । କୁଟୀର ଶିଳ୍ପ ବିଷୟରେ ତାଙ୍କୁ ବହୁତଗୁଡ଼ିଏ କଥା କହିଛି । ମୋ କଥା ଶୁଣି ସେ ମୋତେ ପସନ୍ଦ କରିବା ପ୍ରଶ୍ନ ଉଠୁନାହିଁ । କାରଣ ମୁଁ ଯେତେ ଭଲ ହେଲେ ବି ନିତ୍ୟାନନ୍ଦ ବାବୁଙ୍କ ଦୃଷ୍ଟିରେ ଖୁବ୍ ଶ୍ରେଷ୍ଠ ଦିଶିବି । ମୋ କଥା ତାଙ୍କୁ ଭଲ ଜଣା ଗଲେ ହେଲା । ମୋର ଆଶା ହେଲା ସେ ମୋ କଥାକୁ ଖୁବ୍ ମନ ଦେଇ ଶୁଣିଛନ୍ତି ଓ ମନେ ମନେ ପସନ୍ଦ କରିଛନ୍ତି । ତାହା ହେଉ ତାଙ୍କ ନିଜ କଥା ବୋଲି ସେ ଚଳାଇ ଦେଲେ ବି ମୋ'ର ଆପତ୍ତି ନାହିଁ ।

ଆଜି ପ୍ରଚାର ବିଭାଗର ଯେଉଁ ସଭା ହେଲା, ସେଥିରେ ବିଶେଷ ଜରୁରୀ ବିଷୟ କିଛି ନ ଥିଲା । କିନ୍ତୁ ସମସ୍ତେ ତ ପ୍ରଚାର ବିଭାଗ ବାଲା । ଖୁବ୍ ପାଟିତୁଣ୍ଡ ହେଲା । ଭାରତ ସରକାର ଯାହାସବୁ ପ୍ରସ୍ତାବ ଦେଇଥିଲେ, ତାହା ଅଳ୍ପ ବହୁତେ ଆମେ କାର୍ଯ୍ୟରେ କରୁଛୁ । ( ୭ । ୯ )

ଆଜି ସକାଳୁ ମଧ୍ୟ କାଲିପରି ଆଲୋଚନା ଚାଲିଲା । ମୁଁ ଗୋଟିଏ ବିଷୟରେ ଆପତ୍ତି କଲି । ଭାରତ ସରକାର ରାଜ୍ୟର ସଦର ମହକୁମାରେ ଗୋଟିଏ ଗୋଟିଏ ସମ୍ବାଦ ସରବରାହ ଓ ପ୍ରଦର୍ଶନୀ ଅଫିସ ଖୋଲିବାକୁ ଇଚ୍ଛା କରୁଛନ୍ତି । ତାହା ତାଙ୍କର ନିଜର ହେବ ଅର୍ଥାତ୍ ଭାରତ ସରକାରଙ୍କର ଜଣେ ଅଫିସର ତାହାର ତତ୍ତ୍ୱାବଧାରକ ରହିବେ । ଏ କାର୍ଯ୍ୟ ରାଜ୍ୟ ସରକାରର ପ୍ରଚାର ବିଭାଗଦ୍ୱାରା ହେବା ଉଚିତ ବୋଲି ମୁଁ କହିଲି ଓ ଦାବି କଲି ଯେ ଏଥି ସକାଶେ ଭାରତ ସରକାର ଅର୍ଥ ସାହାଯ୍ୟ ଦିଅନ୍ତୁ, ଓ ପରାମର୍ଶ ଦିଅନ୍ତୁ । ଭାରତ ସରକାରଙ୍କ ସେକ୍ରେଟାରୀ ନିଜ ମତ ଉପରେ ଜିଦ୍ ଧରିବାରୁ ଆମେ ସମସ୍ତେ ରୁଷ୍ଟ ହୋଇଗଲୁ । କାଲି ମନ୍ତ୍ରୀମାନଙ୍କ ସମ୍ମିଳନୀରେ ଏହାର ଆଲୋଚନା ହେବ । ଆମର ଯଦି କେହି ଆସିଥାନ୍ତେ ତେବେ ଏ ବିଷୟରେ ଓ ଭାରତ ସରକାରଙ୍କ ମତର ବିରୋଧ କରିବାକୁ ପ୍ରବର୍ତ୍ତାଇଥାନ୍ତି । ଦେଖାଯାଉ ଅନ୍ୟ ପ୍ରଦେଶର ମନ୍ତ୍ରୀମାନଙ୍କର କ'ଣ ମତ ହେଉଛି ।

ସନ୍ଧ୍ୟାରେ ସୁଧାଂଶୁ ପଟ୍ଟନାୟକ, I. A. S. ଓ ଯଶୱନ୍ ଦାସ ଆସିଲେ । ସେମାନଙ୍କ ସଙ୍ଗେ ଦେଶର ସାଧାରଣ ସମସ୍ୟା ବହୁ ଦିଗରୁ ଆଲୋଚନା ହେଲା । ସେମାନେ ଏକମତ ହେଲେ ଯେ ବର୍ତ୍ତମାନ ଆମ ଦେଶର ଶାସନ ଯେଉଁ ଧାରାରେ ଚାଲିଛି ସେଥିରେ ଗ୍ରାମ ଲୋକେ ଧ୍ୱଂସ ହୋଇଯିବେ, ଗ୍ରାମର ଧ୍ୱଂସରେ ଆମ ଦେଶର ଧ୍ୱଂସ । ମୋର ପୂର୍ଣ୍ଣ ଆଶା ଅଳ୍ପ ଦିନ

ଭିତରେ ସରକାରମାନେ ଏ ବିପଦ ଦେଖିବେ ଓ ତହିଁରୁ ରକ୍ଷା ପାଇବା ପାଇଁ ଉପାୟ ଚିନ୍ତା କରିବେ । ଈଶ୍ୱରଙ୍କ ଅନୁଗ୍ରହରୁ ଆମ ଦେଶ ଆସନ୍ନ ବିପଦରୁ ରକ୍ଷା ପାଇବ, ଯେପରି ପୂର୍ବରୁ ବହୁଥର ରକ୍ଷା ପାଇଛି । ଏ କାର୍ଯ୍ୟରେ ମୋର ବିଶେଷ ଭାଗ ଅଛି ବୋଲି ମୋର ମନେ ହେଉଛି । ମୁଁ ଭବିଷ୍ୟତର ବିପଦ ବିଷୟରେ ଶିକ୍ଷିତ ଲୋକଙ୍କୁ ସଜାଗ କରିବା ପାଇଁ ଯେଉଁ ଉଦ୍ୟମ କରୁଛି ତାହା ଆହୁରି ଅଧିକ ଭାବେ କରିବି । ସେଥିପାଇଁ ଦରକାର ହେଲେ ଚାକିରି ଛାଡ଼ିବାକୁ ହେବ । ଚାକିରି ଛାଡ଼ିଲେ ପଇସା ବ୍ୟତୀତ ଅନ୍ୟ କୌଣସି ଦିଗରୁ କ୍ଷତି ହେବା ପରି ମୋତେ ବୋଧ ହେଉନାହିଁ । ପଇସାରେ ବା କ'ଣ କ୍ଷତି ହେବ ? ମୋ ପେଟ ପୋଷିବା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ମୋ ପଇସାରେ ହେଉନାହିଁ । ବିନା ଚାକିରିରେ ବି ମୋ ପିଲେ ଉପାସ ରହିବେ ବୋଲି ମୋର ମନେ ହେଉନାହିଁ ।

ରାତି ୯ଟାରେ ମହତାବ ବାବୁ ଆସିଲେ । ତାଙ୍କ ସଙ୍ଗେ ବହୁ ବିଷୟରେ ଆଲୋଚନା ହେଲା । (୭ । ୧ । ୧୯୫୫)

**ପ୍ରଚାର ବିଭାଗ ମନ୍ତ୍ରୀ ସମ୍ମିଳନୀ :**

ଆଜି ସକାଳ ସାଢ଼େ ଦଶଟାରେ ବିଭିନ୍ନ ରାଜ୍ୟର ପ୍ରଚାର ବିଭାଗ ମନ୍ତ୍ରୀମାନଙ୍କର ସମ୍ମିଳନୀ ହେଲା । ଗତ ଦୁଇଦିନ ଭିତରେ ଆମ୍ଭେମାନେ ଯାହା ଆଲୋଚନା କରିଥିଲୁଁ ତାହାର ଫଇସଲ କରିବା ପାଇଁ ମନ୍ତ୍ରୀମାନଙ୍କର ଏହି ସମ୍ମିଳନୀ । ଆମ ପ୍ରଦେଶ ଓ ଅନ୍ଧ୍ର ପ୍ରଦେଶ ଛାଡ଼ି ଅନ୍ୟ ସବୁଠାରୁ ମନ୍ତ୍ରୀମାନେ ଆସିଛନ୍ତି । ବମ୍ବେ, ପଞ୍ଜାବ ଓ ମଧ୍ୟ ପ୍ରଦେଶର ମୁଖ୍ୟ ମନ୍ତ୍ରୀମାନେ ଆସିଥିଲେ । ଆମ ପ୍ରଦେଶର ମୁଖ୍ୟମନ୍ତ୍ରୀ ମଧ୍ୟ ପ୍ରଚାର ବିଭାଗର ମନ୍ତ୍ରୀ ; କିନ୍ତୁ ତାଙ୍କର ପ୍ରଚାର ବିଭାଗ ଉପରେ ସେତେ ଆସ୍ଥା ନାହିଁ । ତାହାର କାରଣ ସମ୍ପୂର୍ଣ୍ଣ ବ୍ୟକ୍ତିଗତ । ମୁଁ ଥିବାରୁ ତାଙ୍କର ଆମ ବିଭାଗ ଉପରେ ଶ୍ରଦ୍ଧା ନାହିଁ । ମୋ ଉପରେ ଅନାସ୍ଥାର କାରଣ ମାଳତୀ ଦେବୀ ମୋତେ ସୁଖ ପାଆନ୍ତି ନାହିଁ । ମାଳତୀ ଦେବୀଙ୍କ ଶ୍ରଦ୍ଧା ପାଇବାକୁ ହେଲେ ନିଜକୁ ବଳି ଦେବାକୁ ହେବ । ସେ ସରକାରୀ ଟଙ୍କାକୁ ନେଇ ଯେପରି ଆତ୍ମସାତ୍ କରୁଛନ୍ତି ସେଥିରେ ତୂନି ରହିବାକୁ ହେବ ଓ ଏପରି ଟଙ୍କା ନେବାଦ୍ୱାରା ସେ ଦେଶର ମହତ୍ ଉପକାର କରୁଛନ୍ତି ବୋଲି ଢେଙ୍ଗୁରା ପିଟିବାକୁ ହେବ । ସେ ଯାହା ହେଉ ମନ୍ତ୍ରୀମାନଙ୍କ ସମ୍ମିଳନୀରେ ମୋ ମତ କାଏମ ହେଲା । ପ୍ରଦେଶର ସଦର ମହକୁମାରେ ଯେଉଁ ପ୍ରଦର୍ଶନୀ ମନ୍ଦିରମାନ ହେବ ସେଗୁଡ଼ିକର କର୍ତ୍ତୃତ୍ୱ ରାଜ୍ୟସରକାରମାନଙ୍କ ଉପରେ ରହିଲା । ଭାରତ ସରକାର ପକ୍ଷରୁ ଯେଉଁ ପ୍ରଚାର ଗାଡ଼ି ସବୁ ଦିଆଯାଇଛି ସେ ସବୁ ମଧ୍ୟ ରାଜ୍ୟ ସରକାରର ନିର୍ଦ୍ଦେଶ ଅନୁସାରେ ଚାଲିବା ପାଇଁ ସୁପାରିଶ ହେଲା ।

ରାତିରେ ମହତାବଙ୍କ ଘରେ ବହୁତ ବିଷୟରେ ଆଲୋଚନା ହେଲା । ମହତାବ୍ ବାବୁ ନବ ବାବୁ ଓ ମାଳତୀ ଦେବୀଙ୍କୁ ବହୁତ ଗାଳି ଫଜିତ୍ କରୁଛନ୍ତି । ସେ କଥା ଯାହାକୁ ଦେଖୁଛନ୍ତି ତାକୁ କହୁଛନ୍ତି । ଏହା ଫଳରେ ସେ ନିଜକୁ ବଡ଼ ଶସ୍ତା କରୁଛନ୍ତି ଓ ଉତ୍ତର ପ୍ରତିର ଚିନ୍ତା ନ କରି ଚାଲକୁ ଖସିଆସୁଛନ୍ତି । ତେଣୁ ତାଙ୍କର ବିଶେଷ ଲାଭ ହେବ ନାହିଁ କିନ୍ତୁ ନବ

ବାବୁଙ୍କର ଯେ ଖୁବ୍ କ୍ଷତି ହେବ ଏଥିରେ ସନ୍ଦେହ ନାହିଁ । ନିତ୍ୟାନନ୍ଦବାବୁ ଆସିଥିଲେ । ତାଙ୍କୁ ମଧ୍ୟ ଏହିପରି ବହୁତ କଥା ମହତାବ ବାବୁ କହିଲେ । ନିତ୍ୟାନନ୍ଦ ବାବୁ ଖାଣ୍ଟି ଗୁଣ୍ଡିକ । ସେ ନିଜ ମତ ଦେଉ ନାହାନ୍ତି । କିନ୍ତୁ ଏପରି ଗୁଣ୍ଡିକରେ ରାଜନୀତି ଚଳେ ନାହିଁ । ନିଜର ପ୍ରତି ବିଷୟରେ ସ୍ପଷ୍ଟ ଓ ସାଧୁମତ ଥିବା ଦରକାର ଓ ତାହା ନିର୍ଭୟରେ ପ୍ରକାଶିତ ହେବା ଦରକାର । ପଦ୍ମନାଭ ପାଇଁ ଗରମ ଜନା କିଣିବା ପାଇଁ ବଜାରକୁ ଯାଇ ଶସ୍ତା ଓ ଭଲ ଜନା ୧୦୫ ଟଙ୍କାର ଆଣିଲି । (୮ । ୧ । ୫୫)

**ମହତାବଙ୍କ ପରାମର୍ଶ:**

ଆଜି ବସନ୍ତ ମହାନ୍ତି ପୁଣି ଆସି ପହଞ୍ଚିଲେ । ମୁଁ ତାଙ୍କୁ ମହତାବ୍‌ଙ୍କ ପାଖକୁ ପଠାଇଥିଲି, ତାଙ୍କଠାରୁ ପାରିଲେ ସରକାରର ଟଙ୍କା ଆଣି ଦାଖଲ କରିବାକୁ । ସେତିକି ଟଙ୍କା ସମ୍ପର୍କରେ ତାଙ୍କ ଉପରେ ସନ୍ଦେହ ହେଉଛି । ଯଦି ସନ୍ଦେହ ଯଥାର୍ଥ ନୁହେଁ ବୋଲି ପରେ ଜଣା ପଡ଼ିବ, ତେବେ ସେ ଟଙ୍କା ଫେରନ୍ତି ମିଳିବ ବୋଲି ମୁଁ ସୂଚନା ଦେଇଥିଲି । ବସନ୍ତ ସେ ପ୍ରସ୍ତାବ ଉପରେ ଜୋର ନ ଦେଇ, ମୁଁ ଯେ କହିଥିଲି, 'ମହତାବଙ୍କୁ ପଚାରି ଆଉ କି ଉପାୟରେ ମୁଁ ତୁମକୁ ଉଦ୍ଧାର କରିପାରିବି ।' ସେଇ କଥାଟି ଯାଇ ମହତାବଙ୍କୁ କହିଲେ । ମହତାବ୍ ଯଥାର୍ଥ ଉତ୍ତର ଦେଲେ, ଚନ୍ଦ୍ରାମଣି ବାବୁ ତ ମୋତେ ଅନେକ ସ୍ଥଳରେ ପରାମର୍ଶ ଦିଅନ୍ତି, ମୁଁ ତାଙ୍କୁ କ'ଣ ପରାମର୍ଶ ଦେବି । ମୋତେ ଏ ମନ୍ତବ୍ୟ ଶୁଣି ହସ ମାଡିଲା । ମୁଁ କେତେକ ବିଷୟରେ ତାଙ୍କୁ ପରାମର୍ଶ ଦିଏ ବୋଲି ତାଙ୍କଠାରୁ କୌଣସି ବିଷୟରେ ପରାମର୍ଶ ଲୋଡ଼ିବି ନାହିଁ, ସେ କି କଥା ! ବିଶେଷକରି ଏ କଥାଟି ମୋ ଉପରେ ପଡ଼ୁଛି । ମୁଁ ଏଥିରୁ ଉଦ୍ଧାର ପାଇବାର ବାଟ ପାଉ ନାହିଁ ।

୩ଟା ବେଳେ ଚିଫ୍ ସେକ୍ରେଟାରୀଙ୍କ ପାଖକୁ ଯାଇଥିଲି ଆସନ୍ତା ବର୍ଷର ବଜେଟ୍ ଆଲୋଚନା କରିବାକୁ । ପଞ୍ଚବାର୍ଷିକ ଯୋଜନାର ଯେଉଁ Scheme ମାନ ଅର୍ଥ ବିଭାଗ ମଞ୍ଜୁର କରି ନାହାନ୍ତି, ସେଥିପାଇଁ ସେ ମନ୍ତ୍ରୀ ସଭାରେ ସୁପାରିଶ କରିବେ ବୋଲି ଏ ସଭା ଡକାଇଥିଲେ । ଆମର ସବୁ ଯୋଜନା ଅର୍ଥ ବିଭାଗ ମଞ୍ଜୁର କରିଛନ୍ତି ଓ ଅନେକ ଅଧିକା Scheme ମଧ୍ୟ ଗ୍ରହଣ କରିଛନ୍ତି ଶୁଣି ସେ କହିଲେ ତେବେ ଆଲୋଚନା କରିବାର କ'ଣ ଅଛି । କିନ୍ତୁ ମୁହଁଟା ଶୁଖିଗଲା ।

ପ୍ରମୋଦ ପତିଙ୍କ ଷ୍ଟୁଡିଓକୁ ଛାପରେ ଗଲି । ଗୋପ ବାବୁଙ୍କ ପୁଅ ବୁଲୁ ସଙ୍ଗେ ଦେଖା ହେଲା । ସେ ମହୁମାଛି ବିଷୟରେ ଗୋଟିଏ ଚଳଚିତ୍ର ନେଇଛି, ତାକୁ ଦେଖିଲି । କଥା ପ୍ରସଙ୍ଗରେ ଭାରତର ପୁରୁଣା ସଂସ୍କୃତି ବିଷୟରେ ଗୁଡ଼ିଏ କଥା ତା' କାନରେ ପକାଇ ଦେଲି । କେଜାଣି ଯଦି ମନ ଲାଗିବ ସେ ସବୁ ଘାଣ୍ଟିବାକୁ ।

(୧୫ । ୧ । ୧୯୫୫)

**ମୂଲକ ରାଜ ଆନନ୍ଦ:**

ଆଜି ସକାଳୁ ଖୁବ୍ ତରତରରେ ଘରୁ ବାହାରି ଠିକ୍ ସମୟର ପୂର୍ବରୁ ପବ୍ଲିକ୍ ସର୍ଭିସ କମିସନର ଅଫିସ୍‌ଠାରେ ଆସି ପହଞ୍ଚିଲି । ଜିଲ୍ଲା ମଙ୍ଗଳ ଅଫିସର ନିଯୁକ୍ତି ପାଇଁ ୧୭୭ ଜଣ ପ୍ରାର୍ଥୀ ଦରଖାସ୍ତ କରିଛନ୍ତି । ଆମର ବଡ଼ହେଲେ ଚାରିଜଣ ଦରକାର । ସେ ଚାରି ଜଣ ଭିତରୁ ଦୁଇ ଜଣ—ଦାଶରଥି ସେନାପତି ଓ ଜ୍ଞାନେନ୍ଦ୍ର ରାଉତ ଆମ ବିଭାଗରେ ଜିଲ୍ଲା ମଙ୍ଗଳ ଅଫିସର ଅଛନ୍ତି । ସେମାନଙ୍କର ନିଯୁକ୍ତିରେ ରାଜି ହେବା ପାଇଁ କମିସନଙ୍କୁ ଲେଖିଥିଲି । କମିସନ୍ ରାଜି ନ ହୋଇ ବାହାର ପ୍ରାର୍ଥୀଙ୍କୁ ସୁବିଧା ଦେବା ନିମନ୍ତେ ବିଜ୍ଞାପନ ଦେବାକୁ ମତ ଦେଲେ । ଯେଉଁ ୧୭୭ ଜଣ ପ୍ରାର୍ଥୀ ଅଛନ୍ତି ତାଙ୍କ ଭିତରୁ ୧୬ ଜଣଙ୍କର ଆଜି ଇଣ୍ଟରଭ୍ୟୁ କରିବାର ପାଳି ଥିଲା । ଅତି ରଦ୍ଦି ଶ୍ରେଣୀର ପ୍ରାର୍ଥୀ ପଡ଼ିଲେ । ତାଙ୍କ ଭିତରୁ କେବଳ ଦାଶରଥି ସେନାପତି ଉପଯୁକ୍ତ ବୋଲି ମନୋନୀତ ହେଲେ । କାଲି ରାଉତର ପାଳି । ସେ ଯଦି ଭଲ କରେ, ତେବେ ଆମ ବିଭାଗର ଇଜ୍ଜତ ରହିବ । ଇଣ୍ଟରଭ୍ୟୁ ସାଢ଼େ ଏଗାରଟାରେ ସରିଗଲା । ଶିକ୍ଷ ନର ବୈଦ୍ୟନାଥଙ୍କ ବସାକୁ ଚାଲିଗଲି ।

ଅଫିସରେ ମୂଲକରାଜ ଆନନ୍ଦଙ୍କ ସଙ୍ଗେ ଦେଖା ହେଲା । ମୁଁ ତାଙ୍କୁ ଯେତେ ଉଚ୍ଚ କୋଟିର ଲୋକ ବୋଲି ମନେ କରିଥିଲି—ସେ ସେତେଦୂର ନୁହନ୍ତି । ଖୁବ୍ ବେପାରି ବୁଦ୍ଧି । ମାର୍ଗ ବୋଲି ଖଣ୍ଡିଏ କାଗଜ ବାହାର କରୁଛନ୍ତି । ଖୁବ୍ ସୁନ୍ଦର ଚନ୍ଦା ଦାଗରୁ । ପ୍ରମୋଦ ପତିଙ୍କ କାମ ଆଜି ହୋଇ ପାରିଲା ନାହିଁ ।

ଆଜି ସନ୍ଧ୍ୟାରେ ଲୋକ ଭିଡ଼ ହେଲା ନାହିଁ । ପୁଅକୁ ଟିକିଏ ପାଠ ପଢ଼ାଇଲି । ପୁଅର ସାଧାରଣ ବୁଦ୍ଧି ଭଲ । ସ୍କୁଲର ଯେ ପାଠ ନ ହେଉଛି ତାହାର ଏକମାତ୍ର କାରଣ ଶିକ୍ଷକଙ୍କ ଅଯୋଗ୍ୟତା । ହରେକୃଷ୍ଣ ଟୁନୁକୁ ପଢ଼ାଇବା ସକାଶେ ଯୋଗ୍ୟ ବୋଲି ମନେ ହେଲା ନାହିଁ । ମୁଁ କିଛି ଦିନ ଦେଖିଲା ପରେ ଦରକାର ହେଲେ ଜଣେ ଭଲ ଶିକ୍ଷକ ଲଗାଇବି ।

(୨୦ । ୧ । ୧୯୫୫)

**ଆଦିବାସୀ ପ୍ରଦର୍ଶନୀ:**

ଆଜି ସକାଳେ ପ୍ରମୋଦ ପତିର କାର୍ଯ୍ୟ ଅଧାରୁ ବେଶୀ କରି ଦେଲି । ବାକିତକ ସନ୍ଧ୍ୟାବେଳେ କରିବ ବୋଲି ରଖି ଦେଇ ଥିଲି । ହୋଇଗଲା ।

ଦିପହରେ ବୀଣାଦେଇ ପ୍ରମୁଖା ନାରୀମାନେ ଆସିଲେ । ପ୍ରଦର୍ଶନୀରେ ସେମାନେ କରିବାକୁ ଥିବା ଜଳଖିଆ ଦୋକାନ ବିଷୟ ସଙ୍ଗେ ସମାଜ ମଙ୍ଗଳ ବୋର୍ଡର କାର୍ଯ୍ୟ କଥା ପଡ଼ିଲା । ମିସେସ୍ ସୁନ୍ଦରମ୍‌ଙ୍କୁ ସେଥିରେ ଅଧ୍ୟକ୍ଷ କରିବାର ଯେଉଁ ବ୍ୟବସ୍ଥା ହେଉଛି ତାହାର ସମାଲୋଚନା କଲି । ବୀଣା ଦେବୀ ଏହାର କି ଉପଯୋଗ କରୁଛନ୍ତି କେଜାଣି । ଏତେ ଖୋଲାଖୋଲି ଆଲୋଚନା କରିବା ଉଚିତ୍ ହେଉନାହିଁ ବୋଲି ପରେ ଭାବିଲି ।

କବିରାଜମାନେ ଆସିଥିଲେ । ସେମାନଙ୍କୁ ପ୍ରଦର୍ଶନୀର ଠାଏ ବସାଇ ମାଗଣା ପରାମର୍ଶ ଓ ଔଷଧ ବିତରଣର ବ୍ୟବସ୍ଥା ହୋଇଛି । ତାହା ଉପରେ ହେବ ସେ ବିଷୟର ଆଲୋଚନା ହେଲା ।

ପ୍ରଦର୍ଶନୀ ବଗିଚାକୁ ଆଜି ଦିପହରେ ବୁଲି ଯାଇଥିଲି । କୋବିଗଛ ଗୁଡାକ ଶୀତ ଗୁଡ଼ିପିବାରୁ ଲଷ୍ଟ ଛିଡ଼ା ହେବାକୁ ଆରମ୍ଭ କଲଣି । ଭଲ ହେବ ନାହିଁ ପରା । କୁକୁଡ଼ା ବିଭାଗଟି ମନକୁ ଖୁବ୍ ପାଇଲା ।

ଆଜି କୈବଲ୍ୟ ସାହୁର ସ୍ୱରୂପ ଜଣା ପଡ଼ିଗଲା । ସେ ବିଚାରି ଚାକିରି ଖଣ୍ଡେ ପାଇଁ ସୂର୍ଯ୍ୟ ପ୍ରକାଶ ବାବାଙ୍କ ନାମ ମୋତେ କହୁଥିଲା ବୋଲି ମନେ ହେଲା । ଏକା ପଦରେ ମୋ ସଙ୍ଗରେ ଆଉ ଦେଖା ନ କରିବାକୁ କହି ତାକୁ ବିଦା କରି ଦେଇଛି । କିଛି ଦିନ ତାକୁ ଦୂରଛଡ଼ା କରିଦେଲେ ସେ ବୋଧ ହୁଏ ବାଟକୁ ଆସିଯିବ ।

ଗଣନାଥ ବାବୁ ଓ ଶଶୀବାବୁ ପୁରୀ ଗଲେ । ସେମାନଙ୍କୁ ବରାଦ କଲି, କିଛି ମହା-ପ୍ରସାଦ ଆଣିବା ପାଇଁ । ସାଙ୍ଗରେ ୨/୪ ଜଣ ବସିବେ ବୋଲି ୧୦ ଜଣଙ୍କର ବରାଦ କରିଥିଲି । ମହାପ୍ରସାଦ ଖୁବ୍ ଡେରିରେ ଆସି ପହଞ୍ଚିଲା । (୨୩ । ୧ । ୧୯୫୫)

ପ୍ରଦର୍ଶନୀ ପଡ଼ିଆରେ ସକାଳ ଓଳିରୁ ଖୁବ୍ ଗହଳି ଆରମ୍ଭ ହୋଇଛି । ବିଭିନ୍ନ ଜିଲାମାନଙ୍କରୁ ଜିନିଷପତ୍ର ଓ ଫିଲ୍ମ କାଲିଠାରୁ ଆସିବାକୁ ଆରମ୍ଭ କରିଛନ୍ତି । ଗଣନାଥ ବାବୁ ପଅର ଦିନ କହିଥିଲେ ଯେ, ସେ ଏପରି ବ୍ୟବସ୍ଥା କରିଛନ୍ତି ଯେ ୨୫ ତାରିଖ ରାତିରେ ସମସ୍ତେ ଆନନ୍ଦରେ ଶୋଇବେ—କିଛି କାମ ବାକି ନ ଥିବ । ରାତି ୮ଟା ସୁଦ୍ଧା ସବୁ ହୋଇ ଯାଇଥିଲା ; କିନ୍ତୁ ଗୋଟିଏ ବଡ଼ କାମ—ସମଗ୍ର ପଡ଼ିଆକୁ ସଜାଇବା ଓ ରାସ୍ତା ଗୁଡ଼ିକୁ ଲିପିବା କାମ ରହିଥିଲା । ଶିକ୍ଷକମାନଙ୍କୁ ଡାକି ଏତିକି ସେମାନେ ନିଜେ ନିଜେ ପରସ୍ପର ମଧ୍ୟରେ ବାଣ୍ଟି ଦେବାକୁ କହିଲି । ସେହିପରି ହେଲା । ରାତି ଗୋଟାକ ବେଳେ ମୁଁ ଘରକୁ ଫେରିଲା ବେଳେ ଦେଖିଲି, ସବୁ କାମ ଏପରି ଯୋରରେ ଚାଲିଛି ଯେ, ଭୋର ପୂର୍ବରୁ ସବୁ ନିଶ୍ଚୟ ସରିଯିବ । ଏ ବିଭାଗର ଅଫିସର ଓ ଅନ୍ୟ କର୍ମଚାରୀମାନେ ମୋତେ କୃତଜ୍ଞତା ପାଶରେ ବାନ୍ଧି ଦେଇଛନ୍ତି । ମୋ ତୁଣ୍ଡରୁ ଯାହା ଗୋଟାଏ କଥା ବାହାରି ଯାଉଛି, ତାହା ସେମାନେ ନ ତ୍ରୁଟି ନ ବିସ୍ମୃତି ପାଳି ଦେଉଛନ୍ତି । ଆମର କାମ ଯେତେ ଶୀଘ୍ର ଓ ଯେତେ ସୁନ୍ଦର ଭାବରେ ହୋଇପାରୁଛି ତାହା ଅନ୍ୟ କୌଣସି ଡିପାର୍ଟମେଣ୍ଟରେ ହୋଇ ପାରିବ ନାହିଁ ବୋଲି ଲୋକେ ଖୋଲାରେ କୁହାକୁହି ହେଉଛନ୍ତି । ଏହା ଫଳରେ ମୋର ଦାୟିତ୍ୱ ଭୀଷଣ ଭାବେ ବଢ଼ି ଯାଉଛି । ମୋତେ ଏପରି ଚଳିବାକୁ ହେବ ଯେପରି ମୋର କାର୍ଯ୍ୟରେ ଦୋଷ ନ ରହିବ । ମୋ କଥା ମାନିଥିବାରୁ ପରେ ଯେପରି କେହି ନ ପସ୍ତାଇବେ । (୨୫ । ୧ । ୧୯୫୫)

ଆଜି ଦିନଟି ମୋ ଜୀବନର ଗୋଟିଏ ସ୍ମରଣୀୟ ଦିନ ହୋଇଗଲାଣି । ୧୯୫୧ ଜାନୁଆରୀ ୨୬ ତାରିଖରେ ଯେତେବେଳେ ଏଇ ଉତ୍ସବ ମୁଁ ଆରମ୍ଭ କରିଥିଲି, ସେତେବେଳେ

ବିଶେଷ ବଡ଼ ଚିନ୍ତା କିଛି ମନରେ ନ ଥିଲା । ଆଶ୍ରମ ସ୍କୁଲରେ ଯେଉଁ ପାଠ ପଢ଼ାପଢ଼ି ହେଉଥାଏ, ତାହା ବିଷୟରେ ବହୁ ଲୋକଙ୍କର ଭିନ୍ନ ମତ ଥାଏ । ମନ୍ତ୍ରୀ ରଣଜିତ୍ ସିଂହ ଓ ମୁଁ କେବଳ ଏକମତ ଥାଉ, ଆଉ ପ୍ରାୟ ସମସ୍ତଙ୍କ ମତ ଆମ ବିରୁଦ୍ଧରେ ଥାଏ । ଏହି ପ୍ରଦର୍ଶନୀ କରି ଆମେ ଭଲ ମାର୍ଗରେ ଅଛୁ କି ନାହିଁ ଦେଖାଇ ଦେବାକୁ ଏ ପ୍ରଦର୍ଶନୀର ଆରମ୍ଭ ହୋଇଥିଲା । ବାହାରେ କେବଳ କହୁଥିଲି, ପରସ୍ପରର ସଂପର୍କରେ ଆସିବା ଫଳରେ ଆଦିବାସୀଙ୍କ ଏକତାର ସୂତ୍ରପାତ ହେବ । ଯାହା ବାହାରେ କହିଥିଲି ତାହାହିଁ କାର୍ଯ୍ୟରେ ଘଟିଛି । ଏହି ପ୍ରଦର୍ଶନୀ ଫଳରେ ଆଦିବାସୀ ପିଲାଙ୍କ ମନରେ ଐକ୍ୟଭାବ ଯେପରି ଦେଖା-ଯାଉଛି, ତାହା ଦେଖି ଆଜି ସକାଳେ ମନରେ ଆସିଲା, ସ୍ୱକାର ମୋର ଆଉ ଦରକାର ନାହିଁ । ମୋର ଇଙ୍ଗିତରେ ଯଦି ଏତେ ବଡ଼ ବଡ଼ କାମ ହୋଇପାରୁଛି, ତେବେ ସରକାରର ଅଧୀନ ରହିବାରେ ପ୍ରୟୋଜନ କଣ ? ସବୁଆଡ଼ ଭଲ ଦେଖି ସନ୍ତୋଷରେ ଲାଟ୍ ସାହେବଙ୍କ ଆଗମନ ପ୍ରତୀକ୍ଷାରେ ରହିଲି । ଲାଟସାହେବ ଆସିବାରେ ମୁଁ ଯେଉଁ ରିପୋର୍ଟ ପଢ଼ିଲି ତହିଁରେ ୫ବର୍ଷର ଅକ୍ଳାନ୍ତ ପରିଶ୍ରମର କ୍ରମିକ ବିକାଶର ସୂଚନା ଦେଇଥିଲି । ଲାଟ୍‌ସାହେବ ଖୁବ୍ ପ୍ରୀତ ହେଲେ । ପ୍ରଦର୍ଶନୀର ବିଭିନ୍ନ ଅଂଶ ଦେଖି ପ୍ରଶଂସା କଲେ ।

କଳାକୁଞ୍ଜ ଏଥର ଖୁବ୍ ଭଲ ହୋଇଛି । ଆଜି ୨ଶହ ୫୦ ଟଙ୍କା ମିଳିଲା । କ୍ରମେ ଅଧିକ ଲୋକ ହେବାର ଆଶା । ରାତିରେ ପିଲାମାନଙ୍କର ନୃତ୍ୟଗୀତ ଖୁବ ସୁନ୍ଦର ହେଲା । ମନ୍ତ୍ରୀ ନାଚିଲେ । ମହିଳାମାନଙ୍କର ଭୋଜନାଗାର ସ୍କିମ୍ ସଫଳ ହେଲା ।

(୨୬ । ୧ । ୧୯୫୫)

ମନ୍ତ୍ରୀ ସବୁବେଳେ ନାଚିବାକୁ ତିଆର । ଯେଉଁଠି ସୁବିଧା ହେଉଛି ସେଠି । ସୁବିଧା ନ ଥିବା ବେଳେ ମଧ୍ୟ ସେ ନାଚିବା ସୁବିଧା ଖୋଜୁଛନ୍ତି । ଏହା ଫଳରେ ତାଙ୍କ ନାଚଟା ବଡ଼ ଭେସେଡ଼ା ହେବାକୁ ବସିଲାଣି । କିନ୍ତୁ ସେ ଦିଗରେ ତାଙ୍କର ଦୃଷ୍ଟି ନାହିଁ । ମନ୍ତ୍ରୀ ନାଚୁଛନ୍ତି ଏକଥା ଲୋକଙ୍କ ମନରେ ନାନା ପ୍ରକାର ଭାବର ଉଦୟ କରାଇବ । ଏ ମନ୍ତ୍ରୀ ଖୁବ ଭଲ, ଲୋକଙ୍କ ସଙ୍ଗେ ସଂପର୍କ ଗୁଢ଼ ନାହାନ୍ତି, ବଡ଼ପଣ ଯାଙ୍କର ନାହିଁ—ଏକଥା ପ୍ରଥମେ ଲୋକେ ମନେକଲେ, କରିବା ସ୍ୱାଭାବିକ ; କିନ୍ତୁ ମାତ୍ରା ବଢ଼ିଯିବାରୁ ଲୋକେ ଟାପରା କରିବାକୁ ଆରମ୍ଭ କଲେଣି । ବହୁ ଲୋକ ଆସି ପଚାରୁଛନ୍ତି, ଆଜି ମନ୍ତ୍ରୀ ନାଚିବେ କି ନାହିଁ ? କେହି କେହି ତାଙ୍କୁ ଦେଖିଲେ ନାଟୁଆ ମନ୍ତ୍ରୀ ବୋଲି କହିବାକୁ ଆରମ୍ଭ କଲେଣି । କ୍ରମେ କ୍ରମେ ତାଙ୍କ ନାଚ ବଡ଼ ଶସ୍ତା ହେବାକୁ ଆରମ୍ଭ କଲାଣି । ତାଙ୍କୁ ବାଧା ଦେବାର ଉପାୟ ନ ଦେଖି ସହିଯିବାକୁ ପଡ଼ୁଛି ।

କାଲି ଓ ଆଜିର ନୃତ୍ୟ-ଗୀତ ଦେଖି ମନରେ ବଡ଼ ଆନନ୍ଦ ହେଲା । ନୃତ୍ୟର ଢଙ୍ଗ ଓ ଗୀତର ବିଷୟବସ୍ତୁ ଖୁବ ଉନ୍ନତ ହୋଇଛି । ଭୂଦାନ ବିଷୟରେ କୃଷ୍ଣେନ୍ଦୁର ଶିକ୍ଷକ ଓ ଗୋବରଘାଟିର ହେଡ଼ମାଷ୍ଟ୍ର ବଡ଼ ଉଚ୍ଚ ଦରର ଗୀତ ଲେଖିଛନ୍ତି । ପିଲାମାନଙ୍କର ସ୍ୱାସ୍ଥ୍ୟ ଓ ସାଧାରଣ ଜ୍ଞାନାଦିର ବିଶେଷ ଉନ୍ନତି ହୋଇଛି । ଆଜି ଦିନଟା ବେଳେ ପିଲାମାନେ

ନଜର ଗୋଟିଏ ସଭାରେ ସହର ଭଲ ନା ମଫସଲ ଭଲ ଏ ବିଷୟରେ ସୁନ୍ଦର ବକ୍ତୃତା ଦେଲେ ।

ବିନୋବା ଭାବେ ଆଜି ଆସି ଲକ୍ଷ୍ମଣନାଥଠାରେ ପହଞ୍ଚିଲେ । କିପରି ତାଙ୍କର ଅଭ୍ୟର୍ଥନା ହେଲା ମୁଁ ଜାଣେ ନାହିଁ । କିନ୍ତୁ ଖବର କାଗଜରେ ଯାହା ବାହାରିଛି ଯେ ମୋଟେ ୧୦/୧୫ ହଜାର ଲୋକ ହୋଇଥିଲେ, ତାହା ଶୁଣି ବଡ଼ ନିରାଶ ଲାଗିଲା । ମୁଁ ବିଶ୍ୱାସ କରେ ବିନୋବା ଭାବେ ନାମରେ ଗାଁ ଗହଳରେ ଗୋଟିଏ ବିପ୍ଳବର ସୂତ୍ରପାତ ହୋଇପାରିବ; କିନ୍ତୁ ଯେପରି ଲୋକଙ୍କ ହାତରେ ଭୂଦାନ ଯଜ୍ଞ କାର୍ଯ୍ୟ ପଡ଼ିଛି ସେଥିରେ କିଛି ହୋଇ ପାରିବ ନାହିଁ । କଂଗ୍ରେସ ବାଲା ଓ ସର୍ବୋଦୟ କର୍ମୀ ଲୋକଙ୍କ ସଂପର୍କ ଛାଡ଼ିଯାଇଛନ୍ତି । କଂଗ୍ରେସ ବାଲା ଶାସନକୁ ଆସି ନିଜକୁ ଭୁଲି ଯାଇଛନ୍ତି, ଓ ସର୍ବୋଦୟ ବାଲା ଖାଲି ମାଳ ମାଳ ଚକୁଳିଆ ପଣ୍ଡା ହୋଇଗଲେଣି । ପଂଚାଏ ସୁବିଧାବାଦୀ ମଧ୍ୟ ଏଥିରେ ମିଶିଯାଇଛନ୍ତି, ସହଜରେ ନାମ ମାରି ନେବାକୁ । (୨୭ । ୧ । ୧୯୫୬)

ଆଜି ବସନ୍ତ ପଞ୍ଚମୀ । ପ୍ରଦର୍ଶନୀ ଭିତରେ ପଡ଼ିବା ବଡ଼ ସୌଭାଗ୍ୟର ବିଷୟ । ପ୍ରଦର୍ଶନୀ ପଡ଼ିଆରେ ହୋଇଥିବା ଗୃହାବାସ ସାମନାରେ ସରସ୍ୱତୀପୂଜା ହେଲା । ଗୃହାବାସର ଉଦ୍‌ଘାଟନ ଉତ୍ସବ ମଧ୍ୟ ହେଲା । ଆଶା କରିଥିଲି ଗଭର୍ଣ୍ଣର ବା ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିବେ । ଗଭର୍ଣ୍ଣର ଶେଷ ମୁହୂର୍ତ୍ତରେ ଆସିବେ ନାହିଁ ବୋଲି ଶୁଣିଲି । ମୁଖ୍ୟମନ୍ତ୍ରୀ ତ ବିନୋବା ଭାବେଙ୍କ ଗସ୍ତରୁ ଫେରି ନାହାନ୍ତି । ତେଣୁ ପୂଜା ସଂଗରେ ଗୃହ ପ୍ରବେଶ ଉତ୍ସବ କରିବାକୁ ପଡ଼ିଲା ଆମ ମନ୍ତ୍ରୀଙ୍କ ହାତରେ ।

ଆଜି ଆମ ପିଲାଙ୍କର ନାଚ ଗୀତ ବିଶେଷ ଭାବେ ହୋଇ ପାରିଲା ନାହିଁ । ପ୍ରେସ୍‌ର ସାହିତ୍ୟ କ୍ଲବ ଆମରି ଗାଁ ନାଟକଟି କରିବାକୁ ଆସିଥିଲେ । ସେଇମାନଙ୍କୁ ସମୟ ଦେବା ପାଇଁ ଆମର ନୃତ୍ୟ ଗୀତ କମେଇ ଦେବାକୁ ପଡ଼ିଲା । ଏ ନାଟକଟି ଭାରତ ସରକାରଙ୍କ ମଞ୍ଜୁରିରେ ଆସିଛି । ଏହା ଗାଁ ଗହଳରେ କରାଇଲେ ଭାରତ ସରକାରଙ୍କ ପକ୍ଷରୁ ଟଙ୍କା ମିଳିବ । ସରକାରୀ ପ୍ରେସ୍‌ର ନାଟକ ଦଳ ସେଇ ପଇସା ଲୋଭରେ ଏ ନାଟକର ପରିବେଷଣରେ ଲାଗିଛନ୍ତି । ନାଟକରେ ନାଟକୀୟତା କିଛି ନାହିଁ । ଲୋକଙ୍କୁ ସୁଖ ଲାଗିଲା ନାହିଁ । ବାରଟାବେଳେ ସେମାନଙ୍କର ନାଟକ ସରିଲା । ତା' ପରେ ଲୋକେ ଖୋଜିଲେ ଆମ ପିଲାଙ୍କ ନୃତ୍ୟ ଗୀତ । ସେଥିରୁ ଦୁଇଘଣ୍ଟା ହେଲାପରେ ଦିନକର କାର୍ଯ୍ୟ ସରିଲା । ବର୍ତ୍ତମାନ ଦିନଟି ମାନ ଯେପରି କଟିଯାଉଛି, ମତେ ଜଣାଯାଉଚି, ସତେ ଯେମିତ ଆଉ ଗୋଟିଏ ରାଜ୍ୟରେ ଅଛି । ଘରଦ୍ୱାର, ଦୁଃଖସୁଖ କିଛି ମୋତେ କୌଣସି ପ୍ରକାର ପ୍ରଭାବିତ କରିପାରୁ ନାହିଁ । (୨୮ । ୧ । ୧୯୫୬)

ଆଜି ସଞ୍ଜାକୁ ଉଠୁ ଉଠୁ ବହୁତ ଡେରି ହେଲା, ଦାନ୍ତ ଘଷୁ ଘଷୁ ୧୨ଟି ବାଜିଲା । ଇତି ମଧ୍ୟରେ ଆଶ୍ରମ ସ୍କୁଲ ପିଲାମାନେ ଆସିଲେ । ନାଚଗୀତ ହେଲା । କଳସ ମଙ୍ଗଳ

ଅଫିସର କେତେଜଣ ଆସିଲେ । ସେମାନଙ୍କ ସଙ୍ଗେ ଧର୍ମ ସଂପର୍କୀୟ ଆଲୋଚନା ହେଲା । ସେତିକି ବେଳେ ମୋ ମନ ହେଲା, ଆଉ ଗୃହକର୍ମ କରିବି ନାହିଁ । ଏ କାମ ଛାଡ଼ି ଗାଁରେ କିଛି ଦିନ ବସିବି, ତା'ପରେ ଗୁଡ଼ିଏ ଲୋକ ସାଙ୍ଗରେ ଧରି ମଫସଲ ଅଞ୍ଚଳରେ ବୁଲିବି । ସାଙ୍ଗରେ ଆଶ୍ରମ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିବା କେତେକ ପିଲାଙ୍କୁ ରଖିବି । ଏଥିପାଇଁ ଟଙ୍କା ଦରକାର । କୁଆଡ଼ୁ ଆସିବ ସେଥିପାଇଁ ଶୋଚନା ହେଉନାହିଁ । ମୋ'ର ମନେ ହେଉଛି ଟଙ୍କା ମିଳିଯିବ । ଗୋବିନ୍ଦ ଚୌଧୁରୀ କଣ୍ଟ୍ରାକ୍ଟର ଆଜି ଦି' ପହରେ ଆସି ଶହେଟି ଟଙ୍କା ଚାନ୍ଦା ଦେଲେ ଅନ୍ଧ ଗାଆଣ ଦଳଙ୍କ ପାଇଁ । ସେଥିରେ ମୋ' ମନରେ ଭାରି ଉତ୍ସାହ ହେଲା । ଗୋବିନ୍ଦ ଚୌଧୁରୀ ପୁଣି ପ୍ରତିଶ୍ରୁତି ଦେଲେ, ଭବିଷ୍ୟତରେ ଆହୁରି ସାହାଯ୍ୟ କରିବେ । ମୋ'ର କାମ ଯଦି ଲୋକଙ୍କର ଆଖିଦୃଷ୍ଟିଆ ହୁଏ, ତେବେ ଟଙ୍କାର ଅଭାବ ହେବନାହିଁ ବୋଲି ମୋ'ର ବିଶ୍ୱାସ ହେଲା । (୨୯ । ୧ । ୧୯୫୫)

ଆଜି ଭୋର ୬'ଟାରୁ କାଲି ଭୋର ୬'ଟା ପର୍ଯ୍ୟନ୍ତ ସୂତ୍ରଯଜ୍ଞ ହେବାର ବ୍ୟବସ୍ଥା କରିଥିଲୁ । ୬'ଟା ୫ ମିନିଟରେ ଯାଇ ଦେଖେତ ସୂତାକଟା ଆରମ୍ଭ ହୋଇଯାଇଛି । ପିଲାମାନେ ସମସ୍ତେ ଗାଧୋଇ ସାରିଥା'ନ୍ତି । ଆନନ୍ଦରେ ଫେରିଲି, ତା'ପରେ କାଲିପରି ଆରମ୍ଭ ହେଲା ଆଲୋଚନା, ସେଇ ଏକ କଥା । ସରକାରରୁ ବାହାରି ନ ଗଲେ ଲୋକଙ୍କର ପ୍ରକୃତ ମଙ୍ଗଳ କରିବା ସମ୍ଭବ ହେବ ନାହିଁ । ସେତିକିବେଳେ ଖବର ଆସିଲା, ଡକ୍ଟର କେସକାର ପ୍ରଦର୍ଶନୀ ପଡ଼ିଆକୁ ଆସିବେ । ଏ ମହାଶୟଙ୍କୁ ମୁଁ ଭଲଭଳି ଜାଣେନାହିଁ । ଥରେ ତାଙ୍କୁ ଦେଖିଥିଲି କଟକରେ ଆଉ ବର୍ଷେ । ଏ ବର୍ଷ ଦିଲ୍ଲୀଠାରେ ପ୍ରଶ୍ନର ବିଭାଗ ସଭାରେ ଦେଖିଥିଲି । ବ୍ୟକ୍ତିତ୍ୱ ବିଶେଷ ଥିଲାପରି ଜଣାଯାଉନଥିଲା । ତଥାପି ଭାରତ ସରକାରଙ୍କ ମନ୍ତ୍ରୀ; ସେଥିପାଇଁ ୧୨ଟା ବେଳେ ଅଗାଧୁଆ ଅଘଷା ଦାନ୍ତରେ ଯାଇ ଶିକ୍ଷକମାନଙ୍କୁ ପ୍ରବର୍ତ୍ତାଇଲି ପ୍ରଦର୍ଶନୀ ପଡ଼ିଆ ୨୬ ତାରିଖରେ ଯେପରି ଥିଲା ସେହିପରି ସଜାଇଦେବାକୁ । ପିଲାମାନେ ସଙ୍ଗେ ସଙ୍ଗେ ଲାଗିଗଲେ । ଷ୍ଟଲଗୁଡ଼ିକ ପାଣିପକାଇ ଲିପିଦେଲେ । ମଣ୍ଡପଟିକୁ ବଡ଼ ସୁନ୍ଦର ଭାବେ ସଜାଇ ଦେଲେ । ଆନନ୍ଦରେ ଏସବୁ ଦେଖି ୨'ଟା ବେଳେ ମୁଁ ସୂତାକାଟୁଛି, ମନ୍ତ୍ରୀ ଆସି ଜଣାଇଦେଲେ, ଆଜି ନାଚ ହେବ, କେସ୍‌କାର ଦେଖିବେ । ମୁଖ୍ୟମନ୍ତ୍ରୀ ମଧ୍ୟ ଆସୁଛନ୍ତି । ଗାନ୍ଧୀଭକ୍ତ ଏମାନଙ୍କର ଏତେ ଦୁର୍ବଳ ଥିବାର ଦେଖି ବିସ୍ମିତ ହେଲି । ମନରେ ଘୋର ବିପ୍ଳବ ଆସିଲା । ଆଉ ଏମାନଙ୍କ ସଙ୍ଗେ ରହିବନାହିଁ ବୋଲି ଦୃଢ଼ ସଙ୍କଳ୍ପ କଲି; କିନ୍ତୁ ନୃତ୍ୟ ଗୀତର ଆୟୋଜନ କଲି । ମୁଖ୍ୟ ମନ୍ତ୍ରୀ ଚୁକୁଲି କରି କହିଲେ ଯେ, ମନ୍ତ୍ରୀଙ୍କର ନାଚବାର ଆଗ୍ରହାତିଶଯ୍ୟ ଯୋଗୁଁ ଘଣ୍ଟେ ଘଣ୍ଟେ ସୂତାକଟା ବନ୍ଦକର । ସୂତାକଟା ବନ୍ଦ ହେଲା ନାହିଁ । ପିଲାମାନେ ମଞ୍ଚର ପଛପଟେ ସୂତାକାଟୁଥା'ନ୍ତି । ଆଗରେ ସବୁ ମନ୍ତ୍ରୀଙ୍କର ସମଭିବ୍ୟାହାରରେ ନୃତ୍ୟ ଗୀତ ହେଲା । ମନ୍ତ୍ରୀ ବ ନ ଚଲେ । ଡକ୍ଟର କେସକାରଙ୍କର ବେଳ ହେଲା ନାହିଁ ପ୍ରଦର୍ଶନୀ ଆଡ଼କୁ ଟିକିଏ ଚାହିଁବା ସକାଶ । ମନ୍ତ୍ରୀମାନେ ପିଲାଙ୍କର କାର୍ଯ୍ୟକୁ ପସନ୍ଦ କରିବା ଦୂରେ ଥାଉ, ସାମାନ୍ୟ

ଦୋଷ ଦେଖିଲେ ଖୁଣିଲେ—ମୁଖ୍ୟମନ୍ତ୍ରୀ ଷ୍ଟେଜ ଉପରକୁ ଧାଇଁଯାଇ ପିଲାଙ୍କୁ ଥଆରୁଥା'ନ୍ତି । ସ୍ତ୍ରୀଙ୍କୁ ଦୋଷିଲି । ଖପତ୍ରରେ ଖାଇବା ପଛେ ସ୍ୱାଙ୍କ ସଙ୍ଗେ ଆଉ ରହିବ ନାହିଁ ବୋଲି ସଂକଳ୍ପ କଲି । (୩୦ । ୧ । ୧୯୫୭)

**ଏଥର ଛୁଟିରେ ଛୁଟିବ :**

ମନ ସକାଳୁ ଖୁବ୍ ଖରାପ ଥାଏ । କୌଣସିମତେ ମନକୁ ବୁଝାଇ ଯନ୍ତ୍ରଚାଳିତ ପରି କାର୍ଯ୍ୟ କରୁଥାଏ । ମନ ବିଶେଷ ଟାଣୁଛି, ସବୁ ଛାଡ଼ିଦେଇ ଗାଁକୁ ଚାଲିଯିବାକୁ । ମିଳିଲେ ଖାଇବ, ନ ମିଳିଲେ ଉପାସ ରହିବ । କିନ୍ତୁ ଯେଉଁ ସରକାରର କୌଣସି କାର୍ଯ୍ୟରେ ଶ୍ରଦ୍ଧା ନାହିଁ, ବ୍ୟକ୍ତିଗତ ଈର୍ଷା ବା ଅଶ୍ରଦ୍ଧା ଯୋଗୁଁ ସାଧାରଣ କାର୍ଯ୍ୟକୁ ହେଳା କରୁଛନ୍ତି ; ମହାତ୍ମାଜୀଙ୍କ ପୁଣ୍ୟ ସ୍ମୃତିର କାର୍ଯ୍ୟକ୍ରମକୁ ଅବଲୀଳାରେ ଅବଜ୍ଞା କରୁଛନ୍ତି ; ସେମାନଙ୍କ ସଙ୍ଗେ ଯଥାଶୀଘ୍ର ସମ୍ପର୍କ ତୁଟାଇ ଦେବା ଉଚିତ ବୋଲି ମୋତେ ଜଣା ପଡ଼ୁଛି । ତା'ପରେ ମନ୍ତ୍ରୀ ଡାକିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉ ହେଉ ମୁଁ ଏପ୍ରିଲ ପହିଲାରୁ ଛୁଟିରେ ଯିବାର ପ୍ରକାଶ କଲି ଓ ଛୁଟି ପରେ ଆଉ ଫେରିବ ନାହିଁ ବୋଲି ମଧ୍ୟ କହିଲି । ସେ ଧରି ବସିଲେ, ମୁଁ ଆଉ ଦୁଇ ବର୍ଷ ରହେଁ । ମୁଁ ତାଙ୍କୁ ଏଣୁ ତେଣୁ କହି ବୁଝାଇଲି, ମୁଁ ବାହାରେ ରହିଲେ ତାଙ୍କର ଉପକାର । ସେ ଟିକିଏ ନରମିଲେ, କିନ୍ତୁ କହିଲେ, ଆପଣ ଛୁଟିରେ ଯା'ନ୍ତୁ, ତା'ପରେ ଇସ୍ତଫା ଦେବାକଥା ବିଚାର କରାଯିବ । ମୁଁ ସେଥିରେ ରାଜି ହେଲି । ଛୁଟି ମଞ୍ଜୁର ହେବାର କିଛି ଦିନ ପରେ ଇସ୍ତଫା ପତ୍ର ପଠାଇବ ।

ଆଜି ଆମ ଅଫିସର ଓ ଆସିଷ୍ଟାଣ୍ଟମାନେ 'କଳିଙ୍ଗ ବିଜୟ' ନାଟକ କଲେ । ଖୁବ ଭଲ ହୋଇଥିଲା । କିନ୍ତୁ ମୁଁ ଦେଖିବାର ସୁଯୋଗ ପାଇଲି ନାହିଁ । ରାତି ନ'ଟାରେ ପୁରୀର ପଣ୍ଡିତ ଆନନ୍ଦ ମିଶ୍ରେ ଆସି ପହଞ୍ଚିଲେ । ତାଙ୍କୁ ଘରଆଡ଼ ବୁଲାଇ ଦେଖାଇଲି । ସେ କଳାକୁଞ୍ଜ ଦେଖି ଖୁବ ଖୁସି ହେଲେ । ମୁଁ ଶାସ୍ତ୍ରୀୟ ମତରେ ଏସବୁ କରିଛି ଓ ତା'ଉପରେ ଯୁଗର ଉପଯୋଗୀ ସଂସ୍କାର କରିବାକୁ ବସିଛି ଦେଖି ସେ ସନ୍ତୋଷ ପ୍ରକାଶ କଲେ ।

ରାତି ସାଢ଼େ ୮ଟାରେ ନାଟକ ସରିଲା । ତା'ପରେ ଆମ ଘରେ ଭୋଜି ହେଲା, ଆଶ୍ରମ ସ୍କୁଲ ଶିକ୍ଷକ, ମୁଖ୍ୟ ଛାତ୍ର, ଆମ ଅଫିସର ଓ ଆସିଷ୍ଟାଣ୍ଟମାନଙ୍କର । ସେଠାରେ ସୂଚନା ଦେଲି ଯେ, ମୋ'ର ସରକାରୀ କାମର ଏଇଠାରେ ଉଦ୍‌ଯାପନ ହେଲା ।

**ବିନୋବାଙ୍କ ଭୂଦାନ:**

ବିନୋବା ବାଭେଙ୍କର ଭୂଦାନଯାତ୍ରା ବିଷୟରେ ନାନା ପ୍ରକାର କଥା ଶୁଣାଯାଉଛି । ବାଭେ ନିଜେ ମହାତ୍ମା, ସାଧୁ ସନ୍ଥ, କିନ୍ତୁ ସେ ଗୋଟିଏ ଭୁଲ କରୁଛନ୍ତି । ତାଙ୍କପରି ମହାତ୍ମା, ରାଜନୈତିକ ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ବୁଲିବା ଠିକ୍ ହେଉ ନାହିଁ । ସେ ଭୂଦାନ ବାର୍ତ୍ତା ପ୍ରଚାର କରନ୍ତୁ; କିନ୍ତୁ ପ୍ରଚାରର ଫଳ ଭୋଗ କରିବାକୁ ସେ ଯୋଜନା କରି ନିଜ ଆନ୍ଦୋଳନ ମୂଳରେ କୁଠାରଘାତ କରୁଛନ୍ତି । ଯାହାଠାରୁ ଦାନ ଗ୍ରହଣ

କରୁଛନ୍ତି, ତାହା ତା'ର ପାଖରେ ରହୁଛି । ସେ ବୋଧହୁଏ ଆଶା କରୁଛନ୍ତି, ସେ ନ କଲେ ତାଙ୍କ ପାଖ ଲୋକେ କ ନଷ୍ଟସ୍ୱ କରୁଛନ୍ତି ଯେ ବାଣ୍ଟିବା ବେଳ ପଡ଼ିବାବେଳେ ଦାତା ଜମି ହସ୍ତାନ୍ତର କରିଦେବ । କେବେ ବଣ୍ଟା ହେବ, ତାହାର ଠିକ୍‌ଠିକଣା ନାହିଁ । ଲୋକେ ଜମିର ଲୋଭ ସ୍ଥାୟୀ ଭାବରେ ଛାଡ଼ିଲେ ଯାଇ ଠିକଣାବେଳେ ଦାନ କରିବାକୁ ବାହାରିପଡ଼ିବେ । ପୁଣି କାହାକୁ ବା ଦିଆହେବ ? ଯେଉଁମାନେ ଭୂମିହୀନ ସେ ସମସ୍ତେ କ'ଣ ଭୂମିର ସଦ୍‌ବ୍ୟବହାର କରିପାରିବେ ! ପୁଣି ଆଇନ ହେଉଛି, ଯେ ଦାନ ଜମି ଗ୍ରହଣ କରିବେ, ସେ ୧୫ ବର୍ଷ ପର୍ଯ୍ୟନ୍ତ ସେ ଜମି ହସ୍ତାନ୍ତର କରିପାରିବେ ନାହିଁ । ଯେଉଁ ଜମି ହସ୍ତାନ୍ତର ହୋଇ ନପାରିବ, ସେଥିରେ ମୂଲ୍ୟ କ'ଣ ? ଏସବୁ ବିଚାର କରି କାମ ହୋଇ ନାହିଁ ବୋଧ ହୁଏ । ବିନୋବା ଯାହା ବିଚାରୁଛନ୍ତି, ସେ ଅନୁସାରେ କାମ ହେଉନାହିଁ । ଭକ୍ତମାନେ ପରିମାଣ ବଢ଼ାଇବାକୁ ଅଦାତାଙ୍କଠାରୁ ଦାନ ଗ୍ରହଣ କରୁଛନ୍ତି । ଅପଦାର୍ଥ ଲୋକଗୁଡ଼ାଏ ପାଖରେ ଜୁଟିଯାଇଛନ୍ତି । (୩୧ । ୧ । ୧୯୫୫)

**ପ୍ରଦର୍ଶନୀ ଉପରେ ବର୍ତ୍ତିଲା**

କାଲିରେ ପ୍ରଦର୍ଶନୀ ବନ୍ଦ ହେବାର କଥା । କଳାକୁଞ୍ଜର ଆଉ କିଛି ଲାଭ ହେବ ବୋଲି ଆଶା କରି ଆଜି ଦିନକ ବଢ଼ାଇଲି । କିନ୍ତୁ ଲୋକେତ ଆଗରୁ ଜାଣନ୍ତି ଉତ୍ସବ ମୋଟେ ସାତଦିନ ହେବ ବୋଲି । ପ୍ରଚାର ହୋଇ ନ ପାରିବାରୁ ଲୋକ କମ ହେଲେ । ମୋଟେ ୫୦ ଟଙ୍କାର ଟିକେଟ ବିକି ହେଲା । କିନ୍ତୁ ନୃତ୍ୟ ଗୀତ ଆରମ୍ଭ ହେଲା ବେଳକୁ ସ୍ଥାନୀୟ ଲୋକଗୁଡ଼ାଏ ଆସି ଜୁଟିଲେ । ଆମ ପିଲାଙ୍କ ଭିତରୁ ୩୪ଜଣ ଲାଟ୍‌ସାହେବଙ୍କ ଡାକରାରେ କଟକ ଯାଇଥିଲେ; ବାକୀ ଯେଉଁମାନେ ଥିଲେ ସେମାନେ ଗୋଟିଏ ଦୁଇଟି ନାଟ ଦେଖାଇଲା ପରେ ଅନ୍ଧ ପାଲା ପିଲାଙ୍କ ପାଳି ପଡ଼ିଲା । ସେମାନେ ବେଶ୍ କଲେ । ଆଜି ତାଙ୍କ ପାଲା ଓ ଦାସକାଠିଆ ଗୀତ ଲୋକଙ୍କ ମନକୁ ଖୁବ୍ ପାଇଲା ବୋଲି ଶୁଣିଲି । ତାହାର କାରଣ ବୋଧ ହୁଏ ସେମାନଙ୍କୁ ଆଜି ପ୍ରାୟ ଶହେ ଟଙ୍କା ମିଳିବାପାଇଁ ହୁକୁମ କରିଥିଲି ବୋଲି । ମନ ଖୁସିରେ ସେମାନେ ଖୁବ୍ ଗାଇଲେ । ପ୍ରଦର୍ଶନୀଟି ସରିଯିବାରୁ ମୋ' ମନରେ ବଡ଼ ଅବସାଦ ଆସିଲା । ଆରବର୍ଷ ଏଇ ଦିନକୁ ତ ମୁଁ ନ ଥିବ ବୋଲି ଠିକ୍ କରିଛି । ଏ ପ୍ରଦର୍ଶନୀ ମୋ' ଜୀବନର ଗୋଟିଏ ଅଙ୍ଗ ପରି ହୋଇଥିଲା । ଆଶ୍ରମ ସ୍କୁଲର ପିଲାମାନେ ମୋ'ର ପ୍ରାଣ ହୋଇଥିଲେ । ଏମାନଙ୍କୁ ଛାଡ଼ିଦେଲେ ସେମାନଙ୍କର ଯାହା ହେଉ ବା ନ ହେଉ ମୋ' ମନରେ ବଡ଼ ଆଘାତ ହେବ । ସରକାରୀ ଦପ୍ତର ଗୁଡ଼ିକ ମାନେ ସରକାରୀ ସହକର୍ମୀମାନେ ଭୁଲିଯିବେ । ମୁଁ ତ ଏ କାର୍ଯ୍ୟକୁ ସରକାରୀ ବୋଲି ଗ୍ରହଣ କରି ନ ଥିଲି । ଏହା ଥିଲା ମୋ'ର ସାଧନାର ଗୋଟିଏ ପ୍ରଧାନ ଅଂଶ । ଭବିଷ୍ୟତରେ ଯାହା କରିବାକୁ ବିଚାରିଛି, ସେଥିରେ ପ୍ରାଣ ଢାଳିଦେବା ପର୍ଯ୍ୟନ୍ତ ମୋତେ ଭୂତ ପରି ଏ ବିଷୟଟା ଗୋଡ଼ାଇବ ବୋଲି ମୋ'ର ଭୟ ହେଉଛି । ଏଇପରି ଏଣୁ ତେଣୁ ଗୁଡ଼ାଏ ଭାବି ଭାବି ଶୋଇରହିଲି ।

(୨ । ୨ । ୧୯୫୫)

**ମୋ କୁଟୀରକୁ ମହତାବଙ୍କ ଆଗମନ:**

ମୁଁ ଏପ୍ରିଲ ପନ୍ଦରରେ ଛୁଟି ନେବାକୁ ଇଚ୍ଛା କରୁଥିବା କଥା ଆଜ ଘଡ଼ାଜୁ ସୁଧୀର ବାବୁଙ୍କୁ କହିଲି । ସେ ଘୋର ଆପତ୍ତି କଲେ । ତାଙ୍କର ଭୟ ମୁଁ ଏତେ ବେଳେ ଛୁଟି ନେବାକୁ ବସିଲେ, ପ୍ରାଣନାଥ ବାବୁ ଡିପାର୍ଟମେଣ୍ଟକୁ ଆସିବେ । ସେ ଆସିଲେ ପୂର୍ବଥର ପରି ପୁଣି ବୃଥା ଗଣ୍ଡଗୋଳ ଆରମ୍ଭ କରିବେ, କାମ କିଛି ହେବ ନାହିଁ । କର୍ମୀମାନଙ୍କ ଉତ୍ସାହ ଦୂର ହୋଇଯାଇ ନାନା ଆଶଂକାରେ ସେମାନେ ଖାଲି ଘାଣ୍ଟିହେବେ । ଏହା କେତେକାଂଶରେ ଠିକ୍ । ଆଗଥର ପ୍ରାଣନାଥ ବାବୁ ପ୍ରଚ୍ଛର ବିଭାଗକୁ ଆସି ଖାଲି ଅଡ଼ିଟ୍ ଆରମ୍ଭ କଲେ । ନାନା ପ୍ରକାର ବଢ଼ୀଷିକା ଦେଖାଇଲେ । ସେ ଯାହା ଇଚ୍ଛା କରୁଥିଲେ ତାହା ହୋଇ ପାରିଲା ନାହିଁ । ମୋ ନାମରେ କୌଣସି ପ୍ରକାର କଳଙ୍କ ଲାଗିବାର ଉପାୟ ନ ଥିଲା । ସେଥି ଦୁଇ ଗୁରଜଣ ଆସିଷ୍ଟାଣ୍ଟଙ୍କ ଉପରେ ଦୋଷ ଲାଗିଲା ସେମାନଙ୍କୁ ମୁଁ ଆସି କ୍ଷମା ଦେଲି; କାରଣ ଦୋଷର ସେପରି କିଛି ଗୁରୁତ୍ୱ ନ ଥିଲା । ମନ୍ଦ ଉଦ୍ଦେଶ୍ୟ ନ ଥାଇ, କାର୍ଯ୍ୟଗତିରେ ଭୁଲ ହୋଇ ଯାଇଥିଲା ମାତ୍ର । ଏଥର ସେଇପରି ହେଲେ କର୍ମୀମାନେ ଟିକିକ ଦୋଷରେ ଦଣ୍ଡ ପାଇବେ ବୋଲି ଆଶଂକା କରିବା ଯଥାର୍ଥ ହୋଇପାରେ । ପ୍ରାଣନାଥ ବାବୁ ନାନା କାରଣରେ ଆପତ୍ତି କଲେ । ତାଙ୍କର ବିଶ୍ୱାସ, ମୁଁ ଗଲେ ଆଚାର୍ଯ୍ୟ ବିଭାଗର କାର୍ଯ୍ୟ ପଛେଇ ଯିବ । ଏମାନଙ୍କୁ ଠିକ୍ ସମୟରେ ବୁଝାଇ ପାରିବି ବୋଲି ଆଶା ହେଉଛି ।

ସଂଧ୍ୟାବେଳେ ମହତାବ ବାବୁ ମୋ ଘରକୁ ଆସିଲେ । ସେ ବମ୍ବେଇର ଗଭର୍ଣ୍ଣର ହେବାକୁ ଯାଉଛନ୍ତି । ତାହା ଠିକ୍ ହେବ କି ନାହିଁ ବୋଲି ପଚାରିଲେ । ମୁଁ କହିଲି, ଗଭର୍ଣ୍ଣର ହେବାର ବୟସ ତାଙ୍କର ହୋଇନାହିଁ । ବର୍ଷେ ଦେଢ଼ ବର୍ଷ ଗଭର୍ଣ୍ଣର ରହି ପୁଣି ଓଡ଼ିଶାର ରାଜନୀତିକୁ ଫେରିବା ପାଇଁ ଯଦି ତାଙ୍କର ମନ ଥାଏ ତେବେ ଠିକ; ନାହିଁ ଯଦି ଚିରକାଳ ଏହିପରି ଗଭର୍ଣ୍ଣର ବା ରାଷ୍ଟ୍ରଦୂତ ରହିବାକୁ ସେ ଚାହୁଁଥାନ୍ତି, ତେବେ ତାଙ୍କର ଯାହା ହେଉ ପଛେ, ଓଡ଼ିଶାର କ୍ଷତି ହେବ । (୩ । ୨ । ୧୯୫୫)

**ସବ୍‌ସେ ଭୂଇ ଭଲ:**

ଆଜ ପ୍ରଥମ କଚେରୀରେ ସୁଧୀର ବାବୁ ଓ ରାମପ୍ରସାଦ ବାବୁଙ୍କ ସଙ୍ଗେ ବିନୋବାଙ୍କ ବିଷୟରେ ଆଲୋଚନା ହେଲା । ଏ ଦୁହେଁ କାଲି ଦିନକ ବାଲେଶ୍ୱରରେ ବିନୋବାଙ୍କ ସଙ୍ଗେ କଟାଇ ଆସିଛନ୍ତି । ଦୁହେଁଯାକ ଏକ ସ୍ୱରରେ କହିଲେ ମୁଁ ଯାହା କହେ ସେଇ କଥା କାଲି ବିନୋବା ସଭାରେ କହିଲେ । ସୁଧୀର ବାବୁ କହିଲେ, ଯେଉଁ ଚନ୍ଦ୍ରାମଣି ମିଶ୍ରଙ୍କୁ ଏଠାରେ ମରହଟି ଓ ବାସ୍ତା ବୋଲି କେହି କେହି କହନ୍ତି ସେ ଯାହା କହୁଛନ୍ତି ବିନୋବା ସେଇ କଥା କହୁଛନ୍ତି, ଦେଖି ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ବିନୋବା ମାର୍ଗରେ ମୁଁ ଯାହା ଭୁଲ ଦେଖୁଛି ତାହା ରାମପ୍ରସାଦ ବାବୁଙ୍କ ସଙ୍ଗେ ଆଲୋଚନା କଲି । ପ୍ରଥମତଃ ସେ ଦାନର ପରିସର କମାଇ ତାଙ୍କ ନିଜକୁ ଦାନ କର ବୋଲି କହିବାଦ୍ୱାରା ଦାନକ୍ଷେତ୍ରରେ ସାମ୍ରାଜ୍ୟବାଦର

ସୂତ୍ରପାତ କରୁଛନ୍ତି । ମୋତେ ଦାନ କର ବୋଲି କହିବା ଫଳରେ ଭୂଦାନ ଆନ୍ଦୋଳନ ପଥଭ୍ରଷ୍ଟ ହେଉଛି ବୋଲି ମୋର ଧାରଣା । ଭୂଦାନକୁ ଅରେ କିଛି ଦେଇ ଲୋକ ପାପର ପ୍ରାୟଶ୍ଚିତ୍ତ କଲି ବୋଲି ପାପ ପାଇଁ ପ୍ରଶ୍ରୟ ପାଇବାର ଆଶଂକା ଅଛି । ଯଦି ବା ସମସ୍ତେ ଅନୁପ୍ରାଣିତ ହୋଇ ଦେବେ ତେବେ ଏତେ ଜଟିଳ ପରିସ୍ଥିତି ପରିହୃଦ ଯେ ବିନୋବାଜୀ ଗୋଟାଏ ବଡ଼ ଦପ୍ତର ନ କରାଇଲେ ଅବସ୍ଥା ସଂଭାଳି ପାରିବେ ନାହିଁ । ଓଡ଼ିଶାରେ ପୁଣି ଏ ଦପ୍ତର ବସିବ ଗୋପ ଚୌଧୁରୀଙ୍କ ଅଧୀନରେ; ତାଙ୍କୁ ମଣିଷ ଏପରି ଶଂଧାନ୍ତି ଯେ ଗୃହଦଉଡ଼ିକଟା ନ ହେଲେ ତାଙ୍କ ପାଖେ ରହି ହେବ ନାହିଁ । ସବୁଯାକ ମାର୍କାମରା ଲୋକ ଶେଷ ଆଶ୍ରୟ ସ୍ୱରୂପ ଭୂଦାନ ଅଫିସରେ ଆସି ଜୁଟୁଛନ୍ତି । ମୋ'ର ମଝିରେ ମଝିରେ ମନ ହେଉଛି ବିନୋବାଙ୍କ ପାଖକୁ ଏ ସବୁ ବିଷୟରେ ଟିକିଏ ପତ୍ର ଦେବାକୁ । ପୁଣି ଭାବୁଛି ଦାସେ ଫାଣ୍ଡିକୁ ଯାଇ ଯାହା ଆଣିଥିଲେ ତାହା ମିଳିବା ସାର ହୋଇପାରେ । ତ'କଥାରୁ କଥେ ଘଟିବ — ଚୌଧୁରୀ ପରିବାରଙ୍କ କୋପଦୃଷ୍ଟି ପଡ଼ିବ, ନୋଚେତ୍ ସାନ ଚୌଧୁରୀଙ୍କ ପାଖରୁ ଯାଇ ବଡ଼ ଚୌଧୁରୀଙ୍କ ପାଖରେ ମୋଯାଏବ ହେବାକୁ ହେବ । ସବୁଠୁ ଚୁପ ଭଲ । ମୋ ଗୃହପଟେ ଯେଉଁ ଦି ଗୃହଜଣ ଅଛନ୍ତି, ସେଇମାନଙ୍କ ମନ ନେଇ ପାରିଲେ ମୋ ଶ୍ରେଷ୍ଠ ସଂସାରଟି ଠିକ୍ ରହିବ । (୭ । ୨ । ୧୯୫୫)

### କର୍ତ୍ତବ୍ୟରତ ସେନାପତି

ଆଜି ଗୋଟାକ ବେଳେ ଅଳ୍ପ ଟିକିଏ ଟପ୍ରେପ ଲାଗିଲା । ଅଫିସରେ ରହିବାକୁ ମନ ହେଲା ନାହିଁ । ଘରକୁ ଚାଲି ଆସିଲି ଟିକିଏ ବିଶ୍ରାମ କରିବାକୁ । ବିଶ୍ରାମ ଅର୍ଥ ଖଟରେ ଶୋଇ ପଡ଼ିଲି । ପୁରୁଣା Reader's Digestରୁ ଗୋଟିଏ ଲେଖ ଶେଷ କଲି । ମୋର ମନକୁ ମାନିଲା ପରି ବିଷୟଟିଏ । ଗତ ଯୁଦ୍ଧ ବେଳର ଗୋଟିଏ ଗପ । ଜଣେ ସେନାପତି ନିଜର କର୍ତ୍ତବ୍ୟ କରିବାରେ ଯେତେ ବାଧା ପାଇବାର ପାଇଲେ, କିନ୍ତୁ ସେଥିକୁ ଭ୍ରୂକ୍ଷେପ ନ କରି ନିଜେ ଯାହା ଠିକ ବୋଲି ବିଚାରିଲେ ତାହା କରିଗଲେ, ନିଜର ସରକାର ତାଙ୍କ କାର୍ଯ୍ୟକୁ ଅପସନ୍ଦ କରିବେ ବୋଲି ଜାଣି ସୁଦ୍ଧା, ସରକାରଙ୍କ ମନକୁ କାମ ନ ପାଇବା ଫଳରେ ମୃତ୍ୟୁଦଣ୍ଡ ହୋଇ ପାରେ ଏହା ଜାଣି ସୁଦ୍ଧା କର୍ତ୍ତବ୍ୟ ହୋଇଗଲା, ସରକାର ବି ନିଜର ଭୁଲ ବୁଝିପାରିଲେ । ସେନାପତିଙ୍କୁ ଦଣ୍ଡ ଦେବା ପରିବର୍ତ୍ତେ ପୁରସ୍କୃତ କଲେ । ମୋ ନିଜ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାରେ ଏ ଗପଟି ବଡ଼ ସହାୟ ହେବ । ଭଗବାନ ଅନୁଗ୍ରହ କରି ହଠାତ୍ ଏ ଗପଟି ମୋ ଆଖି ଆଗରେ ପକାଇ ଦେଲେ । (୮ । ୨ । ୫୫)

### ମାଲେନ୍‌କୋଭଙ୍କ ଇସ୍ତଫା

ରୁଷ୍‌ର ପ୍ରଧାନ ଶାସକ ମାଲେନ୍‌କୋଭ ନିଜ ପଦରୁ ଇସ୍ତଫା ଦେଲେ, ଅର୍ଥାତ୍ ତଡ଼ା ହେଲେ । ଇସ୍ତଫା ପତ୍ରରେ ସେ ଲେଖିଛନ୍ତି ଯେ ରୁଷର ଚାଷର ଉନ୍ନତି ସମ୍ପର୍କରେ ସେ ଯାହା କରିବାର କଥା ତାହା କରିପାରି ନାହାନ୍ତି, ନିଜର ଅଯୋଗ୍ୟତା ଯୋଗୁଁ ।

ତେଣୁ ସେ ଇସ୍ତଫା ଦେଉଛନ୍ତି । ଆଉ ଅଛି—ମନ୍ତ୍ରୀମଣ୍ଡଳରେ ଐକ୍ୟ ସୁଦୃଢ଼ କରିବାକୁ ସେ ଇସ୍ତଫା ଦେଉଛନ୍ତି । ପୁଣି କହୁଛନ୍ତି, ଯେ ଅନ୍ୟ ଯେଉଁ କାର୍ଯ୍ୟ କରିବାକୁ ଯୋଗ୍ୟ ବିବେଚିତ ହେବେ ତାହା ସେ ନିଷ୍ଠାର ସହିତ କରିବାକୁ ପ୍ରସ୍ତୁତ ଅଛନ୍ତି । ରୁଷିଆ ବିଷୟ ସାଧାରଣତଃ ଯେତେ ଜଣାଯାଏ, ସେଥିରୁ ଏହି ଇସ୍ତଫାର ଅର୍ଥ ବୁଝିବା ମୁସ୍କିଲ । ଇସ୍ତଫା ପତ୍ରରେ ଯାହା ଲେଖା ହୋଇଛି ତାହାର ଅର୍ଥ କରିବା ସହଜ ନୁହେଁ । ମାଲେନକୋଭ ସାଧୁ ଭାବରେ ନିଜର ଅଯୋଗ୍ୟତା ପ୍ରକାଶ କରିଛନ୍ତି ନା ସହକର୍ମୀଙ୍କ ଭୟରେ ଏପରି ଲେଖିଛନ୍ତି ; ଏପରି ଲେଖିବା ଫଳରେ ସେ ମୃତ୍ୟୁରୁ ରକ୍ଷା ପାଇବେ, ନା ମୃତ୍ୟୁ ତାଙ୍କ ନିକଟବର୍ତ୍ତୀ ହେବ ତାହା ସମୟରେ ଜଣା ପଡ଼ିବ—ଅନୁମାନରେ ସିଦ୍ଧ କରିବା ଅସମ୍ଭବ । ରୁଷିଆରେ ଗତ ବର୍ଷେ ହେଲା ଯାହା ଘଟୁଛି ସେଥିରେ କମ୍ୟୁନିଜମ୍‌ର ପ୍ରକୃତ ସ୍ୱରୂପ ଦାଣ୍ଡରେ ପଡ଼ିବା ସାର ହେଉଛି ମାତ୍ର ।

ସନ୍ଧ୍ୟାବେଳେ ବାନାମ୍ବୁର ପେଟକୁ ମାଇଲି । ମୋ ସଙ୍ଗେ ହରେକୃଷ୍ଣ ଓ ଟୁନୁ ମିଶି ସେପେଇ କଲେ । ଖାଇବାକୁ ଭାରି ସୁଖ ହେଲା । ନିରଳସ ଭାବେ ପୁଅ ଯେପରି କାମ କରୁଛି ତାହା ଦେଖି ବଡ଼ ସନ୍ତୋଷ ଲାଗିଲା । କାଲିର ମାଡ଼କୁ ସେ ଖରାପ ଭାବରେ ଗ୍ରହଣ କରି ନାହିଁ ବୋଲି ଜାଣିଲି । (୯ । ୨ । ୧୯୫୫)

## କୃଷି ପ୍ରଦର୍ଶନୀ

ଆଜି ଦିନଟି ତମାମ ବଡ଼ ଆନନ୍ଦରେ କଟିଲା । ସକାଳେ ଅଫିସରେ ଯାଇ ବସିଛି, ଅତି ବିନୀତ ଭାବରେ କୈଳାଶ ଚନ୍ଦ୍ର ସିଂହ ଆସି ଜଣାଇଲା, ସେ ହାଇଦ୍ରାବାଦ ଲଟେରିରୁ ୧୦ ହଜାର ଟଙ୍କା ପାଇଛି । ତା' ଢଙ୍ଗ ଦେଖି ବଡ଼ ଆନନ୍ଦ ଲାଗିଲା । ଅନ୍ୟ ଲୋକଙ୍କର ମୁଣ୍ଡ ବିଗିଡ଼ି ଯାଏ । ସେ ପୁଣି ଜଣାଇଲା ତା'ର ଇଚ୍ଛା ଏ ଟଙ୍କାରୁ କେତେକାଂଶ ସାଧାରଣ କାର୍ଯ୍ୟରେ ଲଗାଇବ । ମୋତେ କୈଳାଶର ସୌଭାଗ୍ୟରେ ଏତେ ଆନନ୍ଦ ଲାଗିଲା ଯେ ମୁଁ ଘଣ୍ଟେ କାଳ ସେଇ ବିଷୟରେ ଦପ୍ତର ଅଫିସ କର୍ମଚାରୀଙ୍କ ସହିତ ଖୁବ୍ ଗପ ଚଳାଇଲି । ସଦାନନ୍ଦ ମଧ୍ୟ ଏକହଜାର ଟଙ୍କା ପାଇଛି । କିନ୍ତୁ ତାର ଢଙ୍ଗ ନିଆରା ।

ଉପର ଓଳି କଟକ ଗଲି, କୃଷି ବିଭାଗ ପକ୍ଷରୁ ଯେଉଁ ପ୍ରଦର୍ଶନୀ ହୋଇଛି ତାହା ଦେଖିବାକୁ । ଆମ ଆବାଦୀ ପ୍ରଦର୍ଶନୀର ବହୁତ ଗୁଡ଼ିଏ କଥା କୃଷି ବିଭାଗ ବାଲା ଅନୁକରଣ କରିଛନ୍ତି । ଅନୁକରଣ ପୂଜାର ଗୋଟିଏ ବିଶିଷ୍ଟ ରୂପ । ଲୋକ ସମ୍ପର୍କ ବିଭାଗର ଷ୍ଟଲ୍‌ଟି ସବୁଥିରୁ ଭଲ ହୋଇଛି । ମୁଁ ଯାଇ ପହଞ୍ଚିଲା ବେଳକୁ ବୀରବାବୁ ଜଜ୍ ସସ୍ତ୍ରୀକ ଆମର ଷ୍ଟଲ୍ ବୁଲି ଦେଖୁଥିଲେ । ଭଲ ହୋଇଛି ବୋଲି କହିଲେ । ଏ ଷ୍ଟଲ୍ ଅନେକ ଲୋକଙ୍କର ଭ୍ରାନ୍ତ ଧାରଣା ଦୂରକରିବ । ସରକାର କେତେ ଭଲ କାମ କରିଛି ତାହା ସେମାନେ ଦେଖି ବୁଝିବେ । ଯେଉଁମାନେ ସରକାର କିଛି କରୁ ନାହିଁ ବୋଲି କହୁଛନ୍ତି ସେମାନେ ଅଯଥା ସମାଲୋଚନା କରୁଛନ୍ତି । କାମ ହେଉଛି ; ଗତ ୭ ବର୍ଷରେ ଯାହା ହୋଇଛି ପୂର୍ବ ୭୦ ବର୍ଷରେ ହୋଇ ନ ଥିଲା । ମୋର ଏତିକି ଆପତ୍ତି, ଯେତେ ହୋଇ ପାରନ୍ତା ସେତେ ହୋଇ ପାରୁନାହିଁ ।

ଖାଲି କାମ ହେଉଛି କିନ୍ତୁ ଲୋକ କଲ୍ପତରୁ ମୂଳେ ବସି ନିତ୍ୟ ଉପବାସୀ । ମୋଟାମୋଟି ସମାଲୋଚନା କରିବାରୁ ସମାଲୋଚନାର ମୂଲ୍ୟ ରହୁନାହିଁ । ମନ୍ତ୍ରୀମାନଙ୍କର ଚେତନା ନ ଆସି ରାଗ ଆସୁଛି । ରାଷ୍ଟ୍ରଭାଷା ପ୍ରସଙ୍ଗରେ ଇତି ମଧ୍ୟରେ ହୋଇଥିବା ଉନ୍ନତି ଦେଖି ଭାରି ଖୁସି ଲାଗିଲା । ସେଠାରୁ ଶ୍ୟାମ ମିଶ୍ରଙ୍କ ପାଖକୁ ଗଲି । ବିଚରା ବହୁତ ଦିନ ହେଲା ପଡ଼ି ରହିଛି । କବିରାଜି ଆଉକୁ ଟିକିଏ ମନ ଚଳାଇଲଣି । ଫେରନ୍ତା ବାଟରେ ଦୁଇ ଝିଅଙ୍କୁ ଦେଖି ଆସିଲି ।

(୧୪ । ୨ । ୧୯୫୫)

## ରାଧାନାଥଙ୍କ ଭାଷଣ ଅନୁବାଦ

ପୁଣି କଟକ ଗଲି ରାତି ୧୨ଟାରେ । ସକାଳୁ ରାଇନା ଆସିଲେ । ସେ କାଲି ରାତିରେ ଆସି ଭୁବନେଶ୍ୱର ଷ୍ଟେସନରେ ଶୋଇଥିଲେ । ସେ ଭାରି ବିବ୍ରତ ଦେଖାଯାଉଥାନ୍ତି । ତାଙ୍କଠାରୁ ଶୁଣିଲି, ଆନନ୍ଦ ଗାଁରେ ପ୍ରଚାର କରି ଦେଇଛି ଯେ ମୋତେ ମାରି ଦେବାକୁ କମ୍ୟୁନିଷ୍ଟମାନେ ଷଡ଼ଯନ୍ତ୍ର କରିଛନ୍ତି ଓ ଶନିବାର ରବିବାରରେ ବାଟରେ ଜଗୁଛନ୍ତି । ଘରେ ସମସ୍ତେ ଭାରି ଆତଙ୍କିତ ହୋଇଛନ୍ତି । ରାଇନା ମୋତେ ବହୁତ ବୁଝାଇଲେ, କିଛିଦିନ ଗାଁକୁ ନ ଯିବାକୁ । ତାହାହେଲେ ଶଶୀ ବୋଉର ବି ସେଇ ଇଚ୍ଛା । ସେ ପକ୍ଷେ ଏକୁଟିଆ ଘାଣ୍ଟିହେବ, ଡର ଭୟରେ ଦିନ ଯିବ, ମୁଁ କମିତି ଭୁବନେଶ୍ୱରରେ ନିରାପଦରେ ରହେ । ଶୁଣି ହସ ମାଡ଼ିଲା । ରାଇନାଙ୍କୁ ସାଙ୍ଗରେ ଧରି କଟକ ଗଲି । ସେ ଚନ୍ଦ୍ର ବସା ହୋଇ ସନ୍ଧ୍ୟାକୁ ଫେରିଲେ । ତା'ପରେ କମ୍ୟୁନିଷ୍ଟ ଆଲୋଚନା ଲାଗିଲା । ବହୁ ଚେଷ୍ଟା କରି ତାଙ୍କ ମନରେ ଟିକିଏ ବଳ ଓ ସାହସ ଆଣାଇଲି । ସେ ସବୁବେଳେ ଭାରି ଲୋଭୀ ; କିନ୍ତୁ ତେଜିଦେଲେ ଖୁବ୍ ସାହସ ଦେଖାନ୍ତି । ଥରେ ତାଙ୍କୁ ତେଜି ଦେଇଥିବାରୁ ବିଶ୍ୱେଶ୍ୱର ପଟ୍ଟନାୟକଙ୍କ ପେଣ୍ଟ ତାଙ୍କର ନିଜ ଉପରକୁ ପଡ଼ିଲା । ଲୋକଙ୍କୁ ମତାଇ ଦେବାର ବିଚିତ୍ର କ୍ଷମତା ତାଙ୍କର ଅଛି ; ଲୋକଙ୍କ ମନ ନେଇ ନୁହେଁ, ନ୍ୟାୟ କରିବାକୁ ଲୋକଙ୍କର ପ୍ରବୃତ୍ତିକୁ ଜାଗ୍ରତ କରି ।

ଆଜି କଟକରୁ ଗାଁକୁ ଆସିବାକୁ ବିଚାରିଥିଲି, କିନ୍ତୁ ରାଧାନାଥ ବାବୁଙ୍କ ଭାଷଣର ତର୍ଜମା ଶେଷ କରୁ କରୁ ରାତି ଦୁଇଟା ହୋଇ ଗଲା । ତାଙ୍କ ବସା ଓ ଅଫିସରେ ଡାକି ଡାକି ୨୫ ଖଣ୍ଡ ବହି ତାଙ୍କ ପାଖରେ ଦେଇ ଭୁବନେଶ୍ୱରକୁ ରାତି ୩ଟାରେ ଫେରିଲି । ମନ ବଡ଼ ଉଦ୍ବେଗ ଲାଗିଲା । ଭବିଷ୍ୟତରେ ଆଉ ଏ ମହାଶୟଙ୍କ ଇଂରେଜୀରୁ ଓଡ଼ିଆ କରିବାକୁ ହେବ ନାହିଁ, ଏହା ବିଚାରି ମନକୁ ଆଶ୍ୱାସନା ଦେଲି । କିନ୍ତୁ ରାଧାନାଥ ବାବୁଙ୍କୁ ବିଦାୟ ସମ୍ଭାଷଣ ଜଣାଇବା ସକାଶେ ତାଙ୍କ ଇଂରେଜୀ ଭାଷଣରେ ଭୁଲ ସଂଶୋଧନ କରି ତାଙ୍କୁ ଦେଖାଇ ଦେବି ।

(୨୪ । ୨ । ୧୯୫୫)

## ଆମ ଗଣତନ୍ତ୍ରରେ ଜନସ୍ୱାର୍ଥ ଚିନ୍ତା ନାହିଁ

ଆସେମ୍ବ୍ଲିକୁ ଯିବି କି ନାହିଁ ଭାବୁଥିଲି, ରାଇନା ଓ ଟୁନୁକୁ ଆସେମ୍ବ୍ଲି ନିଶା ଧରିଛି । ଚାଲିଗଲେ ତ ଗଲି । ସେଣ୍ଟ୍ରାଲ୍ ଷ୍ଟେସନଠାରୁ ଆସେମ୍ବ୍ଲିରେ ମୋ'ର ବି ମନ ଧରିଗଲା । ବିରୋଧୀ ଦଳ

ଯେଉଁ ବିଷୟ ଜାଣିବାକୁ ଚାହୁଁଛନ୍ତି ତାହା ଜଣାଇ ନ ଦେବାକୁ ସରକାରଙ୍କର କି ଉଦ୍‌ବେଗ ! ଲୋକ ସ୍ୱାଭିତରେ ଗାଧୋଇ ଗଲେ । ଜିଦାଜିଦ୍ ଓ ଖୋଲାଖୋଲିରେ ଗଣତନ୍ତ୍ର ଚାଲିଛି ! ସବୁଠାରୁ ବେଶୀ ମଉଜ ହେଲା ରାଧାନାଥ ବାବୁଙ୍କ ବଜେଟ ଭାଷଣର ଉପୋଦ୍‌ଘାତ । କମିତି ଟିକିଏ ଇଂରେଜୀରେ ପଢ଼ିବାକୁ ସୁଯୋଗ ପା'ନ୍ତେ ! ମଣିଷ ଯାହା କରିପାରନ୍ତା ତାହା କଲେ । ଗୋଳମାଳ ହେଲେ, ଓଡ଼ିଆ ଭାଷଣରେ ବହୁତ ଭୁଲ ଅଛି ବୋଲି ମିଛ କହିଲେ, ସଭାପତିଙ୍କ ହାତକୁ ଭିଡ଼ି ଧରିଲେ ; କିନ୍ତୁ ସାଧାରଣଙ୍କ ମତ ତାଙ୍କ ବିରୁଦ୍ଧରେ ଗଲା । ପଣ୍ଡିତ ନୀଳକଣ୍ଠ ବଡ଼ ସୁନ୍ଦର କଥାଟିଏ କହିଲେ—ଅର୍ଥମନ୍ତ୍ରୀ କ'ଣ ତାଙ୍କ ଲିଖିତ ବା ଅପର କାହା ଲିଖିତ ପୁସ୍ତକ ଖଣ୍ଡିଏ ଏଠାରେ ପ୍ରଚାର କରିବାକୁ ବସିଛନ୍ତି କି ? ସେ ତ ଭାଷଣ ଦେବେ ଆମେ ତ ଶୁଣିବୁ, ଏଥିରେ ଛପା ଭୁଲ କୁଆଡ଼ୁ ଆସିଲା ! ରାଧାନାଥ ବାବୁଙ୍କର ମନ ଏତେ ମରିଯାଇଥିଲା ଯେ, ପଣ୍ଡିତ ନୀଳକଣ୍ଠଙ୍କର ଏ କଥାଟିର ମର୍ମ ବୁଝିଲେ ନାହିଁ । ଓଡ଼ିଆ ଭାଷଣଟି ପଢ଼ିଲେ । ସାମାନ୍ୟ କେତେ ଜାଗା ଭୁଲ ଛାଡ଼ିଦେଲେ ଆଉ ଭୁଲ ନ ଥିଲା ବୋଲି ସମସ୍ତେ ମାନିଲେ ।

ସନ୍ଧ୍ୟାରେ ପାରଳା ଅଭିମୁଖେ ବାହାରିଲୁ । ଖୋର୍ଦ୍ଧା ବଜାରରେ ସଉଦା ଓ ବକ୍ତୃତା କରି ହରିଭାଇନାଙ୍କ ଭୟ ଛଡ଼ାଇଲି । ଗାଁରେ ଶଣୀ ବୋଉର ଭୟ ଛାଡ଼ିଲା ବୋଧହୁଏ । ରାୟଗଡ଼ାରେ ଯାଇ ପହଞ୍ଚିଲା ବେଳକୁ ପାହାନ୍ତିଆ ଚାରିଟା । ଆଖି ବୁଜି ଅନ୍ଧାର କରି ଦେଲି ।

## ଲୁଗା ଓ ଲଙ୍ଗଳା ସ୍ତ୍ରୀ

ଦିନଟି ବଡ଼ ଆନନ୍ଦରେ କଟିଲା । ଆଜି ଅଭିଭାବକ ଦିବସ । ଏଇ ଆଶ୍ରମରେ ଅଭିଭାବକ ଦିବସର କଳ୍ପନା ମୋ ମନକୁ ଆସିଥିଲା । ଆଶ୍ରମ ସ୍କୁଲରୁ ଶିଳ୍ପ ଶିକ୍ଷା ବାହାରର କୌଣସି କୌଣସି ସ୍କୁଲରେ ଅଭିଭାବକ ଦିବସ ଆରମ୍ଭ ହୋଇଛି, କିନ୍ତୁ ଉଦ୍ଦେଶ୍ୟ ଠିକ୍ ରହୁ ନାହିଁ । ସେ ଦିନ ନିମାପଡ଼ାରେ ନୂଆ ଘର ପାଇଁ ଚାନ୍ଦା ଅସୁଲ କରିବା ଅଭିଭାବକ ଦିବସର ପ୍ରଧାନ କାର୍ଯ୍ୟକ୍ରମ ଥିଲା । ଆଜି ଅଭିଭାବକ ଦିବସରେ ମୁଁ ଦେଢ଼ ଘଣ୍ଟା ବ୍ୟାପୀ ଯେଉଁ ବକ୍ତୃତା ଦେଲି ତାହା ଅଭିଭାବକ ଓ ଅଭିଭାବିକାମାନଙ୍କର ଖୁବ୍ ମନକୁ ପାଇଲା । ଅଭିଭାବକ ଅଭିଭାବିକାମାନଙ୍କୁ କିଛି ପୁରସ୍କାର ମିଳିଲା ।

ରାୟଗଡ଼ା ହାଟରେ ସବୁବେଳେ ବହୁତ ଲଙ୍ଗଳା ସ୍ତ୍ରୀ ଲୋକ ଦେଖେଁ । ଏଥର ମନ୍ତ୍ରୀଙ୍କ କହି ଦୁଇଶହ ଟଙ୍କା ନେଇଥିଲି । ସେଇ ଟଙ୍କାରେ ସମସ୍ତଙ୍କୁ ଲୁଗା ଦେବି ବୋଲି ବିଚାରିଥିଲି । ଆଶା କରିଥିଲି ଆଜି ହାଟରେ ଲଙ୍ଗଳା ମାଇକିନିଆ କେହି ରହିବେ ନାହିଁ । ଲୁଗା ବଣ୍ଟା ଆରମ୍ଭ ହେଲା । ହେଉ ହେଉ ପ୍ରାୟ ୪ଶହ ଟଙ୍କାର ଲୁଗା ବଣ୍ଟା ହେଲା । ସମସ୍ତଙ୍କ ମୁହଁରେ ଯେଉଁ ଆନନ୍ଦ ଖେଳିଗଲା ସେଥିରେ ମୁଁ ସ୍ୱର୍ଗକୁ ହଠିଗଲା ପରି ମୋତେ ଲାଗିଲା । ମୋତେ ଜଣା ପଡ଼ିଲା, ସତେ ଯେପରି ଆଜି ମୋ ଜୀବନରେ ଗୋଟିଏ ନୂଆ ଅଧ୍ୟାୟ ଆରମ୍ଭ ହେଲା ।

ଉନିଗଜ କନା ପାଇଲେ ଲୋକେ ଏତେ ଖୁସି ହେଉଛନ୍ତି, ତେବେ ଏତେ ଲୋଭ କାହିଁକି ? ନିତାନ୍ତ ଯେତିକି ପ୍ରୟୋଜନ ସେତିକିରେ ସନ୍ତୁଷ୍ଟ ରହିବା ଆମର ନୀତି ଥିଲା । ବର୍ତ୍ତମାନ ସରକାରମାନଙ୍କର ଆଇନ୍ ସବୁ ସେଇଆଡ଼କୁ ଟାଣୁଛନ୍ତି । ଠିକ୍ ପଥରେ ଏହା ହେଉ ନାହିଁ ବୋଲି ମୋର ଆପତ୍ତି ; କିନ୍ତୁ ଯେଉଁ ଆଇନ ସବୁ ହେଉଛି ତାହାର ବିଷୟବସ୍ତୁ ଉପରେ କୌଣସି ଆପତ୍ତି ନାହିଁ । ଦେଶର ଦରିଦ୍ରଙ୍କର ଅବସ୍ଥା ଉନ୍ନତ କରିବାକୁ ହେବ, ସେଥିପାଇଁ ଥିଲା ବାଲାକୁ ତଳକୁ ଆସିବାକୁ ପଡ଼ିବ । କିନ୍ତୁ ଆଇନ ଏପରି ତ୍ରୁଟି ବର୍ଜିତ କରିବାକୁ ହେବ ଯେପରି ସେଥିରେ ପ୍ରକୃତ ଉଦ୍ଦେଶ୍ୟଟା ସାଧିତ ହୋଇପାରିବ । ଆମର ଯେତେ ଆଇନ ହେଉଛି ସେଥିରୁ ଅଧିକାଂଶ ମୂଳରେ ଉଦ୍ଦେଶ୍ୟ ସାଧନର ସ୍ଥିରତା ନାହିଁ । (୨୭ । ୨ । ୫୫)

## ଇସ୍ତଫା ଚିନ୍ତା

ଆଜି ଅଫିସ କାମରେ ମନ ଲାଗିଲା ନାହିଁ । ସବୁବେଳେ ମନେ ହେଉଥାଏ ଇସ୍ତଫା ଆଜି ଲେଖି ପଠାଇ ଦେବି । ତିନିମାସ ଛୁଟି ନେଇ ଯାଇ ବାହାରୁ ଇସ୍ତଫା ପତ୍ର ପଠାଇ ଦେବାକୁ ବିଚାର ଥିଲା । ପୁଣି ଭାବି ଭାବି ଠିକ୍ କଲି, ଛୁଟି ନେବା ମୂଳରେ ଟଙ୍କାର ଲୋଭ ଅଛି । ଯିବା ପୂର୍ବରୁ ଅନ୍ତତଃ ତିନିମାସର ଦରମା ବାଏଁ ବାଏଁ ନେଇଯିବି । ଏହା ବଡ଼ ନୀଚ ଚିନ୍ତା ବୋଲି ମୋର ମନେ ହେଉଥାଏ । ସ୍ଥିର କଲି, ଯେତେବେଳେ ଯିବି ଏକାଥରକେ ଯିବି । ଛୁଟି ନେଇ ଗଲେ ଛୁଟି ଭିତରେ ତ ସ୍ୱାଧୀନ ଭାବରେ କିଛି କରି ପାରିବି ନାହିଁ । ତିନି ମାସ ଖାଲି ଲଫଙ୍ଗା ପରି କଟାଇଲା ପରେ ଆଉ କ'ଣ ବା କରିହେବ ! ଉପର ବେଳା ହେବାରୁ ଗାଁକୁ ଯିବା କଥା ଖାଲି ମନେ ପଡ଼ିଲା । ଶ୍ରଦ୍ଧାକର ବାବୁଙ୍କ ବିଷୟ ଭାବିଲାବେଳେ, ଗୋଦାବରୀଶ ବାବୁ ଟେଲିଫୋନ କରି ଜଣାଇ ଦେଲେ ଯେ ଆଜି ଶ୍ରଦ୍ଧାକର ବାବୁ ଯାଇ ପାରିବେ ନାହିଁ, କାଲି ଯିବେ । ମୁଁ ନିଜେ ଗଲି, ସାଙ୍ଗରେ ଗୋବିନ୍ଦ ମିଶ୍ର ବି ଗଲେ, ବହୁତ ଲୋକ ଆସି ଜମିଲେ । ଆଉ ଆତଙ୍କ ନାହିଁ, ଘଟଣା ବିଷୟରେ ଯେପରି ମତାମତ ପ୍ରକାଶ ହେଲା ସେଥିରୁ ପରିଷ୍କାର ଜାଣିଲି, ଆନନ୍ଦର ପେଷ କିଛି କାମରେ ଲାଗିନାହିଁ । ରାତିରେ ଗାଁରେ ରହିଲି । (୧ । ୩ । ୫୫)

## ଇସ୍ତଫା ପତ୍ର ଦାଖଲ କଲି

ଆଜି ସ୍ଥିର କଲି, ଆଜି ଇସ୍ତଫା ଦେବି । ଗତ ଅକ୍ଟୋବର ମାସରେ ଯେଉଁ ଇସ୍ତଫା ପତ୍ର ଲେଖିଥିଲି ତହିଁରେ ସାମାନ୍ୟ ପରିବର୍ତ୍ତନ କରି ଫେୟାର କଲି । ଆଗ ରଘୁନାଥ ବାବୁଙ୍କୁ ଦେଖାଇଲି । ସେ ତ ଏକା ବେଳେ ବିରୋଧ କଲେ । ଉପର ମନରେ ନା ନୁହେଁ, ଏ କଥା ଖୁବ୍ ଧ୍ୟାନ ଦେଇ ତାଙ୍କ ମୁହଁରେ ବାରୁଥାଏ । ତାଙ୍କ ମନ ସ୍ୱଚ୍ଛ ଥିଲା ପରି ମନେ ହେଲା । ସେ ବ୍ୟାସଙ୍କୁ ଖୋଜିଲେ । ବ୍ୟାସଜୀ ଟିକିଏ ଆପତ୍ତି କଲେ, କିନ୍ତୁ ଜିଦ୍ କଲେ ନାହିଁ । ରାମ ପ୍ରସାଦ ବାବୁ ତ ମୋ' କଥାରେ

ମୂଳରୁ ଖାଲି ହୋଇଥିଲେ । ଗଣନାଥ ବାବୁଙ୍କ ପରାମର୍ଶରେ ସୁଧୀର ବାବୁଙ୍କୁ ଡକା ହେଲା । ସେ ନ ଆଗ ଖୁବ ବିରୋଧ କଲେ, କିନ୍ତୁ ମୋର ଯୁକ୍ତିରେ ସେ ବି ହଁ ଭରିଲେ । ସନ୍ଧ୍ୟା ୫ଟାରେ ଇସ୍ତଫା ପତ୍ରରେ ଦସ୍ତଖତ କରି ଚିଫ୍ ସେକ୍ରେଟାରୀ, ନବବାବୁ, ସୁନାରାମ ବାବୁ ଓ ଅନୁପ ସିଂହଙ୍କ ପାଖକୁ ପଠାଇ ଦେଲି । ଯାହା ହେବ ହେଉ । ଯଦି ମୋତେ ରଖିବାକୁ ପ୍ରକୃତ ମନ ଥିବ, ତେବେ ସମସ୍ତେ କୁହା ପୋଛା କରି ଆଉ କିଛି ଦିନ ଅଟକାଇ ଦେବେ । ନାହିଁ ଯଦି ମୋତେ ବିଦା କରିବାକୁ ଭିତରେ ଭିତରେ ଇଚ୍ଛା କରୁଥିବେ ତେବେ ସହଜରେ ଗ୍ରହଣକରିଦେବେ । ଉଭୟ ପକ୍ଷ ମୋର ସପକ୍ଷ । ଗ୍ରହଣକଲେ ମୁଁ ନିଶ୍ଚିନ୍ତ ହେବି । ଯାହା ପୁଂଜିଏ ମିଳିବ ସେଥିରେ ସୁ'ସା ହୋଇ ଚଳିବି । ରଖିଲେ, ବି. ମୁଖର୍ଜିଙ୍କୁ ଜଣିବି ।

ବିଭୂତି ତ୍ରିପାଠୀ ଗୋପୀକୃଷ୍ଣ ଦାସଙ୍କ ସଙ୍ଗରେ ଆସି ମୋର କାର୍ଯ୍ୟ ଠିକ ହେଲା ନାହିଁ ବୋଲି କହିଲେ । ତାଙ୍କ ଦୃଷ୍ଟିକୋଣରୁ ତାଙ୍କ ଚିନ୍ତା । ସରକାରୀ ଚାକିରି ଯେଉଁମାନେ କରୁଛନ୍ତି, ସେମାନେ ଇଜ୍ଜତ ବା କାମ ଉପରୁ ଦୃଷ୍ଟି କାଢ଼ିନେଇ ଖାଲି ଦରମା ଦିନ ଉପରେ ମନ ରଖି ଦେଇଛନ୍ତି । ରାତିରେ ଚନ୍ଦ୍ରମାଧବ ଘରକୁ ଖାଇବାକୁ ଗଲି । ଚନ୍ଦ୍ରମାଧବ ମୋ'ର ଜଣେ ଉପାସକ ହୋଇଯାଇଛି । (୩ । ୩ । ୫୫)

ସକାଳୁ ଆମ ମନ୍ତ୍ରୀ ଡକାଇଲେ । ମୁଁ ଇସ୍ତଫା ଦେବାକୁ ସେ ବିରୋଧ କଲେ । ଆଉ କିଛି ଦିନ ମୁଁ ରହେ ବୋଲି ତାଙ୍କର ଇଚ୍ଛା । ସେ ଗୋଟିଏ ଭଲ କଥା କହିଲେ— "ଆପଣ ତ ବର୍ତ୍ତମାନ ଜଣେ ବ୍ୟକ୍ତି ନୁହନ୍ତି, ଆପଣ ଗୋଟିଏ ଅନୁଷ୍ଠାନ । ଆପଣ ଚାଲିଗଲେ ଡିପାର୍ଟମେଣ୍ଟର କ'ଣ ଅବସ୍ଥା ହେବ ତାହା ବୋଧହୁଏ ଆପଣ ଚିନ୍ତା କରିନାହାନ୍ତି ।" ମୁଁ ଏ ଦିଗଟି ବହୁତ ଚିନ୍ତା କରିଛି । ବ୍ୟାସଜୀ ଏ ବିଷୟ ଉଠାଇ ଥିଲେ । ମୁଁ ତାଙ୍କୁ ବୁଝାଇଲି, ବର୍ତ୍ତମାନ ଆମେ ଯେଉଁ ଅବସ୍ଥାକୁ ଆସିଲେଣି ସେଥିରେ ମୁଁ ଚାଲିଯିବାଦ୍ୱାରା ଡିପାର୍ଟମେଣ୍ଟର ବିଶେଷ କିଛି କ୍ଷତି ବୃଦ୍ଧି ହେବନାହିଁ । ଡିପାର୍ଟମେଣ୍ଟ ଆଉ କେହି ଉଠାଇ ଦେଇ ପାରିବେ ନାହିଁ । ଗତାନୁଗତିକ କାମ ଚାଲିବ, ମୁଁ ରହିଲେ ଆଉ ଅଧିକ କରି ପାରିବାର ଆଶା ଖୁବ କମ । ତାଙ୍କ ମନ ବୁଝିଲା ନାହିଁ, ପୁଣି ଥରେ ଆଲୋଚନା ହେବାକୁ ବାକି ରହିଲା ।

(୧୧ । ୩ । ୫୫)

କାଲି ଦି'ପହରେ ମୁଖ୍ୟମନ୍ତ୍ରୀ ଆସେମ୍ବ୍ଲିରୁ ଖଣ୍ଡିଏ ଚିଠି ମୋ ପାଖକୁ ପଠାଇଲେ —ବ୍ରହ୍ମପୁରରେ ନିଖିଳ ଭାରତ କଂଗ୍ରେସ କମିଟିର ଯେଉଁ ବୈଠକ ବସୁଛି ତଦୁପଲକ୍ଷ୍ୟେ ଗୋଟିଏ ଭଲ ଧରଣର ପ୍ରଦର୍ଶନୀ ଯୋଗାଡ଼ କରିବାକୁ । ତାଙ୍କ ସଙ୍ଗେ ଯାଇ ଏ ବିଷୟରେ ଆଲୋଚନା କରିବାକୁ ଲେଖିଥିଲେ । କାଲି ଦିନରେ ତାଙ୍କର ସମୟ ହେଲା ନାହିଁ, ଅର୍ଥାତ୍ ତାଙ୍କ ସମୟ ବେଳେ ମୁଁ ଯାଇ ତାଙ୍କୁ ଧରି ପାରିଲି ନାହିଁ । ଆଜି ସକାଳୁ ରବିବାର ଥିଲା । ସେ ସକାଳୁ ବାରବାଟି ଚାଲିଗଲେ ବିନୋବାଙ୍କୁ ଦେଖିବାକୁ, ଦି'ପହରେ ଫେରିଲେ । ପ୍ରାୟ ୩ଟା ବେଳେ ସୁଧୀର ବାବୁ ଟେଲିଫୋନ କଲେ, ଆସେମ୍ବ୍ଲି କମିଟି ରୁମ୍‌ରେ ମୁଖ୍ୟମନ୍ତ୍ରୀଙ୍କୁ ଯାଇ ଦେଖା କରିବାକୁ । କଂଗ୍ରେସ ଦଳର କାରପଟଦାର ପାଞ୍ଚ ଛ' ଜଣ ଥିଲେ । ପ୍ରସ୍ତାବ ହେଲା

କଂଗ୍ରେସ ବାଲା ପ୍ରଦର୍ଶନୀର ସବୁ ଯୋଗାଡ଼ କରିବେ । ଆମେ ବିଭିନ୍ନ ବିଷୟର ପ୍ରଦର୍ଶନୀ ବସ୍ତୁ ଯୋଗାଇବୁ ଓ ପ୍ରଦର୍ଶନୀ ପଡ଼ିଆକୁ ସଜାଇବୁ । ମୁଁ ଏଥିରୁ ଅଧିକ କରିବାକୁ ଇଚ୍ଛୁକ ଥିଲି । କିନ୍ତୁ ଷ୍ଟଲ ଭଡ଼ା ବାବଦରେ କିଛି ଟଙ୍କା ପାଇବାକୁ କଂଗ୍ରେସ ବାଲା ବ୍ୟାକୁଳ ଥିବାରୁ ଏଥିର ପୂର୍ଣ୍ଣ କର୍ତ୍ତୃତ୍ୱ ଆମକୁ ଦେବା ସକାଶ ସେମାନେ ପ୍ରସ୍ତୁତ ନ ଥିବାରୁ ମୁଁ ବିଶେଷ କିଛି କହିଲି ନାହିଁ । ଯେତିକି କାମ ସେ ଆମକୁ ଦେବାକୁ ରାଜି ସେତିକି ଯେପରି ଭଲଭାବେ ହୋଇପାରିବ ତାହାର ଯୋଗାଡ଼ ଆରମ୍ଭ କଲି ।

ସଂଧ୍ୟାରେ ହରିବନ୍ଧୁ ବାବୁଙ୍କ ଘରକୁ ଗଲି । ସେ ନିମନ୍ତ୍ରଣ କରିଥିଲେ । ତାଙ୍କ ସଙ୍ଗେ କଥା ବାର୍ତ୍ତା ହେଉଛି ପ୍ରାଣନାଥ ବାବୁ ଆସି ପହଞ୍ଚିଲେ । ସେ ଗ୍ରାମପଞ୍ଚାୟତ ଡିରେକ୍ଟର ହୋଇ ଭୁବନେଶ୍ୱର ଆସୁଛନ୍ତି—ହରିବନ୍ଧୁ ବାବୁଙ୍କ ପଡ଼ିଶା ଘର ହୋଇ ରହିବେ । ହରିବନ୍ଧୁ ବାବୁ ମୋ ପଡ଼ିଶା । ଦରକାର କଥା ପଡ଼ିଲା । ଦୁହେଁଯାକ ନବ ଚୌଧୁରୀଙ୍କ ଉପରେ ଖୁବ ଚିଡ଼ିଛନ୍ତି । ପ୍ରାଣନାଥ ବାବୁ ଶାସନ ବିଷୟରେ ବିଶେଷ ଜ୍ଞାନ ଅର୍ଜନ କରିବାକୁ ବିଲାତ ଯାଇଥିଲେ । ଗଲାବେଳେ ଆଡ଼ିସନାଲ ସେକ୍ରେଟେରୀ ଥିଲେ । ଫେରି ତହିଁରୁ ତଳ ପାହ୍ୟା, ଜଏଣ୍ଟ ସେକ୍ରେଟେରୀ ପଦ ପାଇଛନ୍ତି । ସେଥିଯୋଗୁଁ ସେ ଖୁବ ନାରାଜ । ମୁଁ ଛାଡ଼ି ଯିବା କଥା ପଡ଼ିଲା । ମୋ'ର ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ ଗୋଟିଏ ଉନ୍ନତ ଚିତ୍ର ଡାକ୍ତି ଦେଲି । ଶୁଣିଲି, ନୀଳମଣି ସେନାପତି କହୁଥିଲେ ମୁଁ ସ୍ୱିକରି ଛାଡ଼ି ଠିକ କରିଛି । (୧୨ । ୩ । ୫୫)

ଆଜି ସକାଳୁ ନିତ୍ୟକର୍ମ ସାରି ଶୋଇବା ଘରେ ରହିଲି, ବିଶ୍ରାମ କରିବାକୁ ଓ ନିଜେ ଟିକିଏ ପଢ଼ା ପଢ଼ି କରିବାକୁ । କିନ୍ତୁ ନିରବଚ୍ଛିନ୍ନ ଶାନ୍ତି ମିଳିଲା ନାହିଁ । ଶ୍ରୀ ବଂଶୀଧର ମହାନ୍ତି ବୋଲି ରେଭେନ୍‌ସା କଲେଜର ଜଣେ ଅଧ୍ୟାପକ ନିଜେ ଲେଖିଥିବା ଆଦିବାସୀ-ମାନଙ୍କ ବିଷୟରେ ଖଣ୍ଡିଏ ପୁସ୍ତକର ପାଣ୍ଡୁଲିପି ମୋତେ ପଢ଼ିବାକୁ ଦେଇଥିଲେ । ପଢ଼ି ଦେଖିଥିଲି, ଆଦିବାସୀମାନଙ୍କ ବିଷୟରେ ଯେଉଁ ଅଦ୍ଭୁତ ଧାରଣା ଇଂରେଜ ଲେଖକ-ମାନେ ପ୍ରଚାର କରିଛନ୍ତି ବଂଶୀଧର ବାବୁ ମୋଟାମୋଟି ସେଇଥିରେ ବିଶ୍ୱାସୀ । ଆଜି ତାଙ୍କ ସଙ୍ଗେ ଆଦିବାସୀମାନଙ୍କ ବିଷୟରେ ଆଲୋଚନା କଲି । ଆଦିବାସୀଙ୍କର ସ୍ୱତନ୍ତ୍ର ସଂସ୍କୃତି ଓ ସେମାନେ ଆମଠାରୁ ଅଲଗା ଲୋକ—ଶାସ୍ତ୍ରରେ ବା ଚଳଣିରେ ଏହାର ପ୍ରମାଣ ନେଇ ବୁଝି ବୁଝାଇଲି । ବଂଶୀଧର ବାବୁ ଏହା ବୁଝିଲେ ବୋଲି ମନେହେଲା । ଏ ବିଷୟରେ ଯେଉଁ ଆଲୋଚନା ହେଲା, ତଦନୁସାରେ ପାଣ୍ଡୁଲିପିକୁ ମାର୍ଜିତ କରିବାକୁ ସେ ପ୍ରତିଶ୍ରୁତ ହେଲେ ।

ଆଜି ହାଟଆଡ଼େ ବୁଲି ଯାଇଥିଲି । ସମସ୍ତଙ୍କ ମୁହଁରେ ପ୍ରଶ୍ନବାଚକ ଚିହ୍ନ । ମୁଁ ସ୍ୱିକରି ଛାଡ଼ୁଛି ନା ନାହିଁ ? ଯଦି ଛାଡ଼ୁଛି କାହିଁକି ଛାଡ଼ୁଛି ? କେତେକ ବଡ଼ ବିନୀତ ଭାବେ ଏ ବିଷୟରେ ଓ ଅନ୍ୟ ବିଷୟରେ ପଦେ ପଦେ ପଚାରିଲେ ।

ସଂଧ୍ୟାରେ ଭାଇନା ଆସିଲେ । ତାଙ୍କ ସଙ୍ଗେ ଅସ୍ପୃଶ୍ୟତା ବିଷୟରେ କେତେ ଆଲୋଚନା ହେଲା । ପୁରୀରେ ନଜିର ଦେଇ ଏ ବିଷୟର ଆଲୋଚନା ହେଲେ ଭାଇନାଙ୍କ ପରି ବ୍ରାହ୍ମଣ-ମାନେ ବୁଝିବେ । (୧୩ । ୩ । ୫୫)

## ବିନୋବାଙ୍କ ସମ୍ବନ୍ଧରେ ଯୋଗଦାନ

ଆଜ ଆଦିବାସୀ ବିଭାଗର ବଜେଟ୍‌ର ଆଲୋଚନା ବ୍ୟବସ୍ଥାସଭାରେ ହେବା ପାଇଁ ସ୍ଥିର ହୋଇଥିଲା । ମନ୍ତ୍ରୀ କହି ଦେଲେ ମୁଁ ସେଠାରେ ଉପସ୍ଥିତ ରହିବି । ମୋ'ର ନିଜର ଇଚ୍ଛା ଥିଲା, ଅଣ୍ଡର ସେକ୍ରେଟାରୀ ଯା'ନ୍ତୁ । ବାଧ୍ୟ ହୋଇ ଗଲି । ଅଫିସରମାନେ, ବିଶେଷକରି ସେକ୍ରେଟାରୀ-ମାନେ ବିଭାଗୀୟ ଆଲୋଚନା ବେଳେ ଆସେମ୍ବ୍ଲିରେ ଉପସ୍ଥିତ ହେବା ଉଚିତ ବିଧି ବି ଅଛି । ଆଜିକାଲି ଆମ ଏଠାରେ ସେ ବିଧିକୁ କେହି ମାନୁ ନାହାନ୍ତି । ମୁଁ ବିଧି ମାନିବାର ବେଶ୍ ଫଳ ପାଇଲି । ୧୨ଟା ଠାରୁ ୪ଟା ପର୍ଯ୍ୟନ୍ତ ଯେତେ ଜଣ ବକ୍ତୃତା ଦେଲେ, ସରକାରୀ ଓ ବିରୋଧୀ ସମସ୍ତେ ବିଭାଗକୁ ଓ ମୋତେ ଓ ମନ୍ତ୍ରୀଙ୍କୁ ସମାଲୋଚନା କଲେ । ବ୍ୟକ୍ତିଗତ ସମାଲୋଚନା ବେଳେ ବେଳେ ମାତ୍ରା ଟପି ଯାଉଥାଏ । ଯାହା ହେଉ ବିରୋଧୀ ଦଳର ନେତା ଖର୍ଚ୍ଚଦାବୀକୁ ଭୋଟକୁ ଦେଲେ ନାହିଁ । ଗୁଣ୍ଡ ବାଇଦରେ ଖର୍ଚ୍ଚ ପାସ ହୋଇଗଲା ।

ସାଢ଼େ ଚାରିଟାରେ ଭୈରବ ବାବୁଙ୍କ ସଙ୍ଗେ ଫୁଲନଖରା ଗଲି । ବିନୋବା ସେଇଠାରେ ଆଜ ବିଧା କରିଛନ୍ତି । ଆମେ ଯାଇ ପହଞ୍ଚିଲା ବେଳକୁ ବକ୍ତୃତା ଆରମ୍ଭ ହୋଇ ଥାଏ । ବକ୍ତୃତାରେ ମନକୁ ଆକୃଷ୍ଟ କଲାପରି କିଛି ନାହିଁ । ଯତେ ଯେପରି ପ୍ରାଇମେରୀ ପିଲାଙ୍କୁ କହିଲା ପରି କହୁଥାନ୍ତି । ସେ ଜଣେ ଭାରି ବଡ଼ ପଣ୍ଡିତ ବୋଲି ନବବାବୁଙ୍କଠାରୁ ଶୁଣିଥିଲି । ବକ୍ତୃତାରୁ ତାହା ଜଣାପଡ଼ିଲା ନାହିଁ । ସଭାରେ ସମସ୍ତେ ତୁନି ହୋଇ ଶୁଣିବା ବି ସମ୍ଭବ ହେଉନଥାଏ । ମଝିରେ ମଝିରେ ଲୋକେ ଗୋଳମାଳ କରୁଥାନ୍ତି, ଉଠିଯାଉଥାନ୍ତି । ନିଜର ବିହି ପାଇଁ ମଧ୍ୟ ବିନୋବା ନିଜ ମୁହଁରେ ଟିକିଏ କ୍ୟାନ୍‌ଭାସିଂ କଲେ । ସର୍ବୋଦୟର ଏଇ ନେତା, ଦେଶରେ ଅହିଂସା ବିପ୍ଳବ ଆଣିବେ ! ତାଙ୍କ କଥା ମୁଁ ଭଲ ବୁଝି ପାରୁନାହିଁ । କେହି ଭୂମିହୀନ ରହିବେ ନାହିଁ । ସେ ସମସ୍ତଙ୍କୁ ଜମି ଦିଆଇ ଦେବେ, ଏତେ ସମସ୍ତ ଭିତରେ ନିଶ୍ଚୟ ସଂଗ୍ରହ କରିବେ । ଏ କଥା ଗୁଡ଼ା ମୂଳରେ କୌଣସି ସଂସ୍କୃତି—ଭାରତୀୟ ବା ପାଶ୍ଚାତ୍ୟ—ଥିଲାପରି ମନେ ହେଉନାହିଁ । ଆଜ ହେମ କଟକରୁ ଆସିଲା । ରାତିରେ ତାକୁ ନେଇ ଗାଁକୁ ଗଲି । (୧୪ । ୩ । ୧୯୫୫)

## ବିନୋବାଙ୍କ ପାଇଁ ଦୁଧ

କୁଞ୍ଜ ବାବୁଙ୍କ ପୁଅ ରାମର ମନ ଘର ଧରିଛି । ଆଜ ପଠାଣି ପଟ୍ଟନାୟକଙ୍କୁ ସେ ସକାଳୁ ମୋ ପାଖକୁ ପଠାଇଲେ, ଜମିର ଟଙ୍କା ତାଙ୍କୁ ଦିଆଇ ଦେବା ପାଇଁ । ମୁଁ ସେଇ ପୁରୁଣା ସର୍ତ୍ତଟି ଦେଲି । ରୟତମାନେ ଯଦି ମଙ୍ଗିବେ ମୋତେ ଜମି ଛାଡ଼ ଦେବାକୁ ଚାଷ ପାଇଁ, ତେବେ ମୋର ଜମି କିଣିବାରେ କିଛି ଆପତ୍ତି ନାହିଁ । ରଇତମାନେ ସମସ୍ତଙ୍କ ଆଗରେ ଖୁସିରେ ଜମି ଛାଡ଼ି ଦେବାକୁ କହିଲେ, କିନ୍ତୁ ମୋର ମନେ ହେଲା ହୁଏତ ରଙ୍ଗଣୀ (ରଇତ) ମୁହଁମତରେ ହିଁ କରୁଛି । ଯାହା ହେଉ ଶୀଘ୍ର ଟଙ୍କା ଦେଇ ଦେବାକୁ ପ୍ରତିଶ୍ରୁତ ହୋଇଛି ।

ତା’ପରେ ଟିକିଏ ବିଶ୍ରାମ କରି ଓ ଖେଳ ୩ଟା ବେଳେ ଭୁବନେଶ୍ୱର ଫେରିଲି । ଇଚ୍ଛା ଥିଲା ହରିରାଜପୁର ମେଳଣ ବାଟେ ଫେରିବି । କିନ୍ତୁ ଭୁବନେଶ୍ୱରରେ ଲକ୍ଷ୍ମଣ ମିଶ୍ରଙ୍କ ପିଲା ଦଳ ପାଲା କରିବେ ବୋଲି ଆଗରୁ ସ୍ଥିର ହୋଇଥିବାରୁ ସିଧା ଭୁବନେଶ୍ୱର ଚାଲି ଆସିଲି । ପାଲା କିନ୍ତୁ ହୋଇ ପାରିଲା ନାହିଁ । ଆଜି ବିନୋବା ଭୁବନେଶ୍ୱରରେ । ପାଲା କାଲିକୁ ରହିଲା ।

ଆଜି ତ ଓଲି ଯାକ ଆମ ଘରୁ ବିନୋବାଙ୍କ ପାଇଁ ଦୁଧ ଗଲା । ସୁଧୀର ବାବୁ ଆଉ ଠାଏ ତ’ଠା ବି ଦୁଧ ବନ୍ଦୋବସ୍ତ କରିଥିଲେ । ବିନୋବାଙ୍କ ପାଇଁ ଦୁଧ ଯୋଗାଇବା ଗୋଟାଏ ବଡ ଗୁରୁ କର୍ତ୍ତବ୍ୟ ହୋଇଛି । ତାଙ୍କର ନିୟମ ଅଛି, ସେ ଯେଉଁଠାରେ ରହିବେ ସେଠାରେ ଦୁଇଟା ଗାଈ ଆଗରୁ ଅଣା ହୋଇ ବନ୍ଧା ହେବାର କଥା । ଆଗରେ ଗାଈ ବନ୍ଧା ନ ହେଲେ କେଜାଣି କେହି ଦୁଧରେ ପାଣି ମିଶାଇ ଦେବ ! ଲୋକ ଚରିତ୍ର ଉପରେ କି ଗଭୀର ବିଶ୍ୱାସ ! (୧୫ । ୩ । ୫୫)

## ପ୍ରଦର୍ଶନୀ ମନ୍ଦିର

ପ୍ରଚୁର ବିଭାଗର ପ୍ରଦର୍ଶନୀ ମନ୍ଦିର ଆସେମ୍ବ୍ଲି ମେମ୍ବରମାନଙ୍କୁ ଆଜି ଦେଖାଇବାର ବ୍ୟବସ୍ଥା ହୋଇଛି । ଷ୍ଟେଟ୍ ଗେଷ୍ଟ ହାଉସ ପକ୍ଷରୁ ଜଳଯୋଗର ବ୍ୟବସ୍ଥା ହୋଇଛି । ତା’ପରେ ଆୟୋଜନ ଦେଖିବାକୁ ଯାଇଥିଲି । ପ୍ରଦର୍ଶନୀ ଗୃହର ସାଜସଜ୍ଜା ବଡ଼ ସୁନ୍ଦର ଭାବରେ ହୋଇଛି । ରାଧାଶ୍ୟାମ ଦାସଙ୍କୁ ଏଥିପାଇଁ ସାବାସ୍ ଦେବାର କଥା । ୫ଟା ଠାରୁ ଆସେମ୍ବ୍ଲି ମେମ୍ବରମାନେ ଆସିବାକୁ ଆରମ୍ଭ କଲେ । ଅଧିକାଂଶଙ୍କର ମନ ଜଳଖିଆ ଉପରେ । କେବଳ ଦୁଇ ଚାରି ଜଣ ଭଲ କରି ସବୁ ଦେଖିଲେ । ଖୁବ୍ ଗରମରେ ରୁଦ୍ଧ ହୋଇ ବସି ମେମ୍ବରମାନେ ଏ ବର୍ଷ ଆମେ ତିଆରି କରିଥିବା ଚଳଚ୍ଚିତ୍ରଗୁଡ଼ିକୁ ଦେଖିଲେ । ସେଗୁଡ଼ିକ ଖୁବ୍ ଭଲ ହୋଇଛି ବୋଲି ଗୋଦାବରୀଶବାବୁ କହିଲେ । ନବବାବୁ ମାଛ ବିଷୟକ ଚିତ୍ର ଓ ଗ୍ରାମ୍ୟ ଆମୋଦ ପ୍ରମୋଦ ଚିତ୍ରକୁ ପହିଲା ଓ ଦ୍ୱିତୀୟ ନମ୍ବର ଦେଲେ । ମୋଟେ କିନ୍ତୁ ଜଣାଗଲା, ସେ ତାଙ୍କ ନିଜ ବିଷୟରେ ହୋଇଥିବା କୁମିଲାଳନ ବୃଦ୍ଧି ଫିଲ୍ମକୁ ଖୁବ୍ ପସନ୍ଦ କଲେ ।

ତା’ପରେ ଦାଣ୍ଡ ବରଣ୍ଡାରେ ଲକ୍ଷ୍ମଣ ମିଶ୍ରଙ୍କ ପିଲମାନେ ପାଲା କଲେ । ଅନେକଗୁଡିଏ ମେମ୍ବର ବଡ ଧୈର୍ଯ୍ୟ ସହକାରେ ପାଲା ଦେଖିଲେ । ଲକ୍ଷ୍ମଣ ମିଶ୍ରଙ୍କ ଲେଖା ସରସ କିନ୍ତୁ ତାଙ୍କ ବ୍ୟକ୍ତିଗତ ଚରିତ୍ରରେ କ’ଣ ଦୋଷ ଥିବାରୁ, କବିତାର ଉଚ୍ଚ ଚିନ୍ତା ପିଲାମାନଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରୁ ନାହିଁ । ପିଲାମାନେ ଚରିତ୍ରବଳର କୌଣସି ପରିଚୟ ଦେଉ ନାହାନ୍ତି । ମୋର ତ ଲକ୍ଷ୍ମଣ ମିଶ୍ରଙ୍କ ଚରିତ୍ର ବିଷୟରେ ସନ୍ଦେହ ହେଲା—ଯୌନ ଚରିତ୍ର ନୁହେଁ ; ମନରେ ଉଦାରତା ବଡ଼ କମ୍ । ପଇସା ପତ୍ର ବିଷୟରେ ବଡ଼ ଗଣ୍ଠିଆ । ଏପରି ଲୋକ ଅନ୍ୟକୁ ପ୍ରଭାବିତ କରିବ କିପରି ? (୧୬ । ୩ । ୧୯୫୫)

## ନେପାଳ ରାଜାଙ୍କ ମୃତ୍ୟୁ

ଆଜି ଭିତ୍ତୀକର୍ମ ସାରି ଶୁଣିଲି ନେପାଳ ରାଜାଙ୍କ ମୃତ୍ୟୁ ଉପଲକ୍ଷେ ଆଜି ଛୁଟି । ୧୫ ତାରିଖରେ ସେ ମଲେ । ତାଙ୍କ ସ୍ମୃତିରେ ସେଦିନ ପତାକା ଅର୍ଦ୍ଧ ଉତ୍ତୋଳିତ ଅବସ୍ଥାରେ ରଖା ହୋଇଥିଲା । ଆଜି ତା ସାଙ୍ଗକୁ ସବୁ ସ୍କୁଲ କଚେରୀ ଛୁଟି, କାହିଁକି ନା ଆଜି ତାଙ୍କର ଶବଦାହ ହେବ । ୧୪ ତାରିଖ ରାତି ଶେଷରେ ମରିଥିବା ଶବକୁ ଉଡ଼ାଜାହାଜରେ ୟୁରୋପରୁ ଆଣି ୩ଦିନ ପରେ ନେପାଳରେ ଦାହ କରିବା ଧର୍ମସମ୍ମତ ସାଧାରଣ ଲୋକଙ୍କ ପକ୍ଷରେ ନ ହୋଇ-ପାରେ, କିନ୍ତୁ ରାଜାଙ୍କ ଶବ ବାସି ରଖା ହେବାର ରୀତି ଆମର ଅଛି । ଏ ଯୁଗରେ ଶବ ନେ ଆଣ କରିବା ଦରକାର ପଡ଼ୁଛି, ଯାତାୟାତର ସୁବିଧା ଯୋଗୁଁ କିନ୍ତୁ ନେପାଳ ରାଜାଙ୍କ ପାଇଁ ଏତେ ମାନ୍ୟ ଭାରତ ସରକାର କାହିଁକି ଦେଖାଇବାର ବନ୍ଦୋବସ୍ତ କଲେ ତାହାର ମର୍ମ ବୁଝି ପାରିଲି ନାହିଁ ।

ନିତାନ୍ତ କରୁଣ ପଢ଼ିବା କେତେକ କାର୍ଯ୍ୟ ସାରି, ହରିରାଜପୁର ମେଳନ ଦେଖିବାକୁ ଗଲି । ଇଚ୍ଛା ଥିଲା ବଳଦ ଦଉଡ଼ର ବ୍ୟବସ୍ଥା କରି ଫିଲ୍ମ ନେବା । ସୁବିଧା ହେଲା ନାହିଁ । କେବଳ କେତେ ଗୁଡ଼ାଏ ବଳଦଙ୍କର ଫଟୋ ନିଆ ହେଲା । ମୋର ହରିରାଜପୁର ଯିବା ଏଇଥର ନୂଆ । ଶୁଣିଲି ଅନ୍ୟ ବର୍ଷମାନଙ୍କରେ ଏହାଠାରୁ ଭଲ ବଳଦ ଆସନ୍ତି । ଏଥର ଯାହା ଆସିଛନ୍ତି ମୋ ମନକୁ ପାଇଲା ନାହିଁ ।

ରାତିରେ ଲକ୍ଷ୍ମଣ ମିଶ୍ରଙ୍କ ପିଲାମାନେ ପାଲାର ଶହର ସାଲ୍ ଦେଖାଇଲେ ।

(୧୭ । ୩ । ୧୯୫୫)

## ବ୍ରହ୍ମପୁର କଂଗ୍ରେସ ପ୍ରଦର୍ଶନୀ

ଆଗାମୀ ମେ ମାସ ପ୍ରଥମ ପକ୍ଷରେ ବ୍ରହ୍ମପୁରଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଯେଉଁ ଅଧିବେଶନ ହେଉଛି, ତା'ର ଉପଲକ୍ଷରେ ଗୋଟିଏ ଭଲ ପ୍ରଦର୍ଶନୀ କରିବାକୁ ନବବାବୁଙ୍କର ମନ । ସେଥିରେ କେତେ ଖର୍ଚ୍ଚ ହେବ ଓ ବିଭିନ୍ନ ବିଭାଗମାନ କ'ଣ କ'ଣ କରିବେ ତାହାର ଆଲୋଚନା ପାଇଁ ସର୍ବୁ ବିଭାଗର କର୍ମକର୍ତ୍ତାମାନଙ୍କୁ ଡକାଇଥିଲି ଆଜି ଦିନଟାକୁ । ପ୍ରାୟ ସମସ୍ତେ ଆସିଥିଲେ । ସବୁ ବିଷୟ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚିତ ହେଲା । ପ୍ରାୟ ଦେଢ଼ ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ସେଥିରୁ ୫୦ ହଜାର ଟଙ୍କା ମିଳେ ନିଖିଳ ଭାରତ ଖଦି ବୋର୍ଡ଼ରୁ ପାଇଛନ୍ତି ଗୋଟିଏ ପ୍ରଦର୍ଶନୀ ସକାଶ ; ତାହାର ଏଥିରେ ମଞ୍ଜୁର କରିବାକୁ ହେବ । ଆଲୋଚନା ପରେ ସମସ୍ତଙ୍କୁ ପ୍ରଚାର ବିଭାଗ ପ୍ରଦର୍ଶନୀ ମନ୍ଦିରକୁ ନେଲି । ପ୍ରଚାର ପତ୍ରିକା ଚାର୍ଟ ପୋଷ୍ଟର୍ ଦେଖି ଓ ସିନେମା ଦେଖି ସମସ୍ତେ ଖୁସି ହେଲେ ।

ସନ୍ଧ୍ୟାରେ ଦେବର ବ୍ରତଘରକୁ ଗଲି ବୀରପୁରୁଷୋତ୍ତମପୁର । ଶଶୀ ବୋଉ, ନିରୁ ବୋଉ ସବୁ ପିଲାଙ୍କୁ ଧରି ଆସିଛନ୍ତି । ରାଜମିଶ୍ରେ ବି ଆସିଛନ୍ତି । ଗାଁର ବ୍ରାହ୍ମଣ ଯୁବକମାନଙ୍କ ସଙ୍ଗେ ଅନେକଗୁଡ଼ିଏ ଭଲ ବିଷୟର ଆଲୋଚନା ହେଲା । ଆଉଙ୍କୁ କେତେକ କଥା ଟାଣ

ସମ୍ବନ୍ଧରେ, କହିବା ଦରକାର ପଡ଼ିଲା ବୋଲି କହିଲି । ବଡ଼ ଦୁର୍ଣ୍ଣା ପ୍ରକୃତର ଲୋକ । ନିଜର ଲୋକଙ୍କୁ ପର ବୋଲି ମନେ କରୁଛନ୍ତି । (୨୦ । ୩ । ୧୯୫୫)

**ବିନୋବାଙ୍କ ପୁରୀ ଆଗମନ**

କାଲି ସକାଳୁ ବିନୋବା ବାଭେ ପୁରୀରେ ପହଞ୍ଚିଲେ । ପହଞ୍ଚିବା ସଙ୍ଗେ ସଙ୍ଗେ ଅଘଟଣ ଘଟିଲା । ବହୁତ ଲୋକ ଜମାହୋଇଥିଲେ, ଅଠର ନଳା ପାଖେ । ଲୋକ ବିନୋବା ବାଭେଙ୍କୁ ସମ୍ମାନ ଦେଖାଇବାକୁ ଏକାଠି ହେବାରେ ଅସ୍ୱାଭାବିକତା ନାହିଁ । ତଦୁପରି ସ୍କୁଲ କଲେଜ ବନ୍ଦ ହୋଇ ପିଲାଙ୍କୁ ବିନୋବାଙ୍କୁ ସ୍ୱାଗତ କରିବାରେ ଯୋଗଦେବାକୁ ନିର୍ଦ୍ଦେଶ ଦିଆ ହୋଇଥିଲା । ଅନେକ ଲୋକ ତ ସୁଆଙ୍ଗ ଦେଖିବାକୁ କୌତୂହଳୀ ହୋଇ ଆସିଥିବେ । ପ୍ରଥମ ସାକ୍ଷାତରେ ଲୋକଙ୍କ ସଙ୍ଗେ ବାବାଙ୍କର ସଂଘର୍ଷ ହେଲା । ବାବାଙ୍କ ଅନୁଚରମାନେ ଦାବୀ କଲେ ଲୋକେ ପଛକୁ ରହିଯା'ନ୍ତୁ ; ବାବାଙ୍କ ପଛରେ ସେମାନେ ଆସିବେ । ଏପରି କରିବା ଲୋକ-ପ୍ରକୃତର ଅନୁକୂଳ ନୁହେଁ । ଲୋକେ ନ ମାନିବାରୁ ବାବା ରାଗିଯାଇ ସଡ଼କ ତଳେ କାଦୁଅରେ ପଶିଗଲେ । ଲୋକେ କେହି ହତାଶ ଓ କେହି ଉଦ୍‌ବ୍ୟସ୍ତ ହେଲେ । ସିଂହଦ୍ୱାର ବାଟେ ବାଟ ଠିକ୍ ହୋଇଥିଲା । ସିଂହଦ୍ୱାରଠାରେ ପହଞ୍ଚି ବାବା ମନ୍ଦିରକୁ ଯିବାକୁ ଇଚ୍ଛୁକ ନ ହେବାରୁ ଦେଉଳ ଲୋକେ ନିରାଶ ହେଲେ । ତା'ପରେ ଲୋକେ ନ ଡରି ତାଙ୍କ ବିରୁଦ୍ଧରେ ମତ ଦେବାକୁ ଆରମ୍ଭ କଲେ । ବିନୋବାଙ୍କର ପୁରୀରେ ନ ପରିଶ୍ରେ ସ୍ଥଳ ବାଜିବାର ଶୁଣି ମୁଁ ନିରାଶ ହେଲି । (୨୧ । ୩ । ୧୯୫୫)

ଆଜି ଶୁଣିଲି, ଗତକାଲି ବିନୋବା ପୁରୀ ମନ୍ଦିରକୁ ଯିବା ସକାଶେ ସିଂହଦ୍ୱାରକୁ ଆସିଥିଲେ । ସାଙ୍ଗରେ ଅନ୍ୟାନ୍ୟଙ୍କ ଭିତରେ ଜଣେ ଫରାସୀ ମହିଳା ଥିଲେ । ବାବା ଦାବୀ କଲେ ମହିଳା ତାଙ୍କ ସଙ୍ଗେ ମନ୍ଦିର ଭିତରକୁ ଯିବେ । ଏଥିରେ ପଣ୍ଡାମାନେ ନାହିଁ କଲେ ; ବାବା ଭାରି ଖପା । ଫରାସୀ ମହିଳା ନ ଯାଇ ପାରିଲେ ସେ ମନ୍ଦିରକୁ ଯିବେ ନାହିଁ ବୋଲି ଫେରିଲେ; ତାଙ୍କ ସଙ୍ଗେ ଅନୁଚରମାନେ ବି ଫେରିଲେ । ସର୍ବୋଦୟକୁ ପୁଆଡ଼ୁ ଯେ ଆସିଛନ୍ତି ସେମାନେ କେହି ଆଉ ଦେଉଳ ଦ୍ୱାର ମାଡ଼ିବେ ନାହିଁ ବୋଲି ସିଦ୍ଧାନ୍ତ ହୋଇଥିବାର ଶୁଣିଲି । ଏକଥା ମୁଁ ଏତାବେଳକେ ବୁଝିପାରୁ ନାହିଁ । ବିନୋବା ଭଗବାନଙ୍କ ଦାନ ମାଗୁଛନ୍ତି । ପୁରୀ ମନ୍ଦିରକୁ, ମ୍ୟୁଜିଅମ୍ ନୁହେଁ, ମନ୍ଦିର କରି ଯେଉଁମାନେ ଏ ପର୍ଯ୍ୟନ୍ତ ରଖିଛନ୍ତି, ସେମାନଙ୍କର ମତ ଆଗରୁ ନେବା ଦରକାର ଥିଲା । ମହନ୍ତ, ପଣ୍ଡା ପଡ଼ିଆରି, ମୁକ୍ତି ମଣ୍ଡପ ପଣ୍ଡିତ ସଭା ଓ ସାଧାରଣ ଲୋକଙ୍କର ମତ ନ ନେଇ ଆଜିଯାଏଁ ଯାହା ନ ହୋଇଛି ତାହା ହଠାତ୍ ଜବରଦସ୍ତ କରିବାକୁ ଯିବା ଉଦ୍ଦେଶ୍ୟର କାମ । ଏହା ଯେ କରିବାକୁ ଯାଉଛନ୍ତି ତାଙ୍କଠାରେ ପଣ୍ଡିତସୁଲଭ ବିନୟ ଥିବାପରି ଜଣା ଯାଉନାହିଁ । ବାବା ନିଜକୁ ଟିକ୍ ବଡ଼ ବୋଲି ମନେ କରୁଛନ୍ତି । ସବୁକଥା ସେ ହିଁ ଜାଣିଆ କରି କଳାପରି ଜଣାଯାଉଛି । (୨୨ । ୩ ।୧୯୫୫)

**ଆଦିବାସୀ କଲ୍ୟାଣ ଚିନ୍ତା**

ଆଜି ଅଫିସରେ ଯାଇ ବସିଛି, ପୁରୀରୁ ଟେଲିଫୋନ ଆସିଲା ଯେ, ନିଶାନିବାରଣ କମିଶନଙ୍କ ଆଗରେ ଆଜି ଦୁଇଟା ବେଳେ ମୋତେ ପୁରୀରେ ଦେଖାକରିବାକୁ ହେବ । ତଦ-

ତର ହୋଇ ପୁଣି ବାହାରିଲି । ସାଢ଼େ ଦୁଇଟା ବେଳେ କମିଶନଙ୍କ ସଙ୍ଗେ ଦେଖା ହେଲି । ସେମାନେ ଆଗ ଅର୍ଥ ବିଭାଗ ସେକ୍ରେଟାରୀ ଓ ଶ୍ରମ ବିଭାଗ ସେକ୍ରେଟାରୀଙ୍କୁ ପରୀକ୍ଷା କଲେ । ଏ ଦୁହେଁ କହି ସାରିବା ପ`ରେ ମୋ ପାଳି ପଡ଼ିବାରୁ ମୋ କଥାରେ କମିଶନ ସନ୍ତୁଷ୍ଟ ହେବାର ସୁବିଧା ମିଳିଲା । ଆଦିବାସୀ ଅଞ୍ଚଳରେ କପରି ଭାବରେ ନିଶା ନିବାରଣ କରିବାକୁ ହେବ ସେ ବିଷୟରେ ମୁଁ କହିଲି, ବର୍ତ୍ତିମାନ ପାଇଁ ଆଦିବାସୀମାନେ ନିଜ ଘରେ ମଦ ହାଣ୍ଡିଆ ପ୍ରସ୍ତୁତ କରି ଖାଇବାକୁ ଅନୁମତ ଦିଆଯିବା ଉଚିତ । ସରକାରୀ ମଦଭାଟିଗୁଡ଼ିକ ସମ୍ପୂର୍ଣ୍ଣ ଉଠାଇ ଦେବାକୁ ହେବ । ତେବେ ଆଦିବାସୀମାନେ ଦୋକାନୀର ହସ୍ତାତରୁ ଉଦ୍ଧାର ପାଇବେ । ମଦ ଖାଇ ସେମାନେ ସର୍ବସ୍ୱାନ୍ତ ହେବାର ସଂଭାବନା ରହିବ ନାହିଁ । ଆଶ୍ରମ ସ୍କୁଲରେ ଯେଉଁ ପିଲମାନେ ପଢ଼ୁଛନ୍ତି ସେଇମାନଙ୍କ ପ୍ରଭାବ ଫଳରେ ଭବିଷ୍ୟତରେ ମଦ ଖାଇବାର ପ୍ରବୃତ୍ତି କମିଯିବ । ଦଣ୍ଡ ଭୟରେ ଆଦିବାସୀକୁ ମଦରୁ ରୋକିବା ସଫଳ ହେବ ନାହିଁ; ସାମୟିକ ସଫଳ ହେଲେ ବି ଭବିଷ୍ୟତରେ ଖୁବ୍ ଗଣ୍ଡଗୋଳ ହେବାର ଆଶଙ୍କା (୨୪ । ୩ । ୧୯୫୫)

## ଅଫିସ ଲଟରି

କାଲି ଅଫିସରେ ଖୁବ୍ ଭିଡ଼ ହୋଇଥିଲି । ଆଜି ବି ସେହିପରି । ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ ଅଫିସରେ ବସି ଖାଲି ବିଲ୍ ଦସ୍ତଖତ କରିବାରେ ଲାଗିଲି । ଏଇ ବର୍ଷ ଏ ଲଟେରୀ ସରିବ । କମ୍ ଆଶ୍ୱାସନାର କଥା ନୁହେଁ । ଜୁନ୍ ମାସରେ ମୁଁ ଏ କାମରୁ ଶହାତ ପାଇବି ବୋଲି ପୂର୍ଣ୍ଣ ଆଶା କରିଛି । ମନ୍ତ୍ରୀମାନଙ୍କର ଇଚ୍ଛା ନୁହେଁ । ଶ୍ରୀକାନ୍ତ ମଧ ବାଧା ଦେବାର ସମ୍ଭାବନା ଅଛି । ଯାହାହେଉ ଏ ବର୍ଷ ଆରମ୍ଭରୁ ଗଣନାଥ ବାବୁ କି ସତବାବୁଙ୍କୁ ଡ୍ରଇଙ୍ଗ୍ ଅଫିସର କରି ଦେବାକୁ ସ୍ଥିର କରିଛି ।

ସନ୍ଧ୍ୟାରେ ଗୋବିନ୍ଦ ଆସି ପହଞ୍ଚିଲା । ଦାଶରଥି ନନ୍ଦ, କଣ୍ଣୁ ପଟ୍ଟନାୟକ ଓ ଚୁନା ମିଶ୍ରେ, ପୁରୁଣା ପଶାଖେଳ ସାଙ୍ଗମାନେ ଆସି ହାଜିର ଗଲେ । ସେମାନେ ନିଜେ ଆଗ ଖେଳି ବସିଲେ । ପଛରେ ଯାଇ ମୁଁ ଯୋଗ ଦେଲି । ଦୁଇ ଦିନ ବାଜି ଖେଳ ହେଲା । ଖେଳରେ ମୋର ଆଜିକାଲି ବେଶୀ ଜିଣା ହେଉଛି । ଖେଳରୁ ମନ ଗୁଡ଼ିବାରେ ଏହା ସାହାଯ୍ୟ କରୁଛି । ହାରିଲେ ଖେଳିବାକୁ ଆଗ୍ରହ ବଢ଼େ । ଯେତେବେଳେ ଖେଳିବ ସବୁ ବେଳେ ଯଦି ଜିଣା ହେଲା ତେବେ ଖେଳିବାରେ ଆଉ ମଜା କ'ଣ ?

ବୁଲୁ ବାବୁଲି ଏଠାରେ ଖୁବ୍ ଆନନ୍ଦରେ ଅଛନ୍ତି । ୪।୫ ଦିନରେ ସ୍ୱାସ୍ଥ୍ୟର କ'ଣ ବା ପରିବର୍ତ୍ତନ ହୁଅନ୍ତା । କିନ୍ତୁ ଜଣା ଯାଉଛି, ଆଉ କିଛି ଦିନ ଏଠାରେ ରହିଲେ ସେମାନଙ୍କ ସ୍ୱାସ୍ଥ୍ୟ ବଦଳି ଯିବ । ମୁଁ ଯେଉଁ ଦୁଇମାସ ରହିବି ସେତକ ସେମାନେ ଏଇଠାରେ ରହନ୍ତୁ ବୋଲି ମୋର ଇଚ୍ଛା ।

ଗୋବିନ୍ଦ ମିଶ୍ରେ ଆଜି କଟକ ଗଲେ । ଡାକ୍ତରଖାନାରେ ସେ ଯେ କେତେଦିନ ରହିଲେ, ତା'ର ଭିତରେ ଅଗା, ବୈଷ୍ଣବ ପ୍ରଭୃତି ଯେଉଁମାନେ ତାଙ୍କର ପରିଚର୍ଯ୍ୟା କରୁଥିଲେ, ସେ ସମସ୍ତଙ୍କର ତାଙ୍କଠାରୁ ମନ ଗୁଡ଼ି ଯାଇଛି । ଅଗା ତ ତାଙ୍କ ଚଳଣିରେ କ'ଣ ଗୋଟାଏ

ଗୁରୁତର ଅଭିଯୋଗ କରି କଥା କହିବାକୁ ଆରମ୍ଭ କରିଥିଲି । ମୁଁ ପ୍ରଶ୍ରୟ ନ ଦେବାରୁ ଚୁପ ହୋଇଗଲି । (୩୦ । ୩ । ୫୫)

## ମୁଖ୍ୟମନ୍ତ୍ରୀଙ୍କ ଡାକରା

ଆଜି ସକାଳୁ ତରତରରେ ନବ୍ୟଚୌଧୁରୀ ସାର ମୁଖ୍ୟ ମନ୍ତ୍ରୀଙ୍କ ଘରକୁ ଗଲି । ବହୁତ ଦିନ ପରେ ତାଙ୍କ ଘରକୁ ଯିବା ଆଜି ନୂଆ । ଗ୍ରାମ ପ୍ରଦର୍ଶନୀ ପାଇଁ କରିଥିବା ନକ୍ସା ତାଙ୍କୁ ଦେଖାଇଲି । ବେଶୀ ଟଙ୍କାରେ ଖର୍ଚ୍ଚ କରିବା କଥା ସେ ପସନ୍ଦ କଲେ ନାହିଁ । ମନେ ହେଲା ଏ ବିଷୟରେ ସେ ଆଗରୁ କାହା ସଙ୍ଗେ କଥାବାର୍ତ୍ତା ହୋଇଥିଲେ । ଆଜି ପ୍ରଶ୍ନ ଘଣ୍ଟା ପରେ ଏ ବିଷୟରେ ଫଇସଲା କରିବାକୁ ସେ କହିଲେ । କିଛି ସମୟ ଅଫିସରେ ରହି ପୁଣି ଆସେମ୍ବଲିଠିକୁ ଗଲି ରାଧାନାଥ ବାବୁଙ୍କଠି ଧାରଣା ଦେବାକୁ, ୧୨ଟା ବେଳେ ଦେଖା ହେବାର ସୁଯୋଗ ମିଳିଲା । ଆଗ ୫୦ ହଜାରରୁ ଆରମ୍ଭ କରି ଶେଷରେ ସେ ଲକ୍ଷେ ଟଙ୍କା ପର୍ଯ୍ୟନ୍ତ ଦେବାକୁ କୁନ୍ଥୁ କୁନ୍ଥୁ ହୋଇ ରାଜି ହେଲେ । ପୁଣି ଆଜି ଫଇସଲା ହେଲା ଯେ, ପ୍ରଦର୍ଶନୀରେ କଂଗ୍ରେସ କମିଟିର କିଛି ଭାଗ ରହିବ ନାହିଁ । ଏହା ସମ୍ପୂର୍ଣ୍ଣ ସରକାରୀ ଅନୁଷ୍ଠାନ ହେବ । କାର୍ଯ୍ୟର ସୁବିଧା ହେବ ବୋଲି ବଡ଼ ଆନନ୍ଦ ଲାଗିଲା । ରାଧାନାଥ ବାବୁଙ୍କ ପାଖରୁ ତୀର୍ଥବାସୀ ବାବୁଙ୍କ ପାଖକୁ ଗଲି, କାଠର ବନ୍ଦୋବସ୍ତ କରିବାକୁ । ବହୁତ ଗୁଡ଼ାଏ କାଠ ବାଲି ଓ ବାଉଁଶ ଦରକାର ହେବ । ମୁଁ ବିଚାରିଥିଲି ରସଲକୁଣ୍ଡା ଜଙ୍ଗଲରୁ କାଠ ଆସିବ, ତୀର୍ଥବାସୀ ବାବୁ କହିଲେ ବାଲୁଗାଁଠାରୁ ବି ଆସିପାରେ । ବ୍ରହ୍ମପୁରକୁ ଗୋଟିଏ ଟେଲିଗ୍ରାମ କରିଗଲି କନ୍‌ଜରଭେଟରଙ୍କୁ ଡକାଇବାକୁ । ଛତ୍ରପୁର କଲେକ୍‌ଟର ପାଖକୁ ଟେଲିଗ୍ରାମ କଲି, ପ୍ରଦର୍ଶନୀର ଜାଗା ଠିକଣା କରିବାକୁ । କୃଷି ବିଭାଗକୁ ଟେଲିଗ୍ରାମ ହେଲା ବୁଲ୍‌ଡୋଜର ପଠାଇ ପଦର୍ଶନୀ ଜାଗା ସଫା କରାଇବାକୁ । ପ୍ରଦର୍ଶନୀ ବିଷୟରେ ପ୍ରାରମ୍ଭିକ ଆୟୋଜନ ଭଲ ଚାଲିଛି । ଆଉ କିଛିଦିନ ଆଗରୁ ହୋଇଥିଲେ ଭଲ ହୋଇଥାନ୍ତା । ଯାହା ହେଉ ବିଳମ୍ବରେ ହେଲେ ବି ସମସ୍ତଙ୍କର ତ ମନ ଲାଗିଲାଣି । କିଛି ହେବ । (୫ । ୪ । ୫୫)

## ବ୍ରହ୍ମପୁର ପ୍ରଦର୍ଶନୀ ଚିନ୍ତା:

ବ୍ରହ୍ମପୁର ପ୍ରଦର୍ଶନୀ ପାଇଁ ଟଙ୍କାର ବ୍ୟବସ୍ଥା ଏ ପର୍ଯ୍ୟନ୍ତ ହୋଇ ପାରିଲା ନାହିଁ । ସେଇମାନଙ୍କର ପ୍ରଦର୍ଶନୀ ପାଇଁ ଟଙ୍କା ନାହିଁ ସେମାନେ ପ୍ରଚାର ବିଭାଗରୁ ପାଇବା କଥା । ପ୍ରଚାର ବିଭାଗକୁ ସରକାର ଏଥି ସକାଶେ ଲକ୍ଷେ ଟଙ୍କା ଦେବେ ଓ ସେଇ ଟଙ୍କାରୁ ଏହି ଏହି ବିଭାଗମାନେ ଟଙ୍କା ପାଇବେ, ଏକଥା ସ୍ଥିର ହୋଇ ରାଧାନାଥ ବାବୁଙ୍କଠାରୁ ଅର୍ଡ଼ର ନିଆ ଗଲା । ସେଇ ଅର୍ଡ଼ରଟାକୁ ଡିପାର୍ଟମେଣ୍ଟରେ ବଳବତ୍ତର କରିବାକୁ ଅର୍ଥ ବିଭାଗକୁ ଲେଖି ପଠାଇ ଥିଲି । ତାହା ରାଧାନାଥ ବାବୁ ପକାଇ ରଖିଛନ୍ତି । ମନ ସ୍ଥିର କରି ନ ପାରିବା ରାଧାନାଥ ବାବୁଙ୍କର ପ୍ରଧାନ, ବୋଧହୁଏ ଏକମାତ୍ର ଦୋଷ । ସବୁ ବେଳେ ଦୋଦୋ ପାଞ୍ଚ ହେବା ଲୋକ ଅର୍ଥ ବିଭାଗ ପରି ବିଭାଗର ଅଧିକାରୀ ହେବା ଉଚିତ ନୁହେଁ । ପଅରଦିନ ଏ କଥାର ଚୂଡ଼ାନ୍ତ ନିଷ୍ପତ୍ତି କରାଇବାକୁ ସଂକଳ୍ପ କରିଛନ୍ତି ।

ସଂଧ୍ୟାରେ ଟ୍ରାନସଲେସନ ବିଭାଗର ବୃନ୍ଦାବନ ମହାପାତ୍ର ଆସି ମୋ ସଙ୍ଗେ ଭାରତୀୟ ସଂସ୍କୃତି ବିଷୟରେ ଆଲୋଚନା ଆରମ୍ଭ କଲେ । ତାଙ୍କର ଏଥିରେ କାହିଁକି ଅନୁରକ୍ତି ହେଉଛି ଜାଣି ପାରୁନାହିଁ । ସେ ଏଥି ପୂର୍ବରୁ ୨ । ୩ ଥର ମଧ୍ୟ ମୋ ସଙ୍ଗେ ଏହି ପରି ଆଲୋଚନା କରିଛନ୍ତି । ଆଜି ସେ ମୋତେ କହିଲେ ମୁଁ ଯାହା କହୁଛି ସେ କଥା ଲେଖା ହେଲେ ଲୋକଙ୍କର ଉପକାର ହୁଅନ୍ତା । ମୁଁ କହିଲି, ଅନ୍ତତଃ ୩ । ୪ ଜଣ ବା ନକ୍ସିଛ ପକ୍ଷରେ ଜଣେ ଯଦି ମୋ କଥାକୁ ଭଲ ବୋଲି ମନେ କରନ୍ତି, ତେବେ ସେ ମୋ ପାଖରେ ବସି ଏ ସବୁ ଲେଖି ପକାଇ ପାରନ୍ତି । ନିତାନ୍ତ ପେଟ ବିକଳିଆ ନ ହେଲେ ମୁଁ ଏ ବିଷୟରେ ନିଜେ ଲେଖା ପଢ଼ି କରିବି ନାହିଁ । (୧୭ । ୪ । ୧୯୬୬)

## ମୁଖ୍ୟମନ୍ତ୍ରୀଙ୍କ ମନରେ କ'ଣ ଅଛି କେଜାଣି :

ଯଦୁ ବାବୁ ୩ ଦିନ ଛୁଟି ନେଇ ଆଜି ଫେରିଯିବାରୁ ଅଫିସ କାମରେ ଟିକିଏ ହେଳା ହେଲି । ଯାହା ଯାହା ଫାଇଲ ଆସିଲା ତାହା ମୁଁ ଦସ୍ତଖତ କରି ପଠାଇ ଦେଇଛି । କିନ୍ତୁ ଷ୍ଟେନୋ ଥିଲେ ଆଜି କେତେକ ନୂଆ କାର୍ଯ୍ୟ ଆରମ୍ଭ କରିଥାନ୍ତି ।

ଆଜି ମୁଖ୍ୟମନ୍ତ୍ରୀଙ୍କଠାରୁ ଖଣ୍ଡିଏ ଫାଇଲ ଆସିଲା, ଯେଉଁଥିରେ ଦେଖିଲି ସେ ମୋ ଉପରେ ଖୁବ ନିର୍ଭର କରୁଛନ୍ତି । ଦୁଇଖଣ୍ଡ ଚିଠି ମଧ୍ୟ ଆସିଲା ଯେଉଁଥିରେ ସେଇ ଭାବ ସ୍ପଷ୍ଟ । ତାଙ୍କ ମନ ଦୋଳାରେ ଝୁଲୁଛି । ଦିନେ ମୁଁ ଭାରି ଖରାପ ଦିଶୁଛି, ଅନ୍ୟ ଦିନ ଭଲ ଦିଶୁଛି । ଏବେ କିଛିଦିନ ହେଲା ମୋ ପ୍ରତି ତାଙ୍କର ଅନୁରକ୍ତି ଟିକିଏ ବଢ଼ିଲା ପରି ଜଣାଯାଉଛି । ମୁଁ ଇସ୍ତଫା ଦେଇଥିବାରୁ ଏପରି ହେଉଛି ନା ସେ ନିଜେ ଇସ୍ତଫା ଦେଇ ଯିବାର କଳ୍ପନା କରୁଥିବାରୁ ଏପରି ହେଉଛି ସ୍ଥିର କରି ପାରିଲି ନାହିଁ ।

ଦିପ'ହରେ କଟକର ଶ୍ରୀ ଚକ୍ରଧର ମହାପାତ୍ର ଆସିଲେ । ଏ ମହାଶୟ ଭଗବଦ୍ ଗୀତା ଉପରେ ଗୋଟିଏ ଟୀକା ଲେଖିଛନ୍ତି । ଆଜି ସୁଧୀର ବାବୁଙ୍କ ଅନୁରୋଧରେ ଶ୍ରମିକ ଦିବସ ଉପଲକ୍ଷେ ହେଉଥିବା ସଭାରେ ଯୋଗ ଦେଲି । ନବବାବୁଙ୍କୁ ସଭାପତି ହେବାକୁ ପ୍ରସ୍ତାବ ଦେଇ ସେଉଁ ପ୍ରାରମ୍ଭ ଭାଷଣ ଦେଲି ସେ ଓ ପ୍ରଧାନ ବକ୍ତା ନିଶାମଣି ଖୁଣ୍ଟିଆ ସେଇ ଧାଡ଼ିରେ କହିଲେ । ସଭାଟି ଖୁବ ଭଲ ହୋଇଥିଲା । ସଭା ପରେ ସିନେମା ୧୨ଟା ରାତି ପର୍ଯ୍ୟନ୍ତ ଚାଲିଲା । (୧୮ । ୪ । ୧୯୬୬)

## ବ୍ରହ୍ମପୁର ପ୍ରଦର୍ଶନୀ ଉଦ୍‌ଘାଟନ:

ସକାଳୁ ରାଧାନାଥ ବାବୁଙ୍କଠାରୁ ଟେଲିଫୋନ ମିଳିଲା ଯେ, ଉତ୍କଳର କେଶରୀ ପ୍ରାୟ ଦୁଇଟା ବେଳେ ଆସି ପ୍ରଦର୍ଶନୀ ଉଦ୍‌ଘାଟନ କରିବେ । ସକାଳୁ ବୁଲାବୁଲି କରି ମୁଁ ସବୁ ସ୍କୁଲ ବାଳକଙ୍କୁ ଶୀଘ୍ର ପ୍ରସ୍ତୁତ ହେବାକୁ କହି ଆସିଲି । ତା' ପରେ ଖବର ଆସିଲା କେଶରୀ ୪ଟା ବେଳକୁ ଆସିବେ । ସେ କଥା ମଧ୍ୟ ପ୍ରଚାର କରାଇ ଦେଲୁଁ । ପ୍ରଦର୍ଶନୀ କାଲି ଖୋଲାହେବାର ଥିଲା, ବର୍ଷା ନାମରେ କାଲି ନ ଖୋଲିବାର ଦୋଷ କଟିଗଲା ।

ଆଜି ଡାକବାଜି ଯନ୍ତ୍ରରେ ୩ଟା ଭିନ୍ନ ଭିନ୍ନ ସମୟ ପ୍ରଚାର କଲା ପରେ ପୁଣି ଖବର ଆସିଲା ସେ ୮ଟା ବେଳକୁ ଆସିବେ । ସେ ପର୍ଯ୍ୟନ୍ତ ପ୍ରଦର୍ଶନୀ ଉଦ୍‌ଘାଟନ ବନ୍ଦ ରଖାଯାଉ । ଏଥିରେ ମୁଁ ବାଧା ଦେଲି, ୪ଟା ବେଳେ ଟିକଟ ବିକ୍ରୀ କରିବାର ବନ୍ଦୋବସ୍ତ କରି ଦେଲି । ଡକ୍ଟର କେଟ୍‌କାର ଆସିଲେ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କାର୍ଯ୍ୟ କରିବେ ବୋଲି ସ୍ଥିର ରହିଲା । ୮ଟା ୧୦ ମିନିଟରେ ରାଧାନାଥ ବାବୁ ଡକ୍ଟର କେଟ୍‌କାରଙ୍କୁ ଧରି ଆସି ପହଞ୍ଚି ମୋ ଉପରେ ମୁହ୍ରେଜ ହେଲେ । ୮ଟା ବେଳେ ତାଙ୍କୁ କେହି ଗେଟ୍ ପାଖରେ କାହିଁକି ଅପେକ୍ଷା ନ କଲେ ଓ ପ୍ରଦର୍ଶନୀ କାହିଁକି ଆଗରୁ ଖୋଲା ହେଲା । କେଟ୍‌କାର ମହାଶୟ ମଧ୍ୟ ବିଗିଡ଼ିଗଲେ । ପ୍ରଦର୍ଶନୀ ଖୋଲିବାର ସମୟଟା ନିଜେ ଏତେ ଥର ବଦଳାଇବା ଠିକ୍ ହେଲା କି ନାହିଁ ସେ କଥା ଭାବିବାକୁ ଏ ମହାଶୟମାନଙ୍କୁ ବେଳ ମିଳୁ ନାହିଁ, ନିଜର ସୁବିଧାଟା ବଡ଼ ଦିଶୁଛି । ଅନୁଷ୍ଠାନର ଭଲ ମନ୍ଦ ଉପରେ ଦୃଷ୍ଟି ନାହିଁ । ଲୋକେ ଭିତରେ ପଶିବାକୁ ଖୁବ ଜିଦ କରିବାରୁ ମୁଁ ଉଦ୍‌ଘାଟନ ଉତ୍ସବକୁ ନ ଚାହିଁ ଟିକଟ ବିକ୍ରି ଆରମ୍ଭ କରିଦେଲି ବୋଲି ତାଙ୍କୁ କହିଲି । ଭଦ୍ର ଲୋକ ଚୁପ୍ ହେଲେ । (୮ । ୫ । ୧୯୫୫)

କାଲି ଡକ୍ଟର କେଟକାରଙ୍କୁ କହିଥିଲି ତାଙ୍କୁ ଆଜି ତାଙ୍କ ପ୍ରଦର୍ଶନୀର ସବୁ ଷ୍ଟଲ୍ ଭଲକରି ଦେଖାଇଦେବି । କିନ୍ତୁ ଜାଣି ଜାଣି ତାଙ୍କ ପାଖକୁ ଗଲି ନାହିଁ କି ଲୋକ ପଠାଇଲି ନାହିଁ । କାଲି ତାଙ୍କ ବ୍ୟବହାରରେ ମୁଁ ବିଶେଷ ବିରକ୍ତ ହୋଇଥିଲି । ଅଧେ ଷ୍ଟଲ୍ ଦେଖି ସେ କାଲି ହଠାତ୍ କହିଲେ, ତାଙ୍କର ଖାଇବାକୁ ବିଳମ୍ବ ହୋଇଯିବ, ତେଣୁ ସେ ଆଉ ଆଜି ବିଶେଷ କିଛି ଦେଖିବେ ନାହିଁ । ଯେଉଁ କେତୋଟା ବା ଦେଖିଲେ ସେଥିରେ ଟିକିଏ ସୁଦ୍ଧା ମନ ଅଛି ବୋଲି ଜଣାପଡ଼ିଲା ନାହିଁ । ଏ ମହାଶୟଙ୍କ ମନ ସବୁବେଳେ ନିଜର ସୁଖ ସୁବିଧା ଉପରେ । ଏପରି ଗୋଟିଏ ଲୋକ ପଛେ ଗୋଡ଼େଇବା ମୋତେ ମାନହାନିକର ଜଣାଗଲା । ଆଜି ମୁଁ ନିଖିଳ ଭାରତ କଂଗ୍ରେସ କମିଟିର ଦର୍ଶକ ଗ୍ୟାଲେରିରେ ବସିଥିବାବେଳେ ଡକ୍ଟର କେଟ୍‌କାର ଥରକୁ ଥର ମୋ ଆଡ଼କୁ ଚାହୁଁ ଥାନ୍ତି—ମୋର ମନେ ହେଉଥାଏ ସେ ମୋ ନିମନ୍ତେ ଅପେକ୍ଷା କରୁଛନ୍ତି । ତାଙ୍କ ଆଡ଼ୁ ପ୍ରସ୍ତାବ ଆସିବ ବୋଲି ଅପେକ୍ଷା କରି ରହିଲି । ତାଙ୍କର ଆଉ ପ୍ରଦର୍ଶନୀ ଦେଖିବା ନୋହିଲା ।

ଆଜିକୁ ପ୍ରାୟ ୨୦ ବର୍ଷ ତଳେ ମୁଁ ବି.ଏଚ୍ କମିଟିର ମେମ୍ବର ଥିଲି । ଆଜି ସାମାନ୍ୟ ଦର୍ଶକ । ମୋର ମନେ ହେଉଥାଏ, ଆଜି ଆୟୋଜନରେ ଯେଉଁ ବିଶୃଙ୍ଖଳା ହେଉଥାଏ, ମିଟିଂ ବେଳେ ଯେଉଁ ଗଣ୍ଡଗୋଳ ହେଉଥାଏ ତାହା ମୁଁ ସାଧାରଣ କର୍ମୀ ହୋଇଥିଲେ ବନ୍ଦ କରି ପାରି ଥାନ୍ତି । ଓଡ଼ିଶାରେ ଟାଣୁଆ ଲୋକ ଜଣେ ସୁଦ୍ଧା କଂଗ୍ରେସ ଭିତରେ ନ ଥିବାରୁ ସବୁ ଗଣ୍ଡଗୋଳ ହେଉଛି । ଏ ଗଣ୍ଡଗୋଳରେ କିଛି ଭୁଲ୍ ଥିଲା ପରି ମଧ୍ୟ କାହାକୁ ଜଣା ଯାଉ ନାହିଁ । ଆଜି ନିତ୍ୟାନନ୍ଦ ବାବୁ ପ୍ରଦର୍ଶନୀକୁ ଆସି ଖୁବ୍ ପ୍ରଶଂସା କଲେ । ଓଡ଼ିଶାରେ ମୁଁ ଏହିପରି ପ୍ରଦର୍ଶନୀ ପ୍ରତି ଜିଲ୍ଲାରେ ଆୟୋଜନ କରାଏ ବୋଲି ପ୍ରସ୍ତାବ ଦେଲେ । ଟଙ୍କା ତିନି ଲକ୍ଷ ପର୍ଯ୍ୟନ୍ତ ସେ କରାଇ ଦେବେ ବୋଲି ପ୍ରତିଶ୍ରୁତ ହେଲେ ।

ଆଜି ସାଢ଼େ ଏଗାରଟାବେଳେ ପଣ୍ଡିତ ଜବାହରଲାଲ ଆମ ପ୍ରଦର୍ଶନୀକୁ ଆସିବେ ବୋଲି ସକାଳେ ଖବର ମିଳିଲା । ମନ ବଡ଼ ପ୍ରଫୁଲ୍ଲିତ ହେଲା । ନିତ୍ୟାନନ୍ଦ ବାବୁ ସାଢ଼େ ଦଶଟା ବେଳେ ଆସି ପହଞ୍ଚିଲେ । ତାଙ୍କର ପରାମର୍ଶରେ ନଅଟି ବିଭାଗର ଷ୍ଟଲ ତାଙ୍କୁ ଦେଖାଇବାର ବ୍ୟବସ୍ଥା ହେଲା । ବହୁ ଆୟାସ ସହକାରେ ଆମ ନିଜ ଚେଷ୍ଟାରେ ଶାନ୍ତି ଶୃଙ୍ଖଳା ରଖିଲୁଁ । ଜବାହରଲାଲ ୨୦ ମିନିଟ୍ ଡେରିରେ ଆସିଲେ, ଓ ଆମ ଶୃଙ୍ଖଳା ଓ ଆୟୋଜନର ଖାତିର ନ କରି ତାଙ୍କ ମନ ଇଚ୍ଛା ସିଧା ଚାଲିଗଲେ ଗ୍ରାମ ମଙ୍ଗଳ ବିଭାଗର ଷ୍ଟଲକୁ । ବ୍ୟକ୍ତିଗତ ଭାବେ ଏଥିରେ ମୁଁ ଆନନ୍ଦିତ ହେବାର କଥା, କିନ୍ତୁ ସମୂହ ଦୃଷ୍ଟିରୁ ଏହା ବଡ଼ ଖରାପ ହେଲା । ସବୁ ବିଭାଗର କର୍ମୀମାନେ ଆଶା କରୁଥିଲେ ଜହରଲାଲ ତାଙ୍କ କୃତି ଦେଖିବେ । ସେ କିନ୍ତୁ କେବଳ ଆଦିବାସୀ ବିଭାଗ ଓ ଶିଳ୍ପ ବିଭାଗ ଦେଖି ବାହାରି ଗଲେ । ଅଧିକାଂଶ କର୍ମୀ ନିରାଶ ହେଲେ । ଆମ ମନ୍ତ୍ରୀମାନଙ୍କର ବାବନାଭୂତ ପଣିଆ ଦେଖି ମୋତେ ବଡ଼ ବିରକ୍ତି ଲାଗିଲା ।

ଖାଇସାରି ପ୍ରଦର୍ଶନୀ ଅଫିସରେ ବିଶ୍ରାମ କରିବାକୁ ଆସି ପହଞ୍ଚିଲା ବେଳକୁ ସୁଧୀର ବାବୁଙ୍କଠାରୁ ଶୁଣିଲି ମୋରାରଜୀ ଦେଶାଇ ଶିଳ୍ପ ବିଭାଗ ପ୍ରଦର୍ଶନୀ ଦେଖୁଛନ୍ତି । ସେ ଲଗାଇବାକୁ ସେଠାକୁ ମୁଁ ଗଲି, ତାଙ୍କ ସଙ୍ଗରେ ବୁଲିଲି । ସେଇ ଗୋଟିଏ ଷ୍ଟଲରୁ ସେ ଫେରିଗଲେ । ତାଙ୍କର ବି ସମୟର ଅଭାବ । ଏ ମହାଶୟଙ୍କର ଗୁଜରାଟୀ ଭାବ ବଡ଼ ବେଶୀ । ଜଣେ ଗୁଜରାଟି ପିଅନ ଠାରୁ, ଜଣେ ଓଡ଼ିଆ ସେକ୍ରେଟାରୀ ତାଙ୍କୁ ବୋଧହୁଏ ଶ୍ରେଷ୍ଠ ଦିଶନ୍ତି । ଆମ ମନ୍ତ୍ରୀ ଯେଉଁ ଅତିଶୟ ଘୁଡ଼ାଏ ନାଚୁଛନ୍ତି, ସେ ବିଷୟରେ ଆଜି ତାଙ୍କ ସଙ୍ଗେ ଆଲୋଚନା ହେଲା । ସ୍ଥାନ କାଳ ଭେଦ ନ ଦେଖି ସବୁବେଳେ ନାଚ ବେଶ ପିନ୍ଧି ପକାଇବା ଠିକ୍ ହେଉ ନାହିଁ ବୋଲି ତାଙ୍କୁ ସୂଚନା ଦେଲି । କିନ୍ତୁ ସେ ଶୁଣିବାରେ ନାହାନ୍ତି । (୧୦ । ୫ । ୫୫)

**ଶ୍ରୀମନ୍ଦିର ନୀତିକାନ୍ତି :**

ଆଜି ରଥଯାତ୍ରା ଦେଖିବାକୁ ଓ ପ୍ରଦର୍ଶନୀର କାର୍ଯ୍ୟ ତଦାରଖ କରିବାକୁ ଏଗାରଟା ବେଳେ ପୁରୀ ଗଲି । ଆମେ ସାଢ଼େ ବାରଟାରେ ପହଞ୍ଚିଲା ବେଳକୁ ପହଣ୍ଡି ପ୍ରାୟ ସରିଥିଲା । ଏତେ ଶୀଘ୍ର ଦିଅଁଙ୍କ କାମ ଆଜିକାଲି ପ୍ରାୟ ହେଉନାହିଁ । ଆଜି ଜଣା ହେଲା, ଯେ ବିଷୟ ତଦାରଖ କଲେ କାମ ସଫଳ ହେବା ଉଚିତ ତାହାର ସୂତ୍ର ବାହାରିବ । ଆଇନ୍ କରି ଦେଉଳର ନୀତି ସୁରୁରୁ ଶେଷ ନିୟନ୍ତ୍ରିତ ହୋଇପାରିବ ବୋଲି ମନେ ହେଉ ନାହିଁ । ସରକାର ବଦଳି ଯାଉଛି, କିନ୍ତୁ ହଜାରେ ବର୍ଷ ହେଲା ଦେଉଳର ନୀତି ଘଣ୍ଟା କଣ୍ଟା ପରି ଚାଲିଛି । ଘଣ୍ଟା ଚାଲିବାରେ ଯେଉଁ ଟିକିଏ ଟିକିଏ ବିଳମ୍ବ ହେଉଛି ସେଥିପାଇଁ ମରାମତି ଦରକାର । ସେ ମରାମତି ହୋଇ ପାରିବ ସରକାରୀ କର୍ମୀମାନେ ସଦା ଦିଅଁଙ୍କଠାରେ ନିର୍ଭର ରଖି ସେବେଇତଙ୍କ ସଙ୍ଗେ ସହଯୋଗ କରନ୍ତୁ । ଦିଅଁଙ୍କୁ ମାନିବା ବିଷୟରେ ଆମ ସରକାରୀ କର୍ମୀମାନେ ପଠାଣ କହିଲେ ଅତ୍ୟୁକ୍ତି ହେବ ନାହିଁ, ବିନୋବା ଯେ ଦିନ ଆସି ଦିଅଁଙ୍କଠାରୁ ନିଜକୁ ବଡ଼ ବୋଲି ପ୍ରତିପାଦିତ କରିବାକୁ ଉଦ୍ୟମ କଲେ । ପୁରୀ ବାଲାଙ୍କ ଦୃଷ୍ଟିରେ ଏ ମହାତ୍ମା ଅଧର୍ମୀ ।

ପର ଢାଳିଲେ । ଆମ ସରକାରର କଳ୍ପ ସେଇ ବିନୋବା ଠାକୁର । ଏଇ ସେମାନେ ଧର୍ମ-ପରାୟଣ କଳେଡାର ଆମ ଉପରେ ଆସ୍ଥା ରଖୁ ନାହିଁ । ସେମାନଙ୍କର ଆସ୍ଥା ଠାକୁରଙ୍କ ଉପରେ ଅକ୍ଷୁଣ୍ଣ ରହିଛି । ଆଜି ବାଟରେ ଲୋକେ ଯେପରି ପୁଷ୍ପ ଗ୍ରହୁଥାନ୍ତି, ବଡ଼ ଦାଣ୍ଡରେ ଯେପରି ସତୃଷ୍ଣ ନୟନରେ ଠାକୁରଙ୍କୁ ଚାହିଁଥାନ୍ତି, ଯେପରି ଆଗ୍ରହରେ ରଥ ଟାଣୁଥାନ୍ତି, ତାହା ଦେଖି ମୋର ପୂର୍ଣ୍ଣ ପ୍ରତୀତ ହେଉଛି ଯେ, ଜଗନ୍ନାଥଙ୍କୁ ଆମ ସରକାରର ଅବିଶ୍ୱାସ ଦୋହଲାଇ ପାରିବ ନାହିଁ । ବରଂ ସରକାର ନିଜେ ଦୋହଲିଯିବ, ଓଲଟି ପଡ଼ିବ ।

ପ୍ରଦର୍ଶନୀକୁ ଆଜି ପ୍ରାୟ ୫ ହଜାର ଲୋକ ଦେଖିବାକୁ ଆସିଲେ । ବାହୁଡ଼ା ବେଳକୁ ବେଶୀ ଲୋକ ହେବେ ବୋଲି ଆଶା । (୨୧ । ୭ । ୧୯୫୨)

## ନୀଳକଣ୍ଠଙ୍କ ଡାକରା

ଆଜି ଗଣନାଥ ବାବୁ ବହୁତ ସମସ୍ତ ମନ୍ତ୍ରୀଙ୍କ ସଙ୍ଗେ କ'ଣ କଥାବାର୍ତ୍ତା ହୋଇ ମୋ ପାଖରେ ଆସି ଅନୁରୋଧ କଲେ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିବି ଯେ ମୋର ଦେହ ବର୍ତ୍ତମାନ ଭଲ ଅଛି, ତେଣୁ ମୋର ଅବସର ଗ୍ରହଣ କରିବାକୁ ଇଚ୍ଛା ନାହିଁ । ମୋ ଆଡ଼ୁ ସାଇ ଏପରି ଅନୁରୋଧ ମୁଖ୍ୟମନ୍ତ୍ରୀଙ୍କୁ କରିବା କେତେ ହାସ୍ୟାସ୍ପଦ ତାହା ଗଣନାଥ ବାବୁ ବୁଝି ନ ପାରିବା ଦୁଃଖର ବିଷୟ । ଆହୁରି ବିଚିତ୍ର ଲାଗିଲା ଯେ, ଏ ପ୍ରସ୍ତାବ ସବୁ ମନ୍ତ୍ରୀଙ୍କ ଆଡ଼ୁ ହୋଇଛି । ମୋ ରହିବା ବିଷୟରେ ଏମାନଙ୍କର କେତେ ଆନ୍ତରିକତା ତାହା ବେଶ୍ ଜଣାପଡ଼ିଲା । ଅବଶ୍ୟ ମୁଁ ମନ୍ତ୍ରୀଙ୍କୁ ବୁଝାଇଛି ଯେ ମୋତେ ଆଉ ବାରଣ କରିବା ଠିକ୍ ହେବ ନାହିଁ । ଏଥିରେ ଯଦି ତାଙ୍କ ମନ ନ ମାନିଲା ତେବେ ଯେ ନିଜେ କିଛି ନ କରି, ମୋତେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ବିଦାୟ ଦେବା ମୋ ପ୍ରତି ନିଷ୍ଠୁରତା ବୋଲି ମୁଁ ମନେ କରେ ।

ସନ୍ଧ୍ୟାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଡାକରାରେ ତାଙ୍କ ବସାକୁ ଗଲି । ପଣ୍ଡିତଜୀ କଂଗ୍ରେସକୁ ଫେରି ବଡ଼ ହରବର୍ଡ଼ରେ ପଡ଼ିଛନ୍ତି । ସେ ଆସିଥିଲେ ତୁରନ୍ତ କିଛି ଫାଇଦା ହାସଲ କରିବାକୁ । ମନ୍ତ୍ରୀତ୍ୱ ଆଶା ଥିଲା, ତାହା ନ ହୋଇ ପାରିଲେ ଅନ୍ତତଃ କିଛି ଟଙ୍କା କୌଣସି ଉପାୟରେ ପାଇବାକୁ ତାଙ୍କର ଏକାନ୍ତ ଇଚ୍ଛା । ହେଲେ ମନ୍ତ୍ରୀ ହୁଅନ୍ତେ ; ନ ହେଲେ ତାଙ୍କର ପୁରୁଣା ବନ୍ଧୁ ଲୋକଙ୍କ ସରକାର ବନ୍ଧୁସଂଖ୍ୟାରେ ଗଣି ରାଣ୍ଡି ହଅନ୍ତେ, ନିକୁଛ ପକ୍ଷରେ ତାଙ୍କ ପାଇଁ ଗୋଟିଏ କ'ଣ ପରାମର୍ଶଦାତା ଗୁଡ଼ିକ ଖୋଲନ୍ତା, ଏଇ ତିନୋଟିରୁ କେଉଁଟି ବାଞ୍ଛନୀୟ ଓ ସୁକର ସେ କଥା ସେ ମୋତେ ପଚାରିଲେ । କୌଣସି ଉତ୍ତର ଦେଇ ନ ପାରି ଧପେଇଲି । (୨୨ । ୭ । ୧୯୫୨)

## ମୁଖ୍ୟମନ୍ତ୍ରୀଙ୍କ କଷ୍ଟିରି ମତେ ଅଟକ କଲ :

କାଲି ଚିଫ୍ ସେକ୍ରେଟାରୀଙ୍କ ସଙ୍ଗେ ଫୋନ୍ ରେ କଥାବାର୍ତ୍ତା ହୋଇ ଯାହା ବୁଝିଥିଲି ସେଥିରେ ମୋର ସନ୍ଦେହ ହେଉଥିଲା ମୋତେ ବର୍ଷକର ଏକ୍ସଟେନସନ୍ ଦେବାକୁ ସେ ଯେଉଁ ପ୍ରସ୍ତାବ ଦେଇଥିଲେ ସେଥିରେ ତାଙ୍କର ଆନ୍ତରିକତା ନ ଥିଲା । ଆଜି ସେ କଥା ସ୍ପଷ୍ଟ

କଣା ପଡ଼ିଲା । ଅର୍ଥ ବିଭାଗରୁ ଏଇ ମର୍ମରେ ମତ ସଂଗୃହ ହୋଇଛି—ମୋର କଣ୍ଟ୍ରିବ୍ୟୁଟରି ପ୍ରୋଭିଡେଣ୍ଟ ଫଣ୍ଡ ମିଳୁଥିବାରୁ ଅନ୍ୟ କୌଣସି ସାହାଯ୍ୟ ପାଇବାକୁ ମୁଁ ହକ୍‌ଦାର ନୁହେଁ । ମୁଁ ହକ୍‌ଦାର ନୁହେଁ ବୋଲି ଜାଣିଥିଲି ; କିନ୍ତୁ ସରକାର ଇଚ୍ଛା କଲେ ଦେଇପାରିବାରେ କୌଣସି ବାଧା ନାହିଁ ବୋଲି ଶୁଣିଥିଲି । ମୋ ପାଇଁ ସରକାର କୌଣସି ବିଶେଷ ସୁବିଧା କରିବାକୁ ତତ୍ପର ହେବେ ନାହିଁ ବୋଲି ସନ୍ଦେହ ଥିଲେ ମଧ୍ୟ ଚଫ୍ ସେକ୍ରେଟାରୀ ନିଜେ ଯେଉଁ ପରାମର୍ଶ ସରକାରଙ୍କୁ ଦେଇଛନ୍ତି ତାହା ନ ବୁଝି ନ ବିଚାରି ଦେଇଛନ୍ତି ବୋଲି ବିଶ୍ୱାସ କରି ହେଲା ନାହିଁ । ଏଇ ଗ୍ରାଚୁଇଟିର ପ୍ରଲୋଭନରେ ମୋର ଚାକିରି ପ୍ରତି ଯେଉଁ ମାୟା ଟିକିଏ ଥିଲା ତାହା ଲୋପ ହୋଇଥିଲା । ଏହା ନ ମିଳିବ ବୋଲି ଜାଣି ମୁଁ ହତାଶ ହେଲି । କ୍ଷୋଭ ମଧ୍ୟ । କିନ୍ତୁ ଏପରି ସରକାର ଅଧୀନରେ ଆଉ ଚାକିରି କରିବା ଠିକ୍ ହେବ ନାହିଁ ବୋଲି ମୋର ମତ ଆହୁରି ଅଧିକ ଦୃଢ଼ ହେଲା । କିଛି ଟଙ୍କା ପାଇବା ସକାଶେ ମୁଁ ମୋର ପ୍ରାପ୍ୟ ଛୁଟିତକ ନେବାକୁ ଇଚ୍ଛା କରୁଛି । ଦେଖାଯାଉ । ଆଜି ଭଲ ଅସ୍ରାଟିଏ ବର୍ଷା ହେଲା । ବର୍ଷା ଅଭାବରେ ଲୋକେ ନିରାଶ ହେଉଥିଲେ । କାଲି ଆଉକୁ ଆହୁରି ବର୍ଷାର ସମ୍ଭାବନା ଦେଖୁଛି । (୨୩ । ୬ । ୧୯୫୫)

## ଶଶୀଭୋଇର ଚ୍ୟାଲେଞ୍ଜ

ଆଜି ସକାଳେ ଶଶୀ ଭୋଇ ସଙ୍ଗେ କଥାବାର୍ତ୍ତା ହେଉ ହେଉ ସେ କହିଲା, ବହି ଲେଖି କରି, ମାସିକ ପତ୍ର ବାହାର କରି ତ ପୋଷି ହେବ ବୋଲି କହୁଛ, ଦେଖି ଆଜି ଖଣ୍ଡେ ବହି ଲେଖିବାକୁ ଆରମ୍ଭ କର ! ଯଦି ଏ ବହିର ପ୍ରୁଫ୍ ପ୍ରେସ୍‌ରୁ ଜୁଲାଇ ମାସ ପନ୍ଦରରେ ଆସି ପାରିବ ତେବେ ବିଶ୍ୱାସ ହେବ ଯେ କ୍ରମେ ଯାହା କହୁଛ ତାହା କାର୍ଯ୍ୟରେ କରି ପାରିବ । ମୁଁ ଏ ଚ୍ୟାଲେଞ୍ଜ ଗ୍ରହଣ କଲି । "ଅମର କାହାଣୀ" ବୋଲି ଯେଉଁ ଖଣ୍ଡିକ ଲେଖିଛି ତାହାର ଦ୍ୱିତୀୟ ଭାଗ, ତୃତୀୟ ଭାଗ ଛପା ହେବାର କଥା । ସେଗୁଡ଼ିକ ଖାଲି ଗପ ; ତାହା ଲେଖିବାକୁ ସହଜ ହୁଅନ୍ତା । ମୁଁ ଯେଉଁ ରହସ୍ୟ ଗପସବୁ କହେ ତାହା ମଧ୍ୟ ଲେଖିବାକୁ ସହଜ ହୁଅନ୍ତା । କିନ୍ତୁ ମୁଁ ଗୋଟିଏ କଷ୍ଟ ବିଷୟ ମନେ ମନେ ସ୍ଥିର କରି ଲେଖିବି ବୋଲି ସଂକଳ୍ପ କଲି । ଆଜି ବହି ଆରମ୍ଭ ହେଲା 'ହିନ୍ଦୁ ଧର୍ମରେ ଜାତି ଓ ତା'ର ଗତି' । ଅସ୍ପୃଶ୍ୟତାର ପ୍ରକୃତି ଓ ପରିସର ଆଲୋଚନା କରି ବର୍ତ୍ତମାନ ପରିସ୍ଥିତିରେ କ'ଣ କରିବାକୁ ହେବ ତାହାର ସୂଚନା ଦେବା ଏ ବହିର ଉଦ୍ଦେଶ୍ୟ ହେବ । ତାହାର 'ଉପକ୍ରମ' ଆଜି ଲେଖିଲି । ଆଉ କେତେ ପୃଷ୍ଠା ହୋଇଗଲେ, ପ୍ରେସ୍‌କୁ ଦିଆହେବ । ଅରେ ପାଣ୍ଡୁଲିପି ପ୍ରେସକୁ ଗଲେ ଲେଖା ବି ଚାଲିବ । (୨୪ । ୬ । ୧୯୫୫)

## ପୁରୀରେ ରାଜ୍ୟପାଳଙ୍କ ଗହଣରେ

ଆଜି ଦିନଟି ବଡ଼ ଭଲରେ କଟିଲା । ସକାଳୁ ଉଠି ତରତରରେ ନିତ୍ୟକର୍ମ ସାରି ଗଭର୍ଣ୍ଣରଙ୍କୁ ପ୍ରତୀକ୍ଷା କରିବାକୁ ପ୍ଲାଟଫର୍ମକୁ ଗଲି । ବ୍ରେକ୍‌ଫାଷ୍ଟ ଖୁବ୍ ସଫା ସୁରୁଚି ହୋଇଥାଏ ।

ସବୁ ବୁଲି ଦେଖି ଯେଉଁଠାରେ ଯାହା ସାମାନ୍ୟ ଅଭାବ ଥିଲା ତାହା ଠିକ୍ କରାଇ ଦେଲି, ଠିକ୍ ସମୟରେ ରାଜ୍ୟପାଳ ଆସିଲେ । ମୋତେ ଦେଖିବା ମାତେ ମୋର ଅବସର ଗ୍ରହଣ କରିବା କଥା ପଚାରିଲେ ; କହିଲେ, "ଏହା କ'ଣ ଗୋଟାଏ ଧମକ ନା ପ୍ରକୃତରେ ଯିବାକୁ ଚାହୁଁଛ ?" ସ୍ୱାସ୍ଥ୍ୟ କାରଣରେ ଯାଉଛି ବୋଲି ତାଙ୍କୁ ବୁଝାଇ ଦେଲି । ପ୍ରଦର୍ଶନୀ ସେ ଖୁବ୍ ଖୁସିରେ ବୁଲି ଦେଖିଲେ ଓ ପ୍ରଶଂସା କଲେ । କଳାକୃଷ୍ଣ ମିସ୍ତ୍ରୀଙ୍କୁ ତାଙ୍କ ଗାଁକୁ ନେବାକୁ ପ୍ରସ୍ତାବ ଦେଲେ ।

ସର୍କିଟ ହାଉସକୁ ଫେରିବାର ଅଳ୍ପ ସମୟ ଭିତରେ ଗଙ୍ଗାଧର ମହାପାତ୍ର ତାଙ୍କର କେତେକ ବନ୍ଧୁଙ୍କୁ ନେଇ ମୋ ପାଖେ ପହଞ୍ଚିଲେ । ତିନ ଘଣ୍ଟା କାଳ ତାଙ୍କ ସଙ୍ଗେ ଆଲୋଚନା ହେଲା । ସେମାନେ ଓ ନୂଆ ହୋଇ ଆସିଥିବା ଏ. ଡି. ଏମ୍. ଶ୍ୟାମ ସୁନ୍ଦର ପରିଜା ମୋର ଭବିଷ୍ୟତ କାର୍ଯ୍ୟକ୍ରମରେ ମୋତେ ଯଥାସାଧ୍ୟ ସାହାଯ୍ୟ କରିବାକୁ ସ୍ୱତଃ-ପ୍ରବୃତ୍ତ ହୋଇ କହିଲେ । ତା'ପରେ ପଣ୍ଡିତ ଜଗନ୍ନାଥ ରଥଙ୍କ ଡାକରାରେ ତାଙ୍କ ଘରକୁ ଗଲି । ସେଠାରେ ଖେଳ ହେଲା । ଖେଳ ସାରି ପୁଣି ପ୍ରଦର୍ଶନୀ ଗଲି, ପାଲା ଓ ସଖୀ ନାଚ ଦେଖିବାକୁ । ପାଲା ମନକୁ ପାଇଲା ନାହିଁ, କିନ୍ତୁ ସଖୀ ନାଚ ବଡ଼ ଉତ୍କୃଷ୍ଟ ଧରଣର ହେଲା । ସେମାନଙ୍କୁ ପ୍ରଶଂସା କରି କହିଲି—ତୁମ୍ଭମାନଙ୍କ ଚରିତ୍ରହୀନତା ଯୋଗୁ ଓଡ଼ିଶାର ଗୋଟିପୁଅ ନାଚର ମହତ୍ତ୍ୱ ଯାଇଛି । ରଘୁନାଥ ପୁର୍ବରୁ ହତ ପରି ଗୁରୁଙ୍କ ସଂଖ୍ୟା ବଢ଼ିଲେ ଏହା ପୁଣି ଫେରିବ । ସରକାରୀ ଭାବରେ ପ୍ରଦର୍ଶନୀରେ କଳାକୃଷ୍ଣ ଓ ସଖୀନାଚ କାହିଁକି ସ୍ଥାନ ପାଉଛି ତାହା ବୁଝାଇ ଦେଲି । ଲୋକେ ବର୍ଷାକୁ ଖାତିର ନ କରି ଅଧ ଘଣ୍ଟାରୁ ବେଶୀ ବକ୍ତୃତା ଶୁଣିଲେ । ଜଣେ ପୂଆର ମହାପ୍ରସାଦ ସେବାକୁ ଡାକିଲେ । ସବୁ କାର୍ଯ୍ୟ ସାରି ୧୨ଟା ପରେ ବାହାରି ରାତି ୨ଟାରେ ଭୁବନେଶ୍ୱରରେ ପହଞ୍ଚିଲି ।  (୨୨ । ୬ । ୧୯୫୫)

**ଗଲାବେଳେ ହେଲେ ଲୋକ ଜାଣୁ ମୁଁ ତାଙ୍କର ଭାଇ ଓ ବନ୍ଧୁ !**

ପ୍ରତ୍ୟହ ସକାଳୁ ଉଠିଲା ବେଳକୁ ପ୍ରାର୍ଥୀ ଆସି ପହଞ୍ଚୁଛନ୍ତି ମୋତେ ଖଣ୍ଡେ ଚାକିରି ଦିଅ, ମୋ ବନ୍ଧୁ କାହିଁ ଦିଅ, ମୋ ପୁଅ ଚାକିରି ଦିଅ ଇତ୍ୟାଦି—ଚାଲି ଯାଉଛି ବୋଲି ଶୁଣୁଛି, ତେଣୁ ବେଗେ ଆମ କାମଟା କରି ଦେଇ ଯାଅ । ତାକୁ ବ୍ ଲାଗୁଛି । ମୋ ପାଖେ ଥିବା କ୍ଷମତାକୁ ମୁଁ ଏଇପରି ଭାବେ ବ୍ୟବହାର କରିବାକୁ ସମର୍ଥ, ଏ ଧାରଣା ଲୋକଙ୍କର କିପରି ହେଲା ? ମୁଁ ଚାକିରିରେ ଥିବାବେଳେ କୌଣସି ଅଯୋଗ୍ୟ ଲୋକକୁ ଚାକିରି ଦେଇ ନାହିଁ ; କୌଣସି ଅଦରକାରୀ ଜିନିଷ ମଧ୍ୟ କିଣି ନାହିଁ—ଏ କଥା ଏହି ପ୍ରାର୍ଥୀମାନେ ମାନୁଛନ୍ତି । କିନ୍ତୁ ସେମାନଙ୍କର ବିଶ୍ୱାସ, ମୁଁ ଯେତେବେଳେ ଯାଉଛି, କଲମରେ ଗାରେ ଗାରେ ମାରି ଦେବା ମନ୍ଦ ହେବ ନାହିଁ । ଏ ଢଙ୍ଗଟା ଉଚ୍ଚ ଜାତି ଲୋକଙ୍କଠାରେ ଯେତେ ଦେଖାଯାଉଛି, ନୀଚ ଜାତିରେ ସେତେ ନୁହେଁ । ଗ୍ରେଟ ଜାତି ଲୋକଙ୍କୁ ବୁଝାଇ ଦେଲେ ସେମାନେ ବୁଝି ଯାଉଛନ୍ତି । ଉଚ୍ଚ ଜାତି ଲୋକଙ୍କୁ କହିଲେ, ସେମାନେ ହୁଁ ହୁଁ କରୁଛନ୍ତି, କିନ୍ତୁ ମୁହଁରୁ ଜଣାପଡ଼ୁଥାଏ, ମନ ମାନୁ ନାହିଁ । ଏଇ ଆମ ଜାତି ! ଆଉ ଗୋଟିଏ ଦୋଷ ବେଶୀ କଷ୍ଟ

ଦେଉଛୁ । ସ୍ୱୀକାର ପାଇଁ ପିଲାମାନେ ଜଣେ ଆସୁନାହାନ୍ତି, ସାଙ୍ଗରେ ବାପମାନଙ୍କୁ ଅଣୁଛନ୍ତି ; ଜଣେ ତା ବୁଢ଼ୀମା'କୁ ଘୋଷାରି ଆଣିଥିଲା । ପିଲାଙ୍କର ଏଇ ଅସହାୟତା ଦେଶର ଗୋଟିଏ ବଡ଼ ମନ୍ଦ ଶକୁନ ।

ଆଜି ପୁରୀ ଯାଇଥିଲି, ସେଠାରେ ମଧ୍ୟ ଉତ୍ସାହ ମିଳିଲା ନାହିଁ । ମୋ ବଡ଼ ଶଳା ଦେଖା ହେବା ମାତ୍ରେ ବକ୍ତୃତା ଆରମ୍ଭ କଲେ, ଗତ ଦୁଇଦିନ ହେଲା ମୋତେ ପ୍ରଦର୍ଶନୀ-ଠାରେ ଦେଖିବେ ବୋଲି ଆସୁଛନ୍ତି । ପ୍ରଦର୍ଶନୀ ଦେଖିବାରେ ତାଙ୍କର ବା ତାଙ୍କ ପୁଅର ଯେ ଆଗ୍ରହ ନାହିଁ ଏଥିରେ କୌଣସି ସନ୍ଦେହର ଅବକାଶ ରହିଲା ନାହିଁ । କୋଅପରେଟିଭ ଡିପାର୍ଟମେଣ୍ଟରେ କ'ଣ ଗୋଟିଏ ଟ୍ରେନିଂ ଖୋଲା ହୋଇଛି, ସେଥିକୁ ତାଙ୍କ ପୁଅ ଶିବ ଦରଖାସ୍ତ କରିଛି । ମାଧବ ମିଶ୍ରଙ୍କର ଦାବୀ, ମୁଁ ସୋମନାଥ ନନ୍ଦଙ୍କୁ କୁହାଯୋଗ କରି ତା ପାଇଁ ଗୋଟିଏ ସ୍ଥାନ କରାଇ ଦେବି । ଟ୍ରେନିଂ ପାଇଁ ଆଉ କ'ଣ ଦରକାର । ଶିବ ମାଟ୍ରିକ ପାଶ୍ କରିଛି । ତାହାର ବିଦ୍ୟା ବୁଦ୍ଧି ଢଙ୍ଗ ରଙ୍ଗ ଯାହା ସେଥିରେ ସେ ଟ୍ରେନିଂ ପାଇଁ ନିର୍ବାଚିତ ହୋଇ ପାରିବାର ଆଶା ଖୁବ୍ କମ୍ । ଏକ ମାତ୍ର ଭରସା ଯେ, ମୁଁ ସୋମନାଥ ବାବୁଙ୍କୁ ଧରାଧରି କରିବା ଫଳରେ ତାହାର ହୋଇଯିବ । ମୁଁ ମୁଖ ଲଜ୍ଜାକୁ ଏହି ଅନୁରୋଧ କରିବି ଓ ସେ ନ୍ୟାୟାନ୍ୟାୟର ବିଚାର ନ କରି ମୁଁ କହିଲି ବୋଲି ଶିବକୁ ଭର୍ତ୍ତି କରି ଦେବେ । ସ୍ୱୀକାର କରିବା ଲୋକଙ୍କର ଏହି ମନୋବୃତ୍ତି ଓ ସ୍ୱୀକାର ଦେବା ଲୋକଙ୍କ ବିଚାର ଉପରେ ଏଇ ଧାରଣା !

ପ୍ରଦର୍ଶନୀ ବେଶ୍ ଚାଲିଛି । ଟିକଟ ୮୦୦ ଟଙ୍କା ହୋଇଥିଲା ; ପରେ ଦିନ ତେର ଶହ । ସବୁ ସବୁ ହୋଇ ହଜାରରୁ ବେଶୀ ଆଦାୟ ହେଲାଣି । ସମସ୍ତ ପ୍ରଦର୍ଶନୀରେ ଯାହା ଖର୍ଚ୍ଚ ହୋଇଥିଲା ସବୁ ଫେରି ଆସିବ ବୋଲି ଆଶା କରାଯାଉଛି । ସରକାରୀ ପ୍ରଚାରକୁ ଏହି ଢଙ୍ଗରେ କଲେ ଖର୍ଚ୍ଚ ଅଳ୍ପ ହେବ । ଲୋକେ ଆମ ଆଡ଼କୁ ବେଶି ଆକୃଷ୍ଟ ହେବେ । ମୋ ଗଲା ପରେ ଏ ସବୁ ରହିବ ନାହିଁ ବୋଲି ଅନେକ ଆଶଙ୍କା କରୁଛନ୍ତି । ମୋର ଏ ଆଶଙ୍କା ହେଉନାହିଁ । ସୁଧୀର ବାବୁ ଓ ରାଧାଶ୍ୟାମ ଏ କାମ ଧରି ନେଲେଣି, ତେବେ ମନ ପୂର୍ଣ୍ଣ ନିର୍ମଳ ନ ଥିବାରୁ କେତେଗୁଡ଼ାଏ ଜିନିଷ ତାଙ୍କୁ ଦିଶୁନାହିଁ । ସବୁବେଳେ ସେମାନଙ୍କର ଦରକାର ହେବ ଉପରୁ ନିର୍ଦ୍ଦେଶ ଓ ପ୍ରେରଣା । ତାହା ଯଦି ନ ମିଳିବ ତେବେ ବର୍ତ୍ତମାନ ଯାହା ସବୁ ହେଉଛି ସେ କ୍ରମେ କ୍ରମେ ମିଳେଇ ଯିବ । ଯେତେ ଦୂର କାର୍ଯ୍ୟ ଅଗ୍ରସର ହେଉଛି ମିଳେଇ ଯିବାକୁ ଅନ୍ତତଃ ପକ୍ଷେ ବର୍ଷେ ଖଣ୍ଡେ ଲାଗିବ । (୩୦ । ୬ । ୧୯୫୫)

## ଇସ୍ତଫା ମୂଳରେ ସଙ୍କଳ୍ପ

ମୋର ସ୍ୱୀକାର ଛାଡ଼ିବା ବିଷୟରେ ମୁଁ ବହୁଦିନ ହେଲା ଚିନ୍ତା କରିଛି ; ଏବେ ବି କରୁଛି । ବନ୍ଧୁମାନେ ମୋତେ ଏତେ ମମତା ପାଶରେ ବାନ୍ଧି ଦେଇଛନ୍ତି ଯେ ଅନ୍ତତଃ ସେମାନଙ୍କ ପକାଶେ ମୋତେ ଏ ବିଷୟରେ ସବୁବେଳେ ଚିନ୍ତା କରିବାକୁ ପଡ଼ୁଛି । ଏ ବିଷୟକୁ ମୁଁ ତିନି ଦିଗରେ ଚିନ୍ତା କରୁଛି । ପ୍ରଥମତଃ ମୋର ନିଜ ପରିବାର କଥା । ୧୨ ବର୍ଷ

କାଳ ସ୍ଥିର ଆସ୍ଥାରେ ନିର୍ଭର କରିବା ପରେ ଅନିଶ୍ଚିତତାରେ ଯାଇ ପଡ଼ିଲେ ଫଳ କ'ଣ ହେବ । ପିଲା ମାନଙ୍କ ମୁଖରେ ବଢ଼ି ହଠାତ୍ ଦୁଃଖ ସହି ପାରିବେ କି ନାହିଁ । ମୁଁ ତ ଏସି ବୁଢ଼ା ହେଲିଣି । ମୋ ନିଜ ଆବସ୍ଥା କ'ଣ ହେବ ? ମୋ ନିଜ ପାଇଁ ଶୋଚନା ହେଉ ନାହିଁ । ମୁଁ ବୁଢ଼ା ହୋଇଛି ଶରୀରରେ ; ମନ ତ ଝାଣ ଅଛି । ପୂର୍ବ ଅପେକ୍ଷା ବୋଧହୁଏ ଅଧିକ ଝାଣ । ଏପରି କୌଣସି ବିଳାସ ଗ୍ରହଣ କରିନାହିଁ, ଯାହାକୁ ଛାଡ଼ିଲେ କଷ୍ଟ ହେବ । ଶଶୀ ତୋଉ ମୋ ସାଥିରେ ଅଛି ; ପିଲାଙ୍କୁ ସେ ଚଳାଇବ । ଭାତ ଲୁଣ ନ ପାଇ ତ ଉପବାସ ରହିବାକୁ ହେବ ନାହିଁ । ଦେଶର କେତେ ଲୋକ ସେଇତକ ନିଶ୍ଚିନ୍ତରେ ପାଉଛନ୍ତି ? ବଡ଼ ପିଲାମାନେ ଏତେବେଳେ ଅଭାବର ତାଡ଼ନା ପାଇଲେ ମଣିଷ ହେବେ । ଦ୍ୱିତୀୟ ଚିନ୍ତା ଗ୍ରାମ ମଙ୍ଗଳ ଓ ପ୍ରଗ୍ରେସ ବିଭାଗର ଭବିଷ୍ୟତ । ଏ ବିଭାଗ ଦୁଇଟି ମୋ ହାତରେ ଗଢ଼ା ବୋଲି କହିଲେ ଚଳେ । ମୋ ପରେ ସେମାନଙ୍କର ଅବସ୍ଥା ଖରାପ ହୋଇଯିବ ବୋଲି ମନ୍ତ୍ରୀ ଓ ସହକର୍ମୀମାନେ ଆଶଂକା କରୁଛନ୍ତି । ଏହା ଅମୂଳକ । ଟିକିଏ ଦବିଯାଇ ପାରେ ; କିନ୍ତୁ ସବୁ ବିଭାଗ ଯେପରି ଚଳୁଛି ସେପରି ନ ଚଳିବ କାହିଁକି ? ସରକାରୀ କଳଟାକୁ ମୁଁ ମୋ ଘର ବୋଲି ଚଳାଉଥିଲି, ତେଣୁ ଅନ୍ୟର ଆନ୍ତରିକତା ନ ଥିଲେ, କାମ ଟିକିଏ ଧିମେଇ ଯିବ ମାତ୍ର । ତଥାପିରେ ମୁଁ ତ ଘରକୁ ଫେରୁ ନାହିଁ । ଯାଉଛି, ଦେଶର ସାଧାରଣ ଜୀବନରେ ଟିକିଏ ସ୍ଫୂର୍ତ୍ତି ଆଣିବାକୁ । ଯଦି ସମର୍ଥ ହୁଏ ତେବେ ତାହାର ସୁଫଳ ଅନ୍ୟମାନଙ୍କ ସହିତ ଏ ବିଭାଗ-ଦୁଇଟି ବି ପାଇବେ । ସମସ୍ତଙ୍କ ମନ ସରକାରରେ ଆବଦ୍ଧ ରହିବାରୁ ବେସରକାରୀ କ୍ଷେତ୍ରରେ ପ୍ରାଣ ନାହିଁ । ଏହିପରି ଚାଲିଲେ ସରକାର ବିଭ୍ରଷ୍ଟ ହୋଇଯିବ । ଜୀବନ ତ ଶେଷ ହେବାକୁ ବସିଲାଣି, ଏତେବେଳେ ଦେଶର କିଛି କାମ କରିବାକୁ ହେବ । ଏ ଯୁଗରେ ତାହାହିଁ ଧର୍ମ ଓ ମୋକ୍ଷର ମାର୍ଗ । (୫ । ୭ । ୧୯୫୫)

## ବାଚସ୍ପତିଙ୍କ ଡାକରା ଓ ନୀଳକଣ୍ଠଙ୍କ ତୃଷ୍ଣା

ଆଜି ସକାଳେ ନନ୍ଦବାବୁ ବାଚସ୍ପତିଙ୍କ ଘରକୁ ଯାଇଥିଲି ତାଙ୍କ ଡାକରାରେ । ସେ ଆଜି ସକାଳେ ମୋ ଯିବା କଥା ଶୁଣି ଅତି ବ୍ୟସ୍ତ ହୋଇ, ମନ୍ତ୍ରୀମାନଙ୍କୁ କୁହା ପୋଛା କରି ମୋର ଯିବା ବନ୍ଦ କରି ଦେବେ ବୋଲି ଜିଦ୍ ଧରିଲେ । ମୋ ସଙ୍ଗେ କଥାବାର୍ତ୍ତା ହୋଇ ଯାହା କରିବେ ବୋଲି ତାଙ୍କୁ ଅଟକାଇ ଦେଲି । କଥାବାର୍ତ୍ତା ପରେ ସେ ମୋତେ ଆଉ ରହିବାକୁ ବଳାଇଲେ ନାହିଁ ।

ସନ୍ଧ୍ୟାରେ ନୀଳକଣ୍ଠ ବାବୁଙ୍କଠାକୁ ଯାଇଥିଲି । ବୁଢ଼ାର ସେଇ ଏକ ଚିନ୍ତା—କଂଗ୍ରେସକୁ ଆସି ତାଙ୍କର ଲାଭ ହେଲା କ'ଣ ? ମନ୍ତ୍ରୀ ତ ହେଲେ ନାହିଁ, ଗ୍ରାମ ପଞ୍ଚାୟତରେ ପରାମର୍ଶଦାତା ହେବାର ତ ନୋହିଲା ; ଅନ୍ତତଃ ସେ ଲେଖିଥିବା ବହି ଗୁଡ଼ିକରୁ ଯଦି ୫ ହଜାର ଲେଖାଏଁ କଟିଯାଏ, ତେବେ ସେ ମଠର ଝଙ୍କଡ଼ କରି ପାରିବେ, ଘର ଝଣ୍ଡେ ନେଇ ପାରିବେ । କେବେ ସେ କମିଟି ଗଜମାଠ କରିବେ ସମସ୍ତେ ଦେଖିବେ । ପଣ୍ଡିତଜୀଙ୍କର ସବୁବେଳେ ଏଭଳି ଗୋଟିଏ ଲୋଭାଁ ବର୍ତ୍ତି । ସେ ସର୍ତ୍ତି ପୂରଣ ହେଲେ ଯାଇ ସେ କାମ

ଭରିବେ । ସର୍ତ୍ତି ସରୁନାହିଁ, କ କାମ ହେଉ ନାହିଁ । ତାଙ୍କଠାରେ ଯଥେଷ୍ଟ ଷମତା । ଆଜ ଅବଶ୍ୟ ଆଉ ବିଶେଷ କିଛି ନାହିଁ । କିନ୍ତୁ ସ୍ୱାର୍ଥକୁ ଟିକିଏ ପଛରେ ପକାଇ ଦେଇଥିଲେ ଆଜ ସେ ଓଡ଼ିଶାର ନେତା ହୋଇଥାନ୍ତେ । ହୁଏତ ସେ ମୁଖ୍ୟମନ୍ତ୍ରୀ ହୋଇଥାନ୍ତେ । ବର୍ତ୍ତମାନ ଯେ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ତାଙ୍କଠାରୁ ପଣ୍ଡିତଜୀ ସେ ଖୁବ୍ ଭଲ କରିଥାନ୍ତେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ସ୍ୱାର୍ଥ ପ୍ରତି ଅତିଶୟ ଆସକ୍ତ ହେବାରୁ ଜୀବନ ତମାମ ଭଲ କରି ସ୍ୱାର୍ଥ ସେବା କରିବାର ସୁବିଧା ତାଙ୍କର ହେଲ ନାହିଁ । ସବୁବେଳେ ଅନ୍ୟର ଅଣ୍ଟିରେ ହାତ ପୁରାଇ ସେ ସମ୍ପତ୍ତି ଖଣ୍ଡେ ଭଲ କରିଛନ୍ତି । ଯେକୌଣସି ସାଧାରଣ ବ୍ରାହ୍ମଣ ଏଥିକରେ ଖୁବ୍ ସନ୍ତୋଷରେ ରହନ୍ତା । କିନ୍ତୁ ପଣ୍ଡିତଜୀଙ୍କ ତୃଷ୍ଣା ମେଣ୍ଟି ନାହିଁ । (୭ । ୭ । ୧୯୫୫)

## ନବବାବୁ ଓ ନୀଳକଣ୍ଠଙ୍କ ତାକିଦ

କାଲି ଉପର ଓଳି ନବବାବୁଙ୍କ ପାଖକୁ ଯାଇଥିଲି ; ସଦାଶିବ ବାବୁ ଥିଲେ । ଦୁଃଖ ସୁଖ ହେଲା ପରେ ବହୁତଗୁଡ଼ିଏ କଥାବାର୍ତ୍ତା ହେଲୁଁ । ତାଙ୍କ ମନ ସେ ନିର୍ମଳ ନାହିଁ, ଏ କଥା ପରିଷ୍କାର ଜଣା ପଡ଼ିଲା । ସଦାଶିବ ବାବୁଙ୍କ କଥା ଜଣା ପଡ଼ିଲା ନାହିଁ । ମୋତେ ସେ ଖୁବ୍ ପ୍ରଶଂସା କଲେ । ନବବାବୁଙ୍କୁ ମାନିଲା ପରି ମୋତେ ମାନନ୍ତି ବୋଲି କହନ୍ତି, କିନ୍ତୁ ମୋର ଯିବା ବିଷୟରେ ପଦେ ମୋତେ ବା ଆଉ କାହାକୁ ତ କହିଲେ ନାହିଁ ! ନବବାବୁଙ୍କର ସେ ଏତେ ବଶୀଭୂତ ହୋଇଛନ୍ତି ଯେ ନବବାବୁଙ୍କୁ ପ୍ରୀତ କରିବା ପଣ କରି ସେ ରହିଛନ୍ତି । ଯେପରି କଥା କହିଲେ ନବବାବୁଙ୍କ ମନରେ ଆଘାତ ହେବ ବା ନବବାବୁଙ୍କ ମନକୁ ନ ପାଇବ ସେପରି କଥା ମୁହଁରୁ ବାହାରିବା ଅସମ୍ଭବ ।

ଆଜି ମଧ୍ୟ ପଣ୍ଡିତଜୀଙ୍କ ପାଖକୁ ଯାଇ ଥିଲି । ସେ ତ ମୋତେ ଅଥୟ କଲେଣି । ମୁଁ କେମିତି ଯିବା ପୂର୍ବରୁ ଗ୍ରାମ ମଙ୍ଗଳ ଓ ପ୍ରଗ୍ରେର ବିଭାଗରୁ ତାଙ୍କୁ କିଛି ଟଙ୍କା କରେଇ ଦେବି, ସେଥିପାଇଁ ସେ ସବୁ ବେଳେ ମୋତେ ଲଗାଇଛନ୍ତି । ମୁଁ ପ୍ରେସ୍ ଟିଏ କରିବି ଏ କଥା ତାଙ୍କ ମନକୁ ପାଉ ନାହିଁ ; ତାଙ୍କର ଇଚ୍ଛା ମୁଁ କିପରି ପୁଣି ନବଭାରତ ପ୍ରେସରେ ରହିବି । ନ ହେଲେ ତାଙ୍କର ପ୍ରେସରେ ତାଲା ପଡ଼ିବା ଅବସ୍ଥା ହେଲଣି । ମୁଁ ପ୍ରେସ କରିବା କଥା ସେ ମୋତେ ପଡ଼ୁଚେଇଲେ । ତାଙ୍କୁ ବୁଝାଇ ଦେଲି ଯେ ପ୍ରଥମାବସ୍ଥାରେ ମୁଁ ତାଙ୍କ ସଙ୍ଗେ ମିଶିଗଲେ ମୁଁ ଦଳଭୁକ୍ତ ହୋଇ ଯିବି । ଫଳରେ କଂଗ୍ରେସ ଭିତରେ ସବୁ ଦଳଙ୍କୁ ଏକାଠି କରିବାର ଯେଉଁ କଳ୍ପନା ମୁଁ କରିଛି ସେଥିରେ ବାଧା ହେବ । କିଛି ଦିନ ପରେ ମୋ ପ୍ରେସକୁ ମୁଁ ତାଙ୍କ ପ୍ରେସ ସଙ୍ଗେ ମିଶାଇ ଦେଇ ପାରେ ବୋଲି ସମ୍ଭାବନା ଜଣାଇଲି । ଏହା ମିଛ । ମୁଁ ସେ ଆଉ ତାଙ୍କ ସଙ୍ଗେ କୌଣସି ପଇସା ପନ୍ଦା ବା କାରବାର ସମ୍ପର୍କ ରଖିବି ଏହା ଅସମ୍ଭବ । ପଇସାକୁ ମୁଁ ଯେଉଁ ଦୃଷ୍ଟିରେ ଦେଖେ, ପଣ୍ଡିତଜୀ ସେଥିରୁ ସମ୍ପୂର୍ଣ୍ଣ ଭିନ୍ନ ଦୃଷ୍ଟିରେ ଦେଖନ୍ତି । (୭ । ୭ । ୧୯୫୫)

## ନବବାବୁଙ୍କ ନିବୃତ୍ତିରେ ବିଳମ୍ବ ବାଧୁଛି

ଆଜି ସରକ ଅଫିସବାଲାଙ୍କର ବିଶ୍ୱାସ ହେଲା ଯେ ମୋର ଯିବା ନିଶ୍ଚିତ । ସୁଧୀର ବାବୁ ଓ ସଦାଶିବ ବାବୁ ଆସି ବାକି କାମଗୁଡ଼ାଏ କରାଇ ନେଲେ । ଆଦିବାସୀ ବିଭାଗରେ ମଧ୍ୟ କାମ ଦାମର ଟିକିଏ ଜୋର ଆରମ୍ଭ ହେଲା । ସମସ୍ତଙ୍କର ଶ୍ରଦ୍ଧା ଯୋଗୁଁ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି ଯେ, ମୁଁ ଚାଲି ଯାଉଛି । ଆମ ଦୁଇଟି ଯାକ ଡିପାର୍ଟମେଣ୍ଟରେ ପ୍ରାୟ ସମସ୍ତଙ୍କର ମତ ମୁଁ ରହେଁ । ମୁଖ୍ୟମନ୍ତ୍ରୀ ଶୀଘ୍ର ଫାଇଲ ଅର୍ଡ଼ର ଦେଉନାହାନ୍ତି ବୋଲି ସଂଶୟକୁ ବାଟ ମିଳୁଛି । ମୋର ପୂର୍ଣ୍ଣ ବିଶ୍ୱାସ ସେ ମୋତେ ବିଦା କରିବାକୁ ଆନ୍ତରିକ ଭାବେ ଚାହାନ୍ତି । ମନ୍ତ୍ରୀମାନଙ୍କ ମତାମତକୁ ଡରି ଟିକିଏ ଡେରି କରୁଛନ୍ତି । କିନ୍ତୁ ଏମିତିରେ କେତେ ଡେରି ହେବ ! ବର୍ତ୍ତମାନ ନବବାବୁ ତାଙ୍କ ଶାସନର ଭବିଷ୍ୟତ ଚିନ୍ତା କରିବା ଦରକାର ; ମୋର ବି ମୋ ନିଜର ।

ଆଜି ଭବିଷ୍ୟତ କାର୍ଯ୍ୟପନ୍ଥା ବିଷୟରେ ବ୍ରଜନାଥ ମିଶ୍ର ଡାକ୍ତରଙ୍କ ସଙ୍ଗେ ବହୁତ କଥାବାର୍ତ୍ତା ହେଲା । ତାଙ୍କୁ ଜଣାଇ ଦେଲି ବର୍ତ୍ତମାନ ୬ ମାସ ପର୍ଯ୍ୟନ୍ତ ମୁଁ ଲେଖାଲେଖି, ମାସିକ ଦୈନିକ ପ୍ରକାଶ ଓ ଛାପାଖାନା ବସାଇବା କାର୍ଯ୍ୟରେ ଲାଗିଛି । ତା'ପରେ ଦାଣ୍ଡକୁ ବାହାରିବି । କଂଗ୍ରେସରେ ମିଶିବାକୁ ମୋର ଇଚ୍ଛା କିନ୍ତୁ ବର୍ତ୍ତମାନ ତ ଘରଘର ଠାକୁର ବାଡ଼ି, କାହା କଂଗ୍ରେସରେ ମିଶିବି ? ମହତାବଙ୍କର ନା ନବବାବୁଙ୍କର, ନା ନିତ୍ୟାନନ୍ଦ ବାବୁଙ୍କର ନା ବିଶ୍ୱନାଥ ଦାସଙ୍କର ? ସେମାନେ ଯଦି ଏକାଠି ହେବେ ତେବେ ମୋତେ କୁଲିକାମ ବରାଦ କଲେ ବି ମୁଁ ଆନନ୍ଦରେ କରିବି ; ଏହି ମତରେ ଓଡ଼ିଶାର ଜନମତକୁ ଉଦ୍‌ବୁଦ୍ଧ କରିବାକୁ ହେବ । ବ୍ରଜ ବାବୁ ମାନିଲେ, ଯେ ଏହାହିଁ ଏକମାତ୍ର ପନ୍ଥା ।

ପଣ୍ଡିତ ଜଗନ୍ନାଥ ରଥେ, ଲୋକନାଥ ମିଶ୍ରେ, ନରସିଂହ ଷଡ଼ଙ୍ଗୀ ଆପଣେ ଓ ତାଙ୍କ ଗାଁର ସାମନ୍ତ ରାମଚନ୍ଦ୍ର ମହାପାତ୍ର ଆସିଥିଲେ । ବ୍ରାହ୍ମଣମାନଙ୍କର ଅତୀତ ଓ ଭବିଷ୍ୟତ ବିଷୟରେ ଆଲୋଚନା ହେଲା । ସବୁ କଥାକୁ ସେମାନେ ମୁଣ୍ଡ ଟେକାଉଛନ୍ତି । କିନ୍ତୁ ଆସ ଦାଣ୍ଡକୁ ବାହାର, କହିଲେ ବେଳକୁ ପଛକୁ ଚାହୁଁଛନ୍ତି । (୮ । ୬ । ୧୯୫୫)

## ନୂତନ ଅଧ୍ୟାୟ ସରଳ

ଆଜି ଚାର୍ଜ ଦେବାର କଥା । ଅଫିସବାଲା ବହୁତ କାଗଜ ଆଣି ଜମା କଲେ ଦସ୍ତଖତ କରିବା ନିମନ୍ତେ । ଆଖି ମୁଦି ଦସ୍ତଖତ କରି କରି ମଧ୍ୟ ୨ଟା ପୂର୍ବରୁ କାମ ସାରି ପାରିଲି ନାହିଁ । ୩ଟା ବେଳେ ଜଗତ୍‌ବନ୍ଧୁ ବାବୁଙ୍କ ସଙ୍ଗେ ଦେଖା ହେବାର କଥା । ସେ ୩ଟା ୧୫ମିନିଟ୍‌ରେ ଆସିଲେ । ପ୍ରାୟ ୪୫ମିନିଟ୍ ତାଙ୍କ ସଙ୍ଗେ କଥାବାର୍ତ୍ତା ଚାଲିଲା । ସୁଧୀର ବାବୁ ପ୍ରଭୃତି ସବୁ ଅଫିସରଙ୍କୁ ଆଣି ପାଖରେ ବସାଇଥିଲି । ଜଗତ୍‌ବନ୍ଧୁ ବାବୁ କାନ୍ଦି ପକାଇଲେ । ମୁଁ ଯେପରି କାର୍ଯ୍ୟ କରୁଥିଲି ସେ ସେପରି କଦାପି ପାରିବେ ନାହିଁ ବୋଲି ବାରମ୍ବାର ସମସ୍ତଙ୍କ ଆଗରେ କହିଲେ । ୫ଟା ବେଳେ ଦୁଇ ଅଫିସର କର୍ମଚାରୀମାନଙ୍କର ଗୋଟିଏ ସଭା ହେଲା । ଜଗତବନ୍ଧୁ ବାବୁ କ୍ୟାବିନେଟ୍ ଡିପାର୍ଟମେଣ୍ଟର ବିଦାୟ ସଭାକୁ ଯାଇଥିବାରୁ ମୁଁ ଲୋକୁ

ଏଥିରେ ଯୋଗଦେଇ ନ ପାରି ଶେଷ ଆଡ଼କୁ ଆସିଲେ । ସଭାରେ ସୁଧୀରବାବୁ ଆଗ ବକ୍ତୃତା ଦେଇ କାନ୍ଦିଲେ । ମୋ ସଙ୍ଗେ ତାଙ୍କ ସମ୍ପର୍କ ମୂଳରୁ କିପରି ଥିଲା ଉଲ୍ଲେଖ କରି ବର୍ତ୍ତମାନ ତାଙ୍କର ଅତୀତ ବ୍ୟବହାର ପାଇଁ ମର୍ମନ୍ତୁଦ ଦୁଃଖ କ୍ଷୋଭ କରୁଛନ୍ତି ବୋଲି କହିଲେ । ମୁଁ ଅଳ୍ପ ଦିନ ପରେ ପୁଣି ଫେରି ମନ୍ତ୍ରୀ ହେବ ବୋଲି ଆଶା କଲେ । ଯାଦବବାବୁ ମଧ୍ୟ ବହୁତ କହିଲେ । ଦୁହେଁ କାନ୍ଦି କାନ୍ଦି କହିବାରୁ ମୁଁ ଏମାନଙ୍କ ଆନ୍ତରିକତାରେ ମୁଗ୍ଧ ହେଲି । ମୁଁ ମଧ୍ୟ ଟିକିଏ କାନ୍ଦି କାନ୍ଦି ହୋଇଗଲି । କିନ୍ତୁ ମୁଁ ଯେତେବେଳେ ଭବିଷ୍ୟତର ଚିତ୍ର ସମସ୍ତଙ୍କ ଆଗରେ ଥୋଇଲି । ସମସ୍ତଙ୍କର ମୁହଁରେ ଉତ୍ସାହ ପରିସ୍ଫୁଟ ହେଲା । ଏହିପରି ମୋର ଚାକିରି ଅଧ୍ୟାୟ ସରିଲା । (୧୩ । ୭ । ୧୯୫୫)

## ଆଜି ମୁଁ ସ୍ୱାଧୀନ

ଆଜି ମୁଁ ସ୍ୱାଧୀନ, ଅର୍ଥାତ୍ ମାମୁଲି କଥାରେ ବେକାର । ଏ ବେକାରି ୧୯୩୩ଠାରୁ ଆଜି ପର୍ଯ୍ୟନ୍ତ ହୋଇ ନ ଥିଲି । ୧୯୩୯ରେ ନବଭାରତ ପ୍ରେସ ସ୍ଥାପିତ ହେଲା, ୧୯୪୧ରେ ସେଠାରୁ ସିନା ଗଲି, ଜିଲ୍ଲା ବୋର୍ଡ ଓ ଲୋକାଲ ବୋର୍ଡ ଥିବାରୁ କାମ ପାଇଁ ଚିନ୍ତା ନ ଥିଲା । ୧୯୪୪ ଜାନୁଆରି ଆଠ ତାରିଖରେ ଚାକିରିରେ ପଶିଲି । କାମ କରିବାକୁ ବହୁତ ସୁବିଧା ମିଳିଲା । ମୁଁ ଏକରକମ ସ୍ୱାଧୀନ ଥିଲି । ସ୍ୱାଧୀନ ଚିନ୍ତା ପାଇଁ ମୋତେ ଯେତେ ସମୟ ଓ ସୁବିଧା ମିଳିଥିଲା, ଚାକିରିରେ ଆଉ କାହାକୁ ସେପରି ମିଳିଥିଲା ବୋଲି ମନେ ହେଉନାହିଁ । ୧୯୫୦ ପର୍ଯ୍ୟନ୍ତ ଅତି ଆନନ୍ଦରେ ସମୟ କଟିଲା । ମୋର ଦୁର୍ଯୋଗକୁ ମହତାବ୍ ବାବୁ ୧୯୫୦ ରେ ଦିଲ୍ଲୀର ପ୍ରଲୋଭନରେ ପଡ଼ିଗଲେ ଓ ନବବାବୁଙ୍କ ପରି ଜଣେ ଅଯୋଗ୍ୟ ବ୍ୟକ୍ତି ଆସି ମୁଖ୍ୟମନ୍ତ୍ରୀ ହୋଇଗଲେ । ତାଙ୍କ ସାଙ୍ଗକୁ ବି. ମୁଖର୍ଜି ପରି ଅଯୋଗ୍ୟ ଚିଫ୍ ସେକ୍ରେଟାରି । ଠିକ୍ ଅବୁଝାମଣା ରଜାକୁ ପାଳଚଣ୍ଡା ମନ୍ତ୍ରୀ । ସେହି ଦିନୁ ମୋତେ ଚାକିରି ବିଷ ପରି ଲାଗିଲା । ନିଜର ସାଧୁ ଇଚ୍ଛା ମଧ୍ୟ କାର୍ଯ୍ୟରେ ପୂରଣ ହୋଇ ପାରିଲା ନାହିଁ । ଆଉ ୩ ବର୍ଷରୁ ଅଧିକ ବିଗ୍ଭରିଲି, ନବବାବୁଙ୍କର ଜ୍ଞାନ ଉଦୟ ହେବ, ସେ କୌଣସି କାର୍ଯ୍ୟ କଲାବେଳେ ଟିକିଏ ଚିନ୍ତା କରିବେ ଓ ୫ ଜଣଙ୍କୁ ପଚାରି କରିବେ । ତାହା ହେଲା ନାହିଁ, ଅଫିସରମାନେ ଖାଲି ହାଁ ଜୀ ହାଁ ଜୀ କରିବାରେ ରହିଲେ । ମୋ ପ୍ରତି ଯେଉଁ ବେଖାତିର ହେଉଥିଲା, ତାହା କ୍ରମେ ଘୃଣାରେ ପରିଣତ ହେବାକୁ ବସିଲା । ଗତ ଦେଢ଼ ବର୍ଷ ହେଲା ମୁଁ ସ୍ଥିର କରି ସାରିଥିଲି ଆଉ ରହିବି ନାହିଁ । ନିଜର ଭାବିବା କଥା ଅନୁସାରେ କାର୍ଯ୍ୟ କରିବାର ସାହସ ଅର୍ଜନ କରିବାକୁ ଏତିକି ଦିନ ଲାଗିଲା । ସେ ସାହସ ତ ମନର ସାମଗ୍ରୀ ପଇସା ପଦ ସହିତ ତାହାର ସଂପର୍କ ନାହିଁ । ପଇସା ପେଟ ପୋଷିବାକୁ ଲୋଡ଼ା, ତାହା ମୂଳରୁ ବି ପାଇଛୁ । ଆଜି ଦିନ ତମାମ ଭବିଷ୍ୟତ ପାଇଁ ଚିନ୍ତା କରିବାକୁ ସମୟ ମିଳିଲା ନାହିଁ । ପୁରୁଣା ଚିଠିପତ୍ର ଦେଖି ନଷ୍ଟ କରିବାରେ ବହୁତ ସମୟ ଗଲା । (୧୪ । ୭ । ୧୯୫୫)

ଆଜି ନିତ୍ୟ କର୍ମ କରୁକରୁ ଡେରି ହୋଇଗଲା । ସେତିକି ସାରି ମୋର ଚିଠିପତ୍ର ଦେଖି ଯେଉଁମାନଙ୍କ ପାଖକୁ ଉତ୍ତର ଦେବାର କଥା, ସେଥିରେ ଲାଗିଲି । ମହତାବ

ବାବୁଙ୍କର ଖଣ୍ଡିଏ ଚିଠି ବହୁ ଦିନ ହେଲା ଉତ୍ତର ଦିଆ ନ ହୋଇ ମୋ'ପାଖେ ପଡ଼ି ରହିଥିଲା । ସ୍ମୃତିରେ ଥିଲା ତେବେ ତାହାର ଉତ୍ତର ଦିଅ ହୋଇ ପାରି ନ ଥାନ୍ତା । ଆଜି ତାହା ଲେଖିଲି । ବର୍ତ୍ତମାନର ରାଜନୀତିକ ସମସ୍ୟାର ଆଲୋଚନା କରି ସେଥିରେ ମୋର ଓ ତାଙ୍କର କର୍ତ୍ତବ୍ୟ ନିର୍ଣ୍ଣୟ କରିବାର ଉଦ୍ୟମ ଏ ଚିଠିରେ କରିଛି । ମଧୁସୂଦନବାବୁ ଏ ଚିଠି ପଢ଼ି କ'ଣ ମନେ କରିବେ ଦେଖାଯାଉ ।

ଆଜି ଅପରାହ୍ଣରେ ସେଦେଶଟେସି ଶଚିବାବୁଙ୍କ ସ୍ତ୍ରୀ ଦେଖା କରିବାକୁ ଆସିଥିଲେ । ତାଙ୍କ ସଙ୍ଗେ ପିଲାଙ୍କ ଶିକ୍ଷା ବିଷୟରେ ଆଲୋଚନା ହେଲା । ସେ ଝିଅକୁ କନ୍‌ଭେଣ୍ଟ୍‌ରେ ପାଠ୍‌ପଢ଼ାଉଛନ୍ତି । ସେ ବିଷୟରେ ମୋ'ର ମତ ପ୍ରକାଶ କଲି । ଏ ବିଷୟରେ ନବଜୀବନରେ ବିଶେଷ ଆଲୋଚନା କରିବାକୁ ହେବ ।

ରାମପ୍ରସାଦ ବାବୁ ଆସିଲେ । ତାଙ୍କ ସଙ୍ଗେ ଏଣୁତେଣୁ ଆଲୋଚନା ହେଲା । ଶଚି ବାବୁ ବି ଆସିଥିଲେ ।

ପୁଅ ଆଜି କଲେଜଏଟରେ ନାମ ଲେଖାଇଲା । (୧୫ । ୭ । ୫୫)

## ଶ୍ରୀ ଗଣନାଥ

ସକାଳୁ ଦୁଇ ଡିପାର୍ଟମେଣ୍ଟର କର୍ମଚାରୀମାନଙ୍କ ବିଷୟରେ ମୋର ବ୍ୟକ୍ତିଗତ ମତ ସେମାନଙ୍କ confidential character Roll ରେ ଲେଖିଲି । ମୁଁ ତାହା ବିରୁଦ୍ଧରେ କିଛି କେବେ ଲେଖେ ନାହିଁ । ଆଜି କେବଳ କୋରାପୁଟ ଜିଲ୍ଲା ଲୋକ ସଂପର୍କ ଅଫିସରଙ୍କ ବିଷୟରେ ମୋର ଠିକ ମତ ଲେଖିଦେଲି । ସଦାଶିବ ବାବୁଙ୍କ ସଂବନ୍ଧୀ ଓ ଏଜେଣ୍ଟ ହୋଇଥିବାରୁ ସେ ସ୍ବୀକାରରେ ଅଛନ୍ତି । ଜିଲାମାଜିଷ୍ଟ୍ରେଟମାନଙ୍କର ତାଙ୍କ କାମରେ ସନ୍ତୋଷ ନାହିଁ । ମୁଁ ବି ସେ କେବେ କିଛି କରିଥିବାର ଦେଖିନାହିଁ । ଲେଖିଲି ସେ ତାଙ୍କର ଉଚ୍ଚ ମହଲରେ ସହାୟକ ଥିବାରୁ ତାଙ୍କ ଚାକିରି ରହିଛି ।

ଗଣନାଥ ବାବୁ ଦିଲ୍ଲୀରୁ ଫେରିଲେ । ମୋର ଖୁବ ଆଶା ଥିଲା ସେ ଆସି ପହଞ୍ଚିବା ମାତ୍ରେ ମୋ ପାଖକୁ ଆସିବେ । ସୌଜନ୍ୟ ଦୃଷ୍ଟିରୁ ତ ଆସିବାର କଥା ; କିନ୍ତୁ ସେ ଦିନ ତମାମ ଆସିଲେ ନାହିଁ । ତାଙ୍କର ସ୍ୱରୂପ ପ୍ରକାଶ ପାଇଲା । ତାଙ୍କ ବିଷୟରେ ମୋର ମୂଳରୁ ଟିକିଏ ଟିକିଏ ସଂଦେହ ଥାଏ । ମୁଁ ତାଙ୍କ ପାଇଁ ଯେତେ ଦୂର ପାରେ କରିଛି । କିନ୍ତୁ ସେ ମୋ ନାମରେ ମାଳତୀ ଚୌଧୁରୀଙ୍କ ଆଗେ ଚୁଗୁଲି କରି, ଅନ୍ତତଃ ପକ୍ଷେ ନିଜେ ଭଲେଇ ହୋଇ ମୋ ପ୍ରତି ସେମାନଙ୍କୁ ଅତିଶୟ ବିତଶ୍ରଦ୍ଧ କରିଦେଲେ । ଜଣେ ଲୋକ ପ୍ରତି ଅନ୍ୟ ଲୋକ ଯେତେ ଶ୍ରଦ୍ଧା ଓ ଆଦର ଦେଖାଇବାର କଥା, ତାହା ବା ତହିଁରୁ ଅଧିକ ମୁଁ ଗଣନାଥ ବାବୁଙ୍କୁ ଦେଖାଇଛି ; କିନ୍ତୁ ତାଙ୍କଠାରୁ ଯାହା ମିଳିଛି, ତାକୁ ମୁଁ ବୋଲି ସଂଭାଳି ଯାଇଛି । (୧୬ । ୭ । ୧୯୫୫)

## ଭୁବନେଶ୍ୱର ବସା ଛାଡ଼ିଲି :

ଆଜି ବସା ଛାଡ଼ିବାର କଥା । ଭୁବନେଶ୍ୱରରେ ମୁଁ ଯେଉଁ ଘରେ ଥିଲି, ତାହା ତିଆରି ହେବା ସଙ୍ଗେ ସଙ୍ଗେ ମୁଁ ଦଖଲ କରିଥିଲି । ତା' ପ୍ରତି ଗୋଟିଏ କିପରି ମମତା ହୋଇଯାଇଥିଲା । ଭଲ ବଗିଚାଟିଏ କରିଥିଲି । ପ୍ରାୟ ୨୦ଟି ସ୍ଥାୟୀ ଗଛ (ଆମ୍ବ ଓ ପିଜୁଳି) ଲଗାଇଥିଲି । କଦଳୀ ୩୦୦ ମଲାରୁ ଅଧିକ ଲଗାଇ ଥିଲି । ସେସବୁ ଛାଡ଼ି ଯିବା ଯେତେ ନ ବାଧୁଛି, ମୁଁ ଏଠାରୁ ଗୋଡ଼ କାଢ଼ିବା ମାତ୍ରେ ସେ ଗୁଡ଼ିକ ବରବାଦ ହୋଇଯିବ, ଏହି ଆଶଙ୍କାରେ ମୁଁ ଦୁଃଖିତ । ମୁଁ ଆଇକରି ମଧ୍ୟ ସଦାଶିବ ବାବୁ କଦଳୀ ପୁଆ ଛାଡ଼ିବାକୁ ଯେତେବେଳେ ଖବର ପଠାଇଲେ, ନାହିଁ କରି ପାରିଲି ନାହିଁ । ତାଙ୍କ ଦେଖା ଆଉ କଏ କମିତି ଗଛ ତାଡ଼ିବାରେ ଲାଗିଲେ । ତଥାପି ମୋର ଭାଗିଦାରେ ବଗିଚାଟି ଯଥାସମ୍ଭବ ଅକ୍ଷୁର୍ଣ୍ଣ ରହିଛି । ସ୍ଥାୟୀ ଗଛରେ କେହି ହାତ ମାରି ନାହାନ୍ତି ।

ଦୁଇଟା ବେଳେ ଯିବାର କଥା କହିଥିଲି । ଟ୍ରକ ଆସି ଜିନିଷ ଲଦା ହେଉ ହେଉ ୫ଟା ହେଲା । ଟ୍ରକ ଛାଡ଼ିବା ପରେ ମୁଁ ଆସିଲି ନବବାବୁଙ୍କ ଘର ବାଟେ । ସେ ମୋତେ ତାଙ୍କ ଘରେ ପଶିବାର ଦେଖି ଉଠି ଆସିଲେ । ତାଙ୍କ ମୁହଁ କଳା ପଡ଼ିଯାଇଥାଏ । ମୁଁ ଯେତେବେଳେ କହିଲି, 'ଆଜିଯାଏ ରହିଯାଇଥିଲି, ଆଜି ଯାଉଛି' ସେ ଉତ୍ତର ନ ପାଇ କିଛି ସମୟ ପରେ କହିଲେ, ମୁଁ ତ ଏଠାରେ ନିଃସଙ୍ଗ ଅବସ୍ଥାରେ ପଡ଼ିଛି । ମୁଁ ସେ ପ୍ରଶ୍ନର ଜବାବ ନ ଦେଇ କହିଲି, 'ମୋ ଯୋଗୁ ଆପଣଙ୍କର ଯାହା ଅସୁବିଧା ହେଉଥିଲା ତାହାର ତ ଆଉ ଅବକାଶ ରହିବ ନାହିଁ । ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, 'ତୁମ ଯୋଗୁଁ ତ ମୋର କିଛି ଅସୁବିଧା ହେଉ ନ ଥିଲା ।' ମୁଁ ତାଙ୍କ ହାତ ଧରି ବିଦାୟ ନେଲି । ସେ ମୋତେ ଚାହିଁ ରହିଲେ । ଯେ ଦେଖିବ ଜାଣିବ ସେ ଭାରି ବିବ୍ରତ ହୋଇଗଲେ । କିନ୍ତୁ ତାଙ୍କୁ ଦେଖିକରି ଜାଣିବା ନିରାପଦ ନୁହେଁ ବୋଲି ମୁଁ ବୁଝିଛି । ଡିପାର୍ଟମେଣ୍ଟ ବାଟେ ଆସିଲି । ଗଣନାଥ ବାବୁଙ୍କଠାରୁ ବିଦାୟ ନେବାକୁ ଯାଇଥିଲି । ସେ ଚଉକିରୁ ଉଠିପଡ଼ିଲେ । ଭାଗ୍ୟର କଥା ! କଟକରେ କୁଳ ବସାରେ ଓହ୍ଲାଇଲି । (୨୨ । ୭ । ୧୯୫୫)

## ଦର୍ପଣୀ ରାଣୀ ସାନ ଭଉଣୀ ହେଲେ :

ଆଜି ଦର୍ପଣୀ ରାଣୀଙ୍କ ସଙ୍ଗେ କଥାବାର୍ତ୍ତା ହେଲି । ସେ ଭାଇ ବୋଲି ଡାକିଲେ । ମୁଁ କହିଲି, ମୁଁ ବଡ଼ ଭାଇ, ମୋତେ ସେଇ ଦୃଷ୍ଟିରେ ଦେଖିବାକୁ ହେବ । ସେ ହଁ କଲେ । ତା'ପରେ ଆଉ ବ୍ୟବସାୟୀ ଢଙ୍ଗ ମୁଁ ଦେଖାଇଲି ନାହିଁ । ୫୪୦୦ଙ୍କା ତାଙ୍କ ପାଖକୁ ପଠାଇଦେଲି, ରସିଦ ପାଇଁ ଅପେକ୍ଷା କଲି ନାହିଁ । ଆଜି ନେଇଥିବା ଘରକୁ ଜିନିଷ ବୁହା ଆରମ୍ଭ ହେଲା । ଭଲ ହେଉ ମନ୍ଦ ହେଉ, ମହର୍ଗ ହେଉ ବା ଶସ୍ତା ହେଉ, ଏଇ ଘରରେ ବର୍ତ୍ତମାନ କିଛି ଦିନ ମୋର କାର୍ଯ୍ୟ ଚାଲିବ । ଥରେ ୨୨ବର୍ଷ ପୂର୍ବେ କଟକର ବାଙ୍କାବଜାରରେ ଗୋଟିଏ ଅଡ଼ଡ଼ା ଘରେ ନବଭାରତ ପ୍ରେସ ବୋଲି ଗୋଟିଏ ଅନୁଷ୍ଠାନ ଆରମ୍ଭ କରିଥିଲି ।

ସେଇ ଅଭାବ ଘରୁ ଆରମ୍ଭ ହୋଇଥିଲା ଗୋଟିଏ ବିରାଟ ଆନ୍ଦୋଳନ । ତାହା ସେତେବେଳେ ୪।୫ ବର୍ଷ ସମଗ୍ର ଉତ୍କଳରେ ଟିକିଏ ଉଦ୍ଦୀପନା ଆଣିଥିଲା । ପଣ୍ଡିତ ନୀଳକଣ୍ଠ ଦାସଙ୍କ ଆତ୍ମଂଭରିତା ଯୋଗୁଁ ସେ ଅନୁଷ୍ଠାନଟିର ମାଟି ମରିଗଲା । ତା'ପରେ ପ୍ରାୟ ୮ବର୍ଷ ତଳେ ମହତାବ ବାବୁଙ୍କ ସାହାଯ୍ୟ କରିଥିଲି, ପ୍ରଜାତନ୍ତ୍ର ପ୍ରେସ ଓ ଅନୁଷ୍ଠାନ ଗଢ଼ିବାରେ । ୪।୫ ବର୍ଷ ପ୍ରଜାତନ୍ତ୍ର ଏପରି ଚେକିଥିଲା ଯେ, ଆଜି ଯାଏଁ ମହତାବ ମନେ କରୁଛନ୍ତି, ଏଇ ଅନୁଷ୍ଠାନ ଯୋଗେ ପୁଣି ଦେଶରେ ବିପ୍ଳବର ଶିଖା ଜଳିବ । ଉଦ୍ଦେଶ୍ୟ ସାଧୁ ହେଲେ ତ କେବଳ ଚଳିବ ନାହିଁ । ଠିକ ରାସ୍ତା ଧରି ଚାଲିବା ଦରକାର । ମୁଁ ଆଜି ଖାଲି ଠିକ ରାସ୍ତା ଧରି ଚାଲିବାର ଉଦ୍ଦେଶ୍ୟ ରଖି କାର୍ଯ୍ୟ ଆରମ୍ଭ କରୁଛି । ଯାହା ହେବ ।

'ହିନ୍ଦୁ ଧର୍ମରେ ଜାତି ଓ ତା'ର ଗତି' ବହିର ପାଣ୍ଡୁଲିପି ପ୍ରେସ ପାଇଁ ପ୍ରସ୍ତୁତ ହୋଇଗଲା । ଶେଷ ଅଧ୍ୟାୟରେ ଟିକିଏ ପରିବର୍ତ୍ତନ କରିବାର ଇଚ୍ଛା ଅଛି । ଛପା ଚାଲୁ ଚାଲୁ ହେବ । ସାରକାତ ପ୍ରେସରେ ତାହା ଛପା ହେବାର ସ୍ଥିର ହେଲା । ଅଗଷ୍ଟ ୧୫ ତାରିଖରେ ମିଳିବ ।

ପଣ୍ଡିତଙ୍କ ଘରକୁ ଯାଇଥିଲି । ଦେହ ଖରାପ ଯୋଗୁଁ ସେ ଭାରି ଚିନ୍ତିତ ।

(୩୦ । ୭ । ୧୯୫୫)

**ରାଧାନାଥଙ୍କ ସହ ଭେଟ:**

ସକାଳେ ଚନ୍ଦ୍ରମାଧବ ଆସିଲେ; ତା' ସଙ୍ଗେ ରାସ୍ତାର କମ୍ପାନୀ ବାଲା ବଡ଼ ଗୋଳମାଳ କରୁଛନ୍ତି । ଚନ୍ଦ୍ର ମାନୁ ନାହିଁ ; ସେ ସହଜରେ ଦବିବା ଲୋକ ନୁହେଁ । ତା'ଠାରୁ ଶୁଣିଲି ଟୁକି ମହାନ୍ତି ମୋ ନାମରେ ପ୍ରଚାର କରୁଛି ଯେ ମୁଁ କୋଟିଏ କୋଡ଼ିଏ ଲକ୍ଷ ଟଙ୍କାରେ ଗୋଟିଏ ବ୍ୟବସାୟ ଆରମ୍ଭ କରୁଛି, ଚନ୍ଦ୍ରମାଧବ ସେଥିରେ ରହୁଛି । ଏକଥା ଶୁଣିଲା ବେଳକୁ ମୋ ମନରେ ପଇସା ଅଭାବ ନେଇ ଶୋଚନା ହେଉ ଥିଲା । ଏ ଚର୍ଚ୍ଚା ଗୁଡ଼ିକ ଶୁଣିବା ମାତ୍ରେ ହସିଲି । ଯାହାକୁ ଲୋକେ ଏତେ ଧନୀ ବୋଲି ବିଚାରୁଛନ୍ତି ସେ କାହିଁକି କାଙ୍ଗାଳ ବୋଲି ନିଜକୁ ବିଚାରିବ !

ପଣ୍ଡିତ ଜଗନ୍ନାଥ ରଥଙ୍କୁ ଡକାଇ ପଠାଇଥିଲି, ତାଙ୍କ ଆଗେ ଅସ୍ପୃଶ୍ୟତା ସଂପର୍କୀୟ ବହିଟା ପଢ଼ିବାକୁ । ସେ ଦି'ପହର ଗାଡ଼ିରେ ଆସି ପହଞ୍ଚିଲେ । ଦିନ ପ୍ରାୟ ଗୋଟାକ ବେଳୁ ୭ଟା ପର୍ଯ୍ୟନ୍ତ ପଢ଼ା ଲାଗିଲା । ସେ ଖୁବ ପସନ୍ଦ କଲେ । କହିଲେ, ଏଥିରେ ଯାହା ଲେଖା ହୋଇଛି ସେଥିରେ କେହି କିଛି ଆପତ୍ତି କରି ପାରିବେ ନାହିଁ । ଏ ପୁସ୍ତକ ଖୁବ ବିକ୍ରୀ ହେବ । 'ଦେବ ଦେବଙ୍କ ଦୁର୍ଗତି' ବହିପରି ବୋଲି ସେ ଆଶା ପ୍ରକାଶ କଲେ । ମୋ'ର ମଧ୍ୟ କମ ଆଶା ନୁହେ କିନ୍ତୁ ପଣ୍ଡିତେ ଯେତେ ଆଶା କରୁଛନ୍ତି ମୁଁ ସେତେ କରିପାରୁନାହିଁ । ତାଙ୍କ ଭାଇ ରଘୁ ରଥେ ମଧ୍ୟ ଖୁବ୍ ଆଶା କରୁଛନ୍ତି, ବହି ବହୁତ ବିକ୍ରୀ ହେବ ବୋଲି । କ'ଣ ଲେଖା ହେଉଛି ସେ କଥାରେ ବିଶେଷ କ୍ଷତି ବୃଦ୍ଧି ହେବ ନାହିଁ । ଚନ୍ଦ୍ରମଣିବାବୁ କ'ଣ ଲେଖିଛନ୍ତି, ଏହା ଜାଣିବା ନିମନ୍ତେ ଲୋକେ କିଣିବେ ବୋଲି ତାଙ୍କର ବିଶ୍ୱାସ । ଚନ୍ଦ୍ରମାଧବର ମଧ୍ୟ ସେଇ ବିଶ୍ୱାସ । ବନ୍ଧୁମାନେ ଯେତେ ଭରସା ଦେଉଛନ୍ତି, ସେଥିରୁ

କେତେକାଂଶ ମାତ୍ର ଫଳିଲେ ମୋର ପେଟ ପୋଷିବାର ଶୋଚନା ରହିବ ନାହିଁ । ଆଜି କୁଳ ଗାଁକୁ ଗଲା ତା ପିଲଙ୍କୁ ଗାଁକୁ ଆଣିବାକୁ । ଏତେ ଶୀଘ୍ର ସେ ଯାଇ ପିଲଙ୍କୁ ଘେନି ଆସିବା ମୋତେ କଅଁଠ ଲାଗିଲା । ମୁଁ ଏଠାରେ ରହିବାକୁ ବୋଧେଇ ଭିଡ଼ ପଡ଼ିବ ବୋଲି କୁଳ ସ୍ତ୍ରୀ ଗାଁକୁ ଚାଲି ଯାଇଥିଲା ବୋଲି ମନେ ହେଲା । ପୁଣି ଭାବିଲି, ମୁଁ ଏଠାରେ ଥାଇ ଥାଇ ପିଲଙ୍କୁ ଘେନି ଆସିଲେ ତାକୁ ସୁବିଧା । ପିଲାଗୁଡ଼ିକ ଏଠାରେ ପଢ଼ୁଛନ୍ତି, ଅପ୍ରୟୋଜନରେ କାହିଁକି ଗାଁରେ ରହିବେ ।

ସନ୍ଧ୍ୟାରେ ନୂଆ ଘରକୁ ଗଲି ପଣ୍ଡିତଙ୍କ ସଙ୍ଗେ । ରହିବାର ସୁବିଧା ହେବ, ପ୍ରେସ ବଢ଼ିଲା ବେଳକୁ ଘର ଟିକିଏ ଛୋଟ ହେବ ବୋଲି ମନେ ହେଉଛି । ବର୍ତ୍ତମାନ ମୋ'ର ଚଳିବାକୁ, ପିଲେ ଚଳିବାକୁ ଯାହା ଦରକାର ତାହା ଗୋଟିଏ ଛୋଟ ପ୍ରେସରେ ସ୍ୱଚ୍ଛନ୍ଦରେ ଚଳିବ ।

ନୂଆ ଘରଠାରୁ ରାଧାନାଥ ବାବୁଙ୍କ ସଙ୍ଗେ ଦେଖା କରିବାକୁ ଆସିଲି । ଏ ମହାଶୟଙ୍କ ସଙ୍ଗେ ଦେଖା କରିବା, ସମୟ ନଷ୍ଟ ମାତ୍ର । ତାଙ୍କଦ୍ୱାରା କିଛି ଉପକାର ହୋଇ ପାରିବ ନାହିଁ । ମିଛରେ ସେ ଦୁଃଖ କଲେ, ସୌଜନ୍ୟ ଦେଖାଇ ମୁଁ ଟିକିଏ ତାଙ୍କ ସଙ୍ଗେ ଇସ୍ତଫା ଦେବା ପୂର୍ବରୁ କଥାବାର୍ତ୍ତା ହେଲି ନାହିଁ ବୋଲି । ସେ ବି ତ ମୋତେ ପଦେ ପଚାରିଲେ ନାହିଁ ! ଦୁଇ ତିନିଥର ଦେଖା ହୋଇଛି । ଗତାନୁଗତିକ ଶିଷ୍ଟରେ ମୋତେ ଟିକିଏ ସାହାଯ୍ୟ କରିବାକୁ କହିଲି । ଭବିଷ୍ୟତର ଉଦ୍ଧାର ବିଷୟରେ ଯେଉଁ ଚିତ୍ର ଦେଲି ତାହା ସେ ଖୁବ୍ ମନଦେଇ ଶୁଣିଲେ । ନବବାବୁଙ୍କର ତାଙ୍କ ବିଷୟରେ କ'ଣ ମତ ସେ ବିଷୟରେ ମଧ୍ୟ ଟିକିଏ ସୂଚନା ଦେଇ ଦେଇଛୁ । (୩୧ । ୭ । '୧୯୫୫)

## ନୂଆ ଜୀବନ ନୂଆ ବସାରେ :

ଆଜି ସକାଳୁ ପଣ୍ଡିତେ ପୁରୀ ଗଲେ । ମୁଁ ଆଜି ଗଲି ରାଧାରମଣ ପ୍ରେସକୁ ମହାଦେବ ବହି ଛପିବାକୁ ଦେବା ସକାଶେ । ଲକ୍ଷ୍ମୀଧର ବାବୁଙ୍କୁ ନ ଦେଖି ଦାଶରଥି ପ୍ରେସରେ ପାଣ୍ଡୁଲିପି ଦେଇ ଆସିଲି । ଏ ପ୍ରେସର ମାଲିକ ଓ ମେନେଜର ମୋତେ ଖୁବ୍ ମାନନ୍ତି । ସ୍ୱାଙ୍କର ପାଖରେ ବହିଟି ଛପା ହେଲେ ଭଲ ବୋଲି ସ୍ୱାଙ୍କୁ ଦେଲି । ସେ ଜବାବ କରିଛନ୍ତି, ୧୫ ତାରିଖ ସୁଦ୍ଧା ବହି ଦେବେ । ଏଥିପାଇଁ ସର୍ବେଶ୍ୱର କାଗଜ ଓ ଟଙ୍କାର ବ୍ୟବସ୍ଥା କରିବେ । ବାକି ଟଙ୍କା ବହି ବିକା ହେଲେ ଉଦ୍ଧାର କରିବାକୁ ହେବ । ୧୫ ତାରିଖରୁ ଆଉ କିଛି ଦିନ ଗଡ଼ାଇ ଦେଇଥିଲେ ନିଜର ପ୍ରେସରେ ବହି ଛପା ହୋଇ ପାରିଥାନ୍ତା ; କିନ୍ତୁ ସେପରି କଲେ ସ୍ୱାଧୀନତା ଦିବସର ଫାଇଦା ଉଠାଇ ପାରିବି ନାହିଁ । ସ୍ୱାଧୀନତା ଦିବସ ଓ ଜାନୁଆରୀ ଛବିଶକୁ ମୁଁ ମୋ' ଜୀବନରେ ମାନିବାକୁ ଚାହେଁ । ଆଉ ଗୋଟିଏ ଦିବସ ଗାନ୍ଧୀ ଜନ୍ମ ତିଥି । ବିନୋବାଙ୍କ ପରି ନୂଆ ଜନପଦର ପ୍ରତିଷ୍ଠା ନ କରି ଏହି ତିନୋଟି ଦିବସର ଲୋକପ୍ରିୟତା ବଢ଼ାଇବାକୁ ମୋର ଇଚ୍ଛା । ଆଜି ବି ଗୋଟିଏ ଦିବସ । ତିଳକ ମହାରାଜଙ୍କର ତିରୋଧାନ ଦିବସ । ଆଜି ମୋର ନୂଆ ଜୀବନର ପ୍ରଥମ ଆରମ୍ଭ କଲି ଦେବ ଦେବଙ୍କ ଦୁର୍ଗତି ପୁସ୍ତକର

ରୁପାରେ । ନୂଆ ଘରକୁ ମଧ୍ୟ ଆଜ ଆସିଲ । ପିଲାଙ୍କ ଉପରେ ଆଜ ଟିକଏ ରାଗିଲି । ଏହାର କାରଣ ହେମ ପାଖକୁ ଶଶୀ ବୋହୂର ଚିଠି । ସେଥିରେ ସେ ଲେଖିଥିଲା ଯେ, ତା'ର ମନ ସବୁବେଳେ ଖରାପ ହେଉଛି । ପିଲାଙ୍କ ଦେହ ବି ଭଲ ନାହିଁ । ତାହା ପଢ଼ି ମୋର ଅସହାୟତାରେ ମୁଁ ବିରକ୍ତ ହେଲି । ନୂଆ ଘରେ ନାନା ପ୍ରକାର ଅସୁବିଧା ଥିବା ଆନ୍ତରର ଏକ କାରଣ ।

(୧ । ୮ । ୧୯୫୫)

**ନବଜୀବନ ପ୍ରେସ:**

କାଲି ରାତିରେ ମୋର ଯେଉଁ ବିରକ୍ତି ଆରମ୍ଭ ହୋଇଥିଲା, ତାହା ଆଜ ସକାଳେ ଭୟାନକ ରୂପ ଧରିଲା । ଡାଲି ତରକାରି ଫୋପାଡ଼ି ଦେଲି । ବହୁ ଦିନର ଗୋଟିଏ ପଥର ଥାଳି ଭାଙ୍ଗି ଦେଲି । ଏପରି ଉତ୍ପାତ ବହୁ ଦିନ ହେଲା ମୁଁ ହୋଇ ନ ଥିଲି । ଡାଲି ତରକାରି ଫୋପାଡ଼ିବା ପରେ ମୁଁ ଭାତରେ ପାଣି ପୂରାଇ ଗୋଟିଏ ପିଆଜ ସଙ୍ଗେ ବେଳେ ଖାଇଲି । କାଲି ରାତିରେ ରୁଟି ଖଣ୍ଡେ ଖାଇଥିବାରୁ ଭାରି ଭୋକ ଲାଗୁଥିଲା । ଏତକ ଖାଇଲା ପରେ ମନ ଶାନ୍ତ ହେଲା । ପ୍ରଥମେ ସ୍ଥିର କଲି ମଠର ବାହାରେ ପଡ଼ିବାରୁ ମୋର କାଲି ରାତିରେ ଅଶାନ୍ତ ହୋଇ ଥିଲା । ତାହାକୁ ବନ୍ଦୀ କରିବା ନିମନ୍ତେ ଯୋଗାଡ଼ କରିବ । ମାତୃଭୂମି କାଗଜରେ ଗୋଟାଏ ବିଜ୍ଞାପନ ଦେବାକୁ ଗଲି । ସେଠାରୁ ଆସି କୁଳ ପାଖେ ପହଞ୍ଚି କଳିଙ୍ଗ ପ୍ରେସର ମାଲିକଙ୍କ ସଙ୍ଗେ ସେ ଦେଖା କରିଛି କି ନାହିଁ ପଚାରିଲି । ସେ ପଚାରି ନ ଥିଲା । ମୁଁ କହିବାରୁ ଗଲା । ମୁଁ ତାକୁ ବୁଝିବାକୁ ଛାଡ଼ିଦେଇ ମ୍ୟୁନିସିପାଲିଟିରେ ବାମଦେବ ବାବୁଙ୍କ ସଙ୍ଗେ ଦେଖା କରିବାକୁ ଗଲି । କୁଳ ଲୋକ ପଠାଇଲା ଯେ କଳିଙ୍ଗ ପ୍ରେସ ବନ୍ଦୀ ହେବ । ମୁଁ ଆସି ୪ ୫୦୦ ରେ ଦାମ ଠିକ୍ କଲି । ମୋତେ ଏ ଦାମ ବଡ଼ ସୁବିଧା ଜଣାପଡ଼ିଲା । ଆଉ କିଛି ଅକ୍ଷର ଯୋଗାଇ ଦେଲେ, ଏତିକିରେ ବେଶ୍ କାମ ଆରମ୍ଭ କରିହେବ । ଓ୍ୱେବନ ମିଶ୍ରେ ଗୋଟାଏ ଟ୍ରେଡ଼ିଲରେ ଯେତେ କାମ କରାଉଛନ୍ତି, ଅନ୍ତତଃ ସେତିକି ତ କରି ପାରିବ । ପ୍ରେସରୁ ମାସକୁ ଟଙ୍କା ହଜାରେ କରିବାରେ ବିଶେଷ କିଛି ଅସୁବିଧା ହେବ ନାହିଁ ବୋଲି ମନେ ହେଉଛି । ତା'ପରେ ତ କାଗଜ ଅଛି, ମୋ ବହି ପତ୍ର ମଧ୍ୟ । ବର୍ଷକ ଭିତରେ ମୁଁ ମୋର ଅବସ୍ଥାକୁ ଗୁଡ଼ାକର ବେଳର ସ୍ୱଚ୍ଛଳତାକୁ ନେଇ ପାରିବ ବୋଲି ଆଶା କରୁଛି । ଶଶୀ ବୋହୂ ପାଖକୁ ଖଣ୍ଡିଏ ଚିଠି ଦେଲି । ଆଜ ମୋର ଖଣ୍ଡିଏ ପ୍ରେସ୍ ହେଲା । ଯାହାକି ଗତ ୨୦ ବର୍ଷ ହେଲା ମୋର ଆକାଂକ୍ଷା ଥିଲା ।

(୨ । ୮ । ୧୯୫୫)

ଆଜ ସକାଳୁ ବହୁତ ସମୟ ବାଳକୃଷ୍ଣ ପଟ୍ଟନାୟକଙ୍କ ସଙ୍ଗେ କଥାବାର୍ତ୍ତାରେ ଗଲା । ବୁଢ଼ାକୁ ୭୫ରୁ ବେଶୀ ବୟସ ହେଲାଣି କିନ୍ତୁ ଖୁବ୍ ଫୂର୍ତ୍ତି ଅଛି । ଉଦ୍ୟମ ବି ଖୁବ୍ ଅଛି । ଖଣ୍ଡେ ବହି ଲେଖି ତାହା ପ୍ରଚାର କରିବାରେ ଖୁବ୍ ଆଗ୍ରହ । ଆଜ ତାଙ୍କ ଅତୀତ ବିଷୟରେ ବହୁତ ଗପିଲେ ।

ନାଗଭୂଷଣଙ୍କ ଘରୁ ପ୍ରେସ ମୋର ହାତକୁ କେଉଁ ଦିନ ଆସିବ କଥାବାର୍ତ୍ତା ହେବା ସକାଶେ ଯାଇଥିଲି । କାଲି ତାଙ୍କୁ ଯେଉଁ ଚେକ୍ ଦେଇଥିଲି, ତାହା ବ୍ୟାଙ୍କରେ ଗୃହୀତ ହେଲା

ନାହିଁ । ମୋର ପୂର୍ବ ଦସ୍ତଖତ ସଙ୍ଗେ ବର୍ତ୍ତମାନର ଦସ୍ତଖତର ମେଳ ନ ହେବାରୁ । ମୁଁ ନିଜେ ବ୍ୟାଙ୍କକୁ ଯାଇ ଆଉ ଗୋଟାଏ ଚେକ୍‌ରେ ଟଙ୍କା ଆଣି ନାଗଭୂଷଣଙ୍କୁ ଦେଲି । କାଲି ବା ପଅର ଦିନ ପ୍ରେସ ଫିଟିବାର ଆରମ୍ଭ ହେବ ।

ସନ୍ଧ୍ୟାରେ ମଧୁ ମହାନ୍ତି ଘରକୁ ଗଲି । ତା' ସଙ୍ଗେ ବହୁତ ଆଲୋଚନା ହେଲା । ଖେଳ ବି ହେଲା । ମୋ'ର 'ହିନ୍ଦୁ ଧର୍ମରେ ଜାତି ଓ ତା'ର ଗତି' ବହି ପାଇଁ ଗୋଟିଏ ଭଲ ଫଟୋଷ୍ଟାଟ୍ ସାମଗ୍ରୀ ତା'ଠାରୁ ମିଳିଲା । ଆଜି ଶଶୀ ବୋଉଠାରୁ ଖଣ୍ଡିଏ ଚିଠି ଆସିଲା, ଭଲ ଚିଠି । କାଲି ତା' ପାଖକୁ ଚିଠି ଦେଇଛି । ପୁଣି କବିରାଜଙ୍କ ପାଖକୁ ବି ଚିଠି ଦେଇଛି, ଗାଁକୁ ଯାଇ ପିଲାଙ୍କୁ ଟିକିଏ ଦେଖି ଆସିବା ସକାଶେ । (୩ । ୮ । ୧୯୫୫)

ସକାଳେ ନବଭାରତ ପ୍ରେସର ଜଣେ ପୁରୁଣା କର୍ମଚାରୀ ଶ୍ୟାମ ଆସିଲା । ତା ସଙ୍ଗେ ବହୁତ ଦୁଃଖସୁଖ ହେଲା । ତା'ର ପୂର୍ବ ଆଶା ମୋ ପ୍ରେସ ପୁଣି ନବଭାରତ ପ୍ରେସ ପରି ଅଳ୍ପ ଦିନରେ ମୁଣ୍ଡ ଟେକି ଉଠିବ । ସେ ପ୍ରସ୍ତାବ ଦେଲା, ନୀଳକଣ୍ଠ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କରି ଢେଙ୍କାନାଳରୁ ମୁଁ ଆଣିଥିବା ପୁରୁଣା ମେସିନ୍‌ଟା ଆଣିବା ଓ ତାକୁ ମରାମତି କରି ସେଟ୍ କରିବା । ମୁଁ ହଁ ଭରିଲି, କିନ୍ତୁ ଯେଉଁ ପ୍ରେସ ଯୋଗୁଁ ମୁଁ ସେ କାଳେ ଏତେ ହିନସ୍ତା ହୋଇଛି, ତା ନାମ ଧରିବାକୁ ଆଉ ମୋର ଇଚ୍ଛା ନୁହେଁ ।

ଦେବ ଦେବଙ୍କ ଦୁର୍ଗତି ବହିର ଫେବ୍ରୁଆରୀ ଅଗ୍ରଗତି ହେଲା । ଏଥର ଦ୍ୱିତୀୟ ଭାଗ ମୋତେ ପୂର୍ବଭାଗଠାରୁ ଭଲ ଲାଗୁଛି । ପାଠକେ କ'ଣ ମନେ କରିବେ କେଜାଣି । ଦାଶରଥି ପ୍ରେସର କାଳିନ୍ଦି ଏ ବହିକୁ ଖୁବ୍ ତାରିଫ୍ କରି ଖଣ୍ଡେ ଚିଠି ଲେଖିଛି । ପୁରୀର ଚନ୍ଦ୍ରମଣି ମହାପାତ୍ରଙ୍କ ଆଗରେ ଆଜି ଲେଖିଥିବା ଅଂଶଟି ପଢ଼ିଲି । ସେ ବି ଖୁବ୍ ପସନ୍ଦ କଲେ । ଫଳରେ ଦେଖା ଯିବ । ମହାପାତ୍ରେ ପିଅନମାନଙ୍କର ନେତା ହୋଇଛନ୍ତି । ତାଙ୍କ ସକାଶ ଖଣ୍ଡେ ତ୍ରୈମାସିକ କାଗଜ ବି ଛପାଉଛନ୍ତି । ପିଅନଙ୍କ ଆନ୍ଦୋଳନର ଗୁରୁତ୍ୱ ବିଷୟରେ ବହୁତ ଆଲୋଚନା ହେଲା । (୪ । ୮ । ୧୯୫୫)

ରାଧାରମଣ ପ୍ରେସରୁ ଅଢେଇ ମହଣ ପାଇକା ଅକ୍ଷର ଆଣିବାର ବନ୍ଦୋବସ୍ତ କଲି । ଏଥିରେ ମୋର ନିଜ କାମ ହେବ । ନବଜୀବନ ମାସିକ ପତ୍ର ଓ ଗପବହି ପ୍ରସ୍ତୁତ । ଇଂଲିଶ ବଡ଼ ଅକ୍ଷର ରାଧାରମଣ ଅକ୍ଟୋବର ପହିଲା ସୁଦ୍ଧା ଦେବାକୁ ରାଜି ହୋଇଛନ୍ତି । ଆଉ କିଛି ଅକ୍ଷର ଦରକାର କରୁଛି । ଯେତିକି ସମାଜ ପ୍ରେସରୁ ନେଲେ ହେବ । ସମାଜ ପ୍ରେସରୁ ୩/୪ ମହଣ ଅକ୍ଷର ଆଣିଲେ ମୋ କାମ ହୋଇ ଯିବାର ଆଶା । ହେଡିଂ ଅକ୍ଷର ଯାହା ମିଳିବ ତା'ଠାରୁ ଅଧିକ ଆଣିବାକୁ ହେଲେ ପରେ ଦେଖିବା । ନାଗଭୂଷଣଙ୍କ ପାଖକୁ ଯାଇଥିଲି । ସେ ରବିବାର ଦିନ ସକାଳୁ ପ୍ରେସ ହସ୍ତାନ୍ତରିତ କରିବାକୁ କହିଛନ୍ତି ।

ମୋର ବହି ଛପା କାର୍ଯ୍ୟ ଯଥାରୀତି ଚାଲିଛି । ରାମକୃଷ୍ଣ ନନ୍ଦଙ୍କୁ କଥା ହୋଇଥିବା ବହି ଠିକ୍ ସମୟରେ ମିଳିବାରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଦାଶରଥି ପ୍ରେସ କ'ଣ କରିବେ କେଜାଣି ? ଆଜି ତାଙ୍କୁ ଟିକିଏ ତାଗିଦା ଦେଇ ଆସିଲି ।

ନଶବାବୁଙ୍କ କାରଖାନା ଓ ପ୍ରଜାତନ୍ତ୍ର ପ୍ରେସକୁ ଯାଇଥିଲି । ମୋ ବନ୍ଧୁଙ୍କୁ ସମସ୍ତେ ସ୍ୱାଗତ କରିବେ ବୋଲି ବିଶ୍ୱାସ ହେଉଛି । କଟକରେ ଖୁବ୍ ଜୋର ଚୁଲାବକାର ବ୍ୟବସ୍ଥା କରୁଛି । ଆଜି ସନ୍ଧ୍ୟାରେ ଗଣନାଥବାବୁ ଆସିଥିଲେ ; ଘଣ୍ଟେ ଖଣ୍ଡେ ବସିଲେ । ତାଙ୍କ ନ ଆସିବାଟା ମୋତେ ବାସ୍ତବକ୍ କିଛିଏ ବ୍ୟଥିତ କରୁଥିଲା । ସେ ଯେ ଏଡ଼େ କୃତଘ୍ନ ହୋଇ ପାରନ୍ତି ତାହା ମୋର ବିଶ୍ୱାସ ହେଉ ନ ଥିଲା । ଆଜି ସେ ଆସିବାରୁ ମନରୁ ବହୁତ ଗ୍ଲାନି କମିଗଲା । ତାଙ୍କ ସଙ୍ଗେ ହେମନ୍ତ କୁମାର ମହାନ୍ତି, କୃଷି ଇଞ୍ଜିନିଅର ଆସିଥିଲେ । ବନ୍ଧୁ ସେ ଗୁଡ଼ାଏ ବନ୍ଦୀ କରାଇବେ ବୋଲି ପ୍ରତିଶ୍ରୁତି ହୋଇଛନ୍ତି । (୫ । ୮ । ୧୯୫୫)

ଆଜି ସକାଳେ ବହୁ ଦିନ ପରେ ସତ୍ୟବାଦୀ ପ୍ରେସ ଭିତରେ ପଶିଲି । ପଣ୍ଡିତ ଗୋପବନ୍ଧୁ ଦାସ କି ଏଠାକୁ ଆସିଲେ, ସ୍ୱା ତାଙ୍କ ସତ୍ୟବାଦୀ ପ୍ରେସ ବୋଲି ଚିହ୍ନି ପାରନ୍ତେ ନାହିଁ । ସେତେବେଳେ ଯେତେ କମ୍ପୋଜିଟର ବର୍ତ୍ତମାନ ତହିଁରୁ ଅଧିକ 'ବାବୁ' ଅଛନ୍ତି' ହେଡ଼୍ କୋଷ୍ଟେଣ୍ଟ୍ ଭଳି କାମ । ସମସ୍ତଙ୍କର ଗପ କରିବାକୁ ସମୟ ଅଛି । ସମସ୍ତେ 'ଗୃଜିର କରୁଛନ୍ତି । ସବୁ ଅଛି, କିନ୍ତୁ ଅନୁଷ୍ଠାନରେ ପ୍ରାଣ ନାହିଁ । ବ୍ୟବସାୟ ବୁଦ୍ଧିରେ ବର୍ତ୍ତମାନ ପ୍ରେସ ଚାଲିଛି । ପୂର୍ବର ଆଦର୍ଶବାଦର କେହି ଧାର ଧରୁ ନାହାନ୍ତି । ଶ୍ରେଷ୍ଠିଆ ଭାବରେ ଉଚ୍ଚ ଆଦର୍ଶରେ ଆରମ୍ଭ ହେଉଥିବା ସବୁ କାର୍ଯ୍ୟର ପରିଣତି କ'ଣ ଏହା ! ତେଣୁ ବ୍ରାହ୍ମଣ ବଡ଼ ଧରଣର ବ୍ୟବସାୟରେ ହାତ ଦେବ ନାହିଁ ବୋଲି ଆଗରୁ ମନା ଅଛି ।

ଦାଶରଥି ପ୍ରେସରୁ ନାଗଭୂଷଣଙ୍କୁ ଦେଖି ଫେରିଲି । ସନ୍ଧ୍ୟାରେ ପଣ୍ଡିତଙ୍କ ଘରକୁ ଯାଇଥିଲି । ବିଚରା ବଡ଼ କଷ୍ଟ ପାଉଛନ୍ତି । ସବୁବେଳେ ଖାଇବାର ଅସୁବିଧା, ଝାଡ଼ା କରିବାର ଅସୁବିଧା, ବାର ଔଷଧକୁ ତେର ରୋଗ । ଏପର୍ଯ୍ୟନ୍ତ ଅନ୍ୟକୁ ଦୁଃଖ ଦେବାକୁ ବିରତ ହେବାକୁ ପ୍ରବୃତ୍ତି ହୋଇନାହିଁ । (୬ । ୮ । ୧୯୫୫)

ଆଜି ନାଗଭୂଷଣଙ୍କଠାରୁ ପ୍ରେସ ଆସିଲା । ସକାଳୁ ଶ୍ୟାମ, ତା ଭଣଜା ଓ ଲୋକନାଥ ଜୀ ଗଲେ, ତାଙ୍କ ସଙ୍ଗରେ ଶିବ, ଚନ୍ଦ ଓ ହିନୁ । ମୁଁ ଏମାନଙ୍କ ଉପରେ କାର୍ଯ୍ୟଗୁଡ଼ିକ ଦେଇ ନିଶ୍ଚିନ୍ତ ରହିଲି । ରାତି ଏଗାରଟା ସୁଦ୍ଧା ପ୍ରାୟ ସବୁ ଆସିଗଲା । ଆଉ ଆଗରୁ ଆସି ଥାନ୍ତା, କିନ୍ତୁ ନାଗଭୂଷଣ ସନ୍ଧ୍ୟା ପର୍ଯ୍ୟନ୍ତ ପ୍ରେସ ଚଳାଇ ରଖିଲେ ।

ଆଜି ପ୍ରାୟ ୧୫ ଦିନ ପରେ ଅଳ୍ପେ ଭଲ ବର୍ଷା ହେଲା । ଆଜିର ମେଘରୁ ଜଣା ଯାଉଛି, ଓଡ଼ିଶାର ସବୁଆଡ଼େ ବୋଧହୁଏ ଦିନେ ଦୁଇଦିନ ଭିତରେ ବର୍ଷା ହେବ । ଅନାବୃଷ୍ଟି ଯୋଗୁଁ ଏ ବର୍ଷ ମଧ୍ୟ ଫସଲର ବହୁତ କ୍ଷତି ହେଲାଣି । ଏଥର ଏଣିକି ଯଦି ଭଲ ବର୍ଷା ନ ହୁଏ ତେବେ ଆମ ଅବସ୍ଥା ଖୁବ୍ ଖରାପ ହେବ । ମତେ ତ ଲାଗୁଛି ଆମ ସରକାରର ଅଯୋଗ୍ୟତା ଓ ଅବିଚାରର ପାପ ଯୋଗୁଁ ବର୍ଷା ହେଉ ନାହିଁ । (୭ । ୮ । ୫୫)

ଆଜି ପ୍ରେସ୍ ବସିବାର ଆୟୋଜନ ଆରମ୍ଭ ହେଲା । ମେସିନ୍ ସଫା କରିବା ଓ ତାହା ବସିବା ପାଇଁ ପିଣ୍ଡି ତିଆରି କରିବାରେ ଦିନଟି ଗଲା । ମନ ଆନନ୍ଦରେ ମୁଁ ସେଇଠାରେ ଯାଇ ବସିଲି । ୨୦ ବର୍ଷ ପରେ ମୋ ପୁରୁଣା କାମକୁ ମୁଁ ଫେରିଲି ବୋଲି ମୋର ମନରେ

ଶୋଚନା ନାହିଁ, ବରଂ ଆନନ୍ଦ ଲାଗୁଛି । ନିଜର ଗୋଟିଏ ପ୍ରେସ୍ କରିବି ବୋଲି ସେକାଳେ ଯେଉଁ ଆଶା ପୋଷିଥିଲି ତାହା ଆଜି ସଫଳ ହୁଏଇଲା । ପ୍ରେସ୍‌ରୁ ପଇସା କରିବାର ଆକାଙ୍କ୍ଷା ମୋର ନାହିଁ । ଏତିକି ମାତ୍ର ଆଶା ମୋର ଜୀବନର ଲକ୍ଷ୍ୟ ସାଧନରେ ଏହା ମୋର ସାହାଯ୍ୟ ହେବ ଓ ମୋର ନୂତନ ଜୀବନ ମୋ' ପିଲାଙ୍କୁ ତାଙ୍କ ଜୀବନ ପାଇଁ ଉପଯୁକ୍ତ ଭାବେ ତାଲିମ କରିବ ।

ସନ୍ଧ୍ୟାରେ ଅନସୂୟା ପ୍ରସାଦ ପାଠକ ଆସିଥିଲେ, ତାଙ୍କ ସଙ୍ଗେ ଗୁଡ଼ିଏ ଭଲ କଥା ପଡ଼ିଲା । ସେ ତ ଅନୁଭବ କରୁଛନ୍ତି ଯେ, ସେ ହିନ୍ଦି ପ୍ରଚାର କରୁ କରୁ ଏବେ ଲକ୍ଷ୍ୟଭ୍ରଷ୍ଟ ହୋଇ ବେପାରରେ ବୁଡ଼ିଗଲେଣି । ଭଗବାନ୍ ! ମୋର ସେ ଅବସ୍ଥା ନ ହେଉ ।

(୮ । ୮ । ୧୯୫୫)

## ମୋ'ର ଗୋଟିଏ ଦୋଷ:

ମୋର ଗୋଟିଏ ଦୋଷ ଆଜି ଧରିଲି । ମୁଁ ସବୁବେଳେ ଯାହା ଚିନ୍ତା କରୁଛି ତାହା ଅନ୍ୟ ଆଗରେ ଅତି ଆଗ୍ରହରେ କହିବାକୁ ଯିବା ଫଳରେ ଅନ୍ୟ ମୋ' ପାଖକୁ କାହିଁକି ଆସିଛି ସେ କଥା ଧୈର୍ଯ୍ୟ ଧରି ଶୁଣିବାକୁ ମୋର ଅବସର ରହୁନାହିଁ । ନିଜର ମତ ପ୍ରକାଶ କରିବାର ବ୍ୟଗ୍ରତା ମନ୍ଦ ନୁହେଁ । କିନ୍ତୁ ଅନ୍ୟର ପ୍ରୟୋଜନକୁ ଆଗ ନ ଦେଖିଲେ ମୋ' ମତ ଶୁଣିବାକୁ ଲୋକେ ଆସିବେ କାହିଁକି ? ଆଜି ସକାଳେ ବାଳକୃଷ୍ଣ ପଟ୍ଟନାୟକ ପୁରୀ ଆସିଥିଲେ । ଦୁଇଘଣ୍ଟା ଗପ ହେଲା ପରେ ଜାଣିଲି ତାଙ୍କ ଆସିବାର କାରଣ । ସେ ତାଙ୍କର ଜଣେ ଅନୁଗତ ଲୋକଙ୍କ ସକାଶ ଚାକିରି ପାଇଁ ଲାଳାୟିତ । ମୁଁ ତାଙ୍କ ପାଇଁ ସୁଧୀର ବାବୁଙ୍କୁ କହିବି । ସୁଧୀର ବାବୁ ଆସିଥିଲେ । ଗୁଡ଼ିଏ ଛପା କାମ ଦେବେ ବୋଲି କହି ଗଲେ । ହିନ୍ଦୁ ଧର୍ମର ଜାତି ଶଷସ୍ୟରେ ଗୋବିନ୍ଦ ମିଶ୍ରଙ୍କ ସଙ୍ଗେ ଆଲୋଚନା ବେଳେ ଚକ୍ରଧର ମହାପାତ୍ରେ ଆସିଗଲେ । ଏ ମହାଶୟ ଭଗବଦ୍ ଗୀତା ଉପରେ ଖଣ୍ଡିଏ ପୁସ୍ତକ ଲେଖୁଛନ୍ତି ।

(୯ । ୮ । ୫୫)

## ଜନ୍ମାଷ୍ଟମୀ ଓ ନବଜୀବନର ଜନ୍ମ :

ଟ୍ରେଡଲଟି କାଲି ଫିଟ୍ ହୋଇଥିଲା, ଆଜି ମେସିନଟି ଠିଆ ଫିଟ୍ ହୋଇଗଲା । ଟ୍ରେଡଲରେ ଖଣ୍ଡିଏ ଛାପି ଆଜି ଆନୁକୂଲ ଭଲ । ମୋର ଆଜି ପୂର୍ଣ୍ଣ ବିଶ୍ୱାସ ହେଲା ଭଗବାନ ମୋ କାର୍ଯ୍ୟରେ ସହାୟ ହେଉଛନ୍ତି । ଜନ୍ମାଷ୍ଟମୀରେ ପ୍ରେସ ଆରମ୍ଭ ହେବ ବୋଲି ମୁଁ ଭରସା ରଖି ପାରି ନ ଥିଲି । କାହ୍ନୁ ଭାହ୍ନୁ ହୋଇଗଲା । ଭଗବାନ ମୋତେ ଶକ୍ତି ଦିଅ, ମୁଁ ତୁମରି ସେବାରେ ଏ ପ୍ରେସଟି ଲଗାଇପାରେ । ପଇସା କରିବା, ପିଲାଙ୍କ ପାଇଁ ବ୍ୟବସ୍ଥା କରିବା ସବୁବେଳେ ଗୌଣ ଭାବେ ରହୁ, ମୁଖ୍ୟ ଭାବେ ନୁହେଁ । ମୁଖ୍ୟ ହେଉ ମୁଁ ଯେଉଁ ଉଦ୍ଦେଶ୍ୟରେ ନୂଆ ଜୀବନ ଆରମ୍ଭ କରିଛି । ଦେଶର ଓ ଦଶର ମଙ୍ଗଳ ନିମନ୍ତେ ସମାଜରେ ପୂର୍ବ ସଂସ୍କୃତି ଜୀବନ୍ତ ହେଉ ।

ଆଜି ଚନ୍ଦନ ଜ୍ୱାଇଁ ଯାଜ ଆସି ପହଞ୍ଚିଲେ । ବାସନ୍ତୀ ଓ ରମା ମଧ୍ୟ ଆସିଲେ । ହେମ ଆସି ପାରିଲା ନାହିଁ । ଦଶଟି ଟଙ୍କାର ମିଠା ଆଣି କର୍ମଚାରୀଙ୍କ ସମେତ ସମସ୍ତଙ୍କୁ ଦେଲି । ସ୍ୱାମୀ ସଚ୍ଚିଦାନନ୍ଦ ଦାସ ଆସି ପହଞ୍ଚିଗଲେ । ସେ ଜନ୍ମାଷ୍ଟମୀ ବୋଲି ଆସିଥିଲେ, ଅନସୂୟା ପ୍ରସାଦ ପାଠକଙ୍କଠାରୁ ଶୁଣି ବୋଧହୁଏ । ଭାଗବତର ଆଲୋଚନା ହୋଇ ପାରିଲା ନାହିଁ । ନୂଆ ହୋଇ ଛପା ହୋଇଥିବା ଦୁଇଟି କାଗଜରୁ ଖଣ୍ଡିଏ ସେ ନେଇଛନ୍ତି । ସେଥିରେ ଭାଗବତର ଦୁଇଟି ଶ୍ଲୋକ ଥିଲା । (୧୦ । ୮ । ୧୯୫୫)

**ପ୍ରେସ୍ ଚିନ୍ତା:**

ଆଜି ସକାଳେ ଟ୍ରଙ୍କ ଦେଖି ଦେଖି ବହୁତ ସମୟ ଗଲା । ଭାଗବତ ପଢ଼ା ନାମକୁ ମାତ୍ର ହେଲା । ଆଜି ପ୍ରେସ୍‌ର କାମ କିଛି ହେଲା ନାହିଁ । ଖାଲି ମେଟର ବସିବାର ବ୍ୟବସ୍ଥା ହେଲା । ସର୍ବେଶ୍ୱର ଆଜି ଚଣ୍ଡେ ବନ୍ଧ ଆଣିଦେଲେ । ବର୍ତ୍ତମାନ ସୁଦ୍ଧା ତାଙ୍କଠାରୁ ୩୦ ଫର୍ମାର କାମ ମିଳିଲା । ୧୫ ଦିନର ପୁରା କାମ । ଟ୍ରେଡ଼ଲ ପାଇଁ ଆଉ କିଛି ମିଳିଲେ ଏ ପନ୍ଦର ଦିନଟି ଭଲ ଚାଲିବ । କାମ କରି ପାରିଲେ ଟ୍ରେଡିଂ କଂପାନୀରୁ ଆଉ କାମ ଏ ମଧ୍ୟରେ ବି ମିଳିବ । ତା' ପରେ ମଝିରେ ମାସେ ଖଣ୍ଡେ ଛାଡ଼ି ପଡ଼ିବ ପାଠ୍ୟ ପୁସ୍ତକ ଛପା ବେଳ । ପ୍ରେସର କାମ ଛାଡ଼ି ହେବନାହିଁ ବୋଲି ଜଣା ଯାଉଛି । ମାସିକ ପତ୍ର ବାହାରି ପଡ଼ିଲେ ବାହାରର କାମ ମଧ୍ୟ ମିଳିବ । ୬ ମାସ ଭିତରେ ଯଦି ବ୍ୟବସାୟକୁ ଠିଆ କରି ଦେଇ ପାରିବ ତେବେ ଅନ୍ୟ ଆଡ଼େ ମନ ଦିଆଯାଇ ପାରେ ।

ଝେଟନ ପଣ୍ଡିତଙ୍କ ସଙ୍ଗେ ଦୁଃଖ ସୁଖ ହେଲା । ଗୋବିନ୍ଦ ମିଶ୍ରେ ବି ଆସିଲେ । ମାର୍ଚ୍ଚ ମାସରେ ଷ୍ଟେଟ୍ କାଉନ୍ସିଲ୍ ପାଇଁ ଜାଗା ଖାଲି ହେବ; ତାଙ୍କର ସେଇଥିରେ ମନ ।
(୧୧ । ୮ । ୫୫)

**ଗୋଦାବରୀଶ ବାବୁଙ୍କ ଆଗମନ:**

ଆଜି ନବଜୀବନର ଆରମ୍ଭ । ଗୋଟାଏ ବେଳେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଯାଇ ନବଜୀବନ ପ୍ରେସ ଓ ନବଜୀବନ ମାସିକ ପତ୍ରର ସରକାରୀ ଘୋଷଣା ପତ୍ର ଦସ୍ତଖତ କରି ଆସିଲି । ବଡ଼ ଆଶାରେ ଏ କାର୍ଯ୍ୟ ହାତକୁ ନେଇଛି ।

କ'ଣ ହେବ ଈଶ୍ୱରଙ୍କର ଇଚ୍ଛା । ବେଳେ ବେଳେ ଆଶା ଦିଶୁଛି ମୁଁ ଯେଉଁ ଉଦ୍ଦେଶ୍ୟରେ ଚାକିରି ଛାଡ଼ି ଆସିଛି ତାହା ସଫଳ ହେବ । ଓଡ଼ିଶାରେ ପାରଂପରିକ ଜୀବନ ନୂଆ ହୋଇ ପୁଣି ପରିସ୍ଫୁଟ ହେବ । ପୁଣି ଥରେ ଜଗନ୍ନାଥରୁ ଆଦର୍ଶ ଭାରତ ତମାମ ବ୍ୟାପିବ ଓ ଭାରତରୁ ସମଗ୍ର ପୃଥିବୀକୁ ଚହଟିବ । ପୃଥିବୀ ଭାରତରୁ ନେତୃତ୍ୱ ଖୋଜୁଛି । ନେତା ହୋଇଛନ୍ତି ପଣ୍ଡିତ ଜହରଲାଲ, ଯେ କି ଦେଶର ସାଧୁ ସନ୍ନ୍ୟାସୀଙ୍କୁ ଧରି ବୋହିବାକୁ ଚାହାନ୍ତି; ଥରେ ଯେପରି ଜଡ଼ ଭରତଙ୍କୁ ରଜା କରାଇଥିଲେ । ଏହା କରାଇବାକୁ ମୋ'ଠାରେ ଯେଉଁ ଶକ୍ତି ଥିବା ଦରକାର ତାହା ଅର୍ଜିବାକୁ ମୋତେ ଅଦ୍ଭୁତ ସାଧନା କରିବାକୁ ପଡ଼ିବ ।

ମୋ ପିଲାଙ୍କଠାରେ ଅଦ୍ୟାପି ଯେଉଁ ମମତା ଅଛି ତାହା ଛାଡ଼ି ପାରିବି ନା । ଟଙ୍କା ପ୍ରତ ମମତା ଛାଡ଼ିଛି ବୋଲି ଲୋକେ ଯିବା କହୁଛନ୍ତି ମୁଁ କ'ଣ ଛାଡ଼ିଛି ? ବହୁତ ଟଙ୍କା ପାଇ କରୁ କରନାହିଁ ସତ, କିନ୍ତୁ ଅଦ୍ୟାପି ତ ମନ ହେଉଛି ମୋ'ପାଖେ ସୁଢ଼ାଏ ଟଙ୍କା ରହନ୍ତା, ମୋର ଯାହା ମନ ହୁଅନ୍ତା ମୁଁ କରନ୍ତି । ଏହା ମୋର ପିଲା ଉପର ଅତ୍ବିବ ବୋଧହୁ ଗୋଟିଏ ଅଭ୍ୟାସ ପଡ଼ିଯାଇଛି । ପିଲାଦିନେ ପଇସା ଖର୍ଚ୍ଚ କରୁଥିଲି । ଆଜି ତ ଖର୍ଚ୍ଚ ପ୍ରୟୋଜନ ହେଉନ ହିଁ । ଖାଇବାର ଲାଳସା ଏତେ ଥିଲି, ଅ.ଜିକି ତ ନାହିଁ । ତେବେ କାହିଁକି ପାଖରେ ପଇସା ନ ଥିବାରୁ ଏପରି ବିକଳିଆ ଲାଗୁଛି ! ପଇସାର ଅଭାବ ନ ହେଉଥିବା ସ୍ଥଳେ ଯାକୁ ଜିଣିବାକୁ ହେବ । ଆଜି ଗୋଦାବରୀଶ ବାବୁ, କଳାହାଣ୍ଡି ରାଜା.ଓ ତ୍ରିଭାକର ସୂପକାର ଆସିଥିଲେ । ମୋତେ ଗଣତନ୍ତ୍ର ଆଡ଼କୁ ଟାଣିଲେ । ମୁଁ ମୋର ମନର କଥା ଶୁଣେଇ ଦେଇଛି । ରାତିରେ ଲୋକନାଥ ମିଶ୍ର କବିରାଜଙ୍କ ପୁଅ ଘର ପ୍ରତିଷ୍ଠାକୁ ଗଲି । (୧୨ । ୮ । ୫୫)

ଅଜି ମୋ ଅନୁଷ୍ଠାନର ପ୍ରାରମ୍ଭ ଉତ୍ସବ । ସକାଳେ ଆନନ୍ଦ ମିଶ୍ରେ ଆସି ପହଞ୍ଚିଲେ । ବଡ଼ ଖୁସି ଲାଗିଲା । ଆଉ ବଂଧୁମାନେ ଆସିଲେ । ଜଗଦ୍ବନ୍ଧୁ ମହାପାତ୍ର, ଗଣନାଥ ବାବୁ ଓ ସୁଧୀର ବାବୁ ଆସିବାରୁ ଖୁସି ହେଲି । ହୋମଟି ଯଥାଯୋଗ୍ୟ ଭାବେ ହେଲା । ପ୍ରାୟ ୩୦ ଜଣ ଆସିବେ ବୋଲି ଇଚ୍ଛା କରିଥିଲି, ପ୍ରାୟ ୭୦ ଜଣ ଆସିଲେ । ପୁସ୍ତକ ଦୁଇଟି ପଣ୍ଡିତ ଆନନ୍ଦ ମିଶ୍ରେ ଅନୁମୋଦନ କଲେ । ଆଉ ରହିଲେ ଆଧୁନିକ ଦଳ । ସେମାନଙ୍କର କ'ଣ ମତ ହେଉଛି ଦେଖାଯାଉ । ବୈଦ୍ୟନାଥ ସୁଢ଼ିଏ ମତାମତ ଲେଖିଛନ୍ତି, ମୋଟ ଉପରେ ମହାଦେବ ବହି ଖୁବ୍ ଭଲ ହୋଇଛି ବୋଲି କହୁଛନ୍ତି । ଆଉ କିଏ କ'ଣ କହୁଛନ୍ତି ଦେଖା ଯାଉ ।

ଆଜି ସକାଳୁ ଖୁବ୍ ବର୍ଷା ହୋଇ ରାଜ୍ୟ ତମାମର ପାଣି କଷ୍ଟ ଦୂର କରିଛି । ମୋ କାର୍ଯ୍ୟର ଏହା ଗୋଟିଏ ଶୁଭ ଶକୁନ । ଦେଖାଯାଉ କାର୍ଯ୍ୟରେ କ'ଣ ହେବ ।

(୧୫ । ୮ । ୫୫)

**ପ୍ରମୋଦଙ୍କୁ ଟାଇଫଏଡ:**

ସକାଳେ ପଣ୍ଡିତ ଜଗନ୍ନାଥ ରଥେ, ଭାଇନା ଓ ସାନଭାଇନା ବିଦା ହେଲେ । କାଲି ଏତେ ଉତ୍ସାହରେ ଆରମ୍ଭ ହୋଇଥିବା ପ୍ରେସର କାର୍ଯ୍ୟ ଆଜି ଆଂଶିକ ବନ୍ଦ ହେଲା । ଟେ ଡଲ ମେସିନ୍‌ରେ ଭଲ କାମ ନ ହେଉଥିବାରୁ ସେଥିରେ ମୋ ବହିର କଭର କିଛି ଛାପି ଶ୍ୟାମ ମେସିନ୍‌ରୁ କାଳି ଧୋଇ ଦେଲା । ବହି ଫ୍ଲାଟ୍‌ରେ ଛାପା ହେଲା ସତ କିନ୍ତୁ ଛାପା ମୋ ମନକୁ ପାଇଲା ନାହିଁ । ମନର ଏ ଅବସାଦ ବେଳେ ଆନନ୍ଦ ଆସି ଖବର ଦେଲା ଯେ ପ୍ରମୋଦଙ୍କୁ ଟାଇଫଏଡ୍ ହୋଇଛି । ବଡ଼ ବ୍ୟସ୍ତ ଲାଗିଲା । ସାଙ୍ଗେ ସାଙ୍ଗେ ମଟର ପଠାଇଲି ପ୍ରମୋଦଙ୍କୁ ବାଙ୍କୀରୁ ଆଣିବା ନିମନ୍ତେ । (୧୬ । ୮ । ୫୫)

**ପୀତାମ୍ବର ମିଶ୍ରଙ୍କ ମୃତ୍ୟୁ :**

ପ୍ରମୋଦଙ୍କ ପାଖକୁ ଯାଇଥିଲି । କ୍ଲୋରୋମାଇସିନ୍ ବ୍ୟବହାର ହେଉଛି । ତାହାର ଫଳ ଏପର୍ଯ୍ୟନ୍ତ ଦେଖାଯାଇନାହିଁ । ଆଶା କରାଯାଏ କାଲିକୁ ଜର ଛାଡ଼ିଯିବ ।

ଗତ ରାତିରେ କଜ୍ ପୀତାମ୍ବର ମିଶ୍ର ମରିଗଲେ । ତାଙ୍କୁ ମୋଟେ ୫୫ ବର୍ଷ ହୋଇଥିଲା । ବହୁକାଳରୁ ଶ୍ୱାସ ରୋଗରେ ପଡ଼ିଥିଲେ । ତା' ଉପରେ ନିମୋନିଆ ହୋଇ ପ୍ରାଣ ଗଲା । ମିଶ୍ରେ ଭଲ ଲୋକ ଥିଲେ । ବ୍ୟବହାର ଖୁବ୍ ଭଲ ଥିଲା । ଆଇନଜୀବୀ ଭାବରେ ନାମ କରିଥିଲେ ।   (୨୦ । ୮ । ୫୫)

**ଦେହ ବଡ଼ି ଆଶାଜନକ:**

ପ୍ରମୋଦଙ୍କ ଦେହ ଆଜି ଭଲ ଅଛି । ଜର ନାହିଁ । ଆଉ ଦୁଇ ତିନି ଦିନ ଭିତରେ ତାଙ୍କର ଦେହ ପୁରା ଭଲ ହୋଇ ଯିବାର ସମ୍ଭବ । ମୋର ଦେହ ଆଜି ଟିକିଏ ଖରାପ ଲାଗିଲା । ବୋଧହୁଏ ପୂର୍ବର ପେଟ ବେମାରି ଫେରିଲା ବୋଲି ମନରେ ଟିକିଏ ସଂଦେହ ହେଲା ।

ସନ୍ଧ୍ୟାରେ ବୈଦ୍ୟନାଥ ପ୍ରେସକୁ ଆସିଥିଲେ ମୋ'ଦେହ ବିଷୟ ବୁଝିବାକୁ । ସେ ଯେଉଁତକ ବହି ନେଇଥିଲେ ସେତକ ବିକିଛନ୍ତି । ଆଉ ଦଶ ସେଟ ଦରକାର ବୋଲି କହିଲେ । ଆଶାର କଥା । ରାତିରେ ବାମଦେବ ମିଶ୍ରଙ୍କ ଘରକୁ ଯାଇ ତାଙ୍କୁ ଦଶ ସେଟ ବହି ଦେଇ ଆସିଲି । ସେ ଏହାର ବିକ୍ରୀ ବିଷୟରେ ବଡ଼ ଆଶାୟୀ ।

ରାତିରେ ହଠାତ୍ ଶଶୀ ବୋଉ ଆସି ପହଞ୍ଚିଲା ପିଲାଙ୍କୁ ଧରି, ପ୍ରମୋଦଙ୍କ ଦେହ ଖରାପ ବିଷୟରେ ଉତ୍କଣ୍ଠିତା ହୋଇ ।   (୨୩ । ୮ । ୫୫)

**ଭକ୍ତର ଲକ୍ଷଣ:**

ସକାଳେ ଶଶୀ ବୋଉର ରନ୍ଧା ଖାଇଲୁ, ଅଜିକୁ ଠିକ୍ ମାସେ ପାଞ୍ଚଦିନ ପରେ । ଏତିକ ଦିନ ଆମର ହାତ ପୋଡ଼ିପୋଡ଼ି ଚାଲିଥିଲା । ଖାଇ ସାରିବା ପରେ ସେ ପ୍ରମୋଦଙ୍କ ପାଖକୁ ଗଲା । ଆଜି ନୂଆ ଅକ୍ଷରରେ କାମ ଆରମ୍ଭ ହେଲା । କାଲିଠାରୁ ପ୍ରେସ୍ ଜୋର ସୋରରେ ଚାଲିବ ।

ସନ୍ଧ୍ୟାରେ ଖବର ପାଇଲି ନବଘନ ବାବୁ ଡାକ୍ତରଖାନାରେ ପଡ଼ିଛନ୍ତି । ତାଙ୍କ ମେରୁଦଣ୍ଡରେ ଆଘାତ ଲାଗିଛି ପଡ଼ିଯିବା ଫଳରେ । ଗତ ୮ଟା ବେଳକୁ ସମୟ ହେଲା, ତାଙ୍କୁ ଯାଇ ଦେଖିଆସିବାକୁ । ମାଧବବାବୁଙ୍କର ଯେପରି ହୋଇଥିଲା ତା' ତୁଳନାରେ ଏ କିଛି ନୁହେଁ । ଯେଉଁଠି ମାଧବବାବୁ ନିଜର ଦୃଢ଼ ଈଶ୍ୱର ବିଶ୍ୱାସ ଯୋଗୁଁ ବଞ୍ଚିଯାଇଥିଲେ । ଡାକ୍ତରମାନେ କେବଳ ବିସ୍ମୟରେ ଚାହିଁ ରହିଥିଲେ । ଅଦ୍‌ଭୁତ ଧୈର୍ଯ୍ୟ ଦେଖାଇ ମାଧବ ବାବୁ ପଡ଼ିରହିଥାନ୍ତି । ବଞ୍ଚିବା ପାଇଁ ବିଶେଷ ବ୍ୟାକୁଳତା ନ ଥାଏ, କି ମରିବାକୁ ଅତିଶୟ ଭୟ ନ ଥାଏ । ପ୍ରକୃତ ଭକ୍ତର ଯାହା ଲକ୍ଷଣ ଆମ ଧର୍ମଶାସ୍ତ୍ରରେ ବର୍ଣ୍ଣିତ ହୋଇଛି, ମାଧବ

ବାବୁ ତାହା ଦେଖାଇଥିଲେ । ନବଘନ ବାବୁଙ୍କର ସେତେ ଧର୍ମଭାବ ନ ଥିଲେ ମଧ୍ୟ ସେ ସାଧାରଣ ବକଲିଆ ଯୋଗୀଙ୍କଠାରୁ ଉଚ୍ଚ ସ୍ତରର । ତାଙ୍କ ପାଖରୁ ବୈଦ୍ୟନାଥଙ୍କ ଘରକୁ ଗଲି । ପ୍ରମୋଦ ଆଜି ଖୁବ୍ ଭଲ ଅଛନ୍ତି ।

## ରାଜନୀତିରୁ ବାହାରେ ରହିବି

ଆଜି ଶଣୀ ବୋଉକୁ ଗାଁରେ ଛାଡ଼ିବାକୁ ଯିବାର କଥା । ସର୍ବେଶ୍ୱରଙ୍କୁ ପ୍ରୁଫ ଦେଖା ଦାୟିତ୍ୱ ଦେଇ ଗଲି । ଭୁବନେଶ୍ୱରରେ ଓପରଓଲି ୫ଟାରେ ପହଞ୍ଚିଲି । ସଦାଶିବ ବାବୁ ଓ ଅନୁପ ସିଂହଙ୍କ ସଙ୍ଗେ ଦେଖା ହେଲା । ସଦାଶିବବାବୁଙ୍କ ହୃଦୟରେ ଯାହା ବା ଦେଶାତ୍ମବୋଧ ପୂର୍ବରେ ଥିଲା, ସେ ଆଉ ନାହିଁ । ସେ ବର୍ତ୍ତମାନ ନିଜର ବ୍ୟବସ୍ଥ-ଚକ୍ରାରେ ବ୍ୟସ୍ତ । କେତେ ଟଙ୍କା ବର୍ଷକୁ ପାଉଛନ୍ତି, ଏଠାରେ କେତେ ଖର୍ଚ୍ଚ କରୁଛନ୍ତି, କେବଳ ସେଇ ବିଷୟରେ ତାଙ୍କର ମସ୍ତିଷ୍କ ଘୂରୁଛନ୍ତି । ନିଜର ନାନା ପ୍ରକାର ରୋଗର କଳ୍ପନା କରି ଓ ଛଳନା କରି ସେ ସୁଖୀ ହୋଇ ରହୁଛନ୍ତି । ଏପରି ରହିବା ସକାଶ ନବବାବୁଙ୍କର ଜଣେ ସ୍ତାବକ ହେବା ଦରକାର; ସେ ହୋଇଛନ୍ତି । ଅନୁପ ସିଂହ ଖୁବ ବାଢ଼େଇ କଣ୍ଢ଼ି ହେଉଛନ୍ତି କିନ୍ତୁ ନବବାବୁଙ୍କର ବିରୋଧ କରିବାକୁ ତାଙ୍କର ସାହସ ନାହିଁ । (୨୭ । ୮ । ୫୫)

ଗାଁରେ ଯାଇ ପହଞ୍ଚିଲା ବେଳକୁ ରାତି ବାରଟା । ବର୍ଗିଗ୍ରାମକୁ ଯିବାକୁ ପ୍ରାୟ ୫ଟା ବେଳେ ଭାଇନା ଉଠାଇଲେ । ସେ, ମୁଁ ଓ ସମାଖ୍ୟାଇନା ଗଲୁ । କୃଷ୍ଣ ବଗିଚାଟି ଯଥାସମ୍ଭବ ସୁନ୍ଦର କରିଛି । ଆମ୍ବ ଟିକିଏ ଭଲ ହେବା ଉଚିତ ।

୪ଟା ବେଳେ ଗାଁରୁ ବାହାରି ପ୍ରାୟ ୮ଟା ପର୍ଯ୍ୟନ୍ତ ଖୋର୍ଦ୍ଧାରେ ରହିଗଲି । ମୁଁ କଂଗ୍ରେସ ବା ଗଣତନ୍ତ୍ର ଦଳରୁ ବା ସ୍ୱାଧୀନ ପ୍ରାର୍ଥୀ ହୋଇ ଆସେମ୍ବ୍ଲିକୁ ଠିଆ ହେବି ବୋଲି ଖୋର୍ଦ୍ଧାରେ ଭାରି ଗୁଜବ ହେଉଛି । ମୋତେ ଯେ ପଚାରିଲେ ତାଙ୍କୁ ମୋ ମତ କହିଲି ଯେ କଂଗ୍ରେସରେ ଯଦି ମତୈକ୍ୟ ନ ଆସେ ତେବେ ମୁଁ ରାଜନୀତିରୁ ବାହାରେ ରହିବି ।

(୨୭ । ୮ । ୫୫)

## ପ୍ରମୋଦଙ୍କୁ ପୁଣି ଜର

ଆଜି ମୋ ନୂତନ ଜୀବନର ଆର୍ଥିକ ଦୃଷ୍ଟିରୁ ବଡ଼ ଦିନ । ସକାଳେ ମୀଲଠାରୁ ୪୦ ଟଙ୍କା ମନିଅର୍ଡର ପାଇଲି, ତା ପରେ ରାଷ୍ଟ୍ରଭାଷା ପ୍ରେସରେ ପାଠକ ଓ ତାଙ୍କ ସହ-କର୍ମୀମାନେ ଖୁବ ସହାନୁଭୂତି ଦେଖାଇଲେ । ପାଠକ ୧୦ ଖଣ୍ଡ ବହି ରାଷ୍ଟ୍ରଭାଷା ପୁସ୍ତକାଳୟ ପାଇଁ ନେଉଥିଲେ, ଗୋପିନାଥ ଆସି ପହଞ୍ଚି କହିଲେ ଆମ ପ୍ରେସ କର୍ମଚାରୀ-ମାନେ ଏ ଦଶ ଖଣ୍ଡ ନେଇ ଯିବେ । ଆଶା କରୁଥିଲି ଏ ଅନୁଷ୍ଠାନରେ ମୋର ପାଞ୍ଚ ସାତ ଖଣ୍ଡ ବହି ବିକ୍ରି ହେବ, ୨୦ଖଣ୍ଡ ଅତି ଅପ୍ରତ୍ୟାଶିତ । ଓପର ଓଲି ଗୌଡ଼ଜ ଆସି ଶହେ ପେଟ୍ ବହିର ଦାମ ଦେଇଗଲା । ଆଜି ମନ ଭାରି ଖୁସି । ତୁଳ ବାହାରିଲି, ଖୁସି ଗପ ହେଲା । କିନ୍ତୁ ପ୍ରମୋଦଙ୍କ ସଙ୍ଗେ ଦେଖା କରିବାକୁ ଗଲି ଯେ, ତାଙ୍କୁ ଜର । ବଡ଼ ବ୍ୟସ୍ତ ଲାଗିଲା । ଯୋର

ବର୍ଷା । ସେଇଥିରେ ଯାଇ ଶରତ ଘରେ ପହଞ୍ଚି ତାଙ୍କ ଶ୍ରାଦ୍ଧ ଭୋଜରେ ଯୋଗ ଦେଲି ଓ ତାଙ୍କ ପୁଅ ପ୍ରମୋଦଙ୍କୁ ଦେଖାଇଲି । ବିଶେଷ କିଛି ନୁହେଁ, ଅଣ୍ଟା ପାଖରେ ଅଜୀର୍ଣ୍ଣ ଯୋଗୁ ଏ ଜର । ତାଙ୍କ ପାଖରୁ ଶରତ ଗଲି କୃଷ୍ଣ ନିପାଠୀଙ୍କୁ ଦେଖିବାକୁ । ସେତେବେଳକୁ ବୟସ ୯୨ ଟାରୁ ବେଶୀ ହେଲଣି । ଏ ବର୍ଷାରେ ସେ ଯେଉଁ ନିରଳସ ସେବା କରୁଛି ତାହା ଆଦର୍ଶ ସ୍ଥାନୀୟ । ଏଥିରେ ପଇସାର ଲୋଭ ଏକାବେଳକେ ନାହିଁ । (୨ । ୯ । ୫୫)

**ନଈ ବଢ଼ି:**

ଆଜି ନଈ ବଢ଼ି ଉଦ୍‌ବେଗଜନକ ହେଲା । କାଠଯୋଡ଼ିରେ ସଂଧ୍ୟା ସୁଦ୍ଧା ୨୪ ଫୁଟରୁ ଅଧିକ । ମରୁଡ଼ି ପରେ ଏ ବଢ଼ି ଅନେକ ଲୋକଙ୍କର ମେରୁଦଣ୍ଡ ଭାଙ୍ଗିଦେବ । ଖବର କାଗଜରେ ମରୁଡ଼ିର ଯେଉଁ ଚିତ୍ର ପ୍ରକାଶ ପାଏ ସେଥିରେ ସାଧାରଣ ଲୋକେ ଆହୁରି ହତାଶ ହୋଇ ଯାଉଛନ୍ତି । ନବ ବାବୁ ନାହାନ୍ତି ; ସଦାଶିବ ବାବୁ ଆଜି ଆସେମ୍ବ୍ଲି ସାତଦିନ ଛୁଟି କରାଇ ଦେଲେ । କାରଣ ଆସେମ୍ବ୍ଲି ମେମ୍ବରମାନେ ନିଜ ନିଜ ନିର୍ବାଚନ ମଣ୍ଡଳିକୁ ଯାଇ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ କରିବେ । ଖୁବ୍ ସମ୍ଭବ ଆସେମ୍ବ୍ଲି ମେମ୍ବରମାନେ ନିଜ ନିଜ ଗାଁକୁ ଯିବେ । ଯେଉଁମାନେ ବଢ଼ି ଅଞ୍ଚଳର ସେମାନେ ଖୁବ୍ ହେଲେ କିଛି ଚୁଡ଼ା ଗୁଡ଼ିଲ ନେଇ ବାଣ୍ଟିଦେଇ ଆସିବେ, ନିଜର ପ୍ରିୟ ଲୋକଙ୍କୁ । ଆମ ସରକାର ଟାଣ ହୋଇଥିଲେ, ଆସେମ୍ବ୍ଲି ମେମ୍ବରଙ୍କ ସଙ୍ଗେ ସରକାରୀ ଅଫିସର ଓ ଗୁଡ଼ାଏ ସ୍ୱେଚ୍ଛାସେବକ ଦେଇ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ପଠାଇଥାନ୍ତେ ।

ଆଜି ପ୍ରମୋଦଙ୍କ ଦେହ ଖୁବ ଖରାପ । ତାଙ୍କ ପାଖେ ସନ୍ଧ୍ୟାରେ ଦୁଇ ଘଣ୍ଟା ବସି ଆସିଲି । ଝିଅ ପାଖକୁ ଖଣ୍ଡିଏ ଚିଠି ଦେଲି ତାକୁ ସାହସ ଦେଇ । ଏଥର ପ୍ରମୋଦଙ୍କ ଦେହ ଖୁବ ଖରାପ ହୋଇଛି । ପାରା ଟାଇଫଏଡ ଓ ଟାଇଫଏଡ଼ର ଜର୍ମ ଅଛନ୍ତି । ତା ସାଙ୍ଗକୁ ଅଉ କ'ଣ ଗୋଟେ ଜଟିଳ ମିଶିଛି । ପ୍ରମୋଦ ରକ୍ଷା ପା'ନ୍ତୁ ଏଥିପାଇଁ ଭଗବାନଙ୍କୁ ଡାକିଲି । ବର୍ତ୍ତମାନ ମୁଁ ଗୋଟିଏ ବଡ଼ ପରୀକ୍ଷାରେ ପଡ଼ିଛି । ପ୍ରମୋଦଙ୍କ ଚିନ୍ତା ମୋ ଭବିଷ୍ୟତ ଚିନ୍ତାଠାରୁ ବଡ଼ ଆକାର ଧରିଛି । ସେ ତ ମୋ'ର ଖୁବ ପ୍ରିୟ ; ପୁଣି ମୋ ଝିଅର ଭବିଷ୍ୟତ୍ । (୫ । ୯ । ୫୫)

**ପ୍ରମୋଦଙ୍କ ଅବସ୍ଥା ଭଲ ନାହିଁ:**

ଆଜି ବଢ଼ି ଅବସ୍ଥା ଅତି ଭୟାନକ । ମହାନଦୀରେ ୭୫ଫୁଟରୁ ବେଶୀ ଓ କାଠଯୋଡ଼ିରେ ୨୫ଫୁଟରୁ ବେଶୀ । ଆଜି ସକାଳେ ଦଲେଇ ଘାଇ ଭାଙ୍ଗି ଯାଇଛି । ବଢ଼ି ବେଳେ ଏଇ ଘାଇଟା ବଡ଼ ଉଦ୍‌ବେଗର କାରଣ ହୁଏ । ଏ ଘାଇ ଭାଙ୍ଗିଲେ ପ୍ରାୟ ଲକ୍ଷେ ଲୋକ ବିପନ୍ନ ହେବା କଥା । ମହାନଦୀ, ତା'ର ଶାଖାମାନ, କାଠଯୋଡ଼ି, ତା'ର ଶାଖାମାନ, ବ୍ରାହ୍ମଣୀ ଓ ବୈତରଣୀ ସବୁଥିରେ ଅଭୂତପୂର୍ବ ବଢ଼ି । ଆଜି ସଦାଶିବ ବାବୁଙ୍କର ଗୋଟିଏ ବିବୃତି ବାହାରିଛି ଯେ, ଦଲେଇ ଘାଇ ଭାଙ୍ଗିବାରୁ ସରକାର ହତାଶ ହୋଇଛନ୍ତି, ଓ ପ୍ରକୃତିଠାରେ ମଣିଷ ମୁଣ୍ଡ ନୁଆଁଇବା ବ୍ୟତୀତ ଅନ୍ୟ ଗତି ନାହିଁ ବୋଲି ତାଙ୍କର ମନେ ହେଉଛି ।

ହାସ୍ୟରେ ଓଲ୍ଟଣା ; ଏଇ ତା'ର କେଉଁଟି ଚଙ୍‌ମିକାସ୍ତର ! ଯାହା ହେଉ ନବବାବୁ ଏପରି ହା ହତୋସ୍ମି ଭାବ ନ ଦେଖାଇ ଟଙ୍କା ଓ ଡଙ୍ଗା ସଂଗ୍ରହ କରୁଛନ୍ତି ଲୋକଙ୍କୁ ସାହାଯ୍ୟ କରିବା ପାଇଁ । ଆଜି ସକାଳେ ପ୍ରମୋଦଙ୍କ ପାଖକୁ ଯାଇ ପ୍ରାୟ ଗୋଟିଏ ବେଳେ ଫେରିଲି । ପୁଣି ରାତି ଏଗାରଟା ବେଳେ ମନ ନ ବୁଝିବାରୁ ଆଉ ଥରେ ଯାଇ ରାତି ଦୁଇଟାରେ ଆସିଲି । ସେ ଭାରି ବ୍ୟସ୍ତ ହେଉଛନ୍ତି । ଡାକ୍ତରମାନେ କହୁଛନ୍ତି ଯେ ଏଥର ତାଙ୍କ ରୋଗ ଭାରି ଭୀଷଣ । ଏଥିକୁ ଦମ୍ଭ ଧରି ସହିବା ମଣିଷ ପକ୍ଷେ ସହଜ ନୁହେଁ । ଆଜି ତାଙ୍କର ମସ୍ତିଷ୍କ ବିକୃତ ଉତ୍କଟ ହେଉଛି । ତଥାପି ମୋତେ ଜଣାଯାଉଛି କାଲିଠାରୁ ଆଜି ଅବସ୍ଥା ଭଲ । ମୋ'ର ଦୃଢ଼ ବିଶ୍ୱାସ ହେଉଛି ଭଗବାନ ମୋ'ର ଡଙ୍ଗାକୁ ଦରିଆ ମଝିରେ ବୁଡ଼ାଇ ଦେବେ ନାହିଁ । ଭଗବାନ ! ତୁମେ ଭରସା ! (୭ । ୯ । ୫୫)

## ଭଗବାନ ଶୁଣିଲେ ନାହିଁ :

ବଡ଼ି ସକାଳେ ଗାଧୋଇବାକୁ ବୈଦ୍ୟନାଥଙ୍କ ଘରକୁ ଯାଇ ଟିକିଏ ଶୋଇପଡ଼ିଲି । ଖାଇକରି ଡାକ୍ତରଖାନାରେ ଆସି ପହଞ୍ଚିଲି ବେଳକୁ ସାଢ଼େ ଦଶ । ମଦନବାବୁ ଡାକ୍ତର ମୋତେ ଦେଖି କହିଲେ, "ଆପଣ ଯାହା କହୁଥିଲେ ସବୁ ଈଶ୍ୱରଙ୍କ ହାତରେ । ଆମେ ଚିକିତ୍ସାରେ କୌଣସି ଅସୁବିଧା କରୁନାହୁଁ । କିନ୍ତୁ ଜୀବନ ରକ୍ଷା କରିବାକୁ ଈଶ୍ୱରଙ୍କୁ ଡାକନ୍ତୁ ।" ଏ କଥାର ଅର୍ଥ ନ ବୁଝି ତଥାପି ମୂର୍ଖପରି ଈଶ୍ୱରଙ୍କୁ ଡାକିଲି । ଦି ପହର ବେଳକୁ ମୋତେ ପ୍ରକୃତ ଅବସ୍ଥା ଦିଶିଲା ; ଜରର ଉପଶମ ନାହିଁ । ପ୍ରଳାପ ବେଳକୁ ବେଳ ଉତ୍କଟ ଆକାର ଧରୁଛି । ସଂଧ୍ୟା ବେଳକୁ ଜର ୧୦୭ । ସାଙ୍ଗେ ସାଙ୍ଗେ ଆଉ ବଢ଼ିଲା । ଜର କମାଇବାକୁ ଯଥାସାଧ୍ୟ ପରିଶ୍ରମ ହେଲା । ଏତିକିବେଳେ ମୋ' ଝିଅ ଆସି ପହଞ୍ଚିଲା । ସବୁ ଶେଷ ହେବା ଉପରେ । ଝିଅ ମୋତେ ସାହସ ଦେଲା । ପ୍ରମୋଦ ଆଉ ଘଣ୍ଟାଏ ମୃତ୍ୟୁ ସଙ୍ଗେ ଲଢ଼େଇ କଲା । ମୋ' ଅସ୍ତ୍ରଜିଙ୍କା ଝିଅ ମଧ୍ୟ ପ୍ରାଣପଣେ ଲାଗିଲା । ଡାକ୍ତର ପ୍ରାଣପଣେ ଲାଗିଲେ । ନ ହେବାର କଥା । କ'ଣ ହୁଅନ୍ତା ! ମୋ' ପ୍ରମୋଦ ବାରଟା ବେଳେ ଚାଲିଗଲା ।

(୯ । ୯ । ୫୫)

କାଲି ରାତିରେ ଦୁଇଘଣ୍ଟା ମୁଁ ପାଗଳ ହୋଇଯାଇଥିଲି । ଆଜି ସକାଳକୁ ଆଉ କିଛି ନାହିଁ । ମଝିରେ ମଝିରେ ଅପ୍ରେ କାନ୍ଦି ପକାଉଛି । ପୁଣି ମନକୁ ଦୃଢ଼ କରୁଛି ମୋ ଝିଅର ପିଲାଙ୍କୁ ମଣିଷ କରିବାକୁ ବଞ୍ଚି ରହିବି । ଝିଅ ମୋ'ର ଦୁଃଖରେ ଭାଙ୍ଗି ଯାଇଛି । କିନ୍ତୁ ପୁଣି ମଝିରେ ମଝିରେ ମୋତେ ବଳ ଦେଉଛି ! ସକାଳେ ଶ୍ରୀନିବାସ ଗାଁକୁ ଗଲେ ଶଶୀବୋଉକୁ ଆଣିବା ସକାଶେ । (୧୦ । ୯ । ୫୫)

## ଜୀବନ ସଂଗ୍ରାମ

ଆଜି କୁଆଡ଼େ ନ ଯାଇ ପ୍ରେସରେ ରହି କାମରେ ଲାଗିଲି । ମଝିରେ ମଝିରେ ପ୍ରମୋଦ ମନେ ପଡ଼ୁଥାନ୍ତି ଓ ମନରେ ଘୋର ବିଷାଦ ଆସୁଥାଏ । ମନରେ ହେଉଥାଏ

ମୁଁ ଅତି ସ୍ୱାର୍ଥପର ହୋଇ କାମରେ ଲାଗିଛି । ଯାହାର ଜ୍ୱାଇଁ ଅକାଳରେ ମରିଯାଇଛି, ସେ କି ଲାଳସାରେ କାମରେ ଲାଗିଛି ! ଟଙ୍କା ରୋଜଗାର କଲେ, ଓ ପେଟ ପୋଷିଲେ କ'ଣ ମନର ଦୁଃଖ ଦୂର ହୋଇ ପାରିବ ! ଅଭିବ କ'ଣ ମନର ଆନନ୍ଦ ଅଣି ପାରିବ ! ଯାହାର ମନ ସାଂସାରିକ ସୁଖ ଭୋଗରେ ବର୍ତ୍ତମାନ ମାତିପାରିବ ସେ ତ ଅମନୁଷ୍ୟ । ପୁଣି ମନରେ ଭାବୁଥାଏ, ଏ ଦୁଃଖରେ ମୁହ୍ୟମାନ ହୋଇ ଯେ କାମ ଛାଡ଼ିଦେବ ସେ ପ୍ରକୃତ ସ୍ୱାର୍ଥପର । ନିଜର ମନର ଦୁଃଖ ଆଗରେ ତାକୁ ସଂସାରର ସୁଖ ଦୁଃଖ ତୁଚ୍ଛ ଦିଶିବା ତ ମନୁଷ୍ୟତାର ପରିଚୟ ନୁହେଁ । ଏହିପରି ଦ୍ୱନ୍ଦ୍ୱରେ ପଡ଼ି କାମ ଆଗଉ ନ ଥାଏ । ମନକୁ ଲଗାମ ଛାଡ଼ି ଦେଲେ ସଂସାରର ମାୟାରେ ଅଷ୍ଥିର ହୋଇ ସନ୍ନ୍ୟାସୀ ହେବାକୁ ପଡ଼ିବ । ଏପରି ଯେଉଁମାନେ ସନ୍ନ୍ୟାସୀ ହୁଅନ୍ତି ସେମାନଙ୍କର ଜୀବନ ବ୍ୟର୍ଥ ବୋଲି ମୋ'ର ବିଶ୍ୱାସ । ନିଜର ଯେ ପ୍ରକାର ଯେ ପ୍ରକାର ଦୁଃଖ ହେଉଛି ସେ ଦୁଃଖ ତ ସଂସାରରେ ଅତି ସାଧାରଣ ।

(୧୪ । ୯ । ୫୫)

**ନବ ବାବୁଙ୍କ ପତ୍ର :**

ଆଜି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଖଣ୍ଡିଏ ଚିଠି ପାଇ ନିଜକୁ ଖୁବ୍ ଶ୍ରେଷ୍ଠ ମନେକଲି । ସେ ଶ୍ରଦ୍ଧେୟ ବୋଲି ସମ୍ବୋଧନ କରିଛନ୍ତି, ଓ ପ୍ରମୋଦର ମୃତ୍ୟୁରେ ସମବେଦନା ପ୍ରକାଶ କରି ନିଜର ପୁତ୍ର ଶୋକକୁ ସ୍ମରଣ କରାଇ ଦେଇଛନ୍ତି । ବାସ୍ତବିକ ତାଙ୍କର ଶୋକ ତୁଳନାରେ ମୋର ଶୋକ କିଛି ନୁହେଁ । ତାଙ୍କ ପୁଅଟି ମରିଯିବା ପରେ ସେ ସଂସାର ବନ୍ଧନରୁ ମୁକ୍ତ ହୋଇଛନ୍ତି । ମୋ ଜ୍ୱାଇଁ ମରିବାରେ ମୁଁ ଅଧିକ ସଂସାରୀ ହେବାର ପଥ ସୁଗମ ହୋଇଛି ମାତ୍ର । ନାତି ନାତୁଣୀ କିପରି ମଣିଷ ହେବେ ସେଇ ଚିନ୍ତା ମୋତେ ଗ୍ରାସ କରିବାକୁ ବସିଛି । ସେଥିରୁ ଉଦ୍ଧାର ପାଇବି, ଗ୍ରାସାଚ୍ଛାଦନର ବ୍ୟବସ୍ଥା କରିବି ଓ ମୋ'ର ସଂକଳ୍ପ ସିଦ୍ଧ କରିବି ଏ ତ ଘୋର ମାୟା ! ସ୍ତ୍ରୀ ଭିତରୁ ମୋର ମଣିଷ ପଣିଆ ବାହାରିବା ଗହନ କଥା ପରି ମନେ ହେଉଛି ।

ବୃଷ୍ଟା ଆଜି ବହୁତ ନୂଆଇଁ ଅଣି ଦେଇଗଲା । ଶିବ ବୃଷ୍ଟି ପାଇଁ ଯିବା ବୃଥା । ନିଜ ଘରୁ ବୃଷ୍ଟିକୁ ଅଣିବାର ପ୍ରସ୍ତାବ କରି ଘାଣ୍ଟି ହେବ ମାତ୍ର । ଆଜି ପୁଣି ଘୋର ଦୁର୍ଦ୍ଦିନ ଆରମ୍ଭ ହେଲା । ରାତିରେ ଅତି ଭୀଷଣ ପବନ ସହିତ ବର୍ଷା ହେଲା । ଅମ ଏ ପୁରୁଣା ଘର ଭାଙ୍ଗି ପଡ଼ିବାର ଆଶଂକା ହେଲା । ନିଜର ମୃତ୍ୟୁ ହେଲେ ଭଲ ବୋଲି ଶୋଇ ପଡ଼ିଲି ।

(୨୧ । ୯ । ୧୯୫୫)

**ଏଟର ଗୀତା ଭାଷ୍ୟ ରଚନା**

ଆଜି ସକାଳେ ଚକ୍ରଧର ମହାପାତ୍ରେ ଓ କବି ବୀର କିଶୋର ଦାସ ଆସିଥିଲେ । ଚକ୍ରଧରବାବୁ ଖଣ୍ଡିଏ ଗୀତା ଉପରେ ବହି ଲେଖିଛନ୍ତି । ଏ ପୁସ୍ତକ ଉପରେ ଅନାଧିକାର ଚର୍ଚ୍ଚା କରିବା ବହୁ ଦିନରୁ ଆରମ୍ଭ ହେଲାଣି । କଂଗ୍ରେସ ବାଲା ଅତି ମାତ୍ରାରେ ଗାନ୍ଧୀ

ହୋଇଗଲେ । ପ୍ରଥମେ ଆନିବେସାନ୍ତ ଗୀତାର ଗୋଟିଏ ସରଳ ଅନୁବାଦ ଇଂରାଜୀରେ କଲେ । ସେ ପାଣ୍ଡିତ୍ୟ ଦେଖାଇ ନ ଥିଲେ । ତିଳକ ମହାରାଜ ଗୀତାର ଗୋଟିଏ ବଡ଼ ଟୀକା ଲେଖିଲେ । ସେ ପଣ୍ଡିତ । ମହାତ୍ମା ଗାନ୍ଧୀ ଗୋଟିଏ ଭାଷ୍ୟ ଲେଖିଥିଲେ ଥୋଡ଼ାଆରେ ସାଧାରଣ ଲୋକଙ୍କ ପାଇଁ । ସେ ମଧ୍ୟ ହେଲେ ଅଧିକାଂଶ ସାଧକ ଭାବରେ । ତାଙ୍କ ଆଶ୍ରମର ସମସ୍ତେ ଗୀତାର ଟୀକାକାର ହେବାକୁ ବସିଲେ । ବିନୋବା ନିଜ ମନଇଚ୍ଛା ଗୋଟିଏ ନୋଟ୍ ଲେଖିଛନ୍ତି ଆମ ଗୋବିନ୍ଦଜୀ ମଧ୍ୟ ଗୋଟାଏ ଲେଖିଦେଲେ । ଶଶୀବାବୁ ବି ଲେଖିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ଗୀତାର ମୂଳ ନ ବୁଝି ଗୀତା ଧର୍ମୀ ହୋଇ ଆବୁର ଜାବୁର କରି ଏକ ପ୍ରକାଣ୍ଡ ଗ୍ରନ୍ଥ ଲେଖିଥିଲେ । ଏଥିରେ ଚନ୍ଦ୍ରଧର ମହାପାତ୍ର ଅଣ୍ଟା ଭିଡ଼ିବାରେ ଆଶ୍ଚର୍ଯ୍ୟ କ'ଣ ? ଗୀତା ସାଧନାର ସାଧନ ହେଉ ନ ହେଉ, ପାଣ୍ଡିତ୍ୟର କସରତ ଆଖଡ଼ା ହୋଇଯାଇଛି । ସମାଲୋଚନାକୁ କାହାର ଭୟ ନାହିଁ । କାରଣ ଏ କ୍ଷେତ୍ରରେ ସମାଲୋଚକ ତ ନିଜେ ଟୀକାକାର ହୋଇ ଯାଇଛନ୍ତି । ସଂସ୍କୃତ ବଚନ ନେଇ ଶୈଳୀ ଧରି ହେବ ବୋଲି ସେ ମୋତେ ପଚାରିଲେ । ଏ ବିଷୟରେ ନିଜତ୍ୱ ନ ଦେଖାଇ ବମ୍ବେ ଓ ଗୋରଖପୁରରେ ଯେପରି ଛପା ହୋଇଛି ସେପରି କର ବୋଲି ପରୋକ୍ଷରେ କହିଲି । ବୀରବାବୁ ଦୁଇଟି ବନ୍ୟାକ୍ଲିଷ୍ଟ ପିଲା ଧରି ଚାନ୍ଦା ଆଦାୟ କରୁଛନ୍ତି । ମୁଁ ଚାନ୍ଦା ଦେବାକୁ ସ୍ୱୀକୃତ ହେଲି ।

(୨୫ । ୯ । ୧୯୫୫)

**ଶଶୀଘରୁ ଭାତ ସବସବ:**

କୁଳ ଶଶୀ ଘରକୁ ଯାଇଥିଲା, କାଲି ଦି'ପହରେ ମାଳଗୋଦାମଠାରେ ତା' ସଙ୍ଗେ ଦେଖାହେଲା, କିନ୍ତୁ ବିଶେଷ କଥାବାର୍ତ୍ତା ହୋଇ ପାରି ନ ଥିଲା । ଗାଁ ଲେଉଟାଣି ଶଶୀ ବୋଉ ସଙ୍ଗେ ଦି' ପଦ କଥାବାର୍ତ୍ତା ଭିତରେ ସେ କୁଳଠାରୁ ଶଶୀ ଘର ହାଲ ଯାହା ଶୁଣିଥିଲା, ମୋତେ କହିଲା । କୁଳ ପୂର୍ବରୁ ବୈଦ୍ୟନାଥ ଓ ଶ୍ରୀନିବାସ ବାଙ୍କା ଯାଇଥିଲେ । ତାଙ୍କ ପୂର୍ବରୁ ନୀଳ ସ୍ତ୍ରୀ ମଧ୍ୟ ଯାଇଥିଲା । ଯମଦେବତା ପ୍ରକାଶ କରିବାକୁ ଏପରି ଆମ ବଂଶ ଯାଜ୍ଞ ଧାଇଁଲେ, ଲଭ ପରଂ ଗୋବଧଃ ହୋଇଯିବ । ଶଶୀ ଘରୁ ଭାତତକ ସରିଯିବ । ପ୍ରମୋଦ ଯୋଗୁଁ ଆନନ୍ଦ ଋଣଗ୍ରସ୍ତ ହୋଇ ଯାଇଛନ୍ତି । ପ୍ରମୋଦ ନାମରେ ହୋଇଥିବା ଇନ୍ସ୍ୟୁରାନ୍ସରୁ କିଛି ଟଙ୍କା ମିଳିବ । ସେଇଟିକର ଯଦି ଆନନ୍ଦ ସଦ୍‌ବ୍ୟବହାର କରେ, ତେବେ ପିଲାମାନେ ଚଳିବାରେ କେତେକାଂଶରେ ସାହାଯ୍ୟ ହେବ । ଆନନ୍ଦ ସଙ୍ଗେ କଥାବାର୍ତ୍ତା ହୋଇ ସେ ଭବିଷ୍ୟତ ପାଇଁ କ'ଣ କଳ୍ପନା କରୁଛି ବୁଝିବି । ତା'ର ବେଳ ବର୍ତ୍ତମାନ ନୁହେଁ । ଆଉ କିଛି ଦିନ ପରେ ଆନନ୍ଦର ଦୁଃଖ ଟିକିଏ ଲାଘବ ହେଲେ ତା' ସଙ୍ଗେ ଆଲୋଚନା କରିବି ।

(୨୯ । ୯ । ୧୯୫୫)

**ଆଶ୍ରମ ଅଭିଳାଷ :**

ଆଜି ସକାଳେ ଗାଈ ପୋଷ୍ଟ ପୋଛୁ କରିବାକୁ ଗୋଟିଏ ଲୋକ ଆସି ପହଞ୍ଚିଥିଲା । ତାକୁ ୪୦/୪୫ ଟଙ୍କା ପର୍ଯ୍ୟନ୍ତ ଦେବାକୁ ପଡ଼ିବ । ସେ ବରଂ ଭଲ, ଆଉ କାହାକୁ ରଖିବି ନାହିଁ । ସେ ଯୁଡ଼େ ଦିନ ମୋ' ପାଖେ ରହି ଯିବାରୁ ତାକୁ ଭଲ ଲାଗିଲା ।

ସେ' ପକ୍ଷରେ ଶଶୀବୋଉ ତା' ସୈନ୍ୟଙ୍କୁ ନେଇ ଅସିଲା । ଘରଟା ପୂରିଗଲା । କିଛିମାସ ହେଲା ଏକୁଟିଆ ରହିବା ଫଳରେ ଜୀବନଟା ବଡ଼ ଶକ୍ତ ଲାଗୁଥିଲା । ଆଜି ମନ ଖୁସି ହେଲା । ଆଜି ବୁଝିଲି ସ୍ତ୍ରୀ, ସଂସାରରେ ପୁରୁଷକୁ ମଣିଷ କରେ ଓ ସ୍ତ୍ରୀ ହୋଇ ପୁରୁଷକୁ ସାଙ୍ଗରେ ପାଇ ନିଜେ ମଣିଷ ହୁଏ । ଏଥିରୁ ଜଣେ ଯିଏ ଚାଲିଗଲେ ଆଉ ଜଣକ ଅନ୍ୟର ଅଭାବ ନିଜେ ପୂରଣ କରିବାକୁ ଚେଷ୍ଟା କରେ । ଏ ଚେଷ୍ଟାରେ ଯେ ସଫଳ ହୁଏ ସେ ହୁଏ ରାଣୀ ଦୁର୍ଗାବତୀ ବା ଅହଲ୍ୟା ବାଈ ବା ଜବାହରଲାଲ ନେହେରୁ, ଯେ ନ ହୁଏ । ସେ ହୁଏ ପୁରୀରେ ନାଗା ନ ହେଲେ ଲଙ୍ଗୁଳିଆ ଯୋଗୀ । ପୁରୁଷ ସ୍ତ୍ରୀ ଉଭୟେ ଥାଇ ଉଭୟ ବୟସରେ ଘରେ ମଧ୍ୟ ଆଶ୍ରମ କରନ୍ତି, ଯେପରି ମହାତ୍ମା ଗାନ୍ଧୀ କରିଥିଲେ । ମୋ'ର ସେଇ ଅଭିଳାଷ ଆକାଂକ୍ଷା । ଭଗବାନ ଏଥିରେ ବଳ ଦିଅନ୍ତୁ । (୧୨ । ୧୦ । ୮୫)

**ପ୍ରମୋଦ-ଶୋକ-ପ୍ରମାଦ:**

କେତେ ଦିନ ହେଲା ମନରେ ଭାବୁଥିଲି ଶଶୀ ଘରକୁ ଟିକିଏ ଯିବି । ବୁଢ଼ା ବୁଢ଼ୀଙ୍କୁ ସଂଖୁଳି ଆସିବି । ପ୍ରମୋଦ ମରିବାରେ ସେଇ ଦୁଇଜଣଙ୍କୁ ସବୁଠାରୁ ବେଶୀ ବାଧା ହେବାର କଥା । ଆମ ନିଜ ଦୁଃଖ ତାଙ୍କ ତୁଳନାରେ କିଛି ନୁହେଁ । ଆଜି ପର୍ଯ୍ୟନ୍ତ ନିଜ ଦୁଃଖକୁ ବଡ଼ ବୋଲି ଭାବୁଥିବାରୁ ତାଙ୍କୁ ସଂଖୁଳିବାକୁ ମନ ହେଉ ନ ଥିଲା । ଆଜି ଦୁଇଟା ବେଳେ ବାହାରିଲି । ଭୁବନେଶ୍ୱର ଓ ଗାଁ ବାଟ ହୋଇ କାଲି ସଂଧ୍ୟାରେ ବାଙ୍କୀରେ ପହଞ୍ଚି-ବାକୁ । ଭୁବନେଶ୍ୱରରେ ଯାଇ ପହଞ୍ଚି ମନେ ପଡ଼ିଲା ଯେ ଆଜି ମହାଳୟା ସେଥିପାଇଁ ଅଫିସ ବନ୍ଦ । ପଦ୍ମନାଭ ଘରକୁ ଗଲି । ସେଠାରୁ ବହି ଭଡ଼ା ବାବଦରେ ୫୫୦ଙ୍କା ମିଳିଲା । ଟ୍ରାଇବାଲ ୱେଲଫେୟାର ଡିପାର୍ଟମେଣ୍ଟରୁ ଶହେଟଣ୍ଡି ବହିର ଦାମ ୫୨୭୦ଙ୍କା ମିଳିଲା । ଅଭାବ ମେଣ୍ଟିଲା । ଚାକିରିରେ ଥିବାବେଳେ ଯେତେ ଅଭାବ ଭିତରେ ମୁଁ ଥିଲି, ବର୍ତ୍ତମାନ ଚାକିରି ଛାଡ଼ିବା ପରେ ତାହା ନାହିଁ । ବର୍ତ୍ତମାନ ଅବଶ୍ୟ ପୂର୍ବ ତୁଳନାରେ ଅଳ୍ପ ମିଳୁଛି । କିନ୍ତୁ ଅଭାବ-ବୋଧ ମଧ୍ୟ କମିଛି । ଗାଁରେ ପହଞ୍ଚିଲି ବେଳକୁ ସଂଧ୍ୟାବେଳ । ହରି ଭାଇନା ଶିବ ଭାଇ ମୋ ପାଖରୁ ଚାଲି ଯିବାରେ ବଡ଼ କ୍ଷୁବ୍ଧ ହୋଇଛନ୍ତି । ତାଙ୍କର ସଂଦେହ, ମୁଁ ଏଥିପାଇଁ ତାଙ୍କ ଉପରେ ଚିଡ଼ିବି, ଓ ତାଙ୍କର ଅଭାବ ବେଳେ ତାଙ୍କ କଥା ବୁଝିବି ନାହିଁ । ଏହା ହେବ ନାହିଁ ବୋଲି ତାଙ୍କୁ ଆଶ୍ୱାସନା ଦେଲି । ଗାଁର ଆଉ କେତେଜଣ ଆସିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉ ହେଉ ରାତି ବାରଟା ହେଲା । (୧୫ । ୧୦ । ୧୯୮୫)

**ସୀମା କମିଶନ:**

ଆଜି ସୀମା କମିଶନ୍ ରିପୋର୍ଟର ପ୍ରତିବାଦ କରି କଟକରେ ହରତାଳ ପାଳିତ ହୋଇଥିଲା । ଖବର କାଗଜ ବାହାର କରୁଥିବା ପ୍ରେସମାନେ କାମ ବଂଦ କଲେ ନାହିଁ । ତାଙ୍କ ଦେଖା ଦେଖି ଅନ୍ୟ ପ୍ରେସ ମାନେ ମଧ୍ୟ ଖୋଲିଲେ । ପିକେଟିଂ କରୁ-ଥିବା ଯୁବକ-ମାନେ ସେମାନଙ୍କୁ ଲାଞ୍ଛନା କଲେ । ସେଇ ଆଶଂକାରେ ମୁଁ କାଲିଠାରୁ ଅମ ପ୍ରେସ ବନ୍ଦ କରିବାକୁ ସ୍ଥିର କରିଥିଲି । ଏ ହରତାଳର କିଛି ଅର୍ଥ ନାହିଁ । ସୀମା କମିସନ ଓଡ଼ିଶାକୁ

ଆସିବା ବେଳେ ଓଡ଼ିଶାରେ ସେମାନେ ପ୍ରବଳ ଜନମତ ଦେଖିଲେ ନାହିଁ । ସେମାନେ ଦେଖିଲେ, ଲୋକେ ଏ ବିଷୟରେ ସଜାଗ ନାହାନ୍ତି, କେବଳ ଜଣେ ମନ୍ତ୍ରୀ ଓ ତାଙ୍କର ଦୁ'ଚାରିଜଣ କର୍ମଚାରୀ ଶୁଖିଲାରେ ବାଜଣା ପିଟିବା ଉଦ୍ଦେଶ୍ୟରେ ଓଡ଼ିଶାରେ ଗୁଡ଼ାଏ ଅଞ୍ଚଳ ପ୍ରତିବେଶୀଙ୍କଠାରୁ ମାଗୁଛନ୍ତି । ଏପରି ଧାରଣା ଜନ୍ମାଇବାରେ ସରକାର ନିଜେ ଦାୟୀ । ବର୍ତ୍ତମାନ ଲୋକଙ୍କର ଟିକିଏ ଉତ୍ତେଜନା ଦେଖାଯିବାରୁ ନବବାବୁ ମଧ୍ୟ କହୁଛନ୍ତି ଯେ ସୀମା କମିଶନ ଓଡ଼ିଶା ପ୍ରତି ଅନ୍ୟାୟ କରିଛନ୍ତି । କିନ୍ତୁ ସେ ନିଜେ କିଛି ଦିନ ପୂର୍ବେ ମୋତେ କହିଲେ ଯେ ଓଡ଼ିଶାର କିଛି ଯିବ ନାହିଁ କି କିଛି ଆସିବ ନାହିଁ । (୧୮ । ୧୦ । ୫୫)

**ପ୍ରୋଭିଡେଣ୍ଟ ଫଣ୍ଡ :**

କାଲି ମୋର ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କାରୁ ୧୧ ହଜାର ୩ ଶହ ପାଇଁ ହୁକୁମନାମା ଆସିଲା । ଆଜି ତାହା ନେଇ କଚେରୀକୁ ଯାଇଥିଲି । ବାମଦେବ ବାବୁ ଚଲାଣଟିଏ କରାଇ ଦେଲେ । କିନ୍ତୁ ଗୋଟେ ବାଜିଯାଇଥିବାରୁ ଆଜି ଚଲାଣ ଦାଖଲ ହୋଇ ପାରିଲା ନାହିଁ ।

ନାଭି ଦୋକାନକୁ ଗାଡ଼ି ନେଲି ଯେ ଚାଳିଶ ଟଙ୍କା ଖର୍ଚ୍ଚରେ ପଡ଼ିଲି । ଗୋଟିଏ ଦୁଆର ହତା ନୂଆ ଲଗାଇବାକୁ ହେଲା । ଗାଡ଼ିଟି ବର୍ତ୍ତମାନ ଭଲ ଅଛି । ଅବଶ୍ୟ କେତେ ଦିନ ଏ ଅବସ୍ଥା ରହିବ ଜଣାନାହିଁ । ଗାଡ଼ି ବିକ୍ରି କରିବାକୁ ନାଭିକୁ ପ୍ରସ୍ତାବ ଦେଲି । ୭ହଜାର ଟଙ୍କାରେ ଗାଡ଼ି ଛାଡ଼ିବ ବୋଲି କହିବାରେ ସେମାନେ କହିଲେ ଯେ, ଦର କମ ହେଉଛି । ଆଉ ହଜାରେ ଖଣ୍ଡେ ମିଳିବାର ସେମାନଙ୍କର ଆଶା । ଏ ଖଣ୍ଡେ ବିକିଲେ ଖଣ୍ଡେ ଫୋର୍ଡ ପ୍ରିଫେକ୍ଟ ତାଙ୍କ ଜରିଆରେ କିଣିବାକୁ ସେ ସର୍ତ୍ତ ଦେଲେ । ମୁଁ ହଁ କରିଦେଇଛି ।

ନବଜୀବନ ଗ୍ରନ୍ଥମାଳାର ଷଷ୍ଠ ଖଣ୍ଡର ଲେଖା କାଲି ଆରମ୍ଭ କଲି । ଆଜି ବି କେତେ ପୃଷ୍ଠା ଲେଖିଲି । ଲେଖିବାର ବାୟୁମଣ୍ଡଳ ବର୍ତ୍ତମାନ ଏ ଘରେ ସୃଷ୍ଟି ହୋଇ ପାରୁ ନାହିଁ । ଆଶା ରଖିଛି, ଦଶହରା ଛୁଟିରେ ଏ ବହିଟି ଶେଷ କରିବି, କିମ୍ବା ଅଧିକାଂଶ ଲେଖିଦେବି ।

(୧୯ । ୧୦ । ୫୫)

**ମାସିକ ନବଜୀବନ ପ୍ରକାଶନ ଚିନ୍ତା :**

ଆଜି ଟିକିଏ କାମ କରିବି ବୋଲି ନିତ୍ୟକର୍ମ ସାରି ତଳକୁ ଆସିଛି ଓ ଚିଠି ଲେଖିବାକୁ ବସିଛି ନୀଳାମ୍ବର ଆସି ପହଞ୍ଚିଲା । ତାର ଆଖି ଖୁବ୍ ଖରାପ ହୋଇଛି । ସେ ରଘୁନନ୍ଦନ ଶତପଥୀଙ୍କୁ ଦେଖାଇ ସାରିଛି । ମହେନ୍ଦ୍ର ମିଶ୍ରଙ୍କୁ ମୋ ସହିତ ଯାଇ ଦେଖାଇବାକୁ ତା'ର ଇଚ୍ଛା । ମୋଟେ ୪ଖଣ୍ଡ ଚିଠି ଲେଖି, ତା ସାଙ୍ଗେ ମହେନ୍ଦ୍ର ମିଶ୍ରଙ୍କ ଘରକୁ ଗଲି । ସେ ଦିଲ୍ଲୀ ଯାଇଛନ୍ତି ; ଶରତ ମିଶ୍ର ମଧ୍ୟ ବମ୍ବେଇ ଯାଇଛନ୍ତି । ଭାରତ ସରକାରଙ୍କର ଗୋଟିଏ ବଡ଼ ବ୍ୟାଧି ହେଲାଣି, ନାନା କମିଟି ସମ୍ମିଳନୀ ବସାଇବା । ସମ୍ମିଳନୀ ବସାଇବାରେ ଉପକାରିତା ଅଛି ; କିନ୍ତୁ ଅତି ସବୁବେଳେ ବାଧୁଛି । ବର୍ତ୍ତମାନ ଯେପରି ଘନ ଘନ ସମ୍ମିଳନୀ ବସୁଛି ସେଥିରେ ସ୍ୱାଭାବିକ କାମ କାମନା, ଏଆଡ଼େ ସମ୍ମିଳନୀରେ ଯାହା ମସୁଧା ହେଉଛି ତାହାର ରିପୋର୍ଟ

ପଢ଼ିବାକୁ ମନ୍ତ୍ରୀଙ୍କ କଥା ଛାଡ଼, ସେକ୍ରେଟାରିମାନଙ୍କ ମଧ୍ୟ ସମୟ ମିଳୁନାହିଁ । ସମୟ ଥିଲେ ବି ସେଗୁଡ଼ିକ ପଢ଼ିବାକୁ କାହାର ସ୍ପୃହା ନାହିଁ । ଜଣେ ସେକ୍ରେଟାରି ମୋତେ କହୁଥିଲେ, ଭାରତ ସରକାର ଯେପରି ଏ ସମ୍ମିଳନୀଗୁଡ଼ିକର କାର୍ଯ୍ୟ ବିବରଣୀ ଲେଖି ପଠାଉଛନ୍ତି ସେଥିରେ ମନେ ହେଉ ନାହିଁ ଯେ, ଏହା କେହି ପଢ଼ନ୍ତି ବୋଲି ସେ ବୁଝୁଛନ୍ତି ।

ମହେନ୍ଦ୍ର ବାବୁଙ୍କ ଦେଖା ନ ପାଇ ବୈଦ୍ୟନାଥଙ୍କ ବସାକୁ ଆସିଲି । ନବଜୀବନ ମାସିକ ପତ୍ର ପାଇଁ କେଉଁ କେଉଁ ଲେଖକମାନଙ୍କ ପାଖକୁ ଚିଠି ଲେଖିବା ସେଇ ବିଷୟରେ ଆଲୋଚନା ହେଲା । (୩୧ । ୧୦ । ୧୯୫୫)

ଆଜି ସ୍ଥିର କଲି ଯଥାଶୀଘ୍ର ନବଜୀବନ ମାସିକ ପତ୍ରଟି ପ୍ରକାଶ କରିବି । ଅନ୍ତତଃ ଦୁଇ ହଜାର ଗ୍ରାହକ ହୋଇପାରିବେ ବୋଲି ମୋର ବିଶ୍ୱାସ ହେଉଛି । ଆଶା ତ କରୁଛି ଏଥିରୁ ଅଧିକ ହେବେ । ଦୁଇ ହଜାର ଗ୍ରାହକ ଓ ୮ ପୃଷ୍ଠା ବିଜ୍ଞାପନ ହେଲେ ମାସିକ ପତ୍ରଟି ବେଶ୍ ଚଳିବ ବୋଲି ଆଶା କରେ । ଏଥିପାଇଁ ଅବଶ୍ୟ ମୋତେ ଅଧିକ ଖଟିବାକୁ ପଡ଼ିବ । ପରିଶ୍ରମକୁ ପଶ୍ଚାତ୍ପଦ ହୋଇ ମାସିକ ପତ୍ରଟି ବାହାର ନ କଲେ ପ୍ରେସ କରି ଛାଡ଼ିବା ନିରର୍ଥକ ହୋଇଯିବ । ଏଣେ ମାସିକ ପତ୍ର ବାହାରିବ, ଓ ପ୍ରେସର କାମ ଅଧିକ ଜୋରସୋରରେ ଲାଗିବ—ତେବେ ଘରଭଡ଼ା ଦେବା ବାଧିବ ନାହିଁ ଓ ମଟରଟା ସ୍ୱଚ୍ଛନ୍ଦରେ ରଖିହେବ । ଏଇ ସଂପର୍କରେ ବନ୍ଧୁମାନଙ୍କ ସଙ୍ଗେ କଥାବାର୍ତ୍ତା ହେବା ପାଇଁ ଟିକିଏ ଠାରୁ ଦ'ଠା ବୁଲିବାକୁ ପଡ଼ିବ । ଆଜି ବହୁ ଦିନ ପରେ ଦାଣ୍ଡକୁ ବାହାରି ପଟ୍ଟନାୟକ କଂପାନୀକୁ ଗଲି । ସୁରବାବୁ କିଛି ଛପା ଅର୍ଡ଼ର ଦେବାକୁ ପ୍ରତିଶ୍ରୁତି ଦେଲେ । ଆଜି ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସଙ୍ଗେ ଦେଖା ହେଲା । ତାଙ୍କର ପିଠିର ଘା ଦେଖି ବିସ୍ମିତ ହୋଇଗଲି । ଏଥିରେ ସେ ଯାହା ଜୀବନର ଆଶା ଧରି ରହିଛନ୍ତି, ତାହା ବାସ୍ତବିକ ବଡ଼ ବିଚିତ୍ର । (୨ । ୧୧ । ୧୯୫୫)

**ରାଜନୀତି ଦଶା ନାସ୍ତି:**

ଖବର କାଗଜରେ ବାହାରିଛି 'ଆସନ୍ତା ମାର୍ଚ୍ଚ ମାସ ସୁଦ୍ଧା ମହତାବ୍ ବମ୍ବେଇ ଗଭର୍ଣ୍ଣର ପଦ ଛାଡ଼ି ପୁଣି ରାଜନୀତିକୁ ଫେରିବେ । ମୋର ଏ କଥାରେ ବିଶ୍ୱାସ ହେଉଛି ଓ ହେଉନାହିଁ । ମହତାବ୍ଙ୍କର କ୍ଷମତା ଲାଳସା ଓ ତା ସଙ୍ଗେ ସଙ୍ଗେ କୁଳାଗତ ଜମିଦାରୀ ପରମ୍ପରାରେ ବଡ଼ଲୋକିରେ ମନ । ଗଭର୍ଣ୍ଣର ପଦରେ ଦାଣ୍ଡକୁ ଦିଶିବା ଭଳି ବଡ଼ଲୋକି ଅଛି, କିନ୍ତୁ ଅସଲ କ୍ଷମତା ନାହିଁ । ମହତାବ୍ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । ଗଭର୍ଣ୍ଣର ପଦ ତାଙ୍କୁ ଯେତେ ମିଠା ଲାଗିଛି, ତହିଁରୁ ବେଶି ସୁଖ ଲାଗିବ ବିଦେଶରେ ରାଜଦୂତ ହୋଇପାରିଲେ । ଏଣେ କ୍ଷମତାର ମୋହ ମଧ୍ୟ ଯାଉନାହିଁ । ଓଡ଼ିଶାର ଅନୁଗତମାନଙ୍କ ଅନୁନୟରେ ସେ ରାଜନୀତିକୁ ଫେରିବାକୁ କହିଥିବେ । କିନ୍ତୁ ଓଡ଼ିଶାର ମଙ୍ଗଳ ଦୃଷ୍ଟିରେ ସେ ଆସିବାକୁ ଚାହାଁନ୍ତି ବୋଲି ମୋର ମନେ ହେଉନାହିଁ । ଯଦି ଆସନ୍ତି ଓ ଯଦି ମୋର ସାହାଯ୍ୟ ଲୋଡ଼ନ୍ତି ତେବେ ନିର୍ବିଘ୍ନରେ ମୁଁ ତାଙ୍କ ସଙ୍ଗେ ମିଶିବି ବୋଲି ପ୍ରତିଶ୍ରୁତି ଦେଇଛି ଓ ତାହା କାର୍ଯ୍ୟରେ କରିବି । ସେ ଯଦି ମୁଁ ଯାଇ ତାଙ୍କର ତୋଷାମୋଦକାରୀ ହେବି ବୋଲି ଆଶା

-କଣବେ ତେବେ ନିର୍ବାଣ ହେବେ । ରାଜନୀତିରେ ଏପରି କିଛି ମୂଲ୍ୟ ଲାଗିନାହିଁ, ଯେ ମୋତେ ପ୍ରଲୋଭିତ କରିବ । ମୁଁ ସାହିତ୍ୟ ସାହାଯ୍ୟରେ ରାଜନୀତିକୁ ପ୍ରଭାବିତ କରିବାରେ ସନ୍ତୁଷ୍ଟ ରହିବି ପଛେ, ବିଶ୍ୱନାଥ ଦାସ, ମହତାବ୍ ବା ନବବାବୁଙ୍କ ପୁଚ୍ଛ ଧରି ରାଜନୀତି କରିବାକୁ ବ୍ୟାକୁଳ ହେବି ନାହିଁ । (୪ । ୧୧ । ୧୯୫୫)

ରାଜନୀତି କରି ଫୁଲମାଳ ଅର୍ଜନ କରିବାର ଲାଳସା ମୋର ନ ଥାଏ । ୧୯୩୭ ରେ ଖୋର୍ଦ୍ଧାରେ ବହୁ ଲୋକ ଦାବୀ କରିଥିଲେ ମୋତେ ଠିଆ ହେବାକୁ । ନୀଳକଣ୍ଠ ବାବୁ ସେତେବେଳେ କଂଗ୍ରେସର ବଡ଼ପଣ୍ଡା । ସେ ମଧ୍ୟ ଚାହୁଁଥିଲେ ମୁଁ ଠିଆ ହୁଏ । ଅବଶ୍ୟ ତାଙ୍କର ମନରେ ଥିଲା ମୁଁ ଜୟ କଲେ, ସେ ସୁବିଧାକ୍ରମେ ମୋତେ ଇସ୍ତଫା ଦିଆଇବେ ଓ ନିଜେ ମୋ ସିଟ୍‌ରୁ ନିର୍ବାଚିତ ହୋଇ ଆସି ମନ୍ତ୍ରୀ ହେବେ । ଏ ଭୟରେ ମୁଁ ଠିଆ ହେବାକୁ ପଶ୍ଚାଇଲି ବୋଲି ମୋର ମନେ ହେଉନାହିଁ । ନିର୍ବାଚନ ସଭାରେ ମୋତେ କେଜାଣି କିଏ ଗାଳିଦେବ, ଗଇ ଖୋଳିବ ଏଇ ଭୟରେ ମୁଁ ସେତେବେଳେ ପଛେଇଥିଲି । ମୋ ଜାଣି-ବାରେ ମୋର ବିଶେଷ ଗଇ ନାହିଁ । କିନ୍ତୁ ମିଛରେ ଗାଳିଦେବାକୁ ତ ଲୋକଙ୍କର ଅଭାବ ନାହିଁ । ତେଣୁ ମୁଁ ସବୁ ବେଳେ ପଛରେ ରହି ଆସିଛି । ଆଜି ମଧ୍ୟ ସେଇଆ ମନ । ଯଦି ମୋ'ଦ୍ୱାରା କିଛି କାମ ଦେଶର ହୋଇପାରିବ ବୋଲି ମୋର ବନ୍ଧୁମାନେ ମନେକରନ୍ତି ତେବେ ମୁଁ ରାଜନୀତିକୁ ଯାଇପାରେ, କିନ୍ତୁ ଗଣତନ୍ତ୍ର ବା ସ୍ୱାଧୀନ ଟିକଟରେ ଯିବି ନାହିଁ । ମୋର ଇଚ୍ଛା କଂଗ୍ରେସର ହୋଇ ଯିବାକୁ । କଂଗ୍ରେସର ବର୍ତ୍ତମାନ ଯେଉଁମାନେ ବଡ଼ପଣ୍ଡା ସେମାନେ ମୋତେ ଡାକିଲେ ଯାଇ ହେବ । ମୁଁ ସେମାନଙ୍କ ପାଖରେ ପ୍ରାର୍ଥୀ ହେବାକୁ ଚାହୁଁ ନାହିଁ । (୭ । ୧୧ । ୧୯୫୫)

**ଐକ୍ୟ ଅନୈକ୍ୟ ମଧ୍ୟରେ :**

ଆଜି ମଧ୍ୟ ଦୀପାବାଳୀ ଯୋଗୁଁ ପ୍ରେସ ବନ୍ଦ ରହିଲା । କାଲି ମାଡ଼ୁଆଡ଼ି ଓ ବଙ୍ଗାଳି-ମାନେ ଦୀପାବଳୀ ଉତ୍ସବ ପାଳିଲେ, ଆଜି ଓଡ଼ିଆମାନଙ୍କର । ଭାରତ ଯେ ଏକ ନୁହେଁ ଏହା ଗୋଟିଏ ଜ୍ୱଳନ୍ତ ନିଦର୍ଶନ । ପଣ୍ଡିତ ଜହରଲାଲ ଭାରତକୁ ଏକ କରିବାକୁ ଯେତେ ଚେଷ୍ଟା କରନ୍ତୁ ନା କାହିଁକି ପ୍ରାଦେଶିକ ବୈଷମ୍ୟ ରହିବ ହିଁ ରହିବ । ଭାରତ, ଇଂଲଣ୍ଡ, ଫ୍ରାନସ୍ ଭଳି ଜାତୀୟତା କେବେ ହେଲେ ଅର୍ଜନ କରିପାରିବ ନାହିଁ । ଆମର ଜଳବାୟୁ ଅଲଗା ଅଲଗା, ଆଗ୍ରର ବ୍ୟବହାର, ଚାଲିଚଳନ ସବୁ ଅଲଗା—ଦେଶକେ ଫାଙ୍କ୍ ନଇକେ ବାଙ୍କ । ଏସବୁ ସ୍ୱୀକାର କରି ଆମର ଏକତା ରକ୍ଷା କରିବାକୁ ହେବ । ସରକାରୀ ଆଇନ ବଳରେ ରାଷ୍ଟ୍ରଭାଷା ଗୋଟାଏ ହୋଇପାରେ କିନ୍ତୁ ପାଞ୍ଜି ଏକ ନ ହେଲେ ଦୀପାବଳୀ ଦଶହରା ପ୍ରଭୃତି ତ ଅଲଗା ଅଲଗା ପାଳିତ ହେବ । ବଙ୍ଗଳାରେ ଯଦି ମୃଣ୍ମୟୀ ଦୁର୍ଗା ପୂଜା ହେବେ, ଓଡ଼ିଶାରେ ପିତଳ ଦୁର୍ଗା, ଗଞ୍ଜାମରେ ଗୋସାଣୀ ଜାତ ଓ ଦକ୍ଷିଣରେ ଦୁର୍ଗା ପୂଜାର ନାମ ଶୁଣିବାକୁ ମିଳିବ ନାହିଁ । ସ୍ୱାକୁ ଏକ କରିବାକୁ ଗଲେ ଖାଲି ଅସନ୍ତୋଷ ଓ ବିକ୍ଷୋଭ ହିଁ ସାର ହେବ ।

ଉପଦ୍ୱରେ ଯାଇ ବାସନ୍ତୀ ଦ୍ୱେମକୁ ଆଣିଲି । ଉପର ଓଳି ମୁଁ ଦାଶରଥି ଘରେ ଖେଳିବାକୁ ଗଲି । ଜ୍ୱାଇଁ ଓ ପିଲାମାନେ ଘରେ ଦୀପାବଳୀ ମଉଜ କଲେ ।

(୧୪ । ୧୧ । ୧୯୫୫)

**ଜୀବନର କର୍ମପନ୍ଥା:**

ପିଲାଦିନେ ପଢ଼ିଥିଲି, "ନ ହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ" । ଏହାର ଯେଉଁ ଅର୍ଥ ସେ ଦିନେ ଶିକ୍ଷକ ଶିଖାଇ ଥିଲେ, ତାହା ହେଉଛି କାର୍ଯ୍ୟ କରିବାକୁ ହେଲେ ସେଥିପାଇଁ ଉଦ୍ୟମ କରିବାକୁ ହେବ—ତଦନୁସାରେ ଏ କ୍ଷେତ୍ରରେ ଯଦି ଆସେମ୍ବ୍ଲିକୁ ଯିବାର ଇଚ୍ଛା, ତେବେ କଂଗ୍ରେସ କର୍ତ୍ତାଙ୍କ ପଛରେ ଲଙ୍ଗର ପଙ୍ଗର ହେବା ଦରକାର—ନିର୍ବାଚନ ମଣ୍ଡଳୀରେ ଯାଇ ବୁଲିବା ଦରକାର । ସିଂହ ମୃଗ ଧରିବାକୁ ଏପରି ପ୍ରତ୍ୟକ୍ଷ ଉଦ୍ୟମ କରେ ନାହିଁ । ସିଂହ ଅତର୍କିତ ଭାବରେ ମୃଗକୁ ମାଡ଼ି ବସିବାର ଗୁଡ଼ି ଯଦି ପ୍ରତ୍ୟକ୍ଷ ଭାବରେ ମୃଗଙ୍କୁ ଗୋଡ଼ାଇ ଧରନ୍ତା ତାହା ହେଲେ ତାହାର ଧାଇଁବା ଅନୁପାତରେ ଶିକାର ମିଳନ୍ତା ନାହିଁ । ଠିକ୍ ଯେପରି ପଣ୍ଡିତ ନୀଳକଣ୍ଠ ଦାସଙ୍କର ହେଲା । ମନ୍ତ୍ରୀ ହେବାକୁ ସେ ଯେତେ ଉଦ୍ୟମ କରିଛନ୍ତି ବୋଧହୁଏ ଆଉ କେହି ସେତେ ଉଦ୍ୟମ କରି ନ ଥିବେ । କିନ୍ତୁ ଆଜଯାଏଁ ତାଙ୍କ ଭାଗରେ ମନ୍ତ୍ରୀତ୍ୱ ପଡ଼ିଲା ନାହିଁ । ଏଇଥର ସେ ଶେଷ ଉଦ୍ୟମ ସ୍ୱରୂପ ସ୍ୱାଧୀନ ପ୍ରାର୍ଥୀରୂପେ ଆସେମ୍ବ୍ଲିରେ ପଶିଲେ, ପଶି ବହୁ ସାଧ୍ୟ ସାଧନା କରି କଂଗ୍ରେସ ଦଳ ଭିତରେ ଢୁକିଲେ, ତଥାପି ଏ ପର୍ଯ୍ୟନ୍ତ ମନ୍ତ୍ରୀତ୍ୱ ମିଳିଲା ନାହିଁ । ବୋଧହୁଏ ଏଥରକ ସିମିତି ସିମିତି ଯିବ । ଆଉ ଥରକୁ ମଧ୍ୟ ସେ ଆଶା ରଖିବେ । କିନ୍ତୁ ସେତେବେଳେ ବୁଢ଼ା ବୋଲି ତାଙ୍କୁ ପୁଣି ଅପସନ୍ଦ କରିବେ । ମୁଁ ଲୋକ ପ୍ରତିନିଧି ହେବାକୁ ଚେଷ୍ଟା ନ କରି ଜଣେ ପାରିବାର ଲୋକ ହେବାକୁ ଚେଷ୍ଟା କରିବି । ଯଦି ମୋ ଦୋକାନରେ କେହି ସଉଦା କରିବାକୁ ଆସିଲେ ତ ଭଲ । ନ ହେଲେ ନିଜେ ନିଜର କୃତିତ୍ୱରେ ସନ୍ତୁଷ୍ଟ ହେବା ଶ୍ରେୟ । ସେଇ ଭାଗ୍ୟଟା ହେବା ତ କମ କଥା ନୁହେଁ ।

(୨୭ । ୧୧ । ୧୯୫୫)

**ମହତାବ ଫେରନ୍ତୁ :**

ସନ୍ଧ୍ୟାରେ ବୀରେନ୍ ପାଖକୁ ଯାଇଥିଲି । ଜାନକୀ ଓ ନୀଳମଣି ରାଉତରାୟ ମଧ୍ୟ ଥିଲେ । ବହୁତ କଥାର ଆଲୋଚନା ହେଲା । ମହତାବଙ୍କୁ ଓଡ଼ିଶାକୁ ଫେରାଇ ଆଣିବା ପାଇଁ ଗୋଟିଏ ଛୋଟ ଉଦ୍ୟମ ବୀରେନ ଆରମ୍ଭ କରିଛି ।

(୨ । ୧୨ । ୧୯୫୫)

**ବୀରେନଙ୍କ ଦୃଷ୍ଟିକୋଣ :**

ବୀରେନ୍ ବର୍ତ୍ତମାନର ସମସ୍ୟାକୁ ବଡ଼ ସଂକୀର୍ଣ୍ଣ ଦୃଷ୍ଟିରେ ଦେଖିଛି । ତା'ର ଏକମାତ୍ର ଚିନ୍ତାର ବିଷୟ କିପରି ମହତାବ ଫେରିବେ । ଟିକିଏ ଦୂରଦୃଷ୍ଟି ରଖି ବିଷୟଟିର ବିଚାର କଲେ ହୁଏତ ମହତାବ ଫେରିବା ଏତେ କଷ୍ଟ ହୋଇ ନ ଥାନ୍ତା । ହୁଏତ ଆଜି ସରକ ମହତାବ୍ ଫେରି ପାରନ୍ତେଣି । ମହତାବ କାହିଁକି ଫେରିବା ଦରକାର ସେ କଥା ବିଶ୍ଳେଷଣ କରି ସେ

ଚିନ୍ତା କରିନାହିଁ । ତାଙ୍କୁ ଯେଉଁମାନେ ସମର୍ଥନ ଦେଉଛନ୍ତି ସେମାନେ ମଧ୍ୟ ଚିନ୍ତା କରିଛନ୍ତି ବୋଲି ମନେ ହେଉନାହିଁ । ନିଜେ ମହତାବ୍ ଚିନ୍ତାରେ ବେଶୀ ଦୂରକୁ ଯାଇଛନ୍ତି ବୋଲି ମୋର ଧାରଣା ନୁହେଁ । ସେ ମୋ ପାଖକୁ ଯେଉଁ ଚିଠି ଦେଇଥିଲେ ସେଥିରେ ଖାଲି ଏତିକି ପାଇଥିଲି ଯେ, ସରକାରକୁ ଯେପରି ଚଳାଇଥିଲେ ଆମେ ଭାରତ ସରକାରରୁ ବେଶୀ ଟଙ୍କା ପାଇ ପାରିଥାନ୍ତେ, ଆଜି ଶାସନ ନବବାବୁ ସେପରି ଚଳାଇ ପାରୁ ନାହାନ୍ତି । ସେ ସ୍ଥାଠାରୁ ଅଧିକ ଚିନ୍ତା କରିବା ମୁଁ ଆଶା ନ କରିବାର କଥା । ସେ ତ ସେଇ ଜମିଦାର ମହତାବ୍ । ଅନୁଗ୍ରହ କଲାପରି ଲୋକଙ୍କର ମଙ୍ଗଳ କରିବା ସ୍ତରରୁ ସେ ବେଶୀ ଉପରକୁ ଉଠିନାହାନ୍ତି । ନବବାବୁ ଲୋକଙ୍କର ଯେତିକି ମଙ୍ଗଳ କରିଛନ୍ତି ସେ ତା'ର ଦୁଇ ଗୁଣ ବା ଦଶଗୁଣ କଲେ ମଧ୍ୟ ଲୋକଙ୍କର ଉନ୍ନତି ହେବ ବୋଲି ମୁଁ ମନେକରେ ନାହିଁ । ଏକ ଲୁଗା କଲ ସ୍ଥାନରେ ୫ ହେଲେ ଲୋକଙ୍କର କ'ଣଟା ଏ ହୋଇଯିବ ! ବରଂ ବେଶୀ ଶ୍ରମିକ ହେବେ, ବେଶୀ ଦୈନ୍ୟ ତାଙ୍କ ଭିତରେ ଦେଖାଯିବ । ଲୋକଙ୍କ ପ୍ରତି ଅନୁଗ୍ରହ କରିବା ପରିବର୍ତ୍ତେ ଲୋକଙ୍କ ପ୍ରତି ନିଜର କର୍ତ୍ତବ୍ୟ କରିବାର ମନୋବୃତ୍ତି କରିବା ଦରକାର । ମୋ'ର ଭବିଷ୍ୟତ କର୍ମପନ୍ଥା ପାଇଁ ଏହିପରି ଗୁଡ଼ାଏ ଯୋଜନା ଭାବିଲି । ମୋ'ର ଏଇ ଚିନ୍ତାଧାରା ଯଥାସମ୍ଭବ ଲୋକଙ୍କ ଆଗେ ଚାଳିବା ମୋ'ର ବର୍ତ୍ତମାନ ପ୍ରଧାନ କର୍ମ ହେଉ । (୩ । ୧୨ । ୧୯୫୫)

**ଉତ୍କଳ ସମ୍ମିଳନୀ :**

ଆଜି ଶୀଘ୍ର ଖିଆପିଆ ସାରି ଉତ୍କଳ ସମ୍ମିଳନୀ ବୈଠକରେ ଯୋଗ ଦେବାକୁ ପୁରୀ ବ୍ରହ୍ମପୁର ଆସିଲି । ମୁଁ ଆସିଲା ବେଳକୁ ବିଷୟ ନିର୍ବାଚନ ସଭା ବସିଛି । ସବଂମୋଟ ପ୍ରାୟ ୫୦ ଜଣ ପ୍ରତିନିଧି ଆସିଛନ୍ତି । ଏଥିରୁ ୪୦ ଜଣ ବ୍ରହ୍ମପୁର ବା ତନ୍ନିକଟବର୍ତ୍ତୀ ସ୍ଥାନର । ମଞ୍ଜୁଷାରୁ ଦୁଇଜଣ ଆସିଛନ୍ତି । ତରଳା ବୃନ୍ଦାରସିଂହରୁ ଜଣେ ଦୁଇଜଣ ଆସିଛନ୍ତି । ଏପରି ସଭାରେ କୌଣସି ସକ୍ରୀୟ ଭାଗ ନେବା ଉଚିତ ମନେ ହେଲା ନାହିଁ । ଆଲୋଚନାରେ ମଧ୍ୟ କିଛି ଉପାଦେୟତା ଦେଖିଲି ନାହିଁ । ଗୋଦାବରୀଶ ବାବୁଙ୍କର ଆଉ କୌଣସି ତେଜ ବା ଉତ୍ସାହ ନାହିଁ । ସେ ବି ଖାଲି ବେମାର । କଂଗ୍ରେସ ପରି ବିରାଟ ଅନୁଷ୍ଠାନ ବିରୁଦ୍ଧରେ ତାଙ୍କ ନେତୃତ୍ୱରେ ଗୁଳିତ ଦଳ ବିଶେଷ କିଛି କରି ପାରିବେ ବୋଲି ମନେ ହେଉନାହିଁ । ଦେଖୁଛି ଗଣତନ୍ତ୍ର ଦଳରେ ଜଣେ ମାତ୍ର ଉତ୍ସାହୀ ଲୋକ କଳାହାଣ୍ଡି ମହାରାଜା ; କିନ୍ତୁ ସେ' ବଡ଼ ଚଞ୍ଚଳ । ଶ୍ରଦ୍ଧାକର ସୁପକାର, ଦିବାକର ଓ ବଳରାମ ପଣ୍ଡାଙ୍କ ସହିତ ଏଣୁତେଣୁ ଦି'ପଦ କଥାବାର୍ତ୍ତା ହୋଇ ଫେରିଲି । ଛତ୍ରପୁରଠାରେ ଟିକିଏ ରହି ଜଗୁ ଘରୁ ବଗାଏ ନେଇ ଓ ତା' ପାଖରେ ଶହେ ଯୋଡ଼ା ବନ୍ଧି ଦେଇ ଟାଙ୍ଗିକୁ ଫେରିଲି । ଟାଙ୍ଗିରେ ପହଞ୍ଚିଲା ବେଳକୁ ସାତ । ରାମ, ନରସିଂହ ଓ ବେଣୁଧର ପଟ୍ଟନାୟକଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଗାଁକୁ ଫେରିଲି, ଏତାରିଟା ବେଳେ । ଗାଁରେ ପହଞ୍ଚିଲା ବେଳକୁ ୧୨ଟା । ଶୋଉ ଶୋଇ ପ୍ରାୟ ଦୁ'ଟା ହୋଇଗଲା । ଏ ଘରେ ମୋତେ ଯେତେ ଆନନ୍ଦ ଲାଗେ ଭାରତର କୁତ୍ରାପି ନସେ ଆନନ୍ଦ ମୁଁ କେବେ ପାଇ ନାହିଁ । (୧୧ । ୧୨ । ୧୯୫୫)

## ଶଶୀ ଓ ତା' ପିଲେ :

ଶଶୀ ରବିବାରଠାରୁ ଆସି କୁଳ ବସାରେ ରହିଥିଲା । କାଲି ରାତିରେ ୧୦/୧୫ ମିନିଟ୍ କୁଳ ବସାରେ ରହି ମୁଁ ଘରକୁ ଫେରିଥିଲି । ଆଜି ସକାଳେ ସେ ଆସି ପହଞ୍ଚିଲା । ତା ପିଲାଗୁଡ଼ିକ ଅଜଟ । ପିତୃହୀନ ହୋଇଥିବାରୁ ତାଙ୍କୁ ବର୍ତ୍ତମାନ ଆକଟ କରିବା ବି ସମ୍ଭବ ନୁହେଁ । ଝିଅର ମନ ସବୁବେଳେ କାର୍ଯ୍ୟରେ ଲଗାଇ ରଖିବାକୁ ସ୍ଥିର କରିଛୁ । ଘର ଖର୍ଚ୍ଚ ହିସାବ ତା'ରି ହାତରେ ଦେବି । ହିସାବ ଲେଖା ଲେଖିରେ ଖର୍ଚ୍ଚ ବାବଦରେ ଲାଗି ତା'ର ସମୟ କଟିଯିବ ; ତା ପାଖରେ କିଛି ପଇସା ମଧ୍ୟ ରହିପାରେ । ଅନ୍ତତଃ ଶହେ ଦୁଇ ଶହ ଟଙ୍କା ତା ପାଖରେ ରହିଲେ ତା'ର ମନ ଟିକିଏ ଆନମାନ ହୋଇପାରେ ।

ଆଜି ସକାଳ ଏଗାରଟାବେଳେ ମହତାବ୍ ବାବୁ କଟକ ଆସିଲେ । ତାଙ୍କ ପାଇଁ ସମ୍ବର୍ଦ୍ଧନାର ଖୁବ୍ ଆୟୋଜନ ହୋଇଛି । କାଲି ରାତିରେ ଦେଖିଥିଲି ଭୁବନେଶ୍ୱର ନୂଆ ରାଜଧାନୀରେ ଓ ବାଟରେ ଠାଏ ଦୁଇଠା ଗେଟ୍ ତିଆରି ହେଉଛି । ଆଜି ବହୁତଗୁଡ଼ିଏ ଅନୁଷ୍ଠାନରେ ସେ ଯୋଗ ଦେଲେ । ସହର ବାସୀଙ୍କ ତରଫରୁ ମାନପତ୍ର ଦିଆ ହେଲା, ରାଷ୍ଟ୍ରଭାଷା ସଭାରେ ସେ ସଭାପତିତ୍ୱ କଲେ, କଲେଜିଏଟ୍ ସ୍କୁଲରେ ସରକାରଙ୍କଦ୍ୱାରା ଆୟୋଜିତ ଗୋଟିଏ ପ୍ରଦର୍ଶନୀର ଉଦ୍‌ଘାଟନ କଲେ । (୧୩ । ୧୨ । ୫୫)

## ସଜନା ଫୁଲର ଝୋଳ :

ମୁଁ ସମୟ ସଞ୍ଚୟ କରିପାରିଲି ନାହିଁ କି ଧନ ସଞ୍ଚୟ କରିପାରିଲି ନାହିଁ । ଏ ସବୁ ନ କରି ମଧ୍ୟ ମୁଁ ଜୀବନରେ ଖାଇବା କଷ୍ଟ କେବେ ଭୋଗ କରିନାହିଁ । ଅତି ଦୁଃଖ ସମୟରେ ଯାହା ପାଇଛି ତାହା ଅତି ସନ୍ତୋଷରେ ଖାଇଛି । ମନେ ପଡ଼ୁଛି, ୧୯୨୧ରେ କଂଗ୍ରେସରେ ପ୍ରଥମେ ମିଶିବା ବେଳେ ଗାଁରେ ଅରୁଆ ଭାତ ସାଙ୍ଗକୁ ସଜନା ଫୁଲର ଝୋଳ କରି ଖାଉ । ମାଲ ଟିକିଏ ଉଁ ଚୁଁ କଲେ କୁଳ କିଛି ନ କହି ଅଭାବ ଆଗେ ମୁଣ୍ଡ ନୁଆଁଇ ଦିଏ । ମୁଁ କିନ୍ତୁ ଏ ଅବସ୍ଥାରେ ଗୌରବ ଅନୁଭବ କରେ । ଆଜି ଏକଥା ଲୋକଙ୍କୁ କହିବାରେ ମୁଁ କିଞ୍ଚିତ୍ ଆତ୍ମଗ୍ଲାନି ଅନୁଭବ କରେ ନାହିଁ । ଯେତେବେଳେ ମୋ'ର ଖୁବ୍ ଭଲ ଅବସ୍ଥା ପଡ଼ିଲା, ସେତେବେଳେ ମଧ୍ୟ ମୁଁ ଯଦୃଚ୍ଛା ଲାଭ ସନ୍ତୁଷ୍ଟ ନୀତିର ଅନ୍ୟ ଦିଗଟା ପାଳିଲି, ଅର୍ଥାତ୍ ଧନ ଲାଭରେ ମନକୁ ସ୍ଫୀତ କଲି ନାହିଁ । ଯେପରି ସବୁଦିନେ ଚଳୁ ସେପରି ଚଳିଲି, କେବଳ ଏତିକି ଅଧିକା, ପୂର୍ବେ ମୋ ଦୁଆରେ ଦିନକୁ ଜଣେ ଦି'ଜଣଙ୍କ ପତ୍ର ପଡ଼ୁଥିବା ସ୍ଥଳେ, ଏଥର ୩୧୦ ଜଣଙ୍କର ପଡ଼ିଲା । ୧୭୫୦ ଟଙ୍କା ଦରମାରୁ ମୋର କିଛି ବଳେ ନାହିଁ । ଏହା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୁଅନ୍ତି ; ଅନେକ ତ ବିଶ୍ୱାସ କରି ପାରି ନାହାନ୍ତି । ସେ ଯାହା ହେଉ ମୋର ଗାଡ଼ି ଚାଲିଛି । ଅଭାବ ପଡ଼ୁଛି କିନ୍ତୁ ବାଧୁନାହିଁ । (୧୪ । ୧୨ । ୧୯୫୫)

## ନବଜୀବନର ପ୍ରଥମ ପ୍ରବନ୍ଧ :

ପ୍ରଚାର ବିଭାଗ ଜରିଆରେ କିଛି ଛପା କାମ ମୋ ପାଖକୁ ଆସିବ ବୋଲି ଆଜିଯାଏଁ ଆଶା କରି ବିଫଳ ମନୋରଥ ହୋଇଛି । ଅବଶ୍ୟ ବିଶେଷ ଚେଷ୍ଟା ମୁଁ କରିନାହିଁ । କରିବାର

ପ୍ରୟୋଜନ ବ ନାହିଁ । ଭଲ କାମ କଲେ ଲୋକଙ୍କର ଆଦର ବଢ଼ିବ କ ନାହିଁ ଦେଖିବାର ଉଦ୍ଦେଶ୍ୟରେ ମୁଁ ଗ୍ଭକର ଗ୍ଭଡ଼ୁଛୁ । ଗ୍ଭକରରେ ମୁଁ ଭଲ କରୁଛୁ ବୋଲି ଅନେକ ଚନ୍ଦ୍ରଧନ୍ୟା ଦୁଇଟି ସରକାରୀ ବଭାଗ ମୁଁ ନୂଆ କରି ଗଢ଼ି ସ୍ଥାପ୍ତି କଲି । ଏ ଦୁଇଟିଯାକ ବଭାଗର ସୁନାମ ବ ହୋଇଛୁ । ସୁନାରାମ ବାବୁ ଓ ଅନ୍ୟ କେତେକ ମନ୍ତ୍ରୀଙ୍କର ସାବାସି ବ ମିଳିଲା । କନ୍ତୁ ଅସଲ ସରକାର ଯେ ନବବାବୁ ଓ ବ. ମୁଖର୍ଜି—ଏମାନଙ୍କଠାରୁ କେତେବେଳେ ଭଲ କଥା ପଦେ ପାଇଲି ନାହିଁ । ଭଲ କରବ କନ୍ତୁ ପ୍ରଶଂସା ନ ମିଳିବାରୁ ମନଟା ସବୁବେଳେ କ୍ଷୁଣ୍ଣ ରହିବ, ଏହା ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ହେଲା ନାହିଁ । ତେଣୁ ବାହାରି ଆସିଲି । ସରକାରୀ କଳରେ ନାନା ପ୍ରକାର ଷଡ଼ଯନ୍ତ୍ର ଗ୍ଭଲୁଥିବାରୁ ଏପରି ହେଉଛୁ । ବାଣ୍ଡରେ ନର୍ମଳ ବ୍ୟବସାୟ କ୍ଷେତ୍ରରେ କାଦୁଅକୁ ଯିବାକୁ ପଡ଼ିବ ନାହିଁ କ କେହି କାଦୁଅକୁ ଠେଲିବାକୁ ଉଦ୍ୟମ କରିବେ ନାହିଁ ; ଏହି ଆଶାରେ ବାହାରେ ରହି ମୋ କର୍ତ୍ତବ୍ୟ କରିବାକୁ ବସିଛୁ । ଦେଖାଯାଉ କ'ଣ ଫଳ ହେଉଛୁ । ପ୍ରଥମରେ ଠୋକର ଖାଇଛୁ । ଶିବ ଚନ୍ଦଙ୍କ ଯୋଗୁଁ ହରଭାଇନାଙ୍କ ସଙ୍ଗେ ମନୋମାଲିନ୍ୟ ହୋଇଛୁ । ଗାଁରେ ଯେଉଁ ଆଡ୍ଡା କରିଥିଲି ତାହା ଭାଙ୍ଗିବା ଉପରେ । ବର୍ତ୍ତମାନ ଏଠାରେ କ'ଣ ହେଉଛୁ ଦେଖିବାକୁ ରହିଲି । ଆଶ୍ୱାସନାର ବିଷୟ ମ୍ୟୁଜିଅମ୍ ବାଲା ବୃଲି ବୃଲି ଗୋଟିଏ କାମ ମୋ ପାଖେ ଆଣି ପହଞ୍ଚାଇଲେ । ଏ କାମଟି ଯଦି ଭଲରେ ହୁଏ ତେବେ ପ୍ରଭୃର ବଭାଗର ଆଖି ଖୋଲିବାର ସମ୍ଭାବନା ଅଛି । ଏଇ କାମରେ ଖୁବ୍ ମନ ଦେଇ କରିବାକୁ ବ୍ୟବସ୍ଥା କରୁଛୁ । ଆଜି ନବ-ଜୀବନର ପ୍ରଥମ ପ୍ରବନ୍ଧ ଆସିଲା ବୈଦ୍ୟନାଥଙ୍କ ଠାରୁ । (୨୩ । ୧ ୨ । ୫୫)

**କାଗଜ ଓ କାଳି କାଳରେ ଆସିଲା :**

ଆଜି ଖୁବ୍ କମ ଛପା ହେଲା—ଆମ ମେସିନ୍‌ରେ ୫ହଜାର ଅର୍ଥାତ୍ ଅଢ଼େଇ ଫର୍ମା । ତା'ପରେ ବପିନ୍ ନାଥଙ୍କ ବହିର ମଧ ୪ ପୃଷ୍ଠା ଛପା ହେଲା । ଏହି ବହିର ଛପା ଉପରେ ସରକାରରୁ ଏହିପରି କାମ ଭବିଷ୍ୟତରେ ଆସିବା ନର୍ଭର କରିବ । କନ୍ତୁ ଦୁଃଖର ବିଷୟ ଯେଉଁ ଫଟୋବ୍ଲକ୍ ଆସିଛୁ, ତାହାର କଛି ଦୋଷ ଥିବାରୁ ଛପା ଯେତେ ସୁନ୍ଦର ହେଲା ନାହିଁ । ତଥାପି ଖୁବ୍ ଯତ୍ନ ନେଇ ଆମେ କାମ କରୁଛୁ । ପସନ୍ଦ ହେବାର ଆଶା ।

ପଇସାର ଅଭାବ ଯୋଗୁଁ ସର୍ବେଶ୍ୱରଙ୍କ ଜରିଆରେ ମାରୁଆଡ଼ିଠାରୁ କାଗଜ ଅଣାଇଲି । କାଲି ମଧ ତାଙ୍କର ଜରିଆରେ ଅଣାଗଲା । ଏ ମାସରେ ଆଉ କୁଆଡ଼ୁ ଟଙ୍କା ଆସିବା ଆଶା ଦେଖା ଯାଉ ନାହିଁ । ଯାହା ମିଳିବ, ବପିନ ନାଥଙ୍କଠାରୁ । ସେଇଥିରେ ମାସ ଶେଷ ପର୍ଯ୍ୟନ୍ତ ଗ୍ଭଲିଲେ ପୁଣି ୫ ଶହ ଟଙ୍କା ବ୍ୟାଙ୍କରୁ ଆଣିଲେ ଜାନୁଆରୀ ମାସଟି ଚଳିଯିବାର ଆଶା ।

ସୂର୍ଯ୍ୟ ନାରାୟଣ ଦାସେ ଓ ଦାଶରଥି ଆସି ପହଞ୍ଚିଲେ । ପୁଣି ଖେଳ ଆଜି ସ୍ତରରେ ଆରମ୍ଭ ହେଲା । କାଲି ତ କଣ୍ଟସ୍ଥ ହେବ । ରବିବାର ଦିନ ଟିକିଏ ବେଳ ମିଳିଲେ କଛୁ ଲେଖାପଢ଼ା ହୁଅନ୍ତା । ଖେଳ ଯୋଗୁଁ ତାହା ହୋଇ ପାରୁ ନାହିଁ । ଖେଳଟା ପାଇଁ ମୁଁ

କୁଆଡ଼େ ଯାଉନାହିଁ, କିନ୍ତୁ ମୋ ପାଖକୁ ଲୋକ ଆସିଲେ ନାହିଁ କରି ଦେବାକୁ ମନ ହେଉ ନାହିଁ । ଯେଉଁମାନେ ଆସୁଛନ୍ତି ସେମାନେ ମୋର ବହୁ ଦିନର ବନ୍ଧୁ ! ତାଙ୍କ ପାଖେ ଅପ୍ରିୟ ହେବାକୁ ମନ ହେଉ ନାହିଁ । (୨୪ । ୧୨ । ୧୯୫୫)

ନୂଆବର୍ଷ :

ଆଜି ଆଉ ଗୋଟିଏ ବର୍ଷ ଆରମ୍ଭ ହେଲା । ଗତ ବର୍ଷ ମୋ' ଜୀବନରେ ଗୋଟିଏ ବହୁ ପରିବର୍ତ୍ତନର ବର୍ଷ । ଯେଉଁ ଗୁରୁବାରକୁ ଲୋକେ ଖୁବ୍ ଲୋଭନୀୟ ବୋଲି ମନେ କରନ୍ତି, ତାହା ଗତ ବର୍ଷ ଆରମ୍ଭରୁ ମୋତେ ବିଷ ପରି ଲାଗିଲା । ଶେଷରେ ଜୁଲାଇ ମାସରେ ଗୁରୁବାରରୁ ଅବ୍ୟାହତ ନେଇ ଆସିଲି । ବଡ଼ ଉତ୍ସାହରେ ନବଜୀବନ ଅନୁଷ୍ଠାନଟି ଆରମ୍ଭ କରିଥିଲି, କିନ୍ତୁ ଆରମ୍ଭ ହେଲା ଦୁଃଖରେ । ପ୍ରମୋଦର ଅସୁସ୍ଥତାର ପ୍ରଥମ ସମ୍ବାଦ ସେଇଦିନ ପାଇଲି । ମାଦକରେ ସେ ମଲେ । ଏ ପର୍ଯ୍ୟନ୍ତ ମୃତ୍ୟୁର ଭୟାଳତା ମୋ' ନିଜ ଜୀବନକୁ ବିପର୍ଯ୍ୟସ୍ତ କରି ନ ଥିଲା । ଗୋଟିକ ପରେ ଗୋଟିଏ ଚାରି ପାଞ୍ଚ ଜଣ ପ୍ରିୟ ଲୋକଙ୍କ ମୃତ୍ୟୁ ସମ୍ବାଦରେ ମୋ' ଦେହ ପଥର ପରି ହୋଇଗଲା । ଫଳରେ ମନର ଉଚ୍ଚାକାଂକ୍ଷା ସବୁ କୁଆଡ଼େ ମିଳେଇ ଗଲା । ସାଧୁ ଚିନ୍ତା ଓ ସାଧୁ ପ୍ରଚେଷ୍ଟାରେ ଜୀବନର ଅବଶିଷ୍ଟାଂଶ କଟାଇବାକୁ ମନସ୍ଥ କଲି । ପାରିବାରିକ ଦୁର୍ଘଟଣା ଯୋଗୁଁ ପାରେ ଅକ୍ଟୋବରରେ ପ୍ରକାଶିତ ହେବାକୁ ଥିବା ନବଜୀବନ ମାସିକ ପତ୍ରର ସମସ୍ତ ଗଡ଼ି ଏ ବର୍ଷର ଜାନୁଆରୀ ୨୬ ତାରିଖକୁ ଯାଇଛି । ତାହାକୁ ନିଶ୍ଚୟ ପ୍ରକାଶ କରିବାକୁ ଇଚ୍ଛା କରିଛି । ଆଉ ବହି ଖଣ୍ଡିଏ ଦୁଇଖଣ୍ଡି ମଧ୍ୟ ଶୀଘ୍ର ବାହାର କରିବାକୁ ହେବ । ଆସନ୍ତା ଅଗଷ୍ଟ ୧୫ ପୂର୍ବରୁ ଅନ୍ତତଃ ଆଉ ଦୁଇଖଣ୍ଡି ବହି ଲେଖିବି । (୧ । ୧ । ୫୬)

ଭାଗବତ :

ଆଜି ସକାଳେ ଠିକ୍ ସମୟରେ ଉଠି, ନିତ୍ୟକର୍ମ ଠିକ୍ ଆଠଟା ସୁଦ୍ଧା ସାରିଲି ଓ ଭାଗବତ ଗୋଟିଏ ଅଧ୍ୟାୟ ପଢ଼ିଲି । ଭାଗବତ କ୍ରମେ କ୍ରମେ ମୋତେ ବେଶୀ ଆକୃଷ୍ଟ କରୁଛି । ଭାଗବତ ପଢ଼ିଲେ ମନର ଯେଉଁ ସଂସ୍କାର ହୁଏ ବୋଲି ପୂର୍ବାଚାର୍ଯ୍ୟମାନେ ଲେଖି ଯାଇଛନ୍ତି, ତାହା ଯେ ଅକ୍ଷରେ ଅକ୍ଷରେ ସତ୍ୟ, ଏ ବିଷୟରେ ମୋ'ର ଧାରଣା କ୍ରମେ କ୍ରମେ ଦୃଢ଼ ହୋଇଛି । ପ୍ରତି ସ୍କନ୍ଧରୁ ଅନ୍ୟ ସ୍କନ୍ଧକୁ ଗଲାବେଳେ ମୋ'ତେ ଅନୁଭୂତ ନୂତନ ନୂତନ ହେଉଛି । ଖେଳରେ ମୋ'ର ଯେତକ ମନ ଲାଗୁଥିଲା, ଭାଗବତ ବର୍ତ୍ତମାନ ତାହିଁରୁ ବେଶୀ ପ୍ରିୟ ଜଣାଯାଉଛି । ମନର ଆକାଂକ୍ଷା ହେଉଛି କିପରି ଦ୍ୱାଦଶ ସ୍କନ୍ଧ ସରିଲେ ପୁଣି ଆଉ ଥରେ ଭାଗବତ ମୂଳରୁ ଆରମ୍ଭ କରିବି ଓ ଏଥର ପୁନରାବୃତ୍ତି ବେଳେ ଅର୍ଥ ଆହୁରି ଭଲ ଭାବେ ବୁଝିବାକୁ ଚେଷ୍ଟା କରିବି ।

ଆଜି ଏଣେ ତେଣେ ବହୁତ ଗୁଡ଼ିଏ ଚିଠି ଲେଖିଲି । (୨ । ୧ । ୫୬)

ଭୁଲ ସଂଶୋଧନ :

ଆଜି ପଣ୍ଡିତେ ଓ ପଣ୍ଡାଙ୍କ ଉପରେ ଟିକିଏ ବିରକ୍ତ ହେଲି । ମନରେ ସେମାନଙ୍କ ଉପରେ ବିରକ୍ତ ନ ଆସିଥିଲେ ଭଲ ହୋଇଥାନ୍ତା । କାମରେ ସମସ୍ତଙ୍କର ଭୁଲ ହେବ,

ଲୋକଙ୍କୁ ଉଆରିବାକୁ ପଡ଼ିବ, କିନ୍ତୁ ଉଆରି କରିବା ବାଲା ଯଦି ନିଜ ମନରେ ବିରକ୍ତ ହୁଏ, ତେବେ ତାହା ମୁହଁରେ ଓ କଥାରେ ନିଶ୍ଚୟ ପ୍ରତିଫଳିତ ହେବ—ତାହା ଦେଖି ଭୁଲ କରିଥିବା ଲୋକ ଶର୍କି ଯିବ ଓ ନିଜ ଭୁଲଟା ସ୍ୱୀକାର କରିବାକୁ ପ୍ରସ୍ତୁତ ହେବ ନାହିଁ । ସମସ୍ତ ଚେଷ୍ଟା ପଣ୍ଡ ହେବ । (୪ । ୨ । ୧୯୫୭)

**ସରକାରୀ ସମବାୟ:**

ଆଜି ପ୍ରେସ କାମ ବା ଲେଖାଲେଖି କାମ କରି ପାରିଲି ନାହିଁ । ନିତ୍ୟକର୍ମ ସାରି ଟିକିଏ ପଢ଼ାପଢ଼ି କରୁ କରୁ ଦୁଇଟା ହୋଇଗଲା । ତା'ପରେ ମଟର ମରାମତି ପକାଶେ ନାଭି ବୃନ୍ଦର୍ଷି କାରଖାନାକୁ ଗଲି । ସେଠାରେ ନାଭି ରାମକୃଷ୍ଣ ରାଓଙ୍କ ସଙ୍ଗେ ଦେଖା ହେଲା । ସେ ସମବାୟ ଆନ୍ଦୋଳନର ଜଣେ ପୃଷ୍ଠପୋଷକ । କାଲି ଗୋଟିଏ ମିଟିଂ ପକାଶେ ଆସିଛନ୍ତି । ସମବାୟ ବିଭାଗ ଯେପରି ଚାଲିଛି ସେଥିରେ ସେ ଭାରି ଅସନ୍ତୁଷ୍ଟ । ବିଭାଗର ଚଳାଚଳ ଉପରେ ଦୃଷ୍ଟି ନ ଦେଇ ଖାଲି ଆଇ. ଏ. ଏସ୍ ବାଲା ଉପରେ ବଯାଇ ଦେବାରୁ କାମ ଖରାପ ହେଉଛି ବୋଲି ତାଙ୍କର ଧାରଣା । ଏ କଥା ସେ ବାରମ୍ବାର କହୁଛନ୍ତି, କିନ୍ତୁ ତାଙ୍କ କଥାରେ କେହି କର୍ଣ୍ଣପାତ କରୁନାହାନ୍ତି ବୋଲି ସେ ଦୁଃଖିତ । ମୋ'ର ତ ନିଜ ଅନୁଭୂତି ସେଇଆ ।

ରାଣୀହାଟ ହାଇସ୍କୁଲର ବାହ୍ମାନନ୍ଦ ପାଖକୁ ଯାଇଥିଲି । ସେ ମେନେଜିଂ କମିଟିର ମେମ୍ବରମାନଙ୍କୁ ହାତ କରି ପାରୁନାହାନ୍ତି । ତା'ର ସ୍କୁଲର ଉନ୍ନତି ବିଷୟରେ ଅଖିଆହକୁ ମେନେଜିଂ କମିଟି ପସନ୍ଦ କରି ପାରୁ ନ ଥିବାରୁ ସବୁବେଳେ ତାକୁ ଅଶାନ୍ତି ଭିତରେ କାମ କରିବାକୁ ପଡ଼ୁଛି । ଏ ସ୍କୁଲର ବାହ୍ମାନନ୍ଦ ବହୁତ ଉନ୍ନତି କଲାଣି । ବିରୋଧକୁ ଖାତିର ନ କରି କାମରେ ଲାଗି ରହିବାକୁ ତାକୁ ପରାମର୍ଶ ଦେଲି । (୭ । ୨ । ୫୭)

**ଛଦ୍ମ ନାମ:**

ଆଜି ପ୍ରେସ ବାଲାଙ୍କ ସଙ୍ଗେ ଆଲୋଚନା କରିବା ଫଳରେ କାମ ଟିକିଏ ଭଲ ଚାଲିଲା । ପ୍ରତିଦିନ ଏହିପରି ଟିକିଏ ଟିକିଏ ପ୍ରେରଣା ଦେଲେ ସେମାନେ କାମ ତୁଲାଇ ନେବେ, ମୋ'ର ଆଉ ମେସିନକୁ ଚାହିଁ ରହିବା ଦରକାର ପଡ଼ିବ ନାହିଁ । ସ୍ୱା' ପରେ ପରି ରାମକୁ ଅଫିସ କାମ ଦେଇଦେଲେ ମୋ'ର ମୋଟ ଉପରେ ପ୍ରେସ ସମ୍ପର୍କରେ ଦିନକୁ ଦୁଇ ଘଣ୍ଟା କାମ କଲେ ଯଥେଷ୍ଟ ହେବ । ଅନ୍ୟ ସମସ୍ତ ଅନ୍ୟ କାମ ପାଇଁ ମିଳିବ ।

ଆଜିଠାରୁ ନବଜୀବନ ପାଇଁ ଲେଖାଲେଖି ଭଲ କରି ଆରମ୍ଭ କଲି । ମୋ'ର ତିନୋଟି ନାମ: ପିଲାଦିନେ ଅଲେଖ, ବୃତ୍ତବେଦୀରେ ନାରାୟଣ ଓ ସାଧାରଣରେ ଚନ୍ତାମଣି । ଏଇ ତିନୋଟି ନାମରେ ତିନୋଟି ପ୍ରବନ୍ଧ ନବଜୀବନର ପ୍ରତି ସଂଖ୍ୟାରେ ଲେଖିବାର ସ୍ଥିର କଲି । ଅଲେଖ ଶର୍ମା ନାମରେ ରହସ୍ୟ ଲେଖା ବାହାରିବ ; ନାରାୟଣ କର ନାମରେ ଧର୍ମ ଓ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧ ବାହାରିବ ; ରାଜନୀତି ଓ ସାମାଜିକ ପ୍ରବନ୍ଧ ମୋ'ର ପ୍ରଚଳିତ

ନାମରେ ଯାଉଛ । ଆଜି ସୁଦ୍ଧା ଅଲେଖ ଶର୍ମା ଓ ନାରାୟଣ କର ନାମରେ ଦୁଇଟି ପ୍ରବନ୍ଧ ଶେଷ କଲି । ଚନ୍ଦ୍ରାମଣି ମିଶ୍ରଙ୍କ ପ୍ରବନ୍ଧ ଅଧାଅଧି ହୋଇଛି ।

ସଂଧ୍ୟାରେ ଶ୍ରୀନିବାସ ଓ ଘଣ୍ଟେ ପରେ ଅଶୋକ ଓ ବୈଦ୍ୟନାଥ ଆସିଲେ । ବୈଦ୍ୟନାଥ କଲେଜ ପ୍ରଫେସରଙ୍କଠାରୁ ପ୍ରବଂଧ ସଂଗ୍ରହ କରିବାର ଭାର ନେଇଛନ୍ତି । ସମାଜରେ ଉତ୍କଳଙ୍କ ସ୍ଥାନ ସଂପର୍କରେ ଗୋଟିଏ ପ୍ରବଂଧ ଲେଖିବାକୁ ଅଶୋକଙ୍କୁ ବରାଦ କଲି ଓ ଷ୍ଟେଟ୍ସମ୍ୟାନ୍‌ରେ ସେ ସଂପର୍କରେ ବାହାରିଥିବା ଗୋଟିଏ ସଂପାଦକୀୟ ପଢ଼ିବାକୁ ଦେଲି । (୯ । ୧ । ୫୭)

## କାଳୀପଟ୍ଟନାୟକଙ୍କ ଜୟନ୍ତୀ :

ଆଜି ସରଳା ଦେବୀଙ୍କ ଉଦ୍ୟମରେ କାଳୀ ପଟ୍ଟନାୟକଙ୍କ ଜୟନ୍ତୀ ପାଳିତ ହେଉଛି । କାଳି ବାବୁଙ୍କର ବୟସ ୫୪ । ଏତେ ଅଳ୍ପ ବୟସରେ ତାଙ୍କର ଏପରି ଜୟନ୍ତୀ ପାଳିତ ହେବା ନୂଆ କଥା । ଯାହା ହେଉ ବହୁତ ଗୁଡ଼ାଏ ଲୋକ ଆସି ଥିଲେ । ଚନ୍ଦ୍ରାମଣି ଆଚାର୍ଯ୍ୟ ସଭାପତି ହୋଇ ଥିଲେ । ମୋତେ ବକ୍ତୃତା ଦେବାକୁ ଡକାଗଲା । ମୁଁ କହିଲି, କାଳି ପଟ୍ଟନାୟକଙ୍କ ଜୀବନର ଏଇଠାରେ ଶେଷ ହେଲା ବୋଲି ଏ ଜୟନ୍ତୀ ଯୋଗୁଁ ଯେପରି କେହି ମନେ ନ କରନ୍ତି । ସେ ଆମ ସାହିତ୍ୟକୁ ବହୁତ ଦାନ କରିଛନ୍ତି । କିନ୍ତୁ ଆହୁ ଅନେକ କରିବାକୁ ଅଛି । ସେ ଦିଗରେ ତାଙ୍କୁ ଦେଶବାସୀ ସହାୟ ହୁଅନ୍ତୁ । ଏ ଜୟନ୍ତୀଦ୍ୱାରା ସେ ନୂଆ ନୂଆ କାର୍ଯ୍ୟପନ୍ଥା ପାଇଁ ଅନୁପ୍ରାଣିତ ହୁଅନ୍ତୁ । (୧୧ । ୧ । ୫୭)

## ଲେଖକ ସଂଗ୍ରହ .

ଆଜି ଓପର ଓଳି ଲେଖକମାନଙ୍କ ସହ ଦେଖା କରିବାକୁ ବାହାରିଲି । ପ୍ରଥମେ ନିତ୍ୟାନନ୍ଦ ମହାପାତ୍ରଙ୍କ ସଙ୍ଗେ ଦେଖା ହେଲା । ସେ ଖୁବ୍ ଆଦର କଲେ ଓ 'ନବଜୀବନ' ପାଇଁ ଲେଖାଟିଏ ଦେବାକୁ ସ୍ୱୀକୃତି ପ୍ରଦାନ କଲେ । ତା'ପରେ କାଳନ୍ଦୀ ପାଣିଗ୍ରାହୀଙ୍କ ପାଖକୁ ଗଲି, ସେ ଭାରି ଖୁସି ହେଲେ । ବଚରା ବର୍ତ୍ତମାନ ରୋଗୀ । ତାଙ୍କୁ ମୋ ନିଜ ପେଟ ରୋଗ ଓ ତାହାର ପ୍ରତିକାର ବିଷୟ ବର୍ଣ୍ଣନା କଲି । ନବଜୀବନ ପାଇଁ ଖଣ୍ଡିଏ ଲେଖା ଦେବାକୁ ସେ ରାଜି ହେଲେ । ତା'ପରେ ଗୋଦାବରୀଶ ମହାପାତ୍ରଙ୍କ ପାଖକୁ ଯାଇଥିଲି । ସେ କବିତାଟିଏ ଦେବାକୁ ରାଜି ହୋଇଛନ୍ତି । (୧୩ । ୧ । ୫୭)

## ଉଦାର ସ୍ନେହ :

ଆଜି ନିତ୍ୟକର୍ମ ପରେ ଶ୍ୟାମ ସୁନ୍ଦର ମିଶ୍ରଙ୍କ ପାଖକୁ ଗଲି । ସେ ଖୁବ୍ ଆଗ୍ରହ କଲେ ଓ ଗୋଟିଏ ଲେଖା ଦେବାକୁ ରାଜି ହେଲେ । ଦ ପହରେ ନିତ୍ୟାନନ୍ଦ ମହାପାତ୍ରେ ସାହିତ୍ୟ ଓ ରାଜନୀତି ବିଷୟରେ ଗୋଟିଏ ଶ୍ରେଷ୍ଠ ପ୍ରବନ୍ଧ ଆଣି ନିଜେ ଦେଲେ । ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ମଧ୍ୟ ଗୋଟିଏ ପ୍ରବନ୍ଧ ପଠାଇଦେଲେ । ଏତେ ତୁରନ୍ତ କାମଟିଏ କରିଦେବା ଲକ୍ଷ୍ମୀନାରାୟଣ ବାବୁଙ୍କର ସ୍ୱାଭାବିକ ଗୁଣ ।

ମାଧବ ନନ୍ଦ ଘରକୁ ଯାଇଥିଲି । ଜୁଲିଆନ୍ ହକ୍ସଲି ମୋ ଦ୍ୱାରାନ୍ତରେ ମାଧବ ନନ୍ଦଙ୍କ ଝିଅ ମୀନାକ୍ଷୀର ନାଚ ଦେଖିଥିଲେ । ଏଥିକରେ ତାଙ୍କର ମୀନାକ୍ଷୀଠାରେ ଏପରି ଶ୍ରଦ୍ଧା ହୋଇଯାଇଛି ଯେ, ସେ ଥରକୁ ଥର ତାକୁ ଉପହାର ପୁସ୍ତକ ପଠାଉଛନ୍ତି । ଶେଷରେ ଆସିଥିବା ପୁସ୍ତକଟି ମାଧବବାବୁ ମୋତେ ଦେଖାଇଲେ । ବଡ଼ ଆନନ୍ଦ ଲାଗିଲା । ଏପରି ଉଦାର ସ୍ନେହ ଓ ସହାନୁଭୂତି, ସ୍ନେହ ଓ ସହାନୁଭୂତିର ଦେଶ ଭାରତରେ ଦେଖିବାକୁ ବିରଳ । ଯେଉଁମାନେ ବର୍ବର ଦେଶର ଲୋକ ଥିଲେ, ମହତ୍ତ୍ୱ ବର୍ତ୍ତମାନ ସେଇମାନଙ୍କ-ଠାରେ । ଆମ ଭାରତରେ ମଧ୍ୟ ଅବସ୍ଥା ସେଇଆ । ଆମ ଦେଶରେ ଯେଉଁମାନେ ବଡ଼ ଜାତି ବୋଲାଉଛନ୍ତି, ବର୍ତ୍ତମାନ ତାଙ୍କ ଅପେକ୍ଷା ଶ୍ରେଷ୍ଠ ଜାତଙ୍କଠାରେ ଧର୍ମଭାବ ବେଶୀ ଦେଖା-ଯାଉଛି ।

(୧୪ । ୧ । ୫୭)

**ପଦ୍ମଚରଣଙ୍କ ବ୍ୟାୟାମଶାଳା:**

ଆଜି ବୈଦ୍ୟନାଥ ଓ ସର୍ବେଶ୍ୱରଙ୍କ ଆଗେ ମୋ' ଲେଖିଥିବା ପ୍ରବନ୍ଧ ଦୁଇଟି ପଢ଼ିଲି । ବୈଦ୍ୟନାଥ ଦୁଇଟିଯାକ ପ୍ରବନ୍ଧର ଉଚ୍ଚ ପ୍ରଶଂସା କଲେ । ସେ ଜଣେ ଗୋଟିଏ ରହସ୍ୟାତ୍ମକ ଗପ ଲେଖିଛନ୍ତି । କାଲିଠାରୁ ନବଜୀବନ ଛପା ଆରମ୍ଭ କରିବାକୁ ସଂକଳ୍ପ କରିଛି ।

ସଂଧ୍ୟାରେ ପଦ୍ମଚରଣ ରାୟଙ୍କ ବ୍ୟାୟାମଶାଳାକୁ ଯାଇଥିଲି । କେତେଜଣ ସାମ୍ବାଦିକ ମଧ୍ୟ ଆସିଥିଲେ । ପଦ୍ମଚରଣ ଆଜିକୁ ୨୮ବର୍ଷ ହେଲା ଏହି ଅନୁଷ୍ଠାନଟି କୃତିତ୍ୱର ସହ ଚଳାଇ ଆସୁଛନ୍ତି । ସରକାରଙ୍କଠାରୁ କିଛି ହାତ-ଟଙ୍କିଆ ଦାନ ପାଉଛନ୍ତି । କିନ୍ତୁ ତାଙ୍କ କାର୍ଯ୍ୟ ପାଇଁ ସରକାରଙ୍କର ହାର୍ଦ୍ଦିକ ସମର୍ଥନ ନାହିଁ । ଯଦି ଥାଆନ୍ତା ତେବେ ଏହିପରି ଅନୁଷ୍ଠାନ ଓଡ଼ିଶାରେ ଅନେକ ହୋଇ ଯା'ନ୍ତା । ସରକାରଙ୍କର ଏ ଅନୁଷ୍ଠାନ ବିଷୟରେ ପ୍ରଧାନ ଆପତ୍ତି, ଏଠାରେ ଶରୀର ଚର୍ଚ୍ଚା ବିଷୟରେ ବୈଜ୍ଞାନିକ ଜ୍ଞାନ ଶିକ୍ଷା ଦେବାର ବ୍ୟବସ୍ଥା ନାହିଁ । ଆଜିକାଲି ବୈଜ୍ଞାନିକ ରୀତିରେ ଅର୍ଥାତ୍ ବାହାରର କୌଣସି ଶରୀରଚର୍ଚ୍ଚା ଶିକ୍ଷା କେନ୍ଦ୍ରରେ ପଢ଼ି ପାଶ୍ କରି ଆସିଥିବା ଲୋକଦ୍ୱାରା ଏପରି ଅନୁଷ୍ଠାନ ଗଢ଼ା ନ ହେଲେ, ପଦ୍ମଚରଣଙ୍କ ପରି ନ-ପଢ଼ି-ପଣ୍ଡିତ ଯେଉଁ କୃତି କସରତ୍ କରୁଛନ୍ତି ତାକୁ ପ୍ରଶ୍ରୟ ଦେବାରେ ବିପଦ ଅଛି । ବିପଦଟା ଯେ ଠିକ କ'ଣ ତାହା ଆମେ ତ ଜାଣୁ ନାହିଁ, ଯେ ଝୁଣ୍ଟୁଛନ୍ତି ସେମାନେ ବି ଜାଣନ୍ତି ନାହିଁ । ସେକ୍ରେଟେରିଏଟ୍‌ର— ଏଠାରେ ବା କେନ୍ଦ୍ରରେ କେହି ଜଣେ କରଣୀ ହୁଏତ ଆପତ୍ତି ଉଠାଇଦେଲା—ଯୁବକ ଲୋକଙ୍କ ଶିକ୍ଷାଦାନ ଦରକାର—ସେଇ ଦୁଆ ସମସ୍ତେ ଧରିଛନ୍ତି । ଏତିକି ଖିଆଲ କରି ପାରୁନାହାନ୍ତି ଯେ ଆମ ରାଜ୍ୟରେ ଯେଉଁଠି ଲୋକେ ଏପରି ଅନୁଷ୍ଠାନ ବଞ୍ଚାଇ ରଖିଛନ୍ତି, ସେମାନଙ୍କୁ ଟିକିଏ ସାହାଯ୍ୟ ମିଳିଲେ ସେମାନେ ଉତ୍ସାହିତ ହୁଅନ୍ତେ ।

(୧୫ । ୧ । ୫୭)

**ସୀମା ଆନ୍ଦୋଳନ :**

ଆଜି ସହରରେ ପ୍ରଚଣ୍ଡ ଝଡ଼ ତୋଫାନ—ରାଜନୀତିକ; ପଣ୍ଡିତ ଜହରଲାଲଙ୍କ ଜିଦ୍‌ରେ ହେଉଥିବା ପ୍ରଦେଶ ପୁନର୍ଗଠନ ଯୋଗୁଁ । ବମ୍ବେଇରେ ବିକ୍ଷୋଭ ପାଇଁ ଯେତେ ଗୁରୁତର କାରଣ ଅଛି, ବିହାରୀମାନେ ଅସନ୍ତୁଷ୍ଟ ହେବାପାଇଁ ଯେତେ କାରଣ ଅଛି, ଆମର ସେତେ ନାହିଁ—ଆମର ଯାଉନାହିଁ କି ଆସି ନାହିଁ । କିନ୍ତୁ ସରେଇକଲା ଓ ଖରସୁଆଁ ଆସିବ ବୋଲି ଲୋକଙ୍କ ମନରେ ଯେଉଁ ଆତ୍ୟନ୍ତିକ ଆଶା ଜାଗ୍ରତ ହୋଇଥିଲା ତାହାର ଫଳ ନ ହେବାରୁ ସମଗ୍ର ଓଡ଼ିଶାରେ ଅପ୍ରତ୍ୟାଶିତ ବିକ୍ଷୋଭ ଦେଖାଦେଇଛି । କଟକରେ ଆଜି ଏକ ବିରାଟ ସଭା ହେଲା—ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ସଭାପତିତ୍ୱରେ । ମୁଁ ବକ୍ତୃତା ଦେଲି । କିନ୍ତୁ ମୋର ବକ୍ତବ୍ୟ ସବୁ କହି ପାରିଲି ନାହିଁ । ଶେଷରେ ଯଦୁମଣି ବାବୁ ଯେଉଁ ସଭାପତି ଅଭିଭାଷଣ ଦେଲେ ସେଥିରେ ମୋ'ର ଏ ଆନ୍ଦୋଳନକୁ ଏକ ରକମ ମନ ଛାଡ଼ିଗଲା । ଅତି ବଜାରି ଢଙ୍ଗରେ ସେ ଛାତ୍ରମାନଙ୍କୁ ମତେଇଲେ । (୧୯ । ୧ । ୫୬)

କାଲି ସଭାର ନିଷ୍ପତ୍ତିକ୍ରମେ ଆଜି ସହରରେ ପୂର୍ଣ୍ଣ ହରତାଳ । ମୁଁ ମାତିଲି ନାହିଁ । ଏହାର ଏକମାତ୍ର କାରଣ ଆସନ୍ତା ୨୬ ତାରିଖ ପୂର୍ବରୁ ନବଜୀବନକୁ ବାହାର କରିବାକୁ ହେବ ।

ଆଜି ସଭାକୁ ମଧ୍ୟ ଗଲିନାହିଁ । ତାହାର କାରଣ ହେମ ଝିଅର ଆଜି ପଞ୍ଚୁଆତି । ପିଲାମାନଙ୍କୁ ଧରି ସେଠାକୁ ଯିବାକୁ ହେଲା । ସେଠାରେ ଶୁଣିଲି ଆଜି ଗୋଟିଏ କାର୍ଯ୍ୟକାରୀ ସମିତି ବା କ୍ରିୟାନୁଷ୍ଠାନ ସମିତି ଗଠିତ ହେଲା । ମୁଁ ଟିକିଏ ଚେଷ୍ଟା କରିଥିଲେ ଏ ସମିତି ଭିତରେ ପଶି ପାରିଥାନ୍ତି । କିନ୍ତୁ ଯେଉଁ ଶ୍ରେଣୀ ଲୋକ ଏ ଆନ୍ଦୋଳନରେ ମୁଖ୍ୟ କର୍ତ୍ତା ହୋଇଛନ୍ତି, ସେମାନଙ୍କୁ ଧରି ବିଶେଷ କିଛି କାମ ଆଗେଇବ ନାହିଁ । ଛାତ୍ରମାନେ ବହୁ-ନେତୃତ୍ୱ ଯୋଗୁଁ ଅତି ଉଚ୍ଛୃଙ୍ଖଳ ହୋଇଛନ୍ତି । ଏମାନଙ୍କୁ ଶୃଙ୍ଖଳାବଦ୍ଧ କରିବା ଭଳି ଯୋଗ୍ୟତା ମୋ'ର ଅଛି ବୋଲି ମୁଁ ବିଶ୍ୱାସ କରେ ; କିନ୍ତୁ ମୋ'ର ପାରିବାରିକ ଚିନ୍ତା ମୋତେ ସବୁବେଳେ ଘାରୁଛି । ଆଜି ଯଦି ପ୍ରମୋଦ ଥା'ନ୍ତେ ତେବେ ତାଙ୍କର ବଳରେ ଓ ତାଙ୍କର ପାଖେ, ମୋ ପରିବାରକୁ ସମର୍ପି ଦେଇ ମୁଁ ଦାଣ୍ଡକୁ ବାହାରି ପଡ଼ିଥାନ୍ତି । ଗଲା କଥା ଭାବିଲେ ଫଳ କ'ଣ । ପଣ୍ଡିତଙ୍କ ଘରୁ ଏଇପରି ଖିଚି ଭାବି ବସାକୁ ଫେରିଲି । (୨୦ । ୧ । ୫୬)

ଆଜି ସନ୍ଧ୍ୟା ପର୍ଯ୍ୟନ୍ତ ବହୁତ ବିଚାର ମନକୁ ସ୍ଥିର କଲି ଯେ ମୋ'ର ବର୍ତ୍ତମାନ ଅବସ୍ଥାରେ ସକ୍ରିୟ ରାଜନୀତିରେ ଯୋଗ ଦେବା ଉଚିତ୍ ନୁହେଁ । ନବଜୀବନ କାଗଜ ଖଣ୍ଡି ବାହାର କରିବି ଓ ପ୍ରେସଟିକୁ ଭଲଭାବେ ଚଳାଇବି । କିନ୍ତୁ ସଂଧ୍ୟା ବେଳେ ଯେତେବେଳେ ଯଦୁମଣି ମଙ୍ଗରାଜ ଓ ମଧୁ ମହାନ୍ତି ଡାକ ପକାଇଲେ ସେତେବେଳେ ମୋ'ର ବିଚାରଧାରା ହଠାତ୍ ବଦଳି ଗଲା । ମୁଁ ଯାଇ ସଭା ସ୍ଥଳରେ ପହଞ୍ଚିଲି । ସେଠାରେ ମଧ୍ୟ ସଭାର ପଛଆଡ଼େ ବସିଲି । ମୋତେ ଯଦି ବକ୍ତୃତା ଦେବାକୁ ଡାକରା ନ ପଡ଼ିବ ତେବେ ଧୀର ଭାବେ ପଛେଇ ରହିଯିବି ବୋଲି କଳ୍ପନା ଥିଲା । କିନ୍ତୁ ଡାକରା ଆସିଲା । ସଭାରେ ଠିଆ ହେବାରେ ମନକୁ

ଯାହା ଆସିଲା କହିଲି । ଏପରି ଆନ୍ଦୋଳନରେ ମୋ'ର ବିଶ୍ୱାସ ନାହିଁ ବୋଲି ବୁଝାଇଲି । ସାଙ୍ଗେ ସାଙ୍ଗେ ସତ୍ତରିଗଲା ଖବରଗୁଡ଼ିକ ଆମ ପାଖକୁ ଆସିବାର କୌଣସି ସମ୍ଭାବନା ନାହିଁ ବୋଲି କହିଲି । ଏଥିପାଇଁ ବହୁତ ଦିନ ଧରି ଧୀର ଶାନ୍ତ ଆନ୍ଦୋଳନ ଦରକାର । ମନ୍ତ୍ରୀମାନଙ୍କୁ କଳୁଷ ଭାବରେ ସମାଲୋଚନା କଲି । ଜଣେ ଯୁବକ ଛାତ୍ର ମୋ' ପରେ ବକ୍ତୃତା ଦେଇ ମୋ'ର ସାରା ବକ୍ତୃତାକୁ ସମାଲୋଚନା କରି ମୋତେ ଭାଲି ଏ ଆନ୍ଦୋଳନରେ ଯୋଗ ଦେବାକୁ ଆହ୍ୱାନ କଲେ, ମୁଁ ହଁ କରିଦେଲି । ଯେଉଁ ପ୍ରତିଜ୍ଞା ଶଜକୀୟରେ ମୁଁ ଯୋଗ ଦେବିନାହିଁ ବୋଲି ଦୃଢ଼ପ୍ରତିଜ୍ଞ ହୋଇଥିଲି, ତାହା ପାସୋରିଥିବାରୁ ମନସ୍ତାପରେ ରାତିରେ ଶୋଇ ପାରିଲି ନାହିଁ । (୨୧ । ୧ । ୫୬)

କାଲି ରାତିରେ ବହୁତ ଚିନ୍ତା କରି ସ୍ଥିର କଲି ମୋ'ର ବ୍ୟକ୍ତିଗତ ଯାହା ଅସୁବିଧା ହେଉ ପଛେ ସଭାରେ ଦେଇଥିବା ପ୍ରତିଶ୍ରୁତି ପାଳନ କରିବାକୁ ହେବ । ପାଳନ କରି ସାରିବା ପରେ ଯଥା ଶୀଘ୍ର ସେଥିରୁ ଅବ୍ୟାହତି ନେଇ ମୋ'ର ପାରିବାରିକ ଦାୟିତ୍ୱକୁ ଫେରି ଆସିବାକୁ ହେବ । କାଲି ସଦୁମଣିବାବୁ ପ୍ରତିଶ୍ରୁତ ହୋଇଥିଲେ ମୋତେ ଯଥାସମୟରେ ଖବର ଦେବେ ବୋଲି । ସକାଳେ ମୁଁ ଗାଧୋଇ ପାଧୋଇ ପ୍ରସ୍ତୁତ ହେଉଥାଏ ଓ ସଦୁମଣି ବାବୁଙ୍କ ଅହ୍ୱାନକୁ କାନ ଡେରିଥାଏ । ସେ କାହାକୁ ପଠାଇଲେ ନାହିଁ । ପ୍ରାୟ ଆଠଟା ବେଳେ ଦୁଇଜଣ ଛାତ୍ର ଧଇଁ ସଇଁ ହୋଇ ଆସି ମୋତେ ଖବର ଦେଲେ, ରେଭେନ୍ସା ଷ୍ଟେସନ-ଠାରେ ଲଠି ମାଡ଼ ଓ ଲୁହବୁହା ଗ୍ୟାସ ପ୍ରୟୋଗ ହେଲାଣି, ଆପଣଙ୍କର ତ ନେତୃତ୍ୱ ଦେବାର କଥା, ଆପଣ ଶୀଘ୍ର ଆସନ୍ତୁ । ଛାତ୍ର ଆନ୍ଦୋଳନର ଏ ଦଗଟାକୁ ମୁଁ ସବୁବେଳେ ଭୟ କରୁଥିଲି । ନେତୃତ୍ୱ ଦେବାକୁ ଡାକିବାର ଅର୍ଥ ମୋତେ ସ୍ପଷ୍ଟ ଜଣାପଡ଼ିଲା । ସେମାନେ ଉଚ୍ଛୃଙ୍ଖଳ ଭାବରେ ଯେଚ୍ଛାଚାର କରିବେ, ସେ ତାକୁ ସମର୍ଥନ କରିବେ, ସେ ତାଙ୍କର ନେତା । ନେତାଙ୍କ ନିର୍ଦ୍ଦେଶରେ କାମ ହେବା କଥା ସେମାନଙ୍କ ବିଚାରରେ ନାହିଁ । ମୁଁ ସାଙ୍ଗେ ସାଙ୍ଗେ କହିଲି, ମୋ ଯିବା ଆଗରୁ ଯଦି ପିକେଟିଂ ହୋଇ ଲଟି ମାଡ଼ ପର୍ଯ୍ୟନ୍ତ ଗଲାଣି, ତେବେ ମୋ'ର ନେତୃତ୍ୱ ଦେବା ପ୍ରଶ୍ନ ଉଠୁନାହିଁ, ତୁମେ ଯାଇ କାର୍ଯ୍ୟାନୁଷ୍ଠାନ କମିଟିକୁ କହ ।

(୨୧ । ୧ । ୫୬)

କାଲି ସନ୍ଧ୍ୟା ସଭାରେ କେହି କେହି ବକ୍ତା ମୋ'ର ଦୁର୍ନାମ କଲେ, ମୁଁ ପିକେଟିଂରେ ଯୋଗ ଦେବି ବୋଲି କହି, ନ ଦେବାରୁ । ଏହା ଶୁଣି ସର୍ବେଶ୍ୱର ଓ ଶ୍ରୀନିବାସ ବଡ଼ ବ୍ୟସ୍ତ ହେଲେ । ଗୁଣ୍ଡାଙ୍କ ଛୁଡ଼ି ମୁଁ ଲୋକଙ୍କର ଯେଉଁ ଶ୍ରଦ୍ଧା ଟିକିକ ଅର୍ଜିଥିଲି ସେତକ ହରାଇଲି ବୋଲି ଶ୍ରୀନିବାସଙ୍କର ଭୟ । ସର୍ବେଶ୍ୱରଙ୍କର ବି ସେଇ ଭୟ । ମୁଁ ସଭାକୁ ନ ଯାଇଥିଲେ ଭଲ ହୋଇଥାନ୍ତା ବୋଲି ମୋ'ର ବନ୍ଧୁମାନଙ୍କର ମତ । ମୁଁ ବୁଝିଲି ମୋ'ର ଏତିକି ମାତ୍ର ଭୁଲ, ପିକେଟିଂରେ ନେତୃତ୍ୱ ଦେବା ଅର୍ଥ ମୁଁ ଶେଷକଥା ଟିକିଏ ଭଲକରି ବୁଝାଇଥାନ୍ତି । ଆଜି କନ୍ତୁ କରିବି କଁ'ଣ ? କାଲି ରାତିଠାରୁ ବାତ ଜରରେ ମୁଁ ଶୋଇଛି । ବାତଜ୍ୱର ଅନେକ ଦିନ ହେଲା ନ ଥିଲା, ଏଇଠାରେ ଦୁଇ ଥର ହେଲାଣି ।

ସନ୍ଧ୍ୟା ବେଳେ ମୋ' ନାମରେ ସଭାରେ ହୋଇଥିବା ଦୁର୍ନାମ କଥା ବଡ଼ ବଡ଼ ଅକ୍ଷରରେ ଛପିଲା । ମୋତେ କୈଫିୟତ ଦେବାର ଗୋଟାଏ ମୌକା ମିଳିଗଲା । ମୋ'ର ପ୍ରବଞ୍ଚନା ଶିରୋନାମାରେ ଗୋଟିଏ ଲେଖା ଲେଖି ରଖିଲି, ସମାଜ ସକାଶେ । କାଲି ସକାଳେ ପଠାଇବି ; ଯଦି ଛପନ୍ତି ତା'ହେଲେ ବାୟୁମଣ୍ଡଳ ଟିକିଏ ପରିଷ୍କାର ହୋଇଯିବ ।

'ନବଜୀବନ'ର କାମ ଚାଲିଛି । ଲେଖାର ଦୁର୍ଭିକ୍ଷ ହେବ ବୋଲି ସନ୍ଦେହ କରୁଥିଲି । ବିଭିନ୍ନ ଲେଖକଙ୍କର ମିଳିଗଲା । ବିଭିନ୍ନ ନାମରେ ମୋ'ର ଗୁଡ଼ିଏ ଲେଖା ମଧ୍ୟ ଛପେଇ ଦେଉଛି । (୨୩ । ୧ । ୫୬)

ନବଜୀବନ ବାହାରିଲା:

ଆଜି ନବଜୀବନ ବାହାରିଲା । ଷ୍ଟ୍ରାଇକ ଛାଡ଼ିଲାବେଳେ ଯାହା ସଂକଳ୍ପ କରିଥିଲି ତାହା ପୂରଣ ହେଲା । ନବଜୀବନ ଦେଶରେ ରାଜନୀତିକ ସାହିତ୍ୟ ଗଢ଼ିବ ବୋଲି ଆଶା କରୁଛି । ଲେଖକମାନଙ୍କ ଉପରେ ନିର୍ଭର କରି କାମ କରିବାକୁ ହେବ । କିନ୍ତୁ ରାଜନୀତିକ ସାହିତ୍ୟ-ସେବକଙ୍କ ସଂଖ୍ୟା ଅତି ସୀମାବଦ୍ଧ । ବର୍ତ୍ତମାନ ୧୯୩୦ର ସେଇଁ ଦମନ ଲୀଳାର ପୁନରାବୃତ୍ତି ହେଉଛି, ତା' ଫଳରେ ସ୍ୱାଧୀନ ଚିନ୍ତା ଆହୁରି ଦବିଯିବ । ସରକାର ପକ୍ଷ ସେତିକି ପ୍ରତି-ହିଂସାପରାୟଣ ହେବେ, ପ୍ରତିପକ୍ଷ ସେତିକି ସନ୍ତ୍ର ଓ ବିଗ୍ରହୀନ ହେବେ । ଦେଖାଯାଉ କେଉଁ ପାଣି କୁଆଡ଼େ ଯାଉଛି ! ଶେଷରେ ମୋ ଲେଖା ମଧ୍ୟ ଦେଶଦ୍ରୋହୀ ଆଖ୍ୟା ପାଇପାରେ ।

ଆଜି ପ୍ରେସର ପରିଚାଳନା କାର୍ଯ୍ୟରେ ସଂପୂର୍ଣ୍ଣଭାବେ ନିଯୁକ୍ତ ରହିଲି । ମଝିରେ ମଝିରେ ମୋ'ର ଭବିଷ୍ୟତ ଚିନ୍ତାରେ ବ୍ୟାପୃତ ହେଉଥାଏ । ସରକାର ବିରୁଦ୍ଧରେ ଆନ୍ଦୋଳନ ଘନେଇଲାଣି । ପାଟଣା ମହାରାଜା ଓ ଗୋଦାବରୀଶ ବାବୁ ପ୍ରମୁଖ ଆନ୍ଦୋଳନକୁ ବାହାରିଲେଣି । ଆଜି ସାରଙ୍ଗଧର ଦାସ, ବିଶ୍ୱନାଥ ପଣ୍ଡିତ, ମଧୁସୂଦନ ମହାନ୍ତି ଓ ତାଙ୍କ ଜ୍ୱାଇଁ ସୁରେନ୍ଦ୍ର ମହାନ୍ତି ଧରା ହେଲେ ବୋଲି ଶୁଣିଲି । ଏହା ଫଳରେ ଆନ୍ଦୋଳନର ଏଠାରେ ଇତି ହୋଇଯାଇପାରେ । ମୋ'ର ଇଚ୍ଛା ଥିଲା, ପ୍ରତ୍ୟକ୍ଷ ଆନ୍ଦୋଳନରୁ ବିରତ ରହି ଏତେବେଳେ ଲୋକଙ୍କ ଭିତରେ ପ୍ରଚାର କରିଥିଲେ ହୋଇଥାନ୍ତା । ଗଣତନ୍ତ୍ର ଶାସନ ଚାଲୁଥିବା ଦେଶରେ ବୈଧାନିକ ଆନ୍ଦୋଳନର ପନ୍ଥା ଧରିବା ଉଚିତ । ନିର୍ବାଚନ ମଣ୍ଡଳରେ ପ୍ରଚାର କଲେ, ସରକାର ଉପରେ ନୈତିକ ଚାପ ପଡ଼ିଥାନ୍ତା, ଲୋକଙ୍କର ରାଜନୀତିକ ଶିକ୍ଷା ବି ହୋଇଥାନ୍ତା । ତାହା ପାଇଁ ସଂଘବଦ୍ଧ ଚେଷ୍ଟା ନ କରି ଜଣେ ଜଣେ, ଲୋକଙ୍କର ଆଖି ଝଲସାଇ ଦେବା ସକାଶେ ଜେଲ ବରଣ କଲେ, ସେମାନଙ୍କ ନିଜର ସ୍ୱାର୍ଥ ସିଦ୍ଧି ହୋଇପାରେ କିନ୍ତୁ ଦେଶର କ'ଣ ହେବ ? ଆଉ ୧୫ ଦିନରେ ଲୋକେ ଏକାବେଳେ ଗାଢ଼ ନିଦ୍ରାଭିଭୂତ ହୋଇଯିବେ । ମୁଁ ନିର୍ଲିପ୍ତଭାବେ ଚିନ୍ତା କରୁଛି ବୋଲି ଏପରି ମନେ କରୁଛି ।

(୨୮ । ୧ । ୫୬)

## ଆଦିବାସୀ ପ୍ରଦର୍ଶନୀ:

କାଲି ଆଦିବାସୀ ପ୍ରଦର୍ଶନୀ ଆରମ୍ଭ ହେଲା । ପୂର୍ବ ପାଞ୍ଚ ବର୍ଷ ତମାମ ପ୍ରଦର୍ଶନୀ ୨୬ ତାରିଖ ଦିନ ଆରମ୍ଭ ହୋଇଥିଲା । ସେହି ଦିନ ଆଦିବାସୀଙ୍କର ବାସ୍ତବିକ ସ୍ୱାଧୀନତା ଦିବସ । ଅନ୍ୟମାନେ ରାଜ୍ୟ ଶାସନରେ ଅଧିକାର ଅଳ୍ପ ବହୁତେ ପାଉଥିଲେ କିନ୍ତୁ ୧୯୫୦ ଜାନୁଆରୀ ୨୬ ତାରିଖରେ ନୂଆ ଶାସନ ବିଧାନ ପାସ୍ ହେବାରେ ଆଦିବାସୀଙ୍କର ନୂତନ ଜୀବନର ଆରମ୍ଭ ହେଲା । ସେହି ଦିନଟିକୁ ଆଦିବାସୀର ଚିରସ୍ମରଣୀୟ କରିବା ସକାଶ ମୁଁ ଏ ପ୍ରଦର୍ଶନୀଟି ପ୍ରତ୍ୟେକ ଜାନୁଆରୀ ୨୬ ତାରିଖରେ କରିବାକୁ ସ୍ଥିର କରିଥିଲି ।

ଏ ବର୍ଷର ସ୍ୱତନ୍ତ୍ର ପରିସ୍ଥିତିରେ ତାହା ବନ୍ଦ ହୋଇ କାଲି ଗାନ୍ଧୀ ଶ୍ରାଦ୍ଧ ଦିବସରେ ଆରମ୍ଭ ହେଲା । ଗତ ବର୍ଷ ଏହି ଗାନ୍ଧୀଶ୍ରାଦ୍ଧ ଦିବସରେ, ମନ୍ତ୍ରୀ ନାଚ ତାମସା କରିବାକୁ ଜିଦ୍ ଧରିବା ଫଳରେ ମୋ'ର ମନ ଭାଙ୍ଗି ଯାଇଥିଲା ଓ ସେହି ଦିନ ମୁଁ ସଂକଳ୍ପ କରିଥିଲି ଯେ, ଆଉ ଗୁଳକରି କରିବି ନାହିଁ । ମୋ'ର ସେହି ଦିନ ବିଶ୍ୱାସ ଦୃଢ଼ ହୋଇଥିଲା ଯେ, ଆମ କଂଗ୍ରେସର ମୁଖ୍ୟ ଲୋକେ ଖାଲି ନିଜ ସୁବିଧା ସକାଶ ଗାନ୍ଧୀଙ୍କ ନାମ ଘେନୁଛନ୍ତି, କିନ୍ତୁ ପ୍ରକୃତରେ ଗାନ୍ଧୀଙ୍କ ସ୍ମୃତି ପ୍ରତି ସମ୍ମାନ ନାହିଁ । ତକଟର କେସକାର ସେଦିନ ଆସିଥାନ୍ତି, ତାଙ୍କୁ ନାଚ ଦେଖାଇବାକୁ ଆମ ମନ୍ତ୍ରୀଙ୍କର ମନ ହେଲା । ମୁଁ ଅଦେଶ ପାଇଲି ଯେ, ଆଜି ସୂତା ଯଜ୍ଞ ପରିବର୍ତ୍ତେ ପୂର୍ବଦିନ ପରି ନାଚ ହେବ ଓ ମନ୍ତ୍ରୀ ନାଚିବେ । ମନ୍ତ୍ରୀଙ୍କୁ ବହୁତ ବୁଝାଇଲି, ଆମର ପୂର୍ବରୁ ପ୍ରଚଳିତ ରୀତି ନ ଭାଙ୍ଗିବାକୁ ; ସେ ଶୁଣିଲେ ନାହିଁ । ମୁଖ୍ୟମନ୍ତ୍ରୀଙ୍କ-ଠାରେ ଆପତ୍ତି କଲି, ସେ କହିଲେ 'ସୁନାରାମ ବାବୁ ତ ନିଜେ ନାଚିବାକୁ ବ୍ୟାକୁଳ ହୋଇ କେଶ୍‌କାରଙ୍କୁ ମନାଇଛନ୍ତି । ମୁଁ କ'ଣ କରିବି ।' ପିଲାଙ୍କୁ ଟିକିଏ ଉସକାଇ ଦେଇଥିଲେ, ସେଦିନ ସେମାନେ ନାଚିବେ ନାହିଁ ବୋଲି ଜିଦ ଧରିଥାନ୍ତେ । ତା' ନ କରି ସରକାରୀ ଗୁଳକରିଆର ଦାୟିତ୍ୱ ଭୁଲିଇଲି ଓ ନିଜ ବିବେକକୁ ସନ୍ତୁଷ୍ଟ କରିବା ସକାଶ ସୂତା ଯଜ୍ଞ ମଣ୍ଡପର ପଛରେ କରିହେଲା । ଏଥର ପ୍ରଦର୍ଶନୀ ୩୦ ତାରିଖରେ ଉଦ୍‌ଘାଟନ ହେବା ଫଳରେ ସୂତା ଯଜ୍ଞ କଥା ବାଏଁ ବାଏଁ ଉଡ଼ିଯାଇଥିବ ।

ଏଥର ପ୍ରଦର୍ଶନୀରେ ପୁଣି ଆଦିବାସୀ ବିଭାଗର ହାତକାମ ପ୍ରଭୃତି ସଙ୍ଗେ ଅନ୍ୟାନ୍ୟ ବିଭାଗର କାମ ମିଶି ଯାଇଛି । ଆଦିବାସୀଙ୍କ ବିଶିଷ୍ଟତା ଯାହା ଏ ମଣ୍ଡପରେ ପ୍ରସ୍ଫୁଟିତ ହେଉଥିଲା ତାହା ଲୋପ ପାଇଲା । ଏସବୁ ଫଳରେ ପିଲାମାନଙ୍କର ଓ ଶିକ୍ଷକମାନଙ୍କର ମନରେ କି ରକମ ଭାବାନ୍ତର ହୋଇଥିବ କେଜାଣି ? ଆଜି କାଗଜରେ ବାହାରିଛି ଯେ, ପୂର୍ବ ବର୍ଷ ପରି ଏ ବର୍ଷ ପ୍ରଦର୍ଶନୀ ଲୋକପ୍ରିୟ ହୋଇ ନାହିଁ । (୩୧ । ୧ । ୫୬)

## ନବଜୀବନ ଓ ବାନପ୍ରସ୍ଥ

ନବଜୀବନ (୨ୟ ସଂଖ୍ୟା) କାଲି ସୁଦ୍ଧାରେ ବାହାରି ତ ପାରିଲା ନାହିଁ, ଆଜି ସଂଧ୍ୟା ସୁଦ୍ଧା ମଧ୍ୟ ସରି ପାରିଲା ନାହିଁ, ପ୍ରେସ ଅନବରତ ଚାଲିଲେ ସୁଦ୍ଧା । କାମ କାହିଁକି ମୋ'ର

ଇଚ୍ଛା ଅନୁସାରେ ଚାଲୁନାହିଁ । ଏ ବିଷୟ ବହୁତ ଭାବି ଭାବି ମୁଁ କିଛି ସ୍ଥିର କରି ପାରୁନାହିଁ । ନବଜୀବନ ବେଳେ ମୁଁ ଯେପରି ଇଚ୍ଛା କରୁଥିଲି, କାମ ସେପରି ହେଉଥିଲା । ସେହି ମୁଁ ଅଛି, କର୍ମୀଗୃହୀମାନେ ମୋ'ର ଯେଉଁପରି ଅନୁଗତ, କିନ୍ତୁ କାମରେ ସେ ଜୋର କାହିଁ ? ମୋ'ର ବୟସ ଅନ୍ତରାୟ ହେଉଛି, ନା ମୋ'ର ନିବୃତ୍ତ ଉତ୍ସାହ ? ବେଳେ ବେଳେ ମନଟା ବାଇଆପରି ହେଉଛି । ବିଚାରୁଛି, ସବୁ ଛାଡ଼ି ଛୁଡ଼ି କୁଆଡ଼େ ପଳେଇବି, ଓ ବସିକରି ଆତ୍ମତତ୍ତ୍ୱର ଆଲୋଚନା କରିବି । ମୋ'ର ମନ ବର୍ତ୍ତମାନ ଯେପରି ହେଉଛି, ସେପରି ହୋଇ ହୋଇ ଲୋକେ ସବୁ ଛାଡ଼ି ମାନସିକ ଶାନ୍ତି ଖୋଜିବାକୁ ବଣକୁ ପଳାନ୍ତି ପରା ! ଏସବୁ ଗୋଟେ ଆଡ଼େ, ମୋ ପରିବାର ପାଇଁ ମୋ'ର କର୍ତ୍ତବ୍ୟ ଅନ୍ୟ ଆଡ଼େ ଅନ୍ତରାୟ ହୋଇ ଠିଆ ହେଉଛି । ପୁଅ ଆଉ ଟିକିଏ ବଡ଼ ହୋଇଥାନ୍ତା କି ? ଖୋର୍ଦ୍ଧା ଓ ବେଗୁନିଆଁ ପାଇଁ ନବଜୀବନ ନେଇଯିବା ସକାଶ ଆଜି ପୁଅକୁ ଅଟକାଇଲି । ରାତି ବାରଟା ସୁଦ୍ଧା ତା'ର ପ୍ରୟୋଜନକୁ ଚାହିଁ କାଗଜ ହୋଇଗଲା । (୫ । ୩ । ୫୭)

## ଗ୍ରାହକ ସଂଗ୍ରହ:

ସକାଳେ ପୁଅ ତା' କାଗଜ (ଖୋର୍ଦ୍ଧା ଓ ବେଗୁନିଆଁ ପାଇଁ) ନେଇ ଚାଲିଗଲା । ଗଲାବେଳେ ତାକୁ କହିଛି ବାଟରେ କେତେଖଣ୍ଡ ବିକିବାକୁ ଚେଷ୍ଟା କରିବାକୁ ! ଢଙ୍ଗ ତ ଭଲ ଜଣାଯାଉଛି, କିନ୍ତୁ ମୁଁ ଯେତେ ଆଶା କରୁଛି ସେତେ କରିବାକୁ ତା'ର ବେଳ ହୋଇ ନାହିଁ ପରା !

ଆଜି ନବଜୀବନ ଆଉ କୁଆଡ଼େ ବାହାରି ପାରିଲା ନାହିଁ । ସଂଧ୍ୟାରେ ମୁଁ ସ୍ଥିର କଲି କଟକରେ କେତେଜଣ ଗ୍ରାହକ କରିବାକୁ ମୁଁ ବାହାରିବି । ବାହାରିଲି । ଯେତେ ଜଣଙ୍କ ସାଙ୍ଗେ ଦେଖା ହେଲା, ସେ ସମସ୍ତେ ଗ୍ରାହକ ହେବାକୁ ରାଜି ହେଲେ । ବିଶେଷ କରି ଶଚୀ ବାବୁ, ଅନିରୁଦ୍ଧ ବାବୁ, ନରସିଂହ ପାଢ଼ୀ ଓ ଘନଶ୍ୟାମ ଦାସ (ପୁଲିସ)ଙ୍କ ସହିତ ଦେଖା ଓ କଥାବାର୍ତ୍ତା ହେବାରେ ମୋ'ର ବିଶେଷ ଉତ୍ସାହ ବଢ଼ିଲା । ଏହିପରି ପୃଷ୍ଠ-ପୋଷକ ଥିଲେ କଷ୍ଟ ପାଇବାରେ ମଧ୍ୟ ଆନନ୍ଦ ଅଛି । କଟକର ସବୁ ଅଞ୍ଚଳରେ ମୋ'ର ବନ୍ଧୁମାନଙ୍କ ଭିତରେ ବୁଲି ଆସିଲେ ଦୁଇ ଶହରୁ ବେଶୀ ଗ୍ରାହକ ସହଜରେ ହୋଇପାରନ୍ତି ବୋଲି ମନେ କରୁଛି । (୬ । ୩ । ୫୭)

ଆଜି ଆହୁରି ଆନନ୍ଦ ଲାଗିଲା, ମୟୂରଭଞ୍ଜ ଗ୍ରାମମଙ୍ଗଳ ଅଫିସର ୫ଟି ଗ୍ରାହକ କରି ସେମାନଙ୍କ ଟଙ୍କା ପଠାଇ ଦେବାରୁ । ପାଷ୍ଟିକୁଡ଼ି ଆଶ୍ରମ ସ୍କୁଲର ହେଡମାଷ୍ଟର ରାଧାଶ୍ୟାମ ମଧ୍ୟ ଚାରିଟି ଗ୍ରାହକ କରାଇ ୬ ମାସର ଚାନ୍ଦା ପଠାଇଛନ୍ତି । ଆଜି ମନରେ ଭାରି ଉତ୍ସାହ ଆସିଲା ଯେ, ନବଜୀବନ ବିଷୟରେ ଚିନ୍ତିତ ହେବାର ବିଶେଷ କାରଣ ନାହିଁ । ମୋ'ଆଡ଼ୁ ଟିକିଏ ଉଦ୍ୟମ ହେଲେ ନବଜୀବନ ଗ୍ରାହକ ଓ ଲେଖା ଅଭାବରେ ବନ୍ଦ ହୋଇଯିବାର କାରଣ ନାହିଁ । ମୁଁ କେତେ ଉଦ୍ୟମ କରି ପାରିବି ସେଇ ହେଉଛି ବଡ଼

କଥା। ଖାଲି ବନ୍ଧୁମାନଙ୍କୁ ମନେ ପକାଇ ଚିଠି ଦେଲେ ବି କାମ ହୋଇଯିବ। ବର୍ତ୍ତମାନ ସୁଦ୍ଧା ମୁଁ ଯାହା ପାଖରେ ଯାଇ ପହଞ୍ଚିଛି ସେ ଆଗ୍ରହରେ ଗ୍ରାହକ ହେବାକୁ ସ୍ୱୀକୃତ ହୋଇଛି, ଏହା ତ କମ୍ ଭାଗ୍ୟର କଥା ନୁହେଁ। ମୋତେ ଚହ୍ନିବା ବିଶିଷ୍ଟ ଲୋକଙ୍କର ସଂଖ୍ୟା ଯେତେ ତହିଁରୁ ଅଧେ ବା ଚଉଠେ ଯଦି ଗ୍ରାହକ ହେବେ, ତେବେ ନବଜୀବନ ପ୍ରକାଶ ଲାଭଜନକ ବେପାର ହୋଇଯିବ। (୧୩ । ୩ । ୫୬)

ଏଥର ନବଜୀବନ ଗଳ୍ପ ସଂଖ୍ୟା ପାଇଁ ପ୍ରତିଷ୍ଠିତ ଓ ମୋ ଈପ୍ସିତ ଲେଖକଙ୍କ ପ୍ରବନ୍ଧ ମିଳିଲା ନାହିଁ। ମନରେ ସନ୍ଦେହ ଥିଲା, ହୁଏତ ପୂର୍ବ ସଂଖ୍ୟାମାନଙ୍କ ତୁଳନାରେ ଏ ଥରର ନବଜୀବନ ନୀଚ ସ୍ତରର ହୋଇଯିବ। ଆଜି ମନେ ହେଲା ସେପରି ହେବ ନାହିଁ। ଅଧ୍ୟାପକ ବିଧୁଭୂଷଣ ଦାସଙ୍କର ଗୋଟିଏ ଇଂରାଜୀ ପ୍ରବନ୍ଧ ମୁଁ ଓଡ଼ିଆରେ ଅନୁବାଦ କରି ପ୍ରଥମ ପ୍ରବନ୍ଧ କରି ଦେଲି, ବୈଦ୍ୟନାଥଙ୍କର ଗୋଟିଏ ଲେଖା ତା' ପରେ ଦେଲି। ତା' ପରେ ଉପେନ୍ଦ୍ରର ଗୋଟିଏ ଲେଖା। ସେ ଚନ୍ଦ୍ର ବିଷୟରେ ଲେଖିଛି ବୋଲି, ଆଗ ବିଗିଡ଼ୁଥିଲି ଏହା ଅନଧିକାର ଚର୍ଚ୍ଚା, ଓଡ଼ିଆ ପ୍ରଫେସରଙ୍କର ବିଜ୍ଞାନ ବିଷୟରେ ଆଲୋଚନା; କିନ୍ତୁ ପ୍ରବନ୍ଧଟି ପଢ଼ି ବଡ଼ ଖୁସି ଲାଗିଲା। ଚନ୍ଦ୍ର ବିଷୟରେ ଆମ ଜ୍ୟୋତିର୍ବିଦଙ୍କ ଧାରଣା ସଙ୍ଗେ ଆଧୁନିକ ବୈଜ୍ଞାନିକ ଗବେଷଣାକୁ ମିଶାଇ ସେ ଗୋଟିଏ ଭଲ ପ୍ରବନ୍ଧ ଲେଖିଛି। ତା' ପରେ ଜୟକୃଷ୍ଣ ପଟ୍ଟନାୟକଙ୍କର ଲେଖା—କୁସୁମାଟି ଜୟକୃଷ୍ଣ। ପ୍ରତିଷ୍ଠିତ ଲେଖକଙ୍କର ଲେଖା ମିଳିଲା ନାହିଁ ବୋଲି ମନରେ କୌଣସି କ୍ଷୋଭ ରହିଲା ନାହିଁ। (୨ । ୪ । ୫୬)

ନବଜୀବନର ଡାକ ବିଭାଗୀୟ ରେଜିଷ୍ଟ୍ରେସନ୍ ପାଇଁ ଦଶ ବାର ଦିନ ହେଲା ଦରଖାସ୍ତ ଦିଆ ହୋଇଛି। ଏତେ ଶୀଘ୍ର ଦରଖାସ୍ତର ବିଚାର ହେବା ସମ୍ଭବ ହୁଅନ୍ତା ନାହିଁ, ଯଦି ଡାକ ବିଭାଗର ଅଫିସରମାନେ ମୋ ପାଇଁ ବିଶେଷ ଚେଷ୍ଟା କରିବାକୁ ପ୍ରତିଶ୍ରୁତି ନ ହୋଇଥାନ୍ତେ। ଆଜି ସେ ଫାଇଲ କେତେ ଦୂର ଗଲା ଦେଖିବାକୁ ପୋଷ୍ଟାଲ ଡିରେକ୍ଟରଙ୍କ ଅଫିସକୁ ଗଲି। ମୁଁ ଯେଉଁ ଗ୍ରାହକ ତାଲିକା ଦେଇଥିଲି ସେଥିରୁ ୧୫ ଜଣଙ୍କ ପାଖକୁ ତାଙ୍କ ବିଭାଗ ଚିଠି ଦେଇଛନ୍ତି। ଏଥିରୁ ଏଗାର ଜଣ ଯଦି ସେମାନେ ଗ୍ରାହକ ବୋଲି ସ୍ୱୀକାର କରି ଚିଠି ଦେବେ ତେବେ ମୋ'ର କାମ ହୋଇଯିବ। ଆଜି ସୁଦ୍ଧା ଏଗାର ଜଣଙ୍କଠାରୁ ଚିଠି ଆସିନାହିଁ। ଏଗାରରୁ ଦୁଇ କମ୍। (୩ । ୪ । ୫୬)

ଆଜି ଡାକରେ ନବଜୀବନର ପୋଷ୍ଟାଲ ରେଜିଷ୍ଟ୍ରେସନ୍ ଆସି ପହଞ୍ଚିଲା। ଗୋଟିଏ ଶୁଭ ଦିନ ପରି ଲାଗିଲା। ମୁଁ ୨୧ ତାରିଖ ଦିନ ଦରଖାସ୍ତ କରିଥିଲି। ଏତେ ଅଳ୍ପ ଦିନରେ ମୋତେ ରେଜିଷ୍ଟ୍ରେସନ୍ ମିଳିଯିବା ଅନୁଗ୍ରହ ପରି ଲାଗିଲା। (୫ । ୪ । ୫୬)

**କଠିନ ପରିଶ୍ରମ କରିହେଉଛି:**

ଆଜି ଗାଧୋଇ ସାରି ଡାକରେ ନବଜୀବନ ପଠାଇବା ପାଇଁ ଠିକଣା ଲେଖିବାରେ ଲାଗିଲି। କଟକ ଭୁବନେଶ୍ୱର ସବୁଠାର ଗ୍ରାହକଙ୍କ ପାଖକୁ ଡାକରେ ପଠାଇଲି। ବିଗମ୍ଭର

ଆଉ ମାସରେ କାଗଜ ବାଣ୍ଟି ଥିବାରୁ ପ୍ରାୟ ୭।୮ ଦିନ ଲାଗିଲା । ଡାକ ଟିକଟ ମୋଟେ ଦୁଇ ପଇସାର ଲାଗୁଥିବା ସ୍ଥଳେ, ଗ୍ରାହକମାନଙ୍କୁ କାଗଜ ଦେବାରେ ଡେରି କରାଇବା ଠିକ୍ ହେବ ନାହିଁ । ସର୍ବମୋଟ ୩୨୦ ଜଣଙ୍କଠାରୁ ଆଜି କାଗଜ ଗଲା । ଏକ ଘଣ୍ଟାରେ ସବୁତକ ଠିକଣା ଲେଖିଦେଲି । ମନେ ପଡ଼ିଲା, ଥରେ ପ୍ରସ୍ତର ବର୍ଷରେ କିରାଣୀମାନଙ୍କୁ କହିଥିଲି, ସେମାନେ ଯେପରି ସଇଥିଲରେ ଠିକଣା ଲେଖୁଛନ୍ତି ତାହାକୁ ସମାଲୋଚନା କରି । ମୁଁ ଯେ ତାଙ୍କଠାରୁ ଚ୍ଚାରଗୁଣ ଶୀଘ୍ର ଲେଖେ ତାହାର ସୂଚନା ଦେବାରେ ସେମାନେ ସେତେବେଳେ ଅବିଶ୍ୱାସ କଲା ପରି ମୁହଁ କରିଥିଲେ । ଆଜି ମୋ କାମ ଦେଖିଥିଲେ ସେମାନଙ୍କର ଅବିଶ୍ୱାସ ଦୂର ହୋଇଥାନ୍ତା । ସବୁଦିନ ଧାରାବାହିକ ଭାବରେ କାମ କରିବାର ଅଭ୍ୟାସ ମୋ'ର କେବେ ନ ଥିଲା, କିନ୍ତୁ ଦରକାର ପଡ଼ିଲେ ମୁଁ ବର୍ତ୍ତମାନ ବି ଖୁବ୍ କାମ କରି ପାରୁଛି । (୭ । ୪ । ୫୭)

**ସୁନାରାମ ବାବୁଙ୍କ ପାଇଁ**

**ଅଭିଭାଷଣ ରଚନା :**

ବ୍ରହ୍ମପୁର ଓ କଟକରୁ ଇତି ମଧ୍ୟରେ ଆସିଥିବା ନୂଆ ଗ୍ରାହକଙ୍କ ନାମ ଗ୍ରାହକ ଖାତାରେ ଆଜି ଚଢ଼ାଇ ସେମାନଙ୍କ ପାଖକୁ କାଗଜ ପଠାଇଲି । ତିନୋଟି ଭି: ପି: ଆଜି ନୂଆ ହୋଇ ପଠାଗଲା । ଆଉ କେତେ ଜଣ ମଧ୍ୟ ଭି: ପି:ରେ ପଠାଇବାକୁ ଲେଖିଥିଲେ । ସେମାନଙ୍କ ପାଖକୁ ଭି: ପି: ନ ପଠାଇ ଖାଲି କାଗଜ ପଠାଇଛି । ଆଉ ମାସରେ ଦେଖାଯିବ । ଭି. ପି. କୁ ମୋ'ର ସବୁ ବେଳେ ଭୟ ; ଫେରି ଆସିଲେ ବଡ଼ କଷ୍ଟ ହୁଏ । ସେଥିପାଇଁ ଭି. ପି. ଯେତେ କମ୍ ଯାଏ ସେତେ ମୋତେ ସୁଖ ।

ସନ୍ଧ୍ୟାରେ ସୁନାରାମ ବାବୁ ଆସିଥିଲେ । ଆସନ୍ତା ୭।୮ ତାରିଖରେ ସେ ବଲାଙ୍ଗିରର ଲାଠୋରଠାରେ ଆଦିବାସୀ କଂଗ୍ରେସର ବୈଠକ ବସାଉଛନ୍ତି ; ସେଥିରେ ସେ ଯେଉଁ ସଭାପତି ଅଭିଭାଷଣ ଦେବେ ତାହା ଲେଖି ଦେବାକୁ ସେ ଅନୁରୋଧ କଲେ । ଆରମ୍ଭରୁ ଆଜିଯାଏଁ ଏ କଂଗ୍ରେସର ପ୍ରତି ବାର୍ଷିକ ଅଧିବେଶନର ସଭାପତି ଅଭିଭାଷଣ ମୁଁ ଲେଖିଛି । ସେ ସୁବିଧା ବର୍ତ୍ତମାନ ବି ସୁନାରାମବାବୁ ମୋତେ ଦେବାକୁ ଆସିଥିବାରୁ ଆନନ୍ଦ ଲାଗିଲା ; ହଁ କଲି ।

ଭୁବନେଶ୍ୱର କ୍ୟାପିଟାଲ ହାଇସ୍କୁଲର ଶିକ୍ଷକ ଇନ୍ଦୁଭୂଷଣ ମିଶ୍ର ଆସିଥିଲେ । ତାଙ୍କୁ ସୀମା ଆନ୍ଦୋଳନରେ ସସପେଣ୍ଡ କରାଯାଇଥିଲା । ସେ କାମରେ ଯୋଗ ଦେଲେଣି । ଯାଦବ ବାବୁ ଓ ରାମଲଙ୍କ ବିଷୟ ସେ ଓ ମୁଁ ସୁନାରାମ ବାବୁଙ୍କୁ କହିଲୁ । ଜଗଦ୍‌ବନ୍ଧୁ ବାବୁ ବୃଥାରେ ସେମାନଙ୍କ ସସ୍‌ପେନ୍‌ସନ୍ ଉଠାଇ ନେବାରେ ବିଳମ୍ବ କରୁଛନ୍ତି । (୭ । ୪ । ୫୭)

**ଲକ୍ଷ୍ମୀ ନାରାୟଣ ସାହୁ :**

ଆଜି ଦି'ପହରେ ଲକ୍ଷ୍ମୀନାରାୟଣ ବାବୁ ଆସି ପ୍ରାୟ ୪ଘଣ୍ଟା 'ମୋ' ସଙ୍ଗେ ଆଳାପ କଲେ । ଏ ଭଦ୍ରବ୍ୟକ୍ତିଙ୍କ ପ୍ରତି ମନ ବେଳକୁ ବେଳ ବେଶୀ ଆକୃଷ୍ଟ ହେଉଛି । ଓଡ଼ିଶାରେ

ଯଦି କେହି ନିଃସ୍ୱାର୍ଥପର ଓ ନିରଳସ କର୍ମୀ ଥାଏ, ତେବେ ସେ ଲକ୍ଷ୍ମୀନାରାୟଣ ସାହୁ । ୭୦ ବର୍ଷ, ଶ୍ୱାସ ରୋଗ ଭଲ କରି ଧରିଛି । କିନ୍ତୁ କାମ ଚାଲିଛି । ଆଜି ସକାଳେ ବସରେ ଭୁବନେଶ୍ୱର ଯାଇଥିଲେ ଗୋଟିଏ ସଭାରେ ଯୋଗ ଦେବାକୁ । ସେଠାରୁ ଫେରି ମୋ' ଘରକୁ ଆସିଲେ । (୧୨ । ୪ । ୬୭)

କାଲି ରାତିରେ ଫାଇନାନ୍ସ ଡିପାର୍ଟମେଣ୍ଟର ଡେପୁଟି ସେକ୍ରେଟାରୀ ଦୀନବନ୍ଧୁ ମହାପାତ୍ରେ ଖଣ୍ଡିଏ ଚିଠି ପଠାଇ ଗୋଟିଏ ଛପା କାମ କରି ଦେବାକୁ ପଠାଇଲେ । ତାହାର ଏଷ୍ଟିମେଟ୍ କରି ଦେବାକୁ ତାଙ୍କ ପ୍ରସବାହକ ଜଣାଣୀ କହିଲେ । ଡେପୁଟି ସେକ୍ରେଟାରୀଙ୍କ ଚିଠିରେ ରେଟ୍ ଦେବାର କଥା ନ ଥିଲେ ହେଁ ମୁଁ ଏଷ୍ଟିମେଟ୍ ଦେଲି । ମହାଶୟ ତାକୁ ନେଇ ଆଉ ଗୋଟିଏ ଯୋଡ଼ିଏ ପ୍ରେସରେ ବୁଲି ରାତି ୧୦ଟାରେ ଆସି ମୋ ରେଟ୍ ଅନୁସାରେ କାମ ଶୀଘ୍ର ଆରମ୍ଭ କରିବାକୁ କହିଲେ । ତଦନୁସାରେ ଆଜି ସକାଳେ ୬ଟାରୁ ବୁଲ୍ କରି କାମ ଆରମ୍ଭ କରିଛି, ଫାଇନାନ୍ସ ଡିପାର୍ଟମେଣ୍ଟର ଜଣେ ଚପରାସି ଆସି ମୋଠାରେ କାମଟା ଫେରନ୍ତ ମାଗିଲେ ଓ ଅନ୍ୟତ୍ର ଅଳ୍ପ ରେଟ୍‌ରେ କାମ ହୋଇ ପାରିବାର ବୁଝି ସେଇଠାରେ କରିବାକୁ ହେଡ୍ ଆସିଷ୍ଟାଣ୍ଟ କହିଥିବାର ଜଣାଇଲେ । ମୋର ସନ୍ଦେହ ହେଲା, କୌଣସି ପ୍ରେସରୁ କିଛି ଜଳପାନ ପାଇ ଏପରି କୌଣସି କରାମତି କରିଛି । ସଙ୍ଗେ ସଙ୍ଗେ ଦୀନବନ୍ଧୁ ବାବୁଙ୍କ ପାଖକୁ ଗଲି । କଥା ସେଇଆ । ଦୀନବନ୍ଧୁ ନିଜ କର୍ମଚାରୀଙ୍କୁ ଘଣ୍ଟ ଘୋଡ଼ାଇବାକୁ ଚେଷ୍ଟା କଲେ ଓ ମୋତେ କାମଟି ଦେଲେ । ଯୁଦ୍ଧ କରି କାମ ଆଣିଲି ସିନା, ଠିକ୍ ସମୟରେ କପରି ଦେବି ତାହାର ବୁଦ୍ଧି ଦିଶୁନାହିଁ । ୨୧ ତାରିଖ ସୁଦ୍ଧା କାମଟା ଦେବାକୁ ହେବ । ଆଜି ବିଶେଷ କିଛି ହୋଇ ପାରିଲା ନାହିଁ । ଆଶା କରେ କାଲି ଅଡ଼କୁ କାମର ଜୋର ଟିକିଏ ବଢ଼ିବ । ଆଜି କର୍ମଚାରୀଙ୍କର ଆର ମାସର କାମ ହିସାବ କରି ଦରମା ଚୁକ୍ତି କଲି । ଆଜି ସର୍ବପ୍ରଥମେ ବୁଝିଲି, ପ୍ରେସ୍‌ର ସବୁ କର୍ମଚାରୀମାନେ କାଢ଼ି ନେଉଛନ୍ତି, ମାଲିକ ଓ ମେନେଜର ପାଇଁ ବିଶେଷ କିଛି ରହୁ ନାହିଁ । ତେଣୁ ଆଠ ମାସ ପ୍ରେସ୍ ଚାଲିଥିଲେ ସୁଦ୍ଧା ଯାହା ଘର ଖର୍ଚ୍ଚ ଦେଉଛନ୍ତି ତହିଁରୁ ଅଧିକ କିଛି ପାଉନାହିଁ । (୧୫ । ୫ । ୬୭)

**ନବଜୀବନ ଓ ଚନ୍ଦ୍ରପ୍ରକାଶନ :**

ପ୍ରେସ୍ ଟି ଚଳିବାକୁ ହେଲେ ପ୍ରକାଶନ ଉପରେ ଜୋର ଦେବାକୁ ହେବ । ମୁଁ ଯେ ଏ ଯାଏଁ ଚଳିଗଲି, ତାହାର ପ୍ରଧାନ କାରଣ ହିନ୍ଦୁ ଧର୍ମରେ ଜାତି ଓ ତା'ର ଗତି ଓ ଦେବଦେବୀଙ୍କ ଦୁର୍ଗତିର ପ୍ରକାଶନ । ତା'ପରେ ଆଉ ଖଣ୍ଡେ ଦୁଇଖଣ୍ଡ ବହି ବାହାରି ପଡ଼ିଲେ ଭଲ ହେବ ନବଜୀବନର ଗ୍ରାହକ ସଂଖ୍ୟା ବଢ଼ିଲେ ମଧ୍ୟ ଚଳିଯିବ । ଏ ମାସରେ ନବଜୀବନର ଗ୍ରାହକ ସଂଖ୍ୟା ବଢ଼ିବାର ଆଶା ଟିକିଏ ବେଶୀ ଦିଶୁଛି, କେନ୍ଦୁଝରର ଉତ୍ସବାନନ୍ଦ ଦାସଙ୍କ ଯୋଗୁଁ । ସେ ପ୍ରାୟ ୯୦ଟି ଗ୍ରାହକ ପଠାଇ ଦେଇଛନ୍ତି । ଆହୁରି କରିବେ । କେନ୍ଦୁଝର ପରି କ୍ଷୁଦ୍ର ଜିଲ୍ଲାରେ ଉତ୍ସବାନନ୍ଦ ଓ ମାର୍କଣ୍ଡ ରଥ ଉଭୟେ ମିଶି ଦୁଇ ଶହ ପର୍ଯ୍ୟନ୍ତ ଗ୍ରାହକ କରିଦେଲେ

ଅନ୍ୟ ଜିଲ୍ଲାରେ ଚାଂଦା କରିବାକୁ ହେବ ସେଥିପ୍ରତି ମୋତେ ଜାଗ୍ରତ ହେବାକୁ ପଡ଼ିବ । ଏତେ ଚେଷ୍ଟାରେ ଯଦି ଓଡ଼ିଶାରେ ଗ୍ରାହକ ହୋଇପାରନ୍ତି ତାହା ହେଲେ ସ୍ୱଚ୍ଛନ୍ଦରେ ୪ ହଜାର ଗ୍ରାହକ ହୋଇ ପାରିବେ । ସେଥିପାଇଁ ଯଥାସାଧ୍ୟ ଉଦ୍ୟମ କରିବାକୁ ହେବ । ସବୁଠାରେ ତ ଉତ୍ସବାନନ୍ଦ ପରି ଲୋକ ମିଳିବେ ନାହିଁ; ନିଜେ ସେ ଅଭାବ ପୂରଣ କରିବାକୁ ହେବ ।

ଆଜି ଭଞ୍ଜ ଜୟନ୍ତୀ ଉତ୍ସବର ଆରମ୍ଭ । ମୋତେ ୧୯ ତାରିଖ ଦିନ ପାଇଁ ସଭାପତି କରିଛନ୍ତି । ପ୍ରାଣନାଥ ବାବୁ ପ୍ରଭୃତି କପରି ଢଙ୍ଗରେ ବକ୍ତୃତା ଦେଉଛନ୍ତି ଶୁଣିବା ସକାଶେ ଗଲି । ସେଠାରୁ ଫେରିବାକୁ ୯ଟା ହୋଇଗଲା । ଲକ୍ଷ୍ମୀଧର ବାବୁଙ୍କର ନାତିର ଅନ୍ନପ୍ରାଶନ ପାଇଁ ନିମନ୍ତ୍ରଣ ହେଲା । ତାହାକୁ ରକ୍ଷା କରିବାକୁ ପଡ଼ିବାରୁ ଆମ ଘରେ ହୋଇଥିବା ସତ୍ୟ-ନାରାୟଣ ପାଲା ଉତ୍ସବରେ ଯୋଗ ଦେଇ ପାରିଲି ନାହିଁ । ସେଥିପାଇଁ ଶଶୀ ବୋଉ ଗୁଡ଼ାଏ ହାଉହାଉ ହେଲା । ବୁଝିଲା ନାହିଁ, ନିଜ ଘରେ ମଉଜ କରିବା ଅପେକ୍ଷା ଅପରର ନିମନ୍ତ୍ରଣ ରକ୍ଷା କରିବା ଶିଷ୍ଟାଚାର । (୧୬ । ୫ । ୧୯୫୬)

ଆଜି ଭଞ୍ଜ ଜୟନ୍ତୀ ଉତ୍ସବକୁ ଯାଇପାରିଲି ନାହିଁ । ଯିବାକୁ ବେଶୀ ଇଚ୍ଛା ଥିଲେ ଯାଇ ହୋଇଥାନ୍ତା । ଗୋବିନ୍ଦ ମିଶ୍ରଙ୍କ ଆଜି ଖାଇବାକୁ ଡାକିଥିଲୁ । ପିଲାମାନେ ଖାଇବାକୁ ବାଢ଼ି ଦେଇ ଆଉ ପାଖରେ ପଶୁନାହାନ୍ତି । ଖାଇବା ବାଲା ଚିତ୍କାର ନ କଲେ ଆଉ କିଛି ଦୋଅଡ଼ ମିଳିବାର ଉପାୟ ନାହିଁ । ଏହା କୌଣସି ଉଦ୍ଦେଶ୍ୟ ଥାଇ ହେଉନାହିଁ; କିନ୍ତୁ ଅତିଥିର ମନେ ହେବା ସ୍ୱାଭାବିକ ଯେ ତାହା ପ୍ରତି ଅବହେଳା ପ୍ରଦର୍ଶିତ ହେଉଛି । ଏଥି ସକାଶେ ଆଜି ଭାରି ବିରକ୍ତ ହେଲି ।

କାଲି ଭଞ୍ଜ ଜୟନ୍ତୀରେ ବକ୍ତୃତା ଦେବା ପାଇଁ ବିଷୟ ନିର୍ବାଚନ କରିବାକୁ ଯାଇ ଅଶ୍ଳୀଳତା ଉପରେ କହିବାକୁ ସ୍ଥିର କଲି । ନୀଳକଣ୍ଠ ବାବୁ ତାଙ୍କ ବକ୍ତୃତାରେ କୃଷ୍ଣ ଚରିତ ଉପରେ ଆକ୍ଷେପ କରି ଅନେକ କଥା କହିଛନ୍ତି । ତାହାର ସାମାନ୍ୟ ପ୍ରତିବାଦ ଜଣାଇବା ଏ ସମ୍ପର୍କରେ ପ୍ରୟୋଜନ ଥିବାର ମନେ ହେଲା । ସେଥିଲାଗି ଏକାଦଶ ସ୍କନ୍ଧର ରାସ-ପଞ୍ଚାଧ୍ୟାୟୀରୁ କେତୋଟି ଶ୍ଳୋକ ଉଦ୍ଧାର କରିବାକୁ ବାଛିଲି । ରାସ ପଞ୍ଚାଧ୍ୟାୟୀ ବିଷୟରେ ମୋ ନିଜର ଅନେକ ସଂଶୟ ଦୂର ହେଲା । ମୋର ପୂର୍ବ ଧାରଣା ଦୃଢ଼ୀଭୂତ ହେଲା ଯେ ନିଜ ମନରେ କୌଣସି ବିଷୟ ପ୍ରତି ପୂର୍ଣ୍ଣ ଶ୍ରଦ୍ଧା ନ ଆସିଲେ ସେ ବିଷୟରେ ସମ୍ୟକ୍ ଜ୍ଞାନର ବାଟ ଫିଟେ ନାହିଁ । ଟୀକାରୁ ଯେତିକି ଜଣାପଡ଼େ ତହିଁରୁ ଅଧିକ ଜଣାଯାଏ ନିଜର ଅଭିନିବେଶ ଓ ଧ୍ୟାନରୁ । ଆଜି ଟଣ୍ଡସାହିରୁ ମଧ୍ୟ ଗୋଟିଏ ବକ୍ତୃତା ଦେବାର ନିମନ୍ତ୍ରଣ ଆସି ପହଞ୍ଚିଲା । ହଁ କଲି । (୧୮ । ୫ । ୧୯୫୬)

ଆଜି ଗୋବିନ୍ଦ ପ୍ରହରାଜ ଆସି ୭ଜଣ ଗ୍ରାହକଙ୍କର ଗୋଟିଏ ତାଲିକା ଦେଲା । ସେ ଏ ପର୍ଯ୍ୟନ୍ତ ୧୦୧୧୬ଟି ଗ୍ରାହକ ଯୋଗାଡ଼ କଲାଣି । ଏ ମାସରେ ନବଜୀବନର ଗ୍ରାହକ ସଂଖ୍ୟା ଭଲ ବଢ଼ୁଛି । ଅପ୍ରତ୍ୟାଶିତ ଜାଗାରୁ ଉତ୍ସାହ ମିଳୁଛି ।

ଭଞ୍ଜ ଜୟନ୍ତୀ ଉତ୍ସବରେ ସଭାପତିତ୍ୱ କରିଥିଲି । ବକ୍ତା ବୀର ହନୁମାନ ଶାସ୍ତ୍ରୀ ଆସି ପାରିଲେ ନାହିଁ । ତାଙ୍କ ଜାଗାରେ ଜଣେ ଅର୍ବାଚୀନ ଯୁବକ ଘୋଷା ପାଠର ପୁନରାବୃତ୍ତି କଲାପରି ଗୁଡ଼ାଏ ଏଣୁ ତେଣୁ କହିଲେ । ଯେଉଁ ଗୀତ ଇତ୍ୟାଦି ବୋଲା ହେଲା ସେଥିରେ କୌଣସି ସୌଷ୍ଠବ ନ ଥିଲା । ଷ୍ଟେଡ଼ିଅମ୍‌ରେ ଉତ୍ସବଟା ହେବାରୁ ଏତେ ଦୂର ବେଶୀ ଲୋକ ଆସି ପାରୁନାହାନ୍ତି । ଯେତେ ଆସୁଛନ୍ତି ସେତକ ବସିଲେ ସମୁଦ୍ରକୁ ଶଙ୍ଖେ ପଣା ପରି ହୋଇ ଯାଉଛି । ସଭାପତିଙ୍କ ମଞ୍ଚ ଉପରେ ପାଲ ଝଣ୍ଡେ ହାଆସିବାର କଥା । ହୋଇ ପାରି ନାହିଁ । ଠିକ୍ ମୋ'ର ବକ୍ତୃତା ଆରମ୍ଭ ହେଲା ବେଳକୁ ଟୋପି ଛାଡ଼ିଲା । ବକ୍ତୃତା ସରିଲା ବେଳକୁ ମୋର କାମିଜ ଏକାବେଳେକେ ଓଦା । ମୁଣ୍ଡରେ ପାଣି ବାଜିବାରୁ ଦେହ ଖରାପ ହେବାର ଭୟ ହେଲା । (୧୯ । ୫ । ୫୬)

**ଦାଇବ ଦାଉଡ଼ :**

ଆଜି ସକାଳେ ପୁଣି କେତେ ଜାଗା ବୁଲିଲି । ଶ୍ରୀଯୁକ୍ତ ମୂର୍ତ୍ତି ଆଇ. ଏ. ଏସ୍.ଙ୍କ ସଙ୍ଗେ ଦେଖା ହେଲା । ତାଙ୍କର ଓ ଅନ୍ୟ ଅଫିସରଙ୍କର ଦୃଢ଼ ଧାରଣା, ମୁଁ ରାଜନୀତିରେ ପଶି ମନ୍ତ୍ରୀ ହେବା ପର୍ଯ୍ୟନ୍ତ ଯିବି । ଏହା ମୁଁ ତ କସ୍ମିନ୍‌କାଳେ ଚିନ୍ତା ଇ କରି ପାରୁନାହିଁ; ବର୍ତ୍ତମାନ ରାଜନୀତି ଯେଉଁ ରୂପ ଧରିଛି, ସେଥିରେ ପଶି ଗୋଡ଼ କାଦୁଅ କରିବାକୁ ମୋର ତ ଆଦୌ ମନ ହେଉନାହିଁ । ମୋତେ ମଧ୍ୟ କେହି ଚାହାନ୍ତି ବୋଲି ଜଣା ପଡ଼ୁନାହିଁ । ମୁଁ ସ୍ଥିର କରିଛି, ବର୍ତ୍ତମାନ ଯେପରି ନବଜୀବନ ଜରିଆରେ ରାଜନୀତିକ ବିଷୟରେ ମୋର ମତ ଦେଉଛି ସେଇପରି ଚଳାଇ କରିବି । ପୂର୍ବେ ଯେଉଁ କାର୍ଯ୍ୟ ଯେତେବେଳେ କରିଛି ତାହା ଚରମ କରିବି ବୋଲି ବିଚାରିଥାଏ; ଦୈନିକ ଆଶାରେ ଥିଲାବେଳେ ଉମର ସେଇଠାରେ କଟିବ ବୋଲି କଳ୍ପନା ଥିଲା, ଦେଢ଼ ବର୍ଷରେ ଛାଡ଼ିଲି । ଭାସ୍କର ମହାପାତ୍ରଙ୍କ ସାହାଯ୍ୟରେ କଲିକତାରେ ବ୍ୟବସାୟ କରିବାର ମନ ଥିଲା । ଦେଢ଼ ବର୍ଷରେ ନିଜେ ଛାଡ଼ିଲି । ନବଭାରତ ନିଜର ବୋଲି କରିଥିଲି; ଆଠ ବର୍ଷ ପରେ ଛାଡ଼ିବାକୁ ହେଲା । ଲେକାଲ ବୋର୍ଡ଼ ରାଜ-ନୀତିରେ ଉମର କଟିବ ବୋଲି ମଧ୍ୟ ଆଶା ଥିଲା । ସରକାରରେ ବସ୍ତିଥିଲି ପ୍ରଚାର ଅଫିସର ହୋଇ ପେନ୍‌ସନ୍ ମିଳିବ । କେତେ ଉପରକୁ ଉଠିଲି । ଶେଷରେ ପୁଣି ପେନ୍‌ସନ୍ ନେବାର ୬ ବର୍ଷ ଆଗରୁ ଚାକିରି ଛାଡ଼ି ଆସିଲି । ବର୍ତ୍ତମାନ ଯାହା କରୁଛି, ତାହା ଚରମ କରିବି ବୋଲି କହିବାରେ ଅବଶ୍ୟ ମୂଲ୍ୟ ନାହିଁ । କିନ୍ତୁ ଏ ବିଶ୍ୱାସରେ ଶାନ୍ତି ମିଳେ । ଯାହା ଆସେ ତାହା ଅପ୍ରତ୍ୟାଶିତ ଭାବେ ଆସିବାରେ ଆନନ୍ଦ ବି ମିଳେ ।

ମୋ କାଗଜକୁ ଯେ ଯେଉଁ କାରଣରୁ ପ୍ରଚାର କରନ୍ତୁ ପଛେ ସଂଧ୍ୟାରେ ସଂବଲପୁର ଛାଡ଼ିଲା ବେଳକୁ ୮୦ ଜଣ ଗ୍ରାହକ ହେଲେ । ଟଙ୍କା ଦେଢ଼ଶହ ମଧ୍ୟ ମିଳିଲା । ସନ୍ତୋଷ ଲାଗିଲା । ଘୋର ବର୍ଷା ଭିତରେ ସାଢ଼େ ଛ'ଟାରେ ସମ୍ବଲପୁର ଛାଡ଼ି ରାତି ୨ଟାରେ କଟକରେ ପହଞ୍ଚିଲି । ସଂବଲପୁରରେ ବହୁତ ଗ୍ରାହକ ହୋଇଥିବାରୁ ଅନୁଗୁଳ ଓ ଢେଙ୍କାନାଳରେ ରହିବାକୁ ଗଲାବେଳେ ଯେଉଁ କଳ୍ପନା କରିଥିଲି, ତାହା ଛାଡ଼ିଲି । (୨୮ । ୫ । ୧୯୫୬)

**ମହତାବଙ୍କୁ ପତ୍ର**

ଆଜି କାମ ଆଉ ଟିକିଏ ଆଗେଇ ନେବ ବୋଲି ଜଣେ ବସି ପ୍ରେସର କାମ କରାଉଥିଲୁ, ହଠାତ୍ ପ୍ରେସର ମୋଟର ଖରାପ ହୋଇଗଲା । ଯେତେ ଯତ୍ନ ନେଇ କାମ କରାଯାଇପାରେ ସେତେ ଯତ୍ନ ସେଥିରେ ମିଳ କଦାପି ହେଲା କରେ ନାହିଁ । କିନ୍ତୁ ଇଲେକ୍‌ଟ୍ରିକ୍ ଜିନିଷର ଭରସା ନଥାଏ । ସବୁ ଜିନିଷର ଏଇ ରବାଦ୍, ଇଲେକ୍‌ଟ୍ରିକଟା ଟିକିଏ ବେଗେ ଫଳ ଦେଖାଏ । ଆମ ମତେ ଆମେ ସବୁ କରୁଥାଉଁ, ତା ମତେ ସେ ହେଉଛି । ଏଥିପାଇଁ ଯେ ଆମେ ତୂନି ହୋଇ ବସିବା ତାହା କେହି କହୁ ନାହାନ୍ତି । କର୍ମ କରିବ ନାନା ମତେ, ଫଳିବ କର୍ମର ଅସ୍ୱଭେ । ମଟରଟିକୁ ଜଗନ୍ନାଥ ମିଶ୍ରଙ୍କ ପାଖକୁ ନେଲି । ସେ ବୃନ୍ଦାବନ ମିସ୍ତ୍ରୀ ପାଖେ ପହଞ୍ଚାଇ ଦେଲେ । ବୃନ୍ଦାବନ ମୋ ମଟରଟି ମରାମତି କରିବାକୁ ନେଲେ, ଓ ମୋତେ ଗୋଟିଏ ମଟର କାମ ଚଳାଇବାକୁ ଦେଲେ । ଆଜି ଦିନକର କାମ ଖରାପ ହୋଇଗଲା ; କିନ୍ତୁ କାଲିଠାରୁ କାମ ଚାଲିବ ତ ହେଲେ ! ମଟର ତିଆରି କରିବାକୁ ଅନ୍ତତଃ ସାତ ଦିନ ଲାଗିବ, ଭଡ଼ାରେ ଯଦି ଗୋଟାଏ ନ ମିଳିଥାନ୍ତା, ତାହାହେଲେ ପ୍ରେସ ବନ୍ଦ ହୋଇଯାଇଥାନ୍ତା । କାରଣ, ପଇସା ଥିଲେ ବି D.C. 1 HP ମଟର ବଜାରରେ ନାହିଁ । ସଂଧ୍ୟାରେ ସ୍ଥିର ହୋଇ ମଟର ଆଣି ଆସିଲି ।

ମହତାବଙ୍କଠାରୁ ଖଣ୍ଡିଏ ଚିଠି ପାଇ ଏତେ ବେଳକୁ ତାହା ତିନିଥର ପଢ଼ି ସାରିଲିଣି । ତାଙ୍କ ମନର ପ୍ରକୃତ ଭାବ ବୁଝି ପାରୁନାହିଁ । ସେ ଲେଖିଛନ୍ତି ଓଡ଼ିଶାର ଅବସ୍ଥା ବଦଳାଇବାକୁ ଯେତିକି ଆଧ୍ୟାତ୍ମିକ ଶକ୍ତି ପ୍ରୟୋଜନ, ସେତେ ତାଙ୍କଠାରେ ନାହିଁ ତେଣୁ ସେ ଓଡ଼ିଶା ବିଷୟରେ ଶୋକ କରି ଅନ୍ୟମନ ହେବେ । ଏ ମନୋଭାବ ଯଦି ସତ୍ୟ ହୋଇଥାଏ, ତେବେ ତ ଶାରୀରିକ ଓ ମାନସିକ ଅବସ୍ଥା ଭଲ ନୁହେଁ । ଡାକ୍ତର ଦେଖାଇଲେ ମନ୍ଦ ହୁଅନ୍ତା ନାହିଁ ! (୨୦ । ୬ । ୧୯୫୬)

**ନବଜୀବନ ଗ୍ରାହକଚିନ୍ତା :**

କାଲି କାମ ଭଲ ହୋଇ ନ ଥିବାରୁ ଆଜିକୁ କରାଦ କରିଥିଲି । ଆଜି ପ୍ରାୟ ୨ଟା ପର୍ଯ୍ୟନ୍ତ କାମ ହେଲା । ପ୍ରାୟ ଅଢ଼େଇ ଫର୍ମା ଛପା ହେଲା । ଗତ ସପ୍ତାହରେ ଯେପରି କାମ ଚାଲିଛି ସେହିପରି ଗୋଟିଏ ଯୋଡ଼ିଏ ମାସ ଚାଲିଲେ, ପ୍ରେସ୍‌ର ଅବସ୍ଥା ଟିକିଏ ବାଟକୁ ଆସିଯାନ୍ତା । ସବୁବେଳେ କର୍ମଚାରୀଙ୍କ ସଙ୍ଗେ ଲାଗିଲେ କାମ ହୋଇ ପାରିବ । ଗ୍ରାହକ ସଂଗ୍ରହରେ ଲାଗିଲେ ଗ୍ରାହକ ବି ହେବେ । ଦରୁ ତ ଏଇଟେ । ଜଣେ ଦଲେ ସବୁ ହେବ । ଜଣେ କେତେଯାଏଁ କରି ପାରିବ !

ଆଜି ଦି'ପହରେ ସଂକଳ୍ପ କଲି କାଲିଠାରୁ କଟକର ବିଶିଷ୍ଟ ଲୋକଙ୍କ ସଙ୍ଗେ ସପ୍ତାହେ ପର୍ଯ୍ୟନ୍ତ ବୁଲି ଦେଖା କରିବି । ଅନ୍ତତଃ କଟକ ସହରରେ ନବଜୀବନର ଗ୍ରାହକ ସଂଖ୍ୟା ପଚିଶ ଖଣ୍ଡେ ବଢ଼ାଇବି । ଏହି ସଂକଳ୍ପ କରି କାଲି କାହା କାହା ପାଖକୁ ଯିବି ବିଚାର କରୁଛି, ଏତିକି ବେଳେ ଦାଶରଥି ଓ ମାଧବ ଶତପଥୀ ଆସି ପହଞ୍ଚିଲେ ମାଧବ-

ନନ୍ଦଙ୍କ ଘରକୁ ଖେଳିବାକୁ ଯିବାକୁ । ବର୍ଷା ଆସିଲା । ମୋର ଶୋଇବା ଘରେ ପାଣି ପଶିଲା । ବର୍ଷା ଛାଡ଼ିବା ପରେ ମୁଁ ଲୁଗାପଟା ପିନ୍ଧି ବାହାରୁଛି, ଘରେ ପଶିଥିବା ପାଣିରେ ଗୋଡ଼ ଖସି ପଡ଼ିଲି । ବାଁ ଗୋଡ଼ର ଖୋଲ ମଚକି ହୋଇଗଲା । ଆଉ ଠିଆ ହୋଇ ପାରିଲି ନାହିଁ । ଗୋଡ଼ ହଲଚଲ କରି ହେଲା ନାହିଁ । ଖଟରେ ପଡ଼ିରହିଲି । ବନ୍ଧୁମାନେ ପାଖରେ ଟିକିଏ ବସି ଗଲେ । ଡାକ୍ତର କୁଳମଣି ମିଶ୍ରେ ସନ୍ଧ୍ୟାବେଳକୁ ଆସିଲେ । ରାଏ ଦେଲେ ପ୍ରାୟ ୫ । ୭ଦିନ ପଡ଼ି ରହିବାକୁ ହେବ । ଆଜି ସଭା ପାଇଁ କରିଥିବା ସଂକଳ୍ପ କୁଆଡ଼େ ଗଲା । 'ଆଉ କି ମାଗିବି ବର, ଯାହା ବାହାରିଛି ତାହା ଭିତରେ ଭର୍ତ୍ତି କର' ମନେ ପଡ଼ିଲା । (୧୪ । ୭ । ୫୭)

**ରାଜନୀତି ଚିନ୍ତା :**

ଇତି ମଧ୍ୟରେ ଖୋର୍ଦ୍ଧାରୁ ଭ୍ରମରବାବୁ, ବେଣୁଧର ବଳିୟାର ସିଂହ, ନୀଳମଣି ପଟ୍ଟନାୟକ, ମଥୁରି ରାମ ଓ ଗୋବିନ୍ଦ ପ୍ରଧାନରାଜଙ୍କ ସଙ୍ଗେ ମୋର ଖୋର୍ଦ୍ଧାରୁ ଆସେମ୍ବ୍ଲିକୁ ଠିଆ ହେବା କଥା ଆଲୋଚିତ ହୋଇଛି । ମୋର ଠିଆ ହେବାକୁ ମନ କି ନୁହେଁ ଏଇ କଥା ପ୍ରାୟ ସମସ୍ତେ ତାଙ୍କ ଆଡ଼ୁ ପଚାରିଲେ । ମହତାବ୍ ଯଦି ଆସନ୍ତି ତେବେ ସେ ମୋତେ ରାଜନୀତିକୁ ଟାଣିବାର ସଂଭାବନା ଅଛି । ସେ ନ ଆସିଲେ ମୁଁ ଠିଆ ହେବି ନାହିଁ ବୋଲି ସ୍ଥିର କରିଛି । ବର୍ତ୍ତମାନ ଯେଉଁମାନଙ୍କ ହାତରେ ଲଗାମ ଅଛି ତାଙ୍କ ସଙ୍ଗେ ରାଜନୀତି ଯାହା କରିବାରେ କୌଣସି ଶ୍ରେୟଃ ନାହିଁ । ଆସେମ୍ବ୍ଲି ମେମ୍ବର ହେଲେ ଟଙ୍କା ଦୁଇଶହ ମୁନାଫା ମିଳିବାହିଁ ସାର । ଏମାନେ ତ ମୋତେ ମନ୍ତ୍ରୀ କରିବେ ନାହିଁ; କଲେ ତାହା ବାରଶହ ଟଙ୍କାର ଚାକିରି ମାତ୍ର । ବନ୍ଧୁମାନଙ୍କୁ ବୁଝାଇ ଦେଲି ତହିଁରୁ ଅଧିକ ଦରମାର ଚାକିରି ମୁଁ ଛାଡ଼ି ଆସିଛି । ପେଟ ପୋଷିବାକୁ ବା ନାମ କରିବାକୁ ମୁଁ ରାଜନୀତି କରିବାକୁ ଚାହେଁ ନାହିଁ । (୧୯ । ୭ । ୫୭)

ପେଟ ପୋଷିବାର ଗୋଟିଏ ଉପାୟ ମୁଁ କରି ସାରିଲିଣି, ଓ ଯେତିକି ନାମ କରିଛି ତାହା ତ କମ ନୁହେଁ । ଯଦି ଲୋକେ ମୋତେ ଖୋଜିବେ ଓ ମୋର ମେମ୍ବର ହେବାଦ୍ୱାରା ଲୋକଙ୍କର କିଛି ମଙ୍ଗଳ ହୋଇ ପାରିବ ବୋଲି ମୋର ବିଶ୍ୱାସ ହେବ ମୁଁ ଠିଆ ହେବାକୁ ରାଜି ହୋଇ ପାରେ । ଭ୍ରମର ସାମନ୍ତରାୟଙ୍କ ପରାମର୍ଶ, ମୁଁ କଂଗ୍ରେସକୁ ଧରାଧରି କରି ଉପରି ଖଣ୍ଡେ ଟିକଟ ହାସଲ କରି ସକାଇବା ଦରକାର । ନୀଳମଣି ପଟ୍ଟନାୟକଙ୍କ ମତ: ଏଥର ଲୋକେ କଂଗ୍ରେସକୁ ଭୋଟ ଦେବେ ନାହିଁ, ଆପଣ ସ୍ୱାଧୀନ ଭାବେ ଠିଆ ହୁଅନ୍ତୁ ଓ ସେଥିପାଇଁ ଆଜିଠାରୁ ଯାଇ ଖୋର୍ଦ୍ଧାରେ ବୁଲନ୍ତୁ । ସମସ୍ତଙ୍କ ପରାମର୍ଶକୁ ହୁଁ ହୁଁ କରି ଗ୍ରହଣ କରି ନେଲି । ମୋର ମତ ଜଣାଇଲି ଯେ ଆଉ କିଛି ଦିନ ଅପେକ୍ଷା କଲା ପରେ ଦେଖାଯିବ । କିନ୍ତୁ ମନରେ ବିଚାରୁଛି, ଏଥର ରାଜନୀତିକୁ ଯିବାର ସଂଭାବନା ମୋର ନାହିଁ । ମୋତେ କେହି ନ ଡାକିଲେ, ମୁଁ ଆଗୁଡ଼ା ପଡ଼ି ଯାଇ ରାଜନୀତିରେ ପଶିବାକୁ ପୂର୍ବେ ପସନ୍ଦ କରି ନ ଥିଲି କି ଆଜି ପାରିବି ନାହିଁ ।

ବହୁତ ଦିନ ପୂର୍ବର କଥା । ୧୯୩୫ରେ ଖୋର୍ଦ୍ଧାର ବହୁତ ଲୋକଙ୍କଠାରୁ ଚିଠି ଓ ଟେଲିଗ୍ରାମ୍ ଆସିଥିଲା, ମୋତେ ଖୋର୍ଦ୍ଧାରେ ଠିଆ କରିବାକୁ । ସେତେବେଳେ କଂଗ୍ରେସ କମିଟି ଆମର ହାତରେ । ପଣ୍ଡିତ ନୀଳକଣ୍ଠ ଦାସ ସଭାପତି । ମୁଁ ଠିଆ ହେଲେ ତାଙ୍କର ଅସୁବିଧା । ଦରକାର ପଡ଼ିଲେ ସେ ମୋତେ ଇସ୍ତଫା ଦିଆଇ ନିଜେ ସେହି ସିଟ୍‌ରୁ ଆସେମ୍ବଲିକୁ ଆସି ପ୍ରଧାନ ମନ୍ତ୍ରୀ ହେବାର କଳ୍ପନା କରିଥାନ୍ତି । ସେ ମଧ୍ୟ ପ୍ରବର୍ତ୍ତାଇଲେ । ମୋର କିନ୍ତୁ ମନ ହେଲାନାହିଁ । ପ୍ରାଣନାଥ ପଟ୍ଟନାୟକ ଠିଆ ହେଲେ ଓ ମୁଁ ତାଙ୍କ ପାଇଁ ପ୍ରଚାର କଲି । ସେତେବେଳେ ଆସେମ୍ବଲିକୁ ଯାଇଥିଲେ ଜୀବନର ଗତି ଭିନ୍ନ ଦିଗ ଧରିଥାନ୍ତା । ହୁଏତ ମୁଁ ମିଳିତ ମନ୍ତ୍ରୀ ମଣ୍ଡଳ କରାଇ ଦେଇ ନ ଥାନ୍ତି; କିମ୍ବା ନୀଳକଣ୍ଠବାବୁ ଓ ଗୋଦାବରୀଶ ବାବୁଙ୍କ କଥାରେ ପଡ଼ି ସେଥିରେ ମିଶିଥାନ୍ତି । ଯାହା ହୋଇଛି ଭଲ ହୋଇଛି । ନିଜର ଅଭିଜ୍ଞତା ବଢ଼ାଇବାକୁ ମୋତେ ଗତ ୨୦ବର୍ଷ ଭିତରେ ଯେଉଁ ସୁଯୋଗ ସବୁ ମିଳିଲା ତାହା ସେତେବେଳେ ରାଜନୀତିରେ ପଶିଥିଲେ ମିଳିଥାନ୍ତା ବୋଲି ମନେ ହେଉନାହିଁ । (୩୦ । ୬ । ୫୬)

## ସରକାରୀ ଛୁଟି ବଢ଼ି ବଢ଼ି ଚାଲିଛି :

ଆଜି ତିଲକ ମହାରାଜଙ୍କ ସ୍ମୃତିରେ ଗୋଟାଏ ସରକାରୀ ଛୁଟି କରାଯାଇଛି । ସ୍ୱାଧୀନତା ପ୍ରାପ୍ତିର ୯ବର୍ଷ ପରେ ହଠାତ୍ତୁ ତିଲକ ମହାରାଜଙ୍କ ସ୍ମୃତି ଭାରତ ସରକାରଙ୍କର ମନେ ପଡ଼ିଯିବା ଆଶ୍ଚର୍ଯ୍ୟର କଥା ନୁହେଁ । ମରାଠାମାନଙ୍କର ବମ୍ବେ ସହର ସଂପର୍କରେ ଯେଉଁ ବିକ୍ଷୋଭ ହୋଇଛି ତାକୁ ଦାବିବା ପାଇଁ ଏ ବୁଦ୍ଧି ଆସିଥିବା ପରି ମନେହୁଏ । ଯେଉଁ ଉଦ୍ଦେଶ୍ୟରେ ହୋଇଥାଉ ପଛେ, ସରକାର ଯେଉଁ ବେଗରେ ଛୁଟିର ସଂଖ୍ୟା ବଢ଼ାଇବାରେ ଲାଗିଛନ୍ତି ସେଥିରେ କାଳକ୍ରମେ ସମଗ୍ର ବର୍ଷଟି ଏକ ଲମ୍ବା ଛୁଟିରେ ପରିଣତ ହୋଇଯିବାର ଆଶଂକା ହେଲାଣି । କାମ ବନ୍ଦ କରି ସ୍ମୃତିପୂଜା କରିବା ପରିବର୍ତ୍ତେ, ବଡ଼ଲୋକଙ୍କ ସ୍ମୃତିରେ ତାଙ୍କ ଜୀବନର କାର୍ଯ୍ୟକୁ ଆଗେଇବା ପାଇଁ ବୋଧହୁଏ ଉଦ୍ୟମ କରାଯାଇ ପାରନ୍ତା । କ୍ରମେ ସରକାରଙ୍କ ମନକୁ ଏହା ଆସିବ ବୋଲି ଆଶା ହେଉଛି ।

ଆଜି ମଧ୍ୟ ନୀଳ ଅସିଲା ନାହିଁ । ସେ କୁଆଡ଼େ ଗଲା ତାହାର କୌଣସି ଖବର ପାଇଲି ନାହିଁ । ଦନୀତନ ଆସିଲା ଓ ଗୁଡାଏ କାମ ବି କଲା । କିନ୍ତୁ ଅତି ଅଳ୍ପ ବୟସର ପିଲାଟାଏ, କେତେ ବା କରିବ ।

ଆଜି ଗୋବିନ୍ଦ ତା' ଝିଅକୁ ଧରି ଆସିଲା, ଗୋଡ଼ ଫୁଲାର ଚିକିତ୍ସା ସକାଶେ ।

(୨୩ । ୭ । ୧୯୫୬)

## ଗୋଦାବରୀଶଙ୍କ ମୃତ୍ୟୁ :

ଆଜି ସକାଳ ୮ । ୨୫ ମିନଟ୍‌ରେ ଗୋଦାବରୀଶ ବାବୁ ଚାଲିଗଲେ । ସେ ମରଣାନ୍ତକ ହୋଇ ପଡ଼ିଥିଲେ । ଜୀବନ ତମାମ ଭୋଗି ଭୋଗି ଶେଷରେ ବଡ଼ କଷ୍ଟରେ ମଲେ । ତାଙ୍କର ଯୋଗ୍ୟତାର ପୂର୍ଣ୍ଣ ଉପଯୋଗ ଦେଶ କରି ପାରିଲା ନାହିଁ । ତାଙ୍କର ଶବ

ଶୋଭାଯାତ୍ରାରେ ନେଇ ପଣ୍ଡିତ ଗୋପବନ୍ଧୁଙ୍କ ସମାଧି ପାଖରେ ଦାହ କରିବାର ପ୍ରସ୍ତାବ ହୋଇ, ତାଙ୍କୁ ସତ୍ୟବାଦୀ ନିଆ ହୋଇଛି । (୨୨ । ୭ । ୫୭)

## ଭାରତ ଛାଡ଼ ଦିବସ

ଆଜି ଭାରତ-ଛାଡ଼ ଦିବସ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ୧୯୪୨ର ଏହି ଦିନ ଭାରତ ସଂକଳ୍ପ କରିଥିଲା ଇଂରେଜଙ୍କୁ ଭାରତ ଛାଡ଼ିବାକୁ ହେବ । ତିନି ବର୍ଷରେ ଇଂରେଜ ସରକାର ଏ କଥାର ଗୁରୁତ୍ୱ ଅନୁଭବ କଲେ ଓ ୫ ବର୍ଷରେ ଭାରତକୁ ସ୍ୱାଧୀନ ହେବାକୁ ଛାଡ଼ି ଦେଇ ବାହାରି ଗଲେ । ବର୍ତ୍ତମାନ ୯ ବର୍ଷ ହେଲା ଆମେ ସ୍ୱାଧୀନ ; କିନ୍ତୁ ସ୍ୱାଧୀନତାର କେଉଁ ମହତ୍ତ୍ୱ ଆମେ ରଖିଥାଉଁ ! ଆଜିର ଏ ଦିନଟି ପାସୋର ହୋଇ ଗଲଣି, ମହାତ୍ମା ଗାନ୍ଧୀ ମଧ୍ୟ ପାସୋର ଗଲେଣି । ସରକାରଙ୍କ ତୋଷାମୋଦକାରୀ କେତେଜଣ ସ୍ୱାଧୀନତା ଦିବସ ଦିନ ପତାକା ଉଡ଼ାଇବେ । ଏ ସବୁ ଦିନରେ ୫୦ । ୧୦୦ ଲୋକଙ୍କୁ ଘେନି ସ୍ୱରାଜ୍ୟାଶ୍ରମରେ ସଭା ହେଉଛି । ଯେଉଁମାନେ ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରି ଲୋକଙ୍କ ଆଶା ଆକାଂକ୍ଷା ପୂରଣ କରିବାକୁ ବସନ୍ତେ, ସେମାନେ କ୍ଷମତା ଓ ମନ୍ତ୍ରୀପଦ ପାଇଁ ଘିଚା ଘିଚି ହେଉଛନ୍ତି । ଏହି ରୀତି ଯଦି ଚାଲେ, ୧୯୪୭ଠାରୁ ଆଜି ସୁଦ୍ଧା ଧାରାବାହିକ ଭାବେ ଲୋକଙ୍କର ଯେଉଁ ଦୁର୍ଗତି ହେଉଛି ସେହି ଅଧୋଗତି ଯଦି ଲାଗିରହେ ତେବେ ଆଉ ପାଞ୍ଚ ବର୍ଷ ପରେ ଅବସ୍ଥା କ'ଣ ହେବ, ବିଚାରିଲେ ଶିହରଣ ହେବାର କଥା । ନୈରାଶ୍ୟ ଆମ ଧର୍ମରେ ମହାପାତକ । ଏଥିରୁ ବାହାରିବାକୁ, ଅବସ୍ଥା ସଂଶୋଧନ କରିବାକୁ ସକ୍ରିୟ ଉଦ୍ୟମ କରିବାକୁ ହେବ । ଆତ୍ମବଳ ଭିତରେ ନା ବାହାରେ, ଏହି ସମସ୍ୟା !

(୯ । ୮ । ୧୯୫୭)

## ଅରୁଣୋଦୟ ପ୍ରେସ

ଆଜି ସକାଳୁ ଅରୁଣୋଦୟ ପ୍ରେସକୁ ଯାଇ ଘର ଭିତର ବୁଲି କରି ଦେଖିଲି । ପ୍ରକାଣ୍ଡ ଜାଗା । ଦୁଇଜଣ ସାଧାରଣ ଲୋକ ଏ ଅନୁଷ୍ଠାନକୁ ଆରମ୍ଭ କରିଥିଲେ । ଅନୁଷ୍ଠାନଟି-ଦ୍ୱାରା ବହୁତ ଉପକାର ହୋଇଥିଲା । ଓଡ଼ିଆଙ୍କ ଭିତରେ ପୁରାଣ ଓ ପୁରୁଣା ସାହିତ୍ୟର ପ୍ରଚାରରେ ଏ ଅନୁଷ୍ଠାନ ଖୁବ୍ ସାହାଯ୍ୟ କରିଥିଲା । ମୋଟରେ ୭୩ ବର୍ଷ ଚଳି ଏହି ବର୍ଷ ଅନୁଷ୍ଠାନଟିର ଅନ୍ତିମ ସମୟ ଆସି ପହଞ୍ଚିଲା । ଉତ୍ତରାଧିକାରୀମାନେ ଘର ପର୍ଯ୍ୟନ୍ତ ବିକି ଦେଇ ଶେଷ ସମ୍ବଳ ଖାଇ ଖିଅ ଶେଷ କରିଦେବାରେ ଲାଗିଛନ୍ତି । ମୁଁ ଡବଲ ଡିମାଇ ମେସିନ୍ କିଣିଦେଲି । ମୋ ଆଗରୁ ସମାଜ ଓ ରାଧାରମଣ ପ୍ରେସ ସବୁ ନେଇ ଯାଇଥିଲେ । ରାଧାରମଣ ଖୁବ୍ ଶସ୍ତାରେ ବହୁତଗୁଡ଼ିଏ ଭଲ ଜିନିଷ ପାଇ ଗଲେ ବୋଲି ଶୁଣିଲି । ଯାହାକୁ ଯାହା ମିଳିବାର ଥାଏ । ମୋତେ ଯାହା ମିଳିଲା ତହିଁରେ ବେଶ୍ ଚଳିବ । ଲକ୍ଷ୍ମୀଧର ଗରବଡ଼୍ କହିଲେ ତାଙ୍କୁ ଦିନ ଆଗରୁ କହିଥାନ୍ତି, ତେବେ ସେ ଆଉ କିଛି କମ୍‌ରେ କରାଇ ଦେଇପାରିଥାନ୍ତେ । କମ୍ ବେଶୀରେ ବିଶେଷ କ'ଣ ଯାଏ ଆସେ ! ହୁଏତ ଟଙ୍କା ୫ଶହ ଅଧିକ ପଡ଼ିଲା । ମୁଁ ତ କିଛି ବାପ ସଂପତ୍ତି ଉଡ଼ାଇ ଦେଉନାହିଁ । ନିଜ ଉଦ୍ୟମରେ ଯାହା

ରୋଜଗାର ହେଉଛୁ ତାକୁଲ ଖର୍ଚ୍ଚ କରୁଛୁ ଓ ବେପାରରେ ଖଟାଉଛୁ । ଯେତେ ବରବାଦ କଲେ ବି ପିଲାଙ୍କ ପାଇଁ ତ କିଛି କିଛି ରଖିଯିବ । (୧୯ । ୮ । ୧୯୫୬)

**ସତ୍‌ସଙ୍ଗ**

ଆଜି ଦିନଟି ମୋତେ ବଡ଼ ପବିତ୍ର ଲାଗିଲା । ପଣ୍ଡିତ ଜଗନ୍ନାଥ ରଥ ଜାତି ଦୃଷ୍ଟିରେ ଓଡ଼ିଶାର ସର୍ବୋଚ୍ଚ ଗୋଷ୍ଠୀର ; ପଣ୍ଡିତ ଆନନ୍ଦ ମିଶ୍ରେ ଓଡ଼ିଶାର ସବୁଠାରୁ ବଡ଼ ପଣ୍ଡିତ ଓ ବ୍ରାହ୍ମଣର ତାତ୍ତ୍ୱିକ ଅର୍ଥରେ ରାଜ୍ୟର ସର୍ବଶ୍ରେଷ୍ଠ ବ୍ରାହ୍ମଣ । ଏ ଦୁହେଁ ଆଜି ମୋ'ର ଅତିଥି ଓ ଦୁହିଙ୍କର ମୋ'ପ୍ରତି ଆନ୍ତରିକ ଶ୍ରଦ୍ଧା ଅଛି ! ଏହାଠାରୁ ମୋର ବଡ଼ ଭାଗ୍ୟ କ'ଣ ହୋଇ-ପାରେ । ଏହି ଭାଗ୍ୟ ମୋର ଜୀବନ ନିରବଚ୍ଛିନ୍ନ ଭାବେ ରହିବ, ତାହାହିଁ ମୋର ଏକ ମାତ୍ର କାମ୍ୟ ।

ସକାଳ ଓଳି ୯ଟାଠାରୁ ପ୍ରାୟ ଦେଢ଼ ଘଣ୍ଟାଏ ପର୍ଯ୍ୟନ୍ତ ତୃତୀୟସ୍କନ୍ଧରୁ ଭଗବାନ କପିଳ ଓ ଦେବହୂତିଙ୍କ ସଂବାଦରୁ ଭକ୍ତିଯୋଗ ସଂପର୍କୀୟ କେତୋଟି ଶ୍ଳୋକ ପଣ୍ଡିତ ଆନନ୍ଦ ମିଶ୍ରଙ୍କଠାରୁ ବୁଝିଲି । ତାପରେ ପଣ୍ଡିତମାନେ ବିଶ୍ରାମ କଲେ ଓ ନିଜ ନିଜ କାର୍ଯ୍ୟରେ ଟିକିଏ ଦାଣ୍ଡକୁ ବାହାରିଲେ । ମୋର ତ ଦାଣ୍ଡରେ କାମ କିଛି ନାହିଁ । ମୁଁ ଦାଶରଥି ପ୍ରଭୃତିଙ୍କ ସଙ୍ଗେ ଖେଳରେ ଲାଗିଲି । ଏଇ ଖେଳ ତ ମୋ ଦୃଷ୍ଟିରେ ଧର୍ମର ଗୋଟିଏ ଅଙ୍ଗ । ୭ଟା ବେଳକୁ ଖେଳ ସାରି, ଗାଧୁଆ ପାଧୁଆ କରି ଭାଗବତ ପାରାୟଣ ଓ ଚର୍ଚ୍ଚାରେ ଲାଗିଲୁ ଯେ ରାତି ପ୍ରାୟ ୧୨ଟା ବେଳକୁ ସରିଲା । (୨୮ । ୮ । ୧୯୫୬)

ପଣ୍ଡିତ ଜଗନ୍ନାଥ ରଥଙ୍କୁ ମୁଁ ଏ ପର୍ଯ୍ୟନ୍ତ ବୋଧହୁଏ ଭଲକରି ଚିହ୍ନି ନାହିଁ । ସେ ତାଙ୍କର ଆଭିଜାତ୍ୟର ବଡ଼ାଇ କରୁଥିବାର ପ୍ରଥମ ପରିଚୟ ବେଳେ ମୁଁ ଜାଣିଛି । ମୁଁ ସ୍କୁଲରେ ଥିବାବେଳେ ଅବା ସେ ମୋଦ୍ୱାରା ସାମାନ୍ୟ ଉପକୃତ ହୋଇଥିଲେ ; କିନ୍ତୁ ପୂର୍ବେ ପାଇଥିବା ଅନୁଗ୍ରହ ଯୋଗୁଁ ଚିରକାଳ କୃତଜ୍ଞ ରହିବା ଲୋକଙ୍କ ସଂଖ୍ୟା ବିରଳ । ସେଇ ଅନୁଗ୍ରହକୁ ଯଦି ସେ ପସରି କରିଥାନ୍ତେ ତେବେ ମୋର ସ୍ଥଳାଭିଷିକ୍ତ ଜଗତ୍ବନ୍ଧୁ ବାବୁଙ୍କ ପଛରେ ସେ ଗୋଡ଼ାଇ ଥାନ୍ତେ । ତା ସେ କରୁ ନାହାନ୍ତି । ପ୍ରେସ ଆରମ୍ଭ ସମୟରେ ମୁଁ ପଣ୍ଡିତଙ୍କୁ ଯଜମାନ କରି ବିଯାଇ କର୍ମ ଆରମ୍ଭ କରିଥିଲି । ଏ ବର୍ଷ ତାଙ୍କର ତାହା ମନେ ଥିଲା । ପଣ୍ଡିତେ ଏଥର ପାଣି ମୁନ୍ଦାଏ ମାତ୍ର ପିଇ ଦିନସାରା ଉପବାସ ରହିଲେ । ପଣ୍ଡିତ ଆନନ୍ଦ ମିଶ୍ରେ ଜଳଖିଆ କଲେ, କିନ୍ତୁ ଜଗନ୍ନାଥ ରଥଙ୍କୁ ଶରୀବୋଉ ପ୍ରଭୃତି ଜଳଖିଆ ଖୁଆଇ ପାରିଲେ ନାହିଁ । ପ୍ରତ୍ୟକ୍ଷ ଭାବରେ ସେ ମୋର ବିଶେଷ କିଛି ଉପକାର କରି ପାରୁ ନାହାନ୍ତି; କିନ୍ତୁ ତାଙ୍କଠାରୁ ମୋତେ କାମ ପାଇଁ ପ୍ରେରଣା ମିଳୁଛି । (୩୦ । ୮ । ୧୯୫୬)

**ଶେଷ ମୁହୂର୍ତ୍ତ ଲେଖା**

ଆଜି ବିଶ୍ୱାସ ହେଲା ଯେ କାଲି ରାତି ସୁଦ୍ଧା ନବଜୀବନ ପ୍ରକାଶ ହୋଇପାରିବ । ଏ ହପ୍ତାଯାକ ଗାଲି ପ୍ରୁଫ୍ ଦେଖିବାରେ ଓ ପ୍ରେସର ଅନ୍ୟାନ୍ୟ କାର୍ଯ୍ୟ ବୁଝିବାରେ ଏତେ

ବ୍ୟସ୍ତ ଥିଲି ଯେ ନବଜୀବନରେ ମୋର ଲେଖିବାକୁ ଥିବା ତିନୋଟି ବିଷୟ—ସ୍ୱପ୍ନ ସଂପାଦକଙ୍କ ସଂଗ୍ରହ, ଦେବୀ ଓ ଦୁର୍ଭିଗା ଓ ସଂପାଦକୀୟରୁ କୌଣସିଟା ଲେଖିପାରିଲି ନାହିଁ । ଆଜି ରାତିରେ କାମ ସାରି ସମସ୍ତେ ଯିବା ପରେ, ଲେଖିବାକୁ ବସିଲି । ସ୍ୱପ୍ନ ସଂପାଦକଙ୍କ ସଂଗ୍ରହ ହେଁ ଲେକ୍ୟ ବାବୁଙ୍କୁ ଡାକଦେଲି । ତାଙ୍କର ବର୍ଣ୍ଣାଶୁଦ୍ଧି ବେଶୀ ହେଉଥିଲେ ହେଁ ସେ ପ୍ରାୟ ଦୁଇଟା ପର୍ଯ୍ୟନ୍ତ ବସି ଲେଖିଲେ । ଲେଖାଟି ସରିବା ପରେ ପଢ଼ି ଦେଖିଲି, ଭଲ ହୋଇଛି । ତା' ପରେ ପଣ୍ଡିତଙ୍କୁ ଡାକି ଗୋଟାଏ ଫର୍ମା ପ୍ରୁଫ୍ ଦେଖି, ଏକୁଟିଆରେ ଦେବୀ ଓ ଦୁର୍ଭିଗାରେ ଲାଗିଗଲି । ପ୍ରାୟ ୫ଟା ବେଳକୁ ତାହା ସରିଲି । ତିନବେଳେ ସଂପାଦକୀୟ ଲେଖିବାକୁ ରଖି ଶୋଇବାକୁ ଉପରକୁ ଗୁଲିଗଲି । ଦେଢ଼ ଘଣ୍ଟା ଶୋଇଲି । ଶରୀରୋଡ଼ର ସବୁବେଳେ ଆପତ୍ତି, ଆଗରୁ ସଇଥିଲିଆରେ ଲେଖିଲେ ଏପରି ରାତି ଅନିଦ୍ରା ହେବାକୁ ହୁଅନ୍ତା ନାହିଁ । କିନ୍ତୁ ଏଇପରି ଶେଷ ମୁହୂର୍ତ୍ତରେ ନ ଲେଖିଲେ ଲେଖିବାରେ ମୋର ସନ୍ତୋଷ ଆସୁନାହିଁ । (୪ । ୧ । ୧୯୫୬)

**ଭଗବତ ପାରାୟଣ :**

ଆଜି ସକାଳୁ ସମ୍ପାଦକୀୟ ଲେଖିବାକୁ ଆରମ୍ଭ କଲି । ଦୁଇ ତିନି ଘଣ୍ଟାରେ ସେଥିରେ ଦୁଇ ଘଣ୍ଟା ଲେଖାଏଁ ପ୍ରୁଫ୍ ଦେଖିବାକୁ ପଡ଼ୁଥାଏ । ସନ୍ଧ୍ୟା ୭ଟା ସୁଦ୍ଧା ମୋର ଯେତିକି ଲେଖିବାର କଥା ସେତିକି ହୋଇଗଲା । ୯ଟା ପର୍ଯ୍ୟନ୍ତ ପ୍ରୁଫ୍ ଦେଖି ଦାଣ୍ଡକୁ ଟିକିଏ ବାହାରିଲି ଓ ଗୁଲି ଗୁଲି ହୋଇ ମୋ ସାମନା ଦେବୀଘର ପର୍ଯ୍ୟନ୍ତ ଗଲି । ସେଠାରେ ଭାଗବତ ଲାଗିଛି । ଅଷ୍ଟମ ସ୍କନ୍ଧର ଅମୃତ ମନ୍ଥନ ପର୍ଯ୍ୟାୟରେ ମୋହିନୀ ରୂପରେ ଭଗବାନ ମହାଦେବଙ୍କୁ ମୋହିବା କଥା ପଢ଼ଥାଏ । ଯେ ପଢ଼ୁଥାଏ ତାକୁ ବିଷୟଟି ଜଣାନାହିଁ । ଖାଲି ଅକ୍ଷର ଚହ୍ଲି ପଢ଼ି ଯାଉଥାଏ ମାତ୍ର । ସେ ବିଷୟଟି ସରି ବଳି ବାମନ ଉପାଖ୍ୟାନ ଆରମ୍ଭ ହେବାରେ ମୁଁ ତାଙ୍କ ମାଗି ନିଜେ ପଢ଼ିଲି ଓ ମୋତେ ଯେତେ ଦୂର ଜଣା, ତତ୍ତ୍ୱ ବୁଝାଇବାକୁ ଆରମ୍ଭ କଲି । ଶ୍ରୋତାମାନେ ଖୁବ୍ ଖୁସୀ ହେବା ପରି ଜଣାଗଲା । ମୋ'ର ମନେ ହେଲା ଭାଗବତ ଯଦି ଏଇପରି ଆଲୋଚିତ ହୁଅନ୍ତା ତେବେ ଲୋକଶିକ୍ଷା ଶତ ଅଗ୍ରସର କରନ୍ତା । ଏହି ଭାଗବତର ପ୍ରଭାବରେ ଦିନେ ଓଡ଼ିଶାରେ ଯେଉଁ ଆଦର୍ଶ ପ୍ରକଟିତ ହୋଇଥିଲା ସେଥିରେ ଆମ ଦେଶ ପୁଣ୍ୟ ଭୂମି ହୋଇଥିଲା । ପୁଣି ତ ପୁଣ୍ୟ ଭୂମି ହୁଅନ୍ତା ; ଏ କାର୍ଯ୍ୟରେ ଭଗବାନ ଯଦି ମୋତେ ନିମିତ୍ତ କରନ୍ତେ ତେବେ ମୋର ଜୀବନ କୃତାର୍ଥ ହୁଅନ୍ତା ।

(୫ । ୧ । ୧୯୫୬)

ଆଜି ସକାଳେ କାଗଜ ବାହାର ପଢ଼ିବାରେ ବଡ଼ ସନ୍ତୋଷ ଲାଗିଲା । ୩୪ ତାରିଖରେ ମନକୁ ଟିକିଏ ମାରି ଦେଇଥିଲେ କାଗଜ ବାହାରିବାକୁ ଆଉ ୩୪ ଦିନ ଲାଗିଥାନ୍ତା ଓ ପୁଣି ପୋଷ୍ଟାଲ୍ ଡିରେକ୍ଟରଙ୍କଠାରୁ ଅନ୍ୟ ଦିନ କାଗଜ ପଠାଇବା ନିମନ୍ତେ ଅନୁମତି ଆଣିବାକୁ ପଡ଼ିଥାନ୍ତା । ଏପରି ଅନୁମତି ପ୍ରାର୍ଥୀ ନ ହୋଇ ଯଥାସମୟରେ କାଗଜ ଖଣ୍ଡି ବାହାର କରିବାକୁ ମୁଁ ଯଥାସାଧ୍ୟ ଚେଷ୍ଟା କରୁଛି । ଏଥରର କାଗଜଟିରେ ଅଧ୍ୟାପକଙ୍କ

ଭିତରୁ ବିଶିଷ୍ଟ କେହି ଲେଖି ନ ଥିଲେ ହେଁ କାଗଜଟି ଭଲ ଜଣାପଡ଼ିଲା । ଯେଉଁମାନେ କେବଳ ନାମ ଦେଖି ପଢ଼ନ୍ତି ସେମାନଙ୍କୁ ଏ ସଂଖ୍ୟା ବିଶେଷ ଆକୃଷ୍ଟ କରି ନ ପାରେ ; କିନ୍ତୁ ଯେଉଁମାନେ ବିଷୟବସ୍ତୁର ମୂଲ୍ୟ ନିରୂପଣ କରିବାକୁ ସମର୍ଥ ସେମାନେ ଏ ସଂଖ୍ୟାଟିକୁ ନିଶ୍ଚୟ ଆଦର କରିବେ ।

ଆଜି ସାଢ଼େ ନ'ଟାରେ ପୁଣି ଦେବୀ ଘରକୁ ଗଲି । ବଳି ବାମନ ଉପାଖ୍ୟାନ ସରିଲା । ଅଷ୍ଟମ ସ୍କନ୍ଧ ମଧ୍ୟ ସରିଲା । ଶ୍ରୋତାମାନେ ଖୁବ୍ ମନ ଦେଇ ତ ଶୁଣିଲେ, ଆଜି ମୋ'ର ମନରେ ଉଦୟ ହେଲା, ଏଇ ପୀଠରେ ଭାଗବତର ପ୍ରତିଷ୍ଠା ବଢ଼ନ୍ତା କି ? କିପରି ଭାବରେ ପୂର୍ଣ୍ଣ ବଢ଼ାଇହେବ ସେ କଥାର ଯୋଜନା ପ୍ରକାଶ କରି ଦେଇ, ଦବି ଗଲି—ବୋଧହୁଏ ମୁଁ ବେଶୀ ଲୁଢ଼ାଏ ଆଶା କରୁଛି ! ବିଶେଷ କିଛି ହେଉ ବା ନ ହେଉ ଜଗନ୍ନାଥ ଦାସ ଭାଗବତ ମୁଁ ପଢ଼ି ନାହିଁ, ସେ ଅଭାବଟା ତ ପୂରଣ ହୋଇଯିବ । (୭ । ୯ । ୫୭)

**ସାଇ କମିଟି :**

ଆଜି ଦେବୀଘରଠାରେ ସାଇବାବାଙ୍କର ଗୋଟିଏ ସଭା କରାଇବାକୁ ଉଦ୍ୟମ ହୋଇ ମୋତେ ନିମନ୍ତ୍ରଣ ହୋଇଥିଲା । ମୁଁ ପୁଣି ଡକରା ହେବାରୁ ଗଲି । ମୋତେ ସଭାରେ ସଭାପତି କଲେ । ସାଇବାବା ଦୁଇ ଦଳ ହୋଇଛନ୍ତି । ଗୋଟିଏ ଦଳରେ ଅଧିକାଂଶ ଲୋକେ, ଆର ଦଳରେ ଜଗନ୍ନାଥ ରାଓ ଓ ତାଙ୍କର ପ୍ରିୟ ଲୋକ ତିନି ଚାରି ଜଣ । ସଭାରେ ଭାରି ଗଣ୍ଡଗୋଳ ହେଲା । ଅଧିକାଂଶଙ୍କ ମନ ମନାଇବା ସକାଶ ଜଗନ୍ନାଥ ରାଓଙ୍କ ଚାରି ପାଞ୍ଚ ଜଣଙ୍କୁ ଟିକିଏ ରାଗ ହେଲା । ଫଳ ହେଲା ; ଜଗନ୍ନାଥ ରାଓ ପୂର୍ବପରି ମେନେଜର ରହିଲେ । ହିସାବ ପତ୍ର ଲୋକଙ୍କୁ ଦେଲେ । ଏଥର ଦେବୀଙ୍କ କାମ ଆଜି ପର୍ଯ୍ୟନ୍ତ ହୋଇ ନ ଥିଲା । କାଲି ସକାଳୁ ଆରମ୍ଭ ହେବାର କଥା ହେଲା । ଜଗନ୍ନାଥ ରାଓଙ୍କ ପକ୍ଷରେ ଜଣେ ଯୁବକ ମୋ' ପ୍ରତି ଟିକିଏ ଅଭଦ୍ରତା ଦେଖାଇଲେ । ଭାରି ରାଗ ଲାଗିଥିଲା । କିଛି ସମୟ ପରେ ମନକୁ ଶାନ୍ତ କଲି । ଜଗନ୍ନାଥ ରାଓ ଲୋକଟି ପ୍ରତି ମୋ'ର ସମ୍ମାନ ଆସିଲା । ସେ ସଭାରେ ବହୁତ ଗାଳି ସହି ମଧ୍ୟ ବଡ଼ ଥଣ୍ଡା ରହିଲେ । (୧୦ । ୯ )

ସବୁ ଦିନ ପରି ଆଜି ମଧ୍ୟ ଭାଗବତ ପଢ଼ିବା ପାଇଁ ଦେବୀଘରଠିକୁ ଗଲି । ମୁଁ ଭାଗବତ ପଢ଼ିବା ଦିନୁ ଏଠାରେ ଭାଗବତ କରାଉଥିବା ଲୋକଙ୍କର ଭାଗବତ ପ୍ରତି ମମତା ବଢ଼ି ଯାଇଛି । ଭାରି ଆଗ୍ରହରେ ଶୁଣୁଛନ୍ତି, ଏବଂ ସାମାନ୍ୟରେ ଶ୍ରୋତାଙ୍କ ସଂଖ୍ୟା ମଧ୍ୟ ବଢ଼ିଛି । କାଲି ମୋର ଗାଁକୁ ଯିବାର ଥିବା କଥା ସେମାନେ ଜାଣିଥିଲେ । ତେଣୁ ପ୍ରସ୍ତାବ କଲେ ଯେ କାଲି ସେମାନେ ମାତ୍ର ଗୋଟିଏ ଅଧ୍ୟାୟ ବିଧିରକ୍ଷା ପାଇଁ ପଢ଼ି ବନ୍ଦ କରି ଦେବେ । ମୁଁ ଆସିଲେ ପୁଣି ଆଲୋଚନାମୂଳକ ପଢ଼ା ଆରମ୍ଭ ହେବ । ଏପରି ଶ୍ରଦ୍ଧାରେ ମୋର ଆଗ୍ରହ ଯେ ବଢ଼ିବ ଏଥିରେ ବିଚିତ୍ର କ'ଣ ? ହଠାତ୍ ଲୁଡ଼ାଏ ଲୋକ ଭାଗବତ ତତ୍ତ୍ୱରେ ସେ ପ୍ରଭାବିତ ହୋଇଯିବେ ଏହା ଅସ୍ୱାଭାବିକ । କିନ୍ତୁ ଯଦି ୩।୪ ଜଣ ଆନ୍ତରିକ ଶ୍ରଦ୍ଧା ଦେଖାନ୍ତି

ତେବେ ମହାଫଳ । ଆଜି କାଲିର ରାଜନୀତିକ ଆନ୍ଦୋଳନରେ ତାଳି ମାରୁଥିବା ହଜାରେଙ୍କ ଅପେକ୍ଷା ଏପରି ଶ୍ରଦ୍ଧାବାନ୍ ତିନି ଚାରି ଜଣ ବହୁତ ଅଧିକା କାମ ଦେଖାଇ ପାରିବେ ।

(୧୨ । ୯ । ୫୭)

**କଂଗ୍ରେସ**

ଆଜି ଦି'ପହରେ ଶ୍ରୀମତୀ ସରଳା ଦେବୀ ଆସି ଆମ ଘରେ ବହୁତ ସମୟ ରହିଲେ, ଓ ମୁଁ ରାଜନୀତିକୁ କ ବାହାର କାହିଁକି ରହି ହୋଇ ରହିଛି ସେ ବିଷୟରେ ପ୍ରଶ୍ନ କଲେ । କହିଲେ, ଖାପୁବାବୁ କହୁଥିଲେ, 'ଚନ୍ଦ୍ରମଣିବାବୁ ଖଣ୍ଡେ ଚିଠି ଲେଖନ୍ତୁ କଂଗ୍ରେସରେ ମିଶିବେ ବୋଲି, ତେବେ ଆମେ ତାଙ୍କ ବିଷୟ ବିଚାର କରିବୁ ।' ସେଥିପାଇଁ ମୁଁ ଆଦୌ ପ୍ରସ୍ତୁତ ନୁହେଁ ବୋଲି ତାଙ୍କୁ ଜଣାଇ ଦେଲି । ଯଦି ମୋର ସେବା କାହାର ଦରକାର ତେବେ ସେ ମୋତେ ଡାକନ୍ତୁ, ମୁଁ ଯିବାକୁ ପ୍ରସ୍ତୁତ ଅଛି । ଏତିକରେ କଥାଟି ସରିଲା ବୋଲି ମୁଁ ମନେ କଲି, କିନ୍ତୁ ଶଶୀ ବୋଉର ମନ ଯେ, ମୋ କଥାରୁ ସରଳା ଦେବୀ ବୁଝିଥିବେ ଯେ ମୁଁ କଂଗ୍ରେସରେ ପଶିବାକୁ ବ୍ୟାକୁଳ । କେଜାଣି ମୁଁ ଲେଖିଦେଲେ ମୋର ମାନ ତଳକୁ ହୋଇଯିବ, ମୁଁ ସେଇ ଯୋଗୁ ଆଦର ଖୋଜୁଛି । ଏ କଥା ମୋତେ ବଡ଼ ଅଦ୍ଭୁତ ଲାଗିଲା । ପ୍ରକୃତରେ ଆସେମ୍ବ୍ଲିକୁ ଯିବାକୁ କିମ୍ବା ମନ୍ତ୍ରୀ ହେବାକୁ ମୋର ମନ ହେଉ ନାହିଁ । ମହତାବ ପ୍ରଭୃତିଙ୍କ ସଙ୍ଗେ ମୁଁ ତ ବିଶେଷ କିଛି କରି ପାରିବି ନାହିଁ । ଯାହା ପଇସା ମିଳିବ ସେ ଖର୍ଚ୍ଚକୁ ହେବ ନାହିଁ କି ପେଟ୍ରୋଲ ହେବ ନାହିଁ । ହେଲ୍‌ଥ ଖରାପ ହୋଇଯିବ । ଏଥିରୁ ମାସକୁ ସହଜରେ ବାରଶହ ଟଙ୍କା ମିଳିବାର ଆଶା ହେଉଛି ।

(୯ । ୧୦ । ୫୭)

ଶଶୀ ବୋଉ ଯାହା ସନ୍ଦେହ କରୁଥିଲା ତାହାହିଁ ହେଲା । ଶ୍ରୀମତୀ ସରଳା ଦେବୀ ଖାପୁ ବାବୁଙ୍କୁ କହି ଆଜି ରାତି ୮ଟାରେ ତାଙ୍କ ସଙ୍ଗେ ଦେଖା କରିବାକୁ ସମୟ ନିରୂପଣ କରି ମୋତେ ଚିଠି ଲେଖିଲେ । ସେ ପୁଣି ଅଭିମାନ ପ୍ରକାଶ କରିଥିଲେ, ଯେ ସେ ଏତେ ଥର ମୋ ଘରକୁ ଆସିଥିଲେ ହେଁ ମୁଁ ଥରେ ତାଙ୍କ ଘରକୁ ଗଲି ନାହିଁ । ବାଧ୍ୟ ହୋଇ ଗଲି । ସବୁ କଥା ଖାପୁବାବୁଙ୍କୁ ସ୍ପଷ୍ଟ କରି କହିଲି । ବ୍ୟକ୍ତିଗତ ଭାବେ ମୋ' ପ୍ରତି ଅସୂୟା ଥିବାରୁ ଯେଉଁମାନେ ମୋର ଯୋଗ୍ୟତା ଓ ପାରଦର୍ଶିତାକୁ ପାସଙ୍ଗରେ ପକାଉ ନାହାନ୍ତି, ସେମାନଙ୍କ ସଙ୍ଗେ ମିଶିବାକୁ ମୋର ଆଦୌ ଇଚ୍ଛା ନାହିଁ, କିନ୍ତୁ ନିଜେ ପୂର୍ବେ କଂଗ୍ରେସ ବାଲା ହୋଇଥିବାରୁ କଂଗ୍ରେସର ବର୍ତ୍ତମାନ ଅବସ୍ଥାରେ ମୋତେ ଖରାପ ଲାଗୁଛି । ତେଣୁ ମୋର ମନ ହେଉଛି, ଆପଣ ସମସ୍ତଙ୍କୁ ବସାଇ ମିଳାଇ ଦେବା ଦିଗରେ ଟିକିଏ ଉଦ୍ୟମ କରନ୍ତୁ । ସେତିକି ବ୍ୟତୀତ ମୋର ଅନ୍ୟ କୌଣସି ଆକାଂକ୍ଷା ନାହିଁ । ଏପରି ଗୋଟିଏ ଆଲୋଚନା କରାଇବା ବିଷୟରେ ସେ ଚେଷ୍ଟା କରିବେ ବୋଲି କହିଲେ । ମୁଁ ତାଙ୍କୁ ଜଣାଇ ଦେଇଛି ଯେ ଏତିକି ହେଲେ ମୁଁ ସବୁ ହେଲା ବୋଲି ବିଚାରିବି । ଏତିକି ବ୍ୟତୀତ ମୋର ବର୍ତ୍ତମାନ ଅନ୍ୟ କୌଣସି ଇଚ୍ଛାଭିଳାଷ ନାହିଁ ବୋଲି ମୁଁ ପରିଷ୍କାର କହି ଦେଇଛି । ଖାପୁବାବୁ ଯେଉଁ ଶ୍ରେଣୀର ଲୋକ ସେ ସ୍ପଷ୍ଟ ପରିଷ୍କାର କଥାକୁ ସ୍ପଷ୍ଟ ଓ ପରିଷ୍କାର କଥା ବୋଲି ସହଜରେ ମନେ କରି ପାରିବେ ନାହିଁ ।

(୨ । ୧୦ । ୧୯୫୭)

ନବବାବୁ ସ୍ପଷ୍ଟ ଜଣାଇ ଦେଲେ ଯେ ସେ ଆଉ ରହିବେ ନାହିଁ । ୯ ତାରିଖ ଦିନ ସେ ଦଳ ବୈଠକରେ ଇସ୍ତଫା ଦେବେ ଓ ସେଇ ଦିନ ନୂଆ ଦଳପତି ନିଯୁକ୍ତ ହେବେ । ଓଡ଼ିଶା କଂଗ୍ରେସରେ ଯେଉଁ ବାଦାପାଲା ଗତ ୬ମାସରୁ ଅଧିକ ହେଲା ଚାଲିଥିଲା ତାହାର ଉପସଂହାରର ସୂଚନା ମିଳି ହେଲା । ଏଥର ନବବାବୁଙ୍କର ଘୋଷଣା ଦୃଢ଼ ବୋଲି ଧରି ଯାଇ ପାରେ । ତାଙ୍କର ପୃଷ୍ଠପୋଷକମାନଙ୍କର ମନ ଘର ଧରିଲା ପରି ଜଣା ଯାଉଛି । ଯେତେଦୂର ଶୁଣୁଛି, ସ୍ପଷ୍ଟଭାବେ ନବବାବୁଙ୍କ ପକ୍ଷ ସମର୍ଥନ କରୁଥିବା ଲୋକଙ୍କ ସଂଖ୍ୟା ଖସି ଖସି ୧୮ ହେଲାଣି । ଦଳରେ ଥିବା ୭୭ ଜଣରୁ ମୋଟେ ୧୮ । ଏଥର ତାଙ୍କର ବୈରାଗ୍ୟ ହେବାର କଥା । ନୂତନ ଦଳପତି ତାଙ୍କୁ ସମର୍ଥନ କରୁଥିବା ଦଳର ପତି ହୋଇ ଆସିବେ ନା ସମସ୍ତଙ୍କୁ ଧରି ଚଳିବେ ଦେଖିବାକୁ ବାକି ରହିଲା । ଯଦି ସେ ସମସ୍ତଙ୍କୁ ଧରି ଚଳିବାର ଢଙ୍ଗ ଦେଖାନ୍ତି ତେବେ ମୋତେ ନିଶ୍ଚୟ ଖୋଜିବେ । ତାଙ୍କ କଥାରେ ଯଦି ଆନ୍ତରିକତା ଦେଖିବି ତେବେ ତାଙ୍କ ସଙ୍ଗେ ମୁଁ ସହଯୋଗ କରିବାକୁ ପଛାଇବି ନାହିଁ ବୋଲି ମୋର ବନ୍ଧୁମାନଙ୍କୁ ଜଣାଇ ଦେଇଛି । କିନ୍ତୁ ସରଳା ଦେବୀ ବା ଲାଲୁବାବୁ ମୋତେ ଯେତେ ଶୀଘ୍ର ତାଙ୍କ ପଛରେ ଦୌଡ଼ାଇବାକୁ ଚାହାନ୍ତି ତାହା ହୋଇପାରିବ ନାହିଁ । (୩ । ୧୦ । ୧୯୫୬)

## ଆତ୍ମପରୀକ୍ଷା

ଆଜି ମୋ ଅତୀତ ଜୀବନ କଥା ପର୍ଯ୍ୟାଲୋଚନା କଲି । ସମାଜ ପ୍ରେସରେ ରାଧାନାଥ ବାବୁଙ୍କ ସଙ୍ଗେ ଅଡୁଆ ହେଲା ପରେ ଆଶା ପ୍ରେସ ଖୁବ ଶାନ୍ତି ଦେଇଥିଲା । ଯେଉଁ ଦିନ ସେ ଅସୁଖ ଲାଗିଲା, ତାକୁ ଛାଡ଼ିଲି । ଭବିଷ୍ୟତରେ କ'ଣ କରିବି ଚିନ୍ତା କରି ବ୍ୟତିବ୍ୟସ୍ତ ହୋଇ ନ ଥିଲି । ଭୂଷଣର ମହାପାତ୍ରଙ୍କ ପାଖେ ଅପ୍ରତ୍ୟାଶିତ ଭାବେ ଜୁଟିଲି । ତାଙ୍କ ବିଭବ ଭିତରେ ଦେଢ଼ ବର୍ଷ ରହି ସୁଖ ସେଥିରେ ଅନୁଭୂତ ହୋଇ ନ ଥିବାରୁ ମୁହୂର୍ତ୍ତକେ ତାହା ଛାଡ଼ି ପାରିଲି । ତା'ପରେ ନବଜ୍ୱଳିତ ପ୍ରେସ । ନୀଳକଣ୍ଠ ବାବୁଙ୍କ ବିଶ୍ୱାସ-ଘାତକତାରେ ମୁହ୍ୟମାନ ହୋଇଥିଲି, କିନ୍ତୁ ବେଶୀ ସମୟ ନୁହେଁ । ଗାଁରେ ଯାଇ ଗାଉଁଲି ଜୀବନ ଯାପନ କରିବାରେ ଖୁବ୍ ସୁଖ ପାଇଥିଲି । ଅପ୍ରତ୍ୟାଶିତ ଭାବେ ସରକାରରେ ଢୁକିଲି, ଓ ଅତି ଅପ୍ରତ୍ୟାଶିତ ଭାବେ ସେକ୍ରେଟାରୀ ପଦ ପର୍ଯ୍ୟନ୍ତ ଉଠିଲି । ତାହା ମୋତେ ଅଟକାଇ ରଖିପାରିଲା ନାହିଁ କି ସେ ପଦ ଛାଡ଼ି ମୁଁ ଏ ପର୍ଯ୍ୟନ୍ତ ଅନୁତପ୍ତ ହୋଇନାହିଁ । ଆଗକୁ କ'ଣ ଅଛି ମୁଁ ଜାଣେ ନାହିଁ । କିନ୍ତୁ ବର୍ତ୍ତମାନ ଯେଉଁ କାମରେ ଅଛି ତାହା ମୋତେ ପୂର୍ଣ୍ଣ ଶାନ୍ତି ଦେଇପାରୁଛି । ଶାନ୍ତି ମିଳୁଥିବା ଜାଗାରୁ ଅନ୍ୟତ୍ର ଯିବାକୁ ନିଜ ଉଦ୍ୟମ କରିବା ବାତୁଳତା ମାତ୍ର । ଯଦି ଅନ୍ୟ କାମ ପାଇଁ ଅନ୍ୟ କେହି ମୋତେ ଲୋଡ଼ନ୍ତି ତେବେ ସ୍ୱତନ୍ତ୍ର କଥା । ମୁଁ ତ ମୋର ବର୍ତ୍ତମାନ ସ୍ଥିତିରେ ସନ୍ତୁଷ୍ଟ ଅଛି । କାଲି ନବଜୀବନର ପ୍ରକାଶ ତାରିଖ । ଆଜି ଶେଷ ଫର୍ମାମାନ ଛପାଇବାରେ ରାତି ପାହିଗଲା । କାଲି କାଗଜ ଡାକ ଘରକୁ ଯାଉଛି କି ନାହିଁ ଦେଖିବା । (୫ । ୧୦ । ୧୯୫୬)

**ଭଗବାନ ଚଳାଉଛନ୍ତି:**

ପରିସ୍ଥିତି ବଡ଼ ଅଡ଼ୁଆ ପଡ଼ିଲା । ମାଧବ ବାବୁଙ୍କଠାରୁ ଟଙ୍କା କରଜ ଆଣିବାରୁ କର୍ମଚାରୀଙ୍କ ପାଉଣା ଦେଇ ଏ ମାସପାଇଁ ବହୁତ ଆଗରୁ ଦେଇ ପାରିଲି । ସମସ୍ତେ ଯାହା ପାଇଛନ୍ତି ସେଥିରେ ସନ୍ତୁଷ୍ଟ ହୋଇଛନ୍ତି । ଆଜି ରହିଛି ମୋ'ର ନିଜ ଘର କଥା । ସର୍ବେଶ୍ୱରଙ୍କଠାରୁ ଶହେ ଟଙ୍କା ମିଳିଛି । ଏଥର ଝିଅ ଝିଆରି ପୁଅ ପୁତୁରା ନାତି ନାତୁଣୀ ସମସ୍ତଙ୍କ ଲୁଗା ଦେବାକୁ ସ୍ଥିର କରିବାରୁ ନିଶ୍ଚିତ ପକ୍ଷରେ ଦୁଇଶହ ପଚାଶ ଟଙ୍କା ପର୍ଯ୍ୟନ୍ତ ଲାଗିବ । ସମସ୍ତେ ଆସି ପହଞ୍ଚିଥିବାରୁ ପନ୍ଦରଦିନର ଘର ଖର୍ଚ୍ଚ ଦେଢ଼ଶ ଟଙ୍କାକୁ ଧାପ ଦେଉଛି । ସର୍ବେଶ୍ୱରଙ୍କ ଉପରେ ତ ନିର୍ଭର । ସେ କେତେ ଦୂର ସଂଭାଳିବେ ! ଆଜି ସେ କହୁଥିଲେ ତାଙ୍କ ପାଖରେ ବି ଟଙ୍କା ଅଭାବ । ଦୁହେଁ ଯାକ ଆଜି କଥା ବାର୍ତ୍ତା ହୋଇ ଶେଷରେ ମୁଁ ସ୍ଥିର କଲି, ସାମାନ୍ୟ ଯେଉଁ ଟଙ୍କା ସେଭିଂସ୍ ବ୍ୟାଙ୍କରେ ଅଛି ସେତିକ ଉପରେ ହାତ ପକାଇବାକୁ ହେବ । ସେତିକ ସେଠୁ ଆସିଲେ ସବୁ ଗଲା । ଗଲେ ଭଲ ବୋଲି ବଗିଚା ଉପରକୁ ଯାଉଛି, ଜଗନ୍ନାଥ ଦତ୍ତ ଆସି ପହଞ୍ଚିଲେ ମୋ ପାଇଁ କିଛି କଳାହାଣ୍ଡି ଚାଉଳ ଆଣି । ତାଙ୍କଠାରୁ ଶୁଣିଲି ସେ ବହି କିଣିବାକୁ ଆସିଛନ୍ତି । ସର୍ବେଶ୍ୱରଙ୍କ ହାତକୁ ଟଙ୍କା ଆସିବାର ବାଟ ଖୋଲିଗଲା । ସେ ଟଙ୍କା ପାଇଗଲେ ମୋତେ ମିଳିବାରେ ଆଉ ଅସୁବିଧା କ'ଣ ? ତାଙ୍କର ମୋ'ଉପରେ ହେବ କି ମୋ'ର ତାଙ୍କ ଉପରେ ହେବ ତାହାର ହିସାବ ତ ପଛର କଥା । (୧୩ । ୧୦ । ୫୭)

ସକାଳୁ ସର୍ବେଶ୍ୱର ଆସି ପହଞ୍ଚିବାରେ ଜଗନ୍ନାଥ ଦତ୍ତଙ୍କ ସଙ୍ଗେ ତାଙ୍କର ପରିଚୟ କରାଇଦେଲି । ସର୍ବେଶ୍ୱର ବହି ତାଲିକା ଦେଖି କହିଲେ ଯେ, ତାଙ୍କର ପ୍ରାପ୍ୟ ନ'ଶହ ଟଙ୍କା ହେବ । ଏ ନ'ଶହ ଟଙ୍କା ମୁଁ ରଖିବା ସକାଶେ ସର୍ବେଶ୍ୱର ତାଙ୍କ ଆଡୁ ପ୍ରସ୍ତାବ ଦେଲେ । ଏ ମାସ ତମାମ ଟଙ୍କା ପାଇଁ ଆଉ ଚିନ୍ତା ରହିବ ନାହିଁ । ଆର ମାସ କଥା ଦେଖା ଅଛି । ମହତାବ ଆସିବା ପରେ ମୋ ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କା ମିଳିବା ହେଲେ ଓ ତୁରନ୍ତ ହୋଇଯାଇପାରେ । ତେବେ ଦୂର ଜଣାଯାଉଛି ପଇସା ଅଭାବ ପାଇଁ ଚିନ୍ତିତ ହେବାକୁ ପଡ଼ିବ ନାହିଁ । ଏଥର ପ୍ରେସ ଆରମ୍ଭ ହେବା ଯାକୁ ପଇସା ପାଇଁ ଚିନ୍ତା କରିବାକୁ ପଡ଼ୁନାହିଁ । ମୂଳରୁ ଯେପରି ଖର୍ଚ୍ଚରେ ମୁଁ ଅଭ୍ୟସ୍ତ ସେହି ପ୍ରକାର ଖର୍ଚ୍ଚ ଆରମ୍ଭ ହେଲାଣି । ମାଛ ପୁଣି ଖାଇବା ଯାକୁ ଘରର ଖର୍ଚ୍ଚ ପୂର୍ବେ ଯେପରି ହେଉଥିଲା ସେପରି ହେଲାଣି । ଦାନ ଧର୍ମ ତ କେବେ ବନ୍ଦ ହୋଇ ନ ଥିଲା । ଭଗବାନ ମୋ'ର ଦାଉ ପିଲା ପରି ସଂଭାଳୁଛନ୍ତି ଆଜି କାହିଁକି ନ ସଂଭାଳିବେ । (୧୪ । ୧୦ । ୫୭)

**ମୁଖ୍ୟମନ୍ତ୍ରୀ ମହତାବଙ୍କ ସହ ସାକ୍ଷାତ୍କାର :**

ଆଜି ସକାଳ ୯ଟାରେ ମୋର ନିତ୍ୟକର୍ମ ସାରି ମହତାବ ବାବୁଙ୍କ ସଙ୍ଗେ ଦେଖା କରିବାକୁ ପ୍ରଜାତନ୍ତ୍ର ଅଫିସକୁ ଗଲି । ଗତ ବର୍ଷ ଭିତରେ ଏଠାକୁ ମୁଁ ମୋଟେ ଦୁଇଥର ଆସିଛି । ପ୍ରଜାତନ୍ତ୍ର ବର୍ତ୍ତମାନ ଯେଉଁମାନଙ୍କ ହାତରେ ଅଛି, ସେମାନଙ୍କ ସହିତ

ଘୌଣସି ସଂପର୍କ ରଖିବାକୁ ମୋ'ର ମନ ଡାକେ ନାହିଁ। ସେମାନେ ଯେ ମୋତେ ଅଡ଼େଇ ଚଳବେ ଏହା କ ଏକାନ୍ତ ସ୍ୱାଭାବିକ। ମୋ ନାମରେ ସେମାନେ ନାନା ରକମ କୁତ୍ସାରଟନା କରିବାକୁ କେବେହେଲେ କ୍ରୁଣ୍ଠନ ଥିବେ। ତେଣୁ ବଡ଼ ସନ୍ତର୍ପଣରେ ମୁଁ ହତା ଭିତରେ ପଶିଲି। କିନ୍ତୁ ସଙ୍ଗେ ସଙ୍ଗେ ଜଣା ପଡ଼ିଲା ମହତାବଙ୍କ ଗୃହପଟେ ସେମାନେ ଘେରି କରି ନାହାନ୍ତି। ଏମାନଙ୍କୁ ମହତାବ ଯଥାସ୍ଥାନରେ ରଖି ପାରିଲେ ନିଶ୍ଚୟ ନିଜ କାର୍ଯ୍ୟରେ କୃତିତ୍ୱ ଅର୍ଜନ କରିବେ। ମହତାବଙ୍କ ସଙ୍ଗେ ଦେଖା କରିବାକୁ ବହୁ ଲୋକ ଜମା ହୋଇଥାନ୍ତି। କାର୍ଡ଼ ପଠାଇଲେ ଦେଖା ମିଳୁଛି ବା ଅନ୍ୟ ସମୟରେ ଆସିବାକୁ ହୁକୁମ ହେଉଛି। ଏ ପନ୍ଥା ରହିଲେ ମଧ୍ୟ ଖୁବ ଭଲ ହେବ। ମୋ କାର୍ଡ଼ ଖଣ୍ଡି ଯିବାର ପାଞ୍ଚ ମିନିଟ୍‌ରେ ମୋତେ ଡ଼ାକରା ମିଳିଲା। ଦେଖା ହେବା ମାତ୍ରେ ସେ କ'ଣ ଖବର ବୋଲି ପଚାରିଲେ। ମୁଁ କହିଲି, ସାତ ବର୍ଷ ପରେ ରାଜ୍ୟରୁ ଅରାଜକତା ଦୂର ହେବାରୁ ମୋତେ ବଡ଼ ଆନନ୍ଦ ଲାଗୁଛି। ଯେଉଁ ତିନିଜଣ ମନ୍ତ୍ରୀ କଟିଗଲେ ସେମାନଙ୍କ ବିଷୟରେ ଲୋକେ କ'ଣ କହୁଛନ୍ତି ବୋଲି ସେ ପଚାରିବାରେ, ମୁଁ କହିଲି, ଦୁର୍ନୀତିପରାୟଣଙ୍କୁ କାଟିବା ଯୋଗୁଁ ଲୋକେ ଖୁସି, କିନ୍ତୁ ଆହୁରି କେତେଜଣ ରହିଗଲେ। ସେ କହିଲେ, ଏକା ଥରକେ ସମସ୍ତଙ୍କୁ ଉଡ଼ାଇ ଦେଲେ, ମେଣ୍ଟା ଧୋଉଧୋଉ କମ୍ବଳ ହୋଇଯିବ। ମୁଁ ହଁ ବୋଲି କହିଲି।

(୨୦ । ୧୦ । ୧୯୫୬)

**ପୁଣି ଗଭର୍ଣ୍ଣର ପାଇଁ ଅନୁରୋଧ :**

କାଲି ପ୍ରଜାତନ୍ତ୍ର ଅଫିସରୁ ଫେରିବା ବେଳେ ଜଣେ କହିଲେ, ସେ ବିଶ୍ୱସ୍ତ ସୂତ୍ରରୁ ଶୁଣିଛନ୍ତି, ମୋତେ ପୁଣି ସେକ୍ରେଟେରୀ କରି ନେବା ପାଇଁ ଯୋଗାଡ଼ ହେଉଛି। ସେ ଏହା କହିଲେ ସେ ମୋ'ର ଗୋଟାଏ ବଡ଼ ମଙ୍ଗଳ ହେଉଛି ବୋଲି ବିଚାରି ଏହା କହିଲେ। ବିଶେଷ କିଛି ନ କହି ଚାଲି ଆସିଲି। ଓପରଓଳି ଭୁବନେଶ୍ୱରରୁ ଶ୍ରୀ ନବଘନ ସାମନ୍ତରାୟ ଓ ଶ୍ରୀ ପଦ୍ମନାଭ ମିଶ୍ର ଏକରକମ ଡେପୁଟେସନ୍‌ରେ ଆସି ପହଞ୍ଚିଲେ। ସେକ୍ରେଟେରିଏଟ୍‌ର ଓଡ଼ିଆ ଅଫିସରମାନେ ସେ ଦୁହିଁଙ୍କୁ ପଠାଇଛନ୍ତି, ପୁଣି ଗଭର୍ଣ୍ଣରରୁ ଆସିବା ପକାଇ ମୋତେ ପ୍ରବର୍ତ୍ତାଇବାକୁ। ତାଙ୍କଠାରୁ ଶୁଣିଲି, ଭୁବନେଶ୍ୱରରେ ଗୁଜବ ହୋଇଛି ମୋତେ ତାଙ୍କ ନିଜ ସେକ୍ରେଟାରୀ ଭାବେ ନେବା ପାଇଁ ମହତାବ ବାବୁ ପ୍ରସ୍ତାବ ଦେଇ ସାରିଲେଣି। ମୁଁ କେତେ ଦରମା ପାଇବି ସେ ବିଷୟ ଶିବରମଣ ସାହେବଙ୍କ ପାଖକୁ ମତ ପାଇଁ ପଠା ହୋଇଛି। ମୁଁ ପରିଷ୍କାର ଜଣାଇ ଦେଲି ଯେ, ଆଉ ଥରେ ଗଭର୍ଣ୍ଣରକୁ ଯିବା ପକାଇ ମୋ'ର ମନ ନାହିଁ, ସେମାନେ ବୁଝାଇବାକୁ ବସିଲେ ଯେ, ମୋ'ର ମନ ଥାଉ ବା ନ ଥାଉ ମୁଁ ଗଲେ ଦେଶର ଉପକାର ହେବ। ମହତାବଙ୍କଠାରୁ କିଛି ନ ଶୁଣିବା ସ୍ଥଳେ ଏ ବିଷୟରେ ବିଶେଷ ସମୟ ନଷ୍ଟ କରିବା ଉଚିତ୍ ହେବ ନାହିଁ ବୋଲି ବିଚାରି ଉଡ଼ାଣି ଉତ୍ତର ଦେଲି।

(୨୧ । ୧୦ । ୫୬)

ଆଜି ସକାଳୁ ଜରୁରୀ କର୍ମ ପାଇଁ ଭୁବନେଶ୍ୱର ବାହାରିଲି। ଉଦ୍ଦେଶ୍ୟ, ସୁଧୀରବାବୁଙ୍କ-ଠାରୁ କିଛି ଟଙ୍କା ଓ ଭାମ ଆଣିବା। ତହିଁ ସଙ୍ଗେ ଯଦି ହରେକୃଷ୍ଣ ମହତାବଙ୍କ ଦେଖା ମିଳେ

ତେବେ ମୋ ପ୍ରୋଭିଡେଣ୍ଟ ଫଣ୍ଡ ବିଷୟରେ କଥାବାର୍ତ୍ତା ହେବାକୁ ମନ ଥିଲା । ଯାଇ ପହଞ୍ଚିବା ସଙ୍ଗେ ସଙ୍ଗେ ମହତାବଙ୍କ ସଙ୍ଗେ ଦେଖା କରିବାର ସୁଯୋଗ ମିଳିଲା, ସେ, ପୂରା ଅଢ଼େଇ ଘଣ୍ଟା । ସବୁ ବିଷୟ ପଡ଼ିଗଲା । ଗୃହଣ ନ କରିବାକୁ ମୋର ସଂକଳ୍ପ ବିଷୟ ତାଙ୍କୁ କହିଲି । ସେ ବୁଝିଲେ ବୋଧହୁଏ । ତା'ପରେ ମୋର ରାଜନୀତିକୁ ଆସିବା କଥା ପଡ଼ିଲା । ମୁଁ ଜଣାଇ ଦେଲି ଯେ ତାଙ୍କର ଆଶୀର୍ବାଦ ପାଇଲେ ମୁଁ ରାଜନୀତିରେ ପଶିବାକୁ ରାଜି ଅଛି । କିନ୍ତୁ ତାଙ୍କର ଯଦି କିଞ୍ଚିତ୍ ମାତ୍ର ଆପତ୍ତି ଥାଏ ତେବେ ମୁଁ ମିଶିବାକୁ ଲାଳାୟିତ ନୁହେଁ । ଅପରନ୍ତୁ ମହତାବ୍ ବାବୁଙ୍କୁ ସବୁ ମତରେ ସାହାଯ୍ୟ କରିବି । ପରେ ଦେଖା ହେଲେ ବାକି ଯାହା କହିବି ।

ଆଜି ମୋଦ୍ୱାରା ଗୋଟିଏ ବଡ଼ କଥା ହେଲା ବୋଲି ବଡ଼ ସନ୍ତୁଷ୍ଟ ଲାଗିଲା । ମୁଁ ୩ ଦିନ ପୂର୍ବେ ଯେଉଁ ଚିଠି ମହତାବଙ୍କୁ ଦେଇଥିଲି, ତାହାର ଫଳରେ ପୁରୀରେ ସୀମା ଆନ୍ଦୋଳନ ସମ୍ପର୍କୀୟ ସମସ୍ତ ମକଦ୍ଦମା ଉଠିଗଲା । ପୂର୍ବେ ମନ୍ତ୍ରୀମଣ୍ଡଳ ମାତ୍ର କେତେଗୁଡ଼ିଏ ମକଦ୍ଦମା ଉଠାଇଥିଲେ । ପୁଲିସ ଘରପୋଡ଼ି ଲୁଟି ସମ୍ପର୍କରେ ଯେଉଁ ମକଦ୍ଦମା କରିଥିଲେ ତାହା ସବୁ ଉଠାଇ ଦେବା ମହତାବ୍ ବାବୁଙ୍କ ପକ୍ଷରେ ବଡ଼ ସାହସ କଥା । ପଣ୍ଡିତ ଜଗନ୍ନାଥ ରଥ ପ୍ରମୁଖ ଆଜି ମହାପ୍ରସାଦ ଧରି ଆସି ପହଞ୍ଚିଲେ । ସତ୍ୟପ୍ରିୟ ବାବୁଙ୍କ ସଙ୍ଗେ ଖୁବ୍ କଥା-ବାର୍ତ୍ତା ହେଲା । (୨୭ । ୧୦ । ୧୯୬୭)

**ନବବାବୁ :**

ଆଜି ସକାଳ ୯ଟାରେ ଲେଖା ଆରମ୍ଭ କଲି—ସଂପାଦକୀୟ । ନବବାବୁଙ୍କ ବିଦାୟ ନାମରେ ଯେଉଁ ସନ୍ଦର୍ଭଟି ଲେଖିଲି ତାହା ମୋତେ ଖୁବ୍ ସୁଖ ଲାଗିଲା । ପାଠକମାନଙ୍କୁ କ'ଣ ଲାଗୁଛି କେଜାଣି । ମୁଁ ଯାହା ଲେଖିଛି ସେଥିର ସାରକଥା ହେଉଛି, ନବବାବୁ ଭଲ ଲୋକ କିନ୍ତୁ ଅଯୋଗ୍ୟ । ଗୁଡ଼ାଏ ପାଠ ପଢ଼ିଛନ୍ତି କିନ୍ତୁ ତାକୁ ନେଇ ଆଶୀ ଥୋଇ ନ ପାରିବାରୁ ତାଙ୍କର ଜୀବନ ବ୍ୟର୍ଥ ହୋଇଛି । ତାଙ୍କୁ ଯେତେ ସୁଯୋଗ, ଆଦର ଓ ଲୋକପ୍ରିୟତା ମିଳିଛି, ଓଡ଼ିଶାରେ ଆଉ କାହାକୁ ଏ ଯୁଗରେ ସେତେ ମିଳିନାହିଁ । କିନ୍ତୁ ଏ ସମ୍ପତ୍ତି ତାଙ୍କ କାର୍ଯ୍ୟରେ ନ ଲାଗିବାରୁ ସେ ସବୁ ଗୁଡ଼ାକୁଡ଼ ବୈରାଗୀ ହୋଇଛନ୍ତି । ଖାଲି ଓ ଖିଲି ବୋଲି ଯେଉଁ ସନ୍ଦର୍ଭଟି ଲେଖିଲି ତାହା ମଧ୍ୟ ମୋ ମନକୁ ଖୁବ୍ ପାଇଲା । ଗତ ଶେଷରେ କୃତଜ୍ଞତା ବୋଲି ଯେଉଁ ଗ୍ଲେଟ ସନ୍ଦର୍ଭଟି ଲେଖିଲି ତାହା ସବୁଠାରୁ ସୁଖ ଲାଗିଲା । ସମ୍ପାଦକୀୟ ଆଗରୁ ସାଇଥଲରେ ଲେଖିବାକୁ ପରାମର୍ଶ ପାଇଛି, ନିଜେ ବି କେତେ ଦିନୁ ଇଚ୍ଛା କରିଛି । କିନ୍ତୁ ଦେଖୁଛି, ତରତରରେ ଯାହା ଲେଖୁଛି ତାହା ବେଶୀ ଭଲ ହେଉଛି । (୫ । ୧୧ । ୬୭)

**ଗାଁରେ ଡାକଘରିଆ ବଇଠକ :**

ଆଜି ମୋର ଗୋଟିଏ ସ୍ମରଣୀୟ ଦିନ । ଦିନଟି ଜନ୍ମାନ୍ତରୁରେ ଏପରି ଗତ ଗଲା, ସତେ ଯେପରି ସକାଳୁ ମଞ୍ଜିଟିଏ ପୋତା ହୋଇ ରାତି ପାହିଲା ବେଳକୁ ଫଳ ଫୁଲରେ ପୁଷ୍ଟି ହୋଇଗଲା । ସକାଳେ ନିତ୍ୟକର୍ମ ସାରି ବସିଛି କବିରାଜ ଲୋକନାଥ ମିଶ୍ରେ ଆସି

ପହଞ୍ଚିଲେ । ସେ ପଣ୍ଡିତମାନଙ୍କ ସଙ୍ଗେ ଦ୍ୱ'ପହର ଗାଡ଼ିରେ ଯିବାକୁ କହିଲେ । ପଣ୍ଡିତ-ମାନଙ୍କର ଯିବାରେ ଇଚ୍ଛୁକତା ନାହିଁ, ତେଣୁ ସେ ନିଜେ ଓପରଓଳି ଆସନ୍ତୁ ବୋଲି ତାଙ୍କୁ ଡାକିଲି । ପ୍ରାୟ ସାଢ଼େ ଏଗାରଟା ବେଳେ ପଣ୍ଡିତ ତିନିହେଁ ଓ ଲିଙ୍ଗରାଜ ରଥ ଆସିଲେ । ସେମାନଙ୍କ ସଙ୍ଗେ ନାନା ରକମ ଆଲୋଚନା ହେଉ ହେଉ ଗୋଟିଏ ଅଗ୍ନିଷ୍ଟୋମ ଯଜ୍ଞ ଆର ନରସିଂହ ପୁର ଗ୍ରାମରେ ଆରମ୍ଭ କରିବାର ସଂକଳ୍ପ ହେଲା । ସେଥିରେ ପ୍ରାରମ୍ଭିକ ଆୟୋଜନ ସକାଶ ତଳନେ ଖାତା କରି ପଣ୍ଡିତ ଜଗନ୍ନାଥ ରଥଙ୍କୁ ଦେଲି । ସେମାନଙ୍କୁ ପ୍ରବର୍ତ୍ତାଇ ରଖାଇ ଶ୍ରୀମଦ୍ ଭାଗବତ ଆଲୋଚନା ଆରମ୍ଭ ହେଲା । ଏତିକିବେଳେ ଗାଁରୁ ସର୍ପ ଭକ୍ତା ଓ ଖଗପାଣେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ବୁଝିନେଲି ଯେ ଗାଁର ସମସ୍ତେ ମୋ କଥା ଅନୁସାରେ ଚଳିବାକୁ ରାଜି ହୋଇଛନ୍ତି । ପଣ୍ଡିତମାନଙ୍କୁ ସାଙ୍ଗରେ ଧରି ଗାଁକୁ ବାହାରିଲି । ସାଢ଼େ ୮ଟାରେ ପହଞ୍ଚିଲି । ସମସ୍ତଙ୍କୁ ଡକାଇ ବସାଉ ବସାଉ ଉଦ୍ୟୋକ୍ତାମାନେ ରାତି ୧୧ଟା କରିଦେଲେ । ବେଦ ପାଠ ପରେ କାର୍ଯ୍ୟ ଆରମ୍ଭ ହେଲା ଓ ରାତି ଦୁଇଟା ସୁଦ୍ଧା ସର୍ବ-ସମ୍ମତି କ୍ରମେ ଗୃହୀତ ହେଲା ଯେ, ଆମ ଗାଁରେ ତିନି ଭାଗିଆ ଚଳିବ । ରଇତ ଦୁଇ ଭାଗ ଓ ଜମି ମାଲିକ ଏକ ଭାଗ । ସଭାରେ ନ ପଡ଼ିଲେ କେହି କାହାକୁ ଛଡ଼ାଇ ପାରିବେ ନାହିଁ । ଗୋଟାଏ ନୂଆ କଥା ହେଲା । ଆନନ୍ଦରେ ଫେରିଲୁଁ । ଭଗବାନ୍ ଏତେ ଆନନ୍ଦ ସହିଲେ ନ , ଭୁବନେଶ୍ୱର ମାଇଲିଏ ଅଛୁ ଗାଡ଼ି ଖରାପ ହୋଇଗଲା । ଯାହାହେଉ ସୁଧୀର ବାବୁ ଯେପରି ଆଗ୍ରହରେ ସାହାଯ୍ୟ କଲେ ତାହା ଦେଖି ମନରୁ ସବୁ ଦୁଃଖ ଦୂର ହୋଇଗଲା ।

(୧୧ । ୧୨ । ୫୭)

**ମୋ ପରିବାର :**

ଗାଁରେ ଧୂଳିଭାଗ ରଇତଙ୍କ ଦୌରାତ୍ମ୍ୟ କଥା ଶୁଣି ଗାଁକୁ ଯାଇ ଅବସ୍ଥାଟା ଆଖିରେ ଦେଖିବାକୁ ମନ ହେଲା । ମୋ'ର ରଇତମାନେ ସମସ୍ତଙ୍କ ମେଳରେ ନ ପଡ଼ି କହିଲେଇ ଆମ ବାଡ଼ିକୁ ଗୁଡ଼ୁଛନ୍ତି । ଅନ୍ୟମାନେ ଧାନ କାଟି ନିଜ ଖଳାକୁ ନେଇ ଯାଉଛନ୍ତି । ମୋ' ରଇତଙ୍କ ସାଧୁତାର ପୁରସ୍କାର ସ୍ୱରୂପ ଶହେ ଟଙ୍କାର ଭଲ କମ୍ବଳ ସର୍ବେଶ୍ୱରଙ୍କ ଜରିଆରେ ନୟାସଡ଼କରୁ ଧାର ଆଣି ଆଜି ଗାଁକୁ ବାହାରିଲି । ମୋ ସଙ୍ଗେ ଶାନ୍ତ ଓ ବୁନୁ ଗଲେ । ବୈଦ୍ୟନାଥଙ୍କ ଘରକୁ ଗଲି ଯେ ଖାତା ସେଠାରୁ ସାଥୀ ହେଲା । ରବୀନ୍ଦ୍ର ସିଂହଙ୍କୁ ସଙ୍ଗରେ ଯିବାକୁ ଆଗରୁ ଡାକିଥିଲି । ଆମେମାନେ ସମସ୍ତେ ଯାଇ ଗାଁରେ ପହଞ୍ଚିଲା ବେଳକୁ ଟୁନୁ ଓ କାହ୍ନୁ ଦେଖୁଛି ଆଁରୁ ଆସିଛନ୍ତି, କାଲିର ଗୁରୁବାର ଲକ୍ଷ୍ମୀ ଉତ୍ସବ ଉପଲକ୍ଷେ । ରମା ବୋଉ, ମାଧବ ଓ କୁମି ଗାଁରେ ଥିଲେ ! ଘରଟା ପୂରିଗଲା ପରି ଲାଗିଲା । କାହ୍ନୁ ଓ ଟୁନୁ ମାଛ ପୁଞ୍ଜିଏ ସଂଗ୍ରହ କଲେ । ସେମାନଙ୍କ କୃତି ଦେଖିବାକୁ ମୁଁ ବଡ଼ ଯୋଡ଼ ପର୍ଯ୍ୟନ୍ତ ଗଲି । ସେଇଠାରେ କଥା ପଡ଼ୁ ପଡ଼ୁ ଟୁନୁ ଓ କାହ୍ନୁ ଏକ ସ୍ୱରରେ କହିଲେ, ସେମାନେ କେବେ ଭିନ୍ନ ହେବେ ନାହିଁ । ମୁଁ ପଚାରିଲି, ବୁଢ଼ା ଯଦି ଭିନ୍ନ ହେବାକୁ ଚାହେଁ ? ଟୁନୁ କହିଲା, ସେ ଯଦି ନିତାନ୍ତ ଜିଦ୍ କରିବ, ତେବେ ସେ ଭିନ୍ନ ହୋଇଯିବ । ବଡ଼ ଆନନ୍ଦ ଲାଗିଲା । (୧୯ । ୧୨ । ୫୭)

# ପରିଶିଷ୍ଟ

## ଆତ୍ମ ନିବେଦନ

[ ମାସିକ ପତ୍ରିକା 'ନବଜୀବନ'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା (ଫେବୃଆରି ୧୯୫୭) ସଂପାଦକୀୟ ସ୍ତମ୍ଭ 'ସମ୍ବାଦ ଓ ସଙ୍କେତ'ରେ ପ୍ରକାଶିତ । ]

ଦୈନିକ ଓ ସାପ୍ତାହିକ ପତ୍ର ପତ୍ରିକାର ସଂଖ୍ୟା ତୁଳନାରେ ଓଡ଼ିଶାରେ ବେଶୀ ମାସିକ ପତ୍ର ନାହିଁ । ତେଣୁ ଆଉ ଖଣ୍ଡିଏ ବାହାରିଲେ ମାସିକ ପତ୍ର-ବାହୁଲ୍ୟ ଘଟିବାରେ ହେବ ନାହିଁ, ଏହି ଭରସାରେ 'ନବଜୀବନ' ଆତ୍ମ ପ୍ରକାଶ କରୁଛି । ଯେଉଁ କେତେ ଖଣ୍ଡି ମାସିକ ପତ୍ର ଚଳୁଛି, ସେଥିରୁ ପ୍ରତ୍ୟେକେ ନିଜ ନିଜ ପାଇଁ ବିଶିଷ୍ଟ କ୍ଷେତ୍ର ସୃଷ୍ଟି କରିଛନ୍ତି । ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବାର ଔଦ୍ଧତ୍ୟ ଶିଶୁ 'ନବଜୀବନ'ର ନାହିଁ । ତାହାର ଏକ-ମାତ୍ର ଇଚ୍ଛାଭିଳାଷ, ସେ କ୍ରମେ ନିଜ ଉପଯୋଗିତାର ପ୍ରମାଣ ଦେଇ ସେମାନଙ୍କର ସହଯୋଗୀ ଭାବେ ନିଜ ପାଇଁ ଗୋଟିଏ ଆସନ ଅର୍ଜି ପାରିବ ।

ଅତୀତର ପରାଧୀନତା ଆଉ ନାହିଁ । ଏ ଶତାବ୍ଦୀର ଦ୍ୱିତୀୟ ଚତୁର୍ଥରେ ସ୍ୱାଧୀନତା ପାଇଁ ଯେଉଁ ଅଭିନବ ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାର ଫଳ ମିଳିଛି । ଏବେ ନଅ ବର୍ଷ ହେଲା ଭାରତ ସ୍ୱାଧୀନ । ଭାରତର ସ୍ୱାଧୀନତା ଆନ୍ଦୋଳନର ବୈଶିଷ୍ଟ୍ୟ—ଅହିଂସା । ସେଇ ବୈଶିଷ୍ଟ୍ୟ ଯୋଗୁଁ ସମଗ୍ର ପୃଥିବୀର ଦୃଷ୍ଟି, ସ୍ୱାଧୀନତା-ପ୍ରାପ୍ତି ସଙ୍ଗେ ସଙ୍ଗେ ଭାରତ ଉପରେ ପଡ଼ିଲା । ପଣ୍ଡିତ ଜବାହରଲାଲ ନେହରୁଙ୍କ ବୈଦେଶିକ ନୀତିର ଉତ୍କର୍ଷ ଯୋଗୁଁ କ୍ରମେ ଭାରତ ପ୍ରତି ସମଗ୍ର ପୃଥିବୀର ସମ୍ମାନ ବଢ଼ୁଛି । କିନ୍ତୁ ଭାରତର ଆଭ୍ୟନ୍ତରୀଣ ଶାସନ ସଫଳ ହୋଇଛି ବୋଲି କୁହାଯାଇ ନ ପାରେ ।

ଘରର ମଇଳାକୁ ଦ୍ୱାର କଣ ରଖି ଝୋଟି ମୁରୁଜରେ ଦାଣ୍ଡ ଦୁଆର ସଜାଇଲା ପରି ଇତି ମଧ୍ୟରେ ଭାରତରେ ଏପରି କେତେକ ବଡ଼ ବଡ଼ ଶିଳ୍ପର ପ୍ରତିଷ୍ଠା ହୋଇଛି, ଯାହାକୁ ଦେଖି ବୈଦେଶିକ ପର୍ଯ୍ୟଟକମାନେ ଆମକୁ ସାର୍ଟିଫିକେଟ ଦେଇଛନ୍ତି । ପଞ୍ଚବାର୍ଷିକ ଯୋଜନା ଫଳରେ ଖାଦ୍ୟ ଶସ୍ୟର ଯେଉଁ ସ୍ୱଚ୍ଛଳତା ଦେଶରେ ହୋଇଛି ବୋଲି ଦାବୀ କରା ଯାଉଛି, ତାହାକୁ ଗୁଣୀ ଓ ଅର୍ଥନୀତିଜ୍ଞ ଉଭୟେ, ପ୍ରକୃତିର ଦାନ ବୋଲି କହୁଛନ୍ତି । ଯାହାର ଦାନ ହେଉ, ଖାଦ୍ୟଶସ୍ୟର ଅତି ଅଧିକ ଦର ହେତୁ ଦରିଦ୍ର ଲୋକଙ୍କର ଅବସ୍ଥା ପୂର୍ବ ଅପେକ୍ଷା ବିଶେଷ ଉନ୍ନତ ହୋଇ ନାହିଁ । ଅନଟନ ଲାଗି ରହିଛି ଓ ଲୋକମାନଙ୍କର ସମ୍ଭାଳିବା ଶକ୍ତି ଏତେ କମ୍ ଯେ, ସାମାନ୍ୟ ପ୍ରାକୃତିକ ବିପର୍ଯ୍ୟୟରେ ସେ ଦୋହଲି ଯାଉଛନ୍ତି । ବହୁ ବ୍ୟୟରେ ପଞ୍ଚବାର୍ଷିକ ଯୋଜନା ହେଉଛି, ଓ ତାହାକୁ କାର୍ଯ୍ୟକାରୀ କରିବାକୁ ବିଶେଷ

ଉଦ୍ୟମ ଚାଲିଛି; କିନ୍ତୁ ସେ ଯୋଜନାର ଚେର ଦେଶରେ ଲାଗୁନାହିଁ । ଜନତା ପାଇଁ ଯୋଜନା ହୋଇଛି କିନ୍ତୁ ଜନତା ସେଥିରୁ କ'ଣ ଉପକାର ପାଉଛି ନିଜେ ବୁଝି ପାରୁ ନାହିଁ । ଶିକ୍ଷିତ ବେକାରଙ୍କୁ ଏହା ଫଳରେ ଚାକିରି ମିଳୁଛି, କିନ୍ତୁ ଚାକିରି-ଉଦ୍ଦେଶ୍ୟ-ଶିକ୍ଷାର ବହୁଳ ପ୍ରସାର ଯୋଗୁଁ ଶିକ୍ଷିତ ବେକାରଙ୍କ ସଂଖ୍ୟା କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଛି । ଇଂରେଜଙ୍କ ପ୍ରଚଳିତ ଶିକ୍ଷା ପଦ୍ଧତିର ଅସାରତା ସମସ୍ତେ ହୃଦୟଙ୍ଗମ କରିଛନ୍ତି, କିନ୍ତୁ ତାହାକୁ ଉଠାଇ ନିଜ ଦେଶମାଟିର ଅନୁକୂଳ ପଦ୍ଧତିର ପ୍ରଚଳନ ବିଷୟରେ କାହାରି ଆନ୍ତରିକତା ଥିଲା ପରି ବୋଧ ହେଉ ନାହିଁ । କୌଣସି ବିଷୟରେ କାହାର ଆନ୍ତରିକତା ଦେଖାଯାଉ ନାହିଁ । ନୂଆ ପରିସ୍ଥିତିରେ ନୂଆ କାର୍ଯ୍ୟକ୍ରମ ଧରିବା ପରିବର୍ତ୍ତେ, ସମସ୍ତେ ଗତାନୁଗତିକ ସୂତରେ ଯନ୍ତ୍ରଚାଳିତ ପରି ଚାଲୁଛନ୍ତି । ଇଂରେଜ ଅମଳର ଶାସନ କଳ ସେହିପରି ରହିଛି, ବରଂ ସେକାଳଠାରୁ ଅଧିକ ଜଙ୍କ ଧରି ଗଲାଣି ; ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବାକୁ ସେମାନେ ଯେଉଁ ନିୟମ କାନୁନ ପ୍ରଣୟନ କରି ଥିଲେ, ତାକୁଇ ଧରି ଜନମଙ୍ଗଳ ରାଷ୍ଟ୍ର ଗଢ଼ିବାର ପ୍ରହସନ ହେଉଛି, ଶାସକ ସତେ ଅବା ବିଶ୍ୱାସ କରୁଛନ୍ତି, ଦହି ଗଡ଼ୁ ଗଡ଼ୁ ଯେପରି ମାଙ୍କଡ଼ ହୁଏ, ସେହିପରି ମାଙ୍କଡ଼ ଗଡ଼ୁ ଗଡ଼ୁ ଦହି ହୋଇଯିବେ । ବେଳେବେଳେ ନିଦରୁ ଉଠିଲା ପରି ଜମି ନିବାରଣ ଓ ଭୂମିସଂସ୍କାର ପ୍ରଭୃତି ବିଷୟରେ ଯେଉଁ ସଂସ୍କାର ପ୍ରଚେଷ୍ଟା କରାହେଉଛି, ତାହା ମଫସଲ ଲୋକଙ୍କ ପରିସ୍ଥିତିକୁ ଅଧିକ ବିପର୍ଯ୍ୟସ୍ତ କରି ପକାଉଛି ।

କାୟା ସ୍ୱାଧୀନ ହୋଇଛି, କିନ୍ତୁ ମନ କ୍ରମେ କ୍ରମେ ଅଧିକରୁ ଅଧିକ ପରାଧୀନ ହେଉଛି । ଇଂରେଜର ଭାଷା, ଆମେରିକାର ଧନ ଓ ରୁଷିଆର ମତବାଦକୁ ଆମେ ଏକ ସଙ୍ଗେ ଜାବୁଡ଼ି ଧରିବାକୁ ଚେଷ୍ଟା କରିଥାଉଁ । ଏହି ବୈଦେଶିକ ଅନୁକରଣ-ତାଡ଼ନାରେ ନିଜର ଅସ୍ମିତା ପାସୋର ହୋଇ ଯାଇଛି । ନିଜର ପିତୃ, ଋଷି ଓ ଦେବତାଙ୍କର ସ୍ମୃତି ବିଲୋପ ପାଇବା ଉପରେ । ଜାତି-ପିତା ମହାତ୍ମା ଗାନ୍ଧୀ ଭାରତର ଯେଉଁ ପୁରୁଣା ଅହିଂସା-ଧର୍ମକୁ ନୂଆ କରି ଦେଶର ସାମାଜିକ ଓ ରାଜନୈତିକ ଜୀବନରେ ପୂରାଇଥିଲେ, ତାହା ତାଙ୍କର ଅନୁଚରମାନେ ମଧ୍ୟ ପାସୋରି ସାରିଲେଣି । ଅନ୍ତରରେ ତ ଅନେକଙ୍କର ଅହିଂସା ନ ଥିଲା : ବାହାରେ ଭୂଷଣ ପରି ଯେଉଁ ଅହିଂସା-ଅଳଙ୍କାର ଥିଲା, ତାହା ମଧ୍ୟ ବେଳେ ଶାସକମାନେ କାଢ଼ି ଥୋଇ ଦେଇ ଦେଲା ପରି ଜଣା ଯାଉଛି । ସେମାନଙ୍କ ବିରୁଦ୍ଧରେ ଲୋକମତ ଯେପରି ଜାଗ୍ରତ ହେଲାଣି, ସେଥିରେ ଦେଶ ପଛକୁ ହଟି ହଟି ଅତୀତର ସାମନ୍ତୀୟ ଯୁଗରେ ହାବୁଡ଼ିବାର ଯେତିକି ଆଶଙ୍କା ହେଉଛି, ଆଖିବୁଜା ଆଗକୁ ଯାଇ ଅରାଜକତା ସମୁଦ୍ରରେ ଝାସ ଦେବାର ସେତିକି ଆଶଙ୍କା ହେଉଛି । ବାସ୍ତବିକ୍ ଭାରତର ନବଜୀବନକୁ ବାଲିରାଷ୍ଟ୍ର ଏକାଥରକେ ଘୋଟିଯାଉଛି । ଏହାର ପ୍ରତିକାର ଆମେରିକାର ଟଙ୍କାରେ ନାହିଁ କି ରୁଷିଆର ମତବାଦରେ ନାହିଁ । ଆମରି ସଂସ୍କୃତିର ପରମ୍ପରା ରକ୍ଷି ଆମେ ଯଦି ଦେଶକୁ ନ ଗଢ଼ିବା ତେବେ ଯେତେ ଗଢ଼ୁଥିବା, ଆମ ନୂଆ ଜୀବନ ସେତିକି ଭୁଷୁଡ଼ି ପଡ଼ୁଥିବ । ବାହାରର ଟଙ୍କା ଓ ବାହାରର ମତବାଦ ଆମ ଚିନ୍ତାଧାରାକୁ ପ୍ରଭାବିତ କରିବ,

କିନ୍ତୁ ଏକାବେଳକେ ତାହାର ରୂପାନ୍ତର କରିବାକୁ ବସିଲେ ସବୁ ଭ୍ରଷ୍ଟ ହୋଇଯିବ । ଏ ସମ୍ପର୍କରେ ଅନେକଙ୍କର ଭୁଲ ଧାରଣା ଯେ, ଯେଉଁମାନେ ଭାରତୀୟ ସଂସ୍କୃତିର ତାରିଫ୍ କରନ୍ତି ସେମାନେ ବୈଷୟିକ ଉନ୍ନତି ଓ ଅଗ୍ରଗତିର ବିରୋଧୀ । ଭାରତୀୟ ସଭ୍ୟତା ଯେ ବୈଷୟିକ ଉନ୍ନତିର ପରିପନ୍ଥୀ ନୁହେଁ, ପରିପୂରକ—ଏହାର ପ୍ରମାଣ ଆମ ଅତୀତର ଶିଳ୍ପକଳା ଓ ସାହିତ୍ୟ ଓ ରାଜନୀତି । କାଳ ଓ ପାତ୍ରକୁ ଗ୍ରହି ନିଜର ସ୍ଥିତିକୁ ବଦଳାଇବା ଆମ ଧର୍ମର ମୂଳମନ୍ତ୍ର । ଭୌମ, ଦୈବୀ ଓ ଆତ୍ମିକ ସମସ୍ତ ବିଭବର ସମ୍ୟକ ଉପଯୋଗ କରିବା ଆମର ଚିରନ୍ତନ କର୍ତ୍ତବ୍ୟ । ଅତୀତ ସଂସ୍କୃତିକୁ ଭୂତ ପରି ନ ଡରି, ସେଥିପ୍ରତି ଆକୃଷ୍ଟ ହେଲେ ଏସବୁ ଆପେ ଆପେ ଦିଶିବ, ଓ ଆମର ଚିନ୍ତାଧାରା ଓ ଉନ୍ନୟନ ଯୋଜନା ପରିପୁଷ୍ଟ ହେବ । ଏ ଦିଗରେ 'ନବଜୀବନ' ଯଥାସାଧ୍ୟ ସାହାଯ୍ୟ କରିବ ବୋଲି ଆଶା କରୁଁ ।

ନବଜୀବନ ଏହି କର୍ତ୍ତବ୍ୟ ସାଧନ କରିବ ତାହାର ପୃଷ୍ଠପୋଷକ ଲେଖକମାନଙ୍କ ସାହାଯ୍ୟରେ । ଓଡ଼ିଶାର ସବୁ ଲବ୍‌ଧ-ପ୍ରତିଷ୍ଠ ଲେଖକଙ୍କୁ ଏପର୍ଯ୍ୟନ୍ତ ବ୍ୟକ୍ତିଗତ ନିବେଦନ କରାଯାଇ ପାରିନାହିଁ । ଘୋର ଉତ୍ତେଜନା, ବିସ୍ଫୋରଣ, ଘୃଣା, ସଂଦେହ ଓ ଅବିଶ୍ୱାସ ଭିତରେ 'ନବଜୀବନ'ର ଜନ୍ମ ହେଲେହେଁ ପ୍ରଥମ ସଂଖ୍ୟା ପାଇଁ ଯେଉଁ ଲେଖକମାନେ ଯେ ପ୍ରକାରର ଲେଖା ଦେଇଛନ୍ତି, ସେଥିରୁ ଦୃଢ଼ ବିଶ୍ୱାସ ହେଉଛି, ନବଜୀବନ ତାହାର ଲକ୍ଷ୍ୟ ସାଧନରେ ସଫଳକାମ ହେବ ।

ସ୍ୱର୍ଗୀୟ ଚନ୍ତାମଣି ମିଶ୍ରଙ୍କ ଲଖିତ

# ପୁସ୍ତକାବଳୀ

୧ । ହତଭାଗ୍ୟ
୨ । ଜଗୁଆ ମା
୩ । ବିବାହ ରହସ୍ୟ
୪ । ଇତାଲିର ଭାଗ୍ୟ ବିଧାତା ଗ୍ୟାରିବାଲ୍ଡି
୫ । ଚଟନୋଟି ଗଳ୍ପ
୬ । ରାଷ୍ଟ୍ରନାୟକ ଜବାହରଲାଲ୍
୭ । ହିନ୍ଦୁ ଧର୍ମରେ ଜାତି ଓ ତା'ର ଗତି
୮ । ଦେବ ଦେବଙ୍କ ଦୁର୍ଗତି
୯ । ପଞ୍ଚ ପର୍ଣ୍ଣୀ
୧୦ । କାଳର ନିଷ୍ପତ୍ତି
୧୧ । ଅକାଳ ଚଟ୍ଟକ
୧୨ । ଦେବୀ ଓ ଦୁର୍ଭଗା
୧୩ । ଜୀବନ ନଦୀରେ ଭଉଁରୀ
୧୪ । ଅର୍ଦ୍ଧଶତାବ୍ଦୀର ଅନୁଭୂତି (୧ମ ଓ ୨ୟ ଭାଗ)

॥ ଅନୁବାଦ ॥

୧ । ଜଣିଥେ ନସ୍ତାର ଓ ଅନ୍ୟାନ୍ୟ ଗଳ୍ପ
୨ । ଅ.ମ ଦୁର୍ଗତିର ଦୁର୍ଦ୍ଦିନ
୩ । ଏଥାନ୍ ଫ୍ରୋମ
୪ । ମହାତ୍ମା ଗାନ୍ଧୀଙ୍କ ଜୀବନୀ (୨ ଭାଗରେ)
୫ । ମହାଭାରତ ପରିଚୟ (ସଂସ୍କୃତ ମୂଳ ମହାଭାରତର ଅନୁବାଦ)